# କାହିଁକି ଏ ଅନୁବାଦ ?

ଏତେ ବଡ଼ ବହିକୁ ଏତେ ଦିନ ଧରି ପରିଶ୍ରମ କରି କାହିଁକି ଅନୁବାଦ କଲି, ସେଇଟା ମୋ ପାଖରେ ଏକ ବଡ଼ ପ୍ରଶ୍ନ । ହୁଏତ ସେଥିକି ସମୟ ଦେଇଥିଲେ ଓଡ଼ିଆରେ ମୁଁ ଆଉ ଦି' ଚାରୋଟି ମୌଳିକ ପୁସ୍ତକ ସୃଷ୍ଟି କରିପାରିଥାଆନ୍ତି । ସୁନାମ ମଧ୍ୟ ଅର୍ଜିଥାଆନ୍ତି ।

କିନ୍ତୁ କାହିଁକି ଏ ଅନୁବାଦ ? ସ୍ଥିର ଏକମାତ୍ର ଉତ୍ତର ବହିଟି ମତେ ଅତି ଭଲ ଲାଗିଲା । ଏ ବହିକୁ ମୁଁ ଯେତେଥର ପଢ଼ିଛି, ଅନ୍ୟ କୌଣସି ବହି ପଢ଼ିନି । ଏହି ବହିଟି ମୋ ପାଖରେ ଥାଏ·····ଯିଏ ଯେତେବେଳେ ଆସି ବହି ଖଣ୍ଡିଏ ଦିଅ ପଢ଼ିବା ବୋଲି କହନ୍ତି, ଏଇଟି ଧରେଇଦିଏ । ଅଧିକାଂଶ କହନ୍ତି, ବଙ୍ଗଳା ପଢ଼ି ଜାଣିନୁ । ମୁଁ ଯେଉଁ ବନ୍ଧୁମାନଙ୍କ କଥା କହୁଛି, ସେମାନେ ଉଚ୍ଚଶିକ୍ଷିତ ଓଡ଼ିଆ । ବଡ଼ ବଡ଼ ଉଚ୍ଚପଦରେ ଅଛନ୍ତି ସେମାନେ ।

ମୋର ଧାରଣା ଥିଲା, ଶିକ୍ଷିତ ଓଡ଼ିଆମାନେ ବଙ୍ଗଳା ପଢ଼ି ଜାଣିଥିବେ । ତେଣୁ ବଙ୍ଗଳା ବହିକୁ ଅନୁବାଦ କରି କୌଣସି ଲାଭ ନାହିଁ । କିନ୍ତୁ ଇମିତି ଦି' ଚାରିଜଣଙ୍କଠାରୁ ବଙ୍ଗଳା-ଅପରିଚୟର ସୂଚନା ପାଇ ଅନୁବାଦର ଆବଶ୍ୟକତା ଅଛି ବୋଲି ଉପଲବ୍ଧି କଲି ।

ବଙ୍ଗଳାରୁ ଓଡ଼ିଆ ଅନୁବାଦରେ ବିଶେଷ ଅସୁବିଧା ନାହିଁ, ଲିପି ପରିବର୍ତ୍ତନ କରିଦେଲେ ହେଲା ବୋଲି ଏ ଧାରଣା ମୋର ଥିଲା । କିନ୍ତୁ ଏ ବହି ଅନୁବାଦ କଲାବେଳେ, ଯେତେ ସହଜ ବୋଲି ଭାବିଥିଲି, ଅନୁଭବ କଲି, ସେତେ ସହଜ ନୁହେଁ । ଶରତ ଚଟର୍ଜୀଙ୍କ ଭଳି ଜଣେ ଯୋଗଜନ୍ମା ଲେଖକଙ୍କ ଘଟଣା ଉପଯୋଗୀ ଖଞ୍ଜିଲା ଭଳି ଗୋଟିଏ ଗୋଟିଏ ଶବ୍ଦର ଶକ୍ତି କେତେ, ତାକୁ ବଦଳେଇ ଦେଲେ ତାର ଭାବ କିଭଳି ନଷ୍ଟ

ହୋଇପାରେ, ତାହା ନିଜେ ପରୀକ୍ଷା କରି ଦେଖିଛି । ତେଣୁ ଅତି ଆବଶ୍ୟକ ସ୍ଥଳେ ଯାହା ବଦଳାଇବା କଥା ବଦଳାଇଛି । ଆଉ ସବୁ ଅବିକଳ ରହିଛି ।

ଯେଉଁ ଧାରଣା ନେଇ ମୁଁ ବଙ୍ଗଳା ବହି ଅନୁବାଦ କରୁ ନ ଥିଲି, ପ୍ରକାଶକମାନଙ୍କ ସେଇ ଧାରଣା ଏପର୍ଯ୍ୟନ୍ତ ରହିଥିବାରୁ କେହିହେଲେ ଏତେବଡ଼ ବହିକୁ ଛାପେଇ 'ମୁଏତ ବନ୍ଦୀ ହେବନି' ଏଇ ବିପଦକୁ ମୁଣ୍ଡାଇବାକୁ ନ ଚାହିଁବାରୁ ମୁଁ ନିଜେ ତାକୁ ଛାପେଇଛି । ପ୍ରକାଶକଙ୍କ ଭୁଲ ଧାରଣାକୁ ପାଠକମାନେ ଭାଙ୍ଗି ଦେଇପାରିଲେ ମୋର ଶ୍ରମ ସାର୍ଥକ ହୁଅନ୍ତା । ଦାସ ବ୍ରାଦର୍ସ ମଧ୍ୟ ଏ ଦିଗରେ ସାହାଯ୍ୟ କରିଥିବାରୁ ଓ ଏହାର ବିକ୍ରି ଭାର ନେଇଥିବାରୁ ମୁଁ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଅନୁବାଦକ

## କୈଫିୟତ :

ବହିଟି ପଢ଼ିସାରିବା ପରେ ଭାବିଲି, କିଏ ଜାଣୁ ବା ନ ଜାଣୁ ଆଗ ଓଡ଼ିଆରେ ଅନୁବାଦ କରିଦିଏ । ଅନ୍ତତଃ ବଙ୍ଗଳା ଜାଣି ନ ଥିବା ଓଡ଼ିଆ ଭାଷାଭାଷୀ ଲୋକଙ୍କ ମଧ୍ୟରୁ ଦୁଇ ଚାରିଜଣ ତ ଏହି ପାଣ୍ଡୁଲିପିଟି ପଢ଼ିବେ । ସେତିକି ମୋ ପରିଶ୍ରମର ପାରିତୋଷିକ ।

କାହିଁକି କେଜାଣି, ବହିଟି ମୁଁ ପ୍ରତିଦିନ ଖୋଲି ଲେଖକଙ୍କର ଛବିଟିକି ଥରେ ଦେଖେ । ଆପେ ଆପେ ହାତ ଯୋଡ଼ି ହୋଇଯାଏ, ମୁଣ୍ଡ ନଇଁ ଆସେ । ମୋର କ୍ଷମତା ଓ ସାମର୍ଥ୍ୟର ପରିସର ମଧ୍ୟରେ ଯେତେ ବହି ପଢ଼ିଛି—ସବୁଠୁ ମତେ ଏଇ ବହିଟି ଭଲ ଲାଗିଲା ବୋଲି ସମଗ୍ରକୁ ନଷ୍ଟ ନ କରି, ଏଇ ଅନୁବାଦରେ ସେ ସମଗ୍ରକୁ ଖଟେଇଛି ।

କେତେକଙ୍କ ମତରେ ବହିଟିର ଆକ୍ଷରିକ ଅନୁବାଦ ନ କରି, ମର୍ମାନୁବାଦ କରିଥିଲେ ଭଲ ହୋଇଥାଆନ୍ତା; କିନ୍ତୁ ଲେଖକଙ୍କର ପ୍ରତି ଶବ୍ଦ ମନେହେଲା ଯେପରି ଗୁରୁତ୍ୱପୂର୍ଣ୍ଣ, ତେଣୁ କାଣ୍ଟଛାଣ୍ଟ କରିବା ବା ବାଦଦେବା ଭଳି ଅବିଚାର କରିବାକୁ ସାହସ ହେଲାନି ।

ପାଠକମାନେ କ୍ଷମା ଦେବେ·····ମୋର କୈଫିୟତ ଏତିକି ।

ଅନୁବାଦକ

## ମୋର ଅନ୍ୟ କେତୋଟି ବହି

ତୁଷାର କନ୍ୟା
ପାଷାଣୀ କନ୍ୟା
କେତେ ବାନ୍ଧବୀ
ପ୍ରେମ ଓ ପ୍ରଳୟ
ଫଳଂ ଫଳେ ଫଳାଣ
ବସୁନ୍ଧରା
ଅଶାନ୍ତ ଝଡ଼
ଚୀନ ଦେଖି ଆସିଲି
ଏକାଙ୍କିକା ସମାହାର
ମଧ୍ୟାହ୍ନ ଯୂଥିକା
ଛିନ୍ନ ମେଘ
ଶିଶୁ ଏକାଙ୍କିକା
ହେ ମୃତ୍ୟୁ ବିଜୟୀ

———

# ଏକ

ମଣ୍ଟିମଦନୀର ଗୋଟିଏ ବଡ଼ ସହର । ଏଇ ସମୟରେ ଶୀତ ମନ ଆସୁଥାଏ । ପରମହଂସ ରାମକୃଷ୍ଣଙ୍କର ଜଣେ ଚେଲା କାଁଣ ନର୍ଗୋଷ୍ଠୀ କର୍ମରେ ସାହାଯ୍ୟ ଲାଗି ଭିକ୍ଷା ସଂଗ୍ରହ କରିବା ଉଦ୍ଦେଶ୍ୟରେ ଏହି ସହରକୁ ଆସିଥାଆନ୍ତି । ତାଙ୍କର ବକ୍ତୃତାସଭାରେ ଉପେନ୍ଦ୍ରଙ୍କୁ ସଭାପତି ହେବାକୁ ପଡ଼ିବ ଏବଂ ତାଙ୍କର ପଦମର୍ଯ୍ୟାଦା ଅନୁସାରେ ସାହା ର୍ତ୍ତବ୍ୟ ସେତକ ବ କରିବାକୁ ପଡ଼ିବ, ଏହି ପ୍ରସ୍ତାବ ନେଇ ଦିନେ କାଳବେଳା କଲେଜର ଦଳେ ଛାତ୍ର ଉପେନ୍ଦ୍ର ପାଖରେ ଯାଇ ଜର ।

ଉପେନ୍ଦ୍ର ପଚାରିଲେ—ସଭ୍ୟକର୍ମଙ୍କ କ'ଣ ଶୁଣେ ?

ସେମାନେ କହିଲେ—ସେ କଥା ବର୍ତ୍ତମାନ ସଠିକ ଭାବରେ ଜଣା ହିଁ ନ । ସ୍ୱାମିଜୀ କହିଛନ୍ତି, "ସେଠିକି ଗଲେ ଆଦ୍ୟନ୍ତ ସଭାରେ ସେ ସବୁ କଥା ସ୍ପଷ୍ଟ ଭାବରେ ବୁଝେଇ କହିବେ ।" ସଭାର ଆୟୋଜନ ଓ ପ୍ରୟୋଜନ ନକଟା ଏଇଥିଲାଗି ।

ଉପେନ୍ଦ୍ର ଆଉ କୌଣସି କଥା ନ କହି ଯାଇଥିଲେ । ଏ ତାଙ୍କର ଅଭ୍ୟାସ । ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ଖୁବ୍ କୃ ସହକାରେ ପାଶ କରିଥିବା ହେତୁ ଗ୍ରାମମଣ୍ଡଳରେ ତାଙ୍କ ପ୍ରତି ଶ୍ରଦ୍ଧା ସମ୍ମାନ ଥିଲା ଅପରିସୀମ । ଏ କଥା ଉପେନ୍ଦ୍ର ଜାଣନ୍ତି । ତେଣୁ ଆ ବିପଦ ବା କୌଣସି କାମରେ ଏମାନେ ଯେତେବେଳେ ଆସି ପହଞ୍ ସେମାନଙ୍କ ଆବେଦନ ଉପରୋଧ ମମତାରେ କୌଣସି ଦିନ ଉପେକ୍ଷା କରିଦେବା ତାଙ୍କ ପକ୍ଷରେ ସମ୍ଭବ ହୁଏନା । ବିଶ୍ୱବିଦ୍ୟାଳୟ ପରୀକ୍ଷାଙ୍କୁ ଯେପି ଅଦାଲତରେ ଲକ୍ଷ୍ମୀଙ୍କ ସେବାରେ ନିଯୁକ୍ତ ହେବା ପ ମଧ୍ୟ ପିଲାଙ୍କ ଜିମ୍ନାଷ୍ଟିକ୍ ଆଖଡ଼ାଠାରୁ ଆରମ୍ଭ କରି ଫୁଟବଲ, କ୍ରି ଓ ଡିବେଟିଂ କ୍ଲବର ବସିଲ ଶୀର୍ଷସ୍ଥାନରେ ଆଜି ପର୍ଯ୍ୟନ୍ତ ତାଙ୍କୁ ବସି ପଡ଼ୁଥାଏ ।

କିନ୍ତୁ ଏ ଜାଗାଟିରେ ଚୁପଚାପ୍ ବସି ରହି ହେବ ନି, କିଛି ନା କହିବା ଆବଶ୍ୟକ । ଜଣକ ଆଖିକୁ ନିଦ୍ରା କହିଲେ, କିଛି ତ କହି ପଡ଼ିବ । ସତ୍ୟପରି ସାରି ସଭାର ଉଦ୍ଦେଶ୍ୟ ସମ୍ବନ୍ଧରେ ଏକାବେଳେ ରହିବା ତ ମୋ ପକ୍ଷରେ ଭଲ ହେବନି । କ'ଣ କା ନ୍ତେମାନେ ?

ଇଏ ତ ଠିକ୍ କଥା; କିନ୍ତୁ ସେମାନଙ୍କ ମଧ୍ୟରୁ କାହାରିକି ଦେଖିଲେ ଜଣା ନାହିଁ । ବାହାର ପ୍ରାଙ୍ଗଣରେ ଗୋଟିଏ ପ୍ରାଚୀନ ପୁ ଜବାବୃକ୍ଷ ତଳେ ଏହି ଗ୍ରାମବାଳକଟି ଯେତେବେଳେ ଉପେନ୍ଦ୍ରକୁ ମଝି ରଖି ସଂସାରର ଯାବତୀୟ ସମ୍ଭବ ଅସମ୍ଭବ ମତକର୍ମାବଳୀର ( କରିବାରେ ବ୍ୟସ୍ତ ହୋଇପଡ଼ିଥିଲେ, ସେତେବେଳେ ଦିବାକର ଜଣେ ନିଃଶବ୍ଦରେ ସମସ୍ତଙ୍କ ଦୃଷ୍ଟି ଏଡ଼ାଇ ବାହାର ହୋଇଆସିଲେ ଦିବାକର ଉପେନ୍ଦ୍ରଙ୍କ ମାମୁଁପୁଅ ଭାଇ । ଶିଶୁ ଅବସ୍ଥାରୁ ପିତୃମାତୃ ହୋଇ ମାମୁଁଙ୍କ ଘରେ ମଣିଷ ହୋଇଥିଲା । ବାହାରର ଗୋଟିଏ ଘ ଘରେ ଦିନବେଳେ ତା'ର ଲେଖାପଢ଼ା ଏବଂ ରାତି ହେଲା ମାନେ ( ବୟସ ପ୍ରାୟ ଉଣେଇଶି । ଏଫ୍. ଏ. ପାଶ ପରେ ଖ ପଢେ ।

ଉପେନ୍ଦ୍ର ସନ୍ଦିଗ୍ଧ ଦୃଷ୍ଟି ଏହି ଲୋକଟିର ମୁହଁରେ ...ବା ...ର ...ର 'ପାର୍ଟିରେ ଡାକିବାକୁ ଲାଗିଲେ—ସତୀଶ ! ରୂପଚାନ୍ଦ ଫେରାଇ ଯାଉଛନ୍ତି ଯେ, ଆରେ ଇଆଡ଼େ ଟିକିଏ ଆ, ଆ ମ !

ଧଳାପଣିଆ ସତୀଶ ଅପ୍ରସ୍ତୁତ ଭାବରେ ପାଖରେ ଆସି ଠିଆହେଲା । ଉପେନ୍ଦ୍ର ପଚାରିଲେ—ଏତେ ଦିନ ହେଲା ଦେଖିବାକୁ ପାଉନି ଯେ !

ଅପ୍ରସ୍ତୁତ ଭାବକୁ ଘୋଡ଼ାଇଦେଇ ସତୀଶ ହସହସ ମୁହଁରେ କହିଲା—କେତେଦିନ ହେଲା ଏଠି ନ ଥିଲି ଉପୀନଦା, ଏଲାହାବାଦ କକାଙ୍କ ପାଖକୁ ଯାଇଥିଲି ।

କଥାଟା ଭଲ କରି ଶେଷ ନ ହେଉଣୁ କିଏ ଜଣେ ଦେହଟା ଘୁଞ୍ଚାଇ ଦେଇ, ଟେରିବାଲା, ଚଷମାଧାରୀ ଆଖି ମିଟିକେଇ ମିଟିକେଇ ଦାନ୍ତ ଦେଖାଇ କହିଲା—କ'ଣ, ମନ ଦୁଃଖରେ ନା ସତୀଶ ?

ଏମ୍. ଏ. ପରୀକ୍ଷାରେ ଏଥର ବି ତାକୁ ପଠାଯାଇ ନାହିଁ—ଏ ସମ୍ବାଦ ସମସ୍ତେ ଜାଣନ୍ତି । ତେଣୁ କଥାଟା ସେମିତି ଅଜଣା ଅଶୁଣା ବା ଖରାପ ଶୁଣାଗଲା ନାହିଁ ଯେ, ଉପସ୍ଥିତ ସମସ୍ତେ ମୁଖ ଲଜ୍ଜାରେ ନତକରି ମନେ ମନେ ଛି ଛି କରିବାକୁ ଲାଗିଲେ । ଯୁବକ ଜଣଙ୍କର ପରିହାସ ଓ ଦାନ୍ତର ହସ କୌଣସିଠି ଆଶ୍ରୟ ନ ପାଇ ସେଇକ୍ଷଣି ମିଳେଇଗଲା ସତ, କିନ୍ତୁ ତାରି ହସ ହସ ମୁହଁ ନେଇ କହିଲା—ଭୂପତିବାବୁ, ମନ ଥିଲେ ସିନା ମନରେ ଦୁଃଖ ହୁଏ । ପାଶ୍ କରିବା ଆଶା କୁହନ୍ତୁ ବା ଇଚ୍ଛା କୁହନ୍ତୁ, ମୋର ଭଲ କରି ଜ୍ଞାନ ହେବା ପରଠାରୁ ହିଁ ତୁଟିଛି । କେବଳ ବାପା ତ୍ରୁଟିପାରି ନାହାନ୍ତି । ତେଣୁ ମନ ଦୁଃଖରେ କାହାକୁ ଦେଶାନ୍ତରୀ ହେବାକୁ ହେଲେ, ତାଙ୍କର ହେବାହିଁ ଉଚିତ ଥିଲା । ଅଥଚ ସେ ବେଶ ଅଟଳ ଭାବରେ ତାଙ୍କର ଓକିଲାତି କରି ଚାଲିଲେ । କିନ୍ତୁ ଯାହା କୁହ ଉପୀନଦା, ଏଥର ତାଙ୍କର ବି ଆଖି ଫିଟିଛି ।

ସମସ୍ତେ ହସିଉଠିଲେ । ହସିବା ଭଳି କଥା କିଛି ନ ଥିଲା; କିନ୍ତୁ ଏଇ ଭୂପତି ବାବୁଙ୍କ ଅଭଦ୍ର ପରିହାସ ଯେ ସତୀଶକୁ ସ୍ପର୍ଶ କରି-ପାରେନା, ସେଇଥିରେ ସମସ୍ତେ ଅତ୍ୟନ୍ତ ତୃପ୍ତି ବୋଧକଲେ ।

ଉପେନ୍ଦ୍ର ପ୍ରଶ୍ନ କଲେ— ଏଥର ତାହା ହେଲେ ଗ୍ରାଡ଼ ଦେଲ୍ ?

ସନ୍ତୋଷ କହିଲା—ମୁଁ କଣ କେବେ ଧରିଥିଲି ଯେ ଛାଡ଼ିଦେବି ? ମୁଁ କୌଣସି ଦିନ ଧରିନାହିଁ ଉପୀନଦା, ମତେ ଲେଖାପଢ଼ା ଧରିଥିଲା । ଏଥର ମୁଁ କରିବି ମୋର ଆତ୍ମରକ୍ଷା; ଏଭଳି ଗୋଟିଏ ଦେଶରେ ରହିବି, ଯେଉଁଠି ପାଠଶାଳାଟିଏ ବି ନ ଥିବ ।

ଉପେନ୍ଦ୍ର କହିଲେ—କିନ୍ତୁ କିଛି କରିବା ତ ଦରକାର । ମଣିଷ କିଛି ନ କରି ଚୁପ ରହିପାରେନା, ରହିବା ଉଚିତ ବି ନୁହେଁ ।

ସନ୍ତୋଷ କହିଲା—ନା, ଚୁପ୍ ରହିବିନି । ଏଲାହାବାଦଠୁ ଗୋଟାଏ ନୂତନ ମତଲବ ନେଇ ଆସିଛି । ଥରେ ଭଲକରି ଚେଷ୍ଟା କରି ଦେଖିବି—ଏ ଲକ୍ଷ୍ୟ ହାସଲ କରିପାରୁଛି କି ନା ।

ବିସ୍ତାରିତ ବିବରଣୀ ଆଶାରେ ସମସ୍ତେ ତାର ମୁହଁକୁ ଚାହିଁ ରହିଛନ୍ତି ଦେଖି ସେ ସଲଜ୍ଜହାସରେ କହିଲା—ଆମମାନଙ୍କ ଗାଁରେ ଯେପରି ମ୍ୟାଲେରିଆ, ସେମିତି ହଇଜା । ପାଞ୍ଚ ସାତଟା ଗାଁ ମଧ୍ୟରେ ସମୟରେ ହୁଏତ ଜଣେ ହେଲେ ଡାକ୍ତର ମିଳନ୍ତିନି । ମୁଁ ସେଇଠିକି ଯାଇ ହୋମିଓ-ପ୍ୟାଥି ଚିକିତ୍ସା ଆରମ୍ଭ କରିଦେବି ।

"ମୋର ମା ତାଙ୍କର ମୃତ୍ୟୁ ପୂର୍ବରୁ ମତେ କେତେ ହଜାର ଟଙ୍କା ଦେଇ ଯାଇଥିଲେ । ସେ ଟଙ୍କା ମୋର ପାଖରେ ଅଛି । ତାକୁ ଲଗେଇ ଗାଁରେ ଥିବା ଆମ ବୈଠକଖାନାରେ ଡିସ୍‌ପେନ୍‌ସାରି ଖୋଲିଦେବି । ତୁମେ ହସନି ଉପୀନଦା, ତୁମେ ଦେଖ, ମୁଁ କରୁଛି କି ନା । ବାପାଙ୍କୁ ରାଜି କରେଇ ନେଇଛି । ତାଙ୍କୁ କହିଛି, ମାସେ ଦିମାସ ପରେ କଲିକତା ଯାଇ ହୋମିଓପ୍ୟାଥିକ ସ୍କୁଲରେ ଭର୍ତ୍ତି ହୋଇଯିବି ।

ଉପେନ୍ଦ୍ର ପଚାରିଲେ—ମାସକ ପରେ କାହିଁକି ?

ସନ୍ତୋଷ କହିଲା—ଟିକିଏ କାମ ଅଛି । ଦକ୍ଷିଣ ସାହି ନବନାଟ୍ୟ ସମାଜ ଭାଙ୍ଗି ଓଲଟପାଲଟ ହୋଇଯାଇଛି । ଆମର ବିପିନବାବୁ ହେଉଛନ୍ତି ଏଇ ଦଳର କର୍ତ୍ତା । ଟେଲିଗ୍ରାଫ ପରେ ଟେଲିଗ୍ରାଫ କରି ସେ ମତେ ଆଣିଛନ୍ତି । ମୁଁ କଥା ଦେଇଛି ତାଙ୍କର ଜନ୍‌ସାର୍ଟ ପାର୍ଟିଟାକୁ ଠିକ୍ କରିଦେଇ ଯାଇ ଅନ୍ୟ କାମରେ ହାତ ଦେବି ।

ପୁଣି ସମସ୍ତେ ହୋ ହୋ କରି ହସିଉଠିଲେ । ସନ୍ତୋଷ ମଧ୍ୟ ହସିବାକୁ ଲାଗିଲା । କିଛି ସମୟ ଭିତରେ ଉଚ୍ଚ ହସ ମୃଦୁ ହୋଇଆସିବା ପରେ ସନ୍ତୋଷ

କହିଲ—ଗୋଟାଏ ଫିଣୀର ଦରକାର ଥିଲା, ସେଇଥିଲାଗି ଆଜି ଦିବାକର ପାଖକୁ ଆସିଥିଲ । ଯଦି ଥିଏଟର ଗାଡ଼ିଟାରେ ମତେ ଉଦ୍ଧାର କରିଦିଏ ତ ଆଉ ବେଶୀ ଧାଁ ଧପଡ଼ କରିବାକୁ ପଡ଼ନ୍ତାନି ।

ଉପେନ୍ଦ୍ର ପଚାରିଲେ—ସେ କ'ଣ କହୁଚି ?

ସତୀଶ କହିଲା—କ'ଣ ଆଉ କହିବ ? ପରୀକ୍ଷା ସନ୍ନିକଟ । ଏଇଟା ମୋ ମୁଣ୍ଡରେ ଡୁକେନା ଉପୀନଦା, ଦି'ବର୍ଷ ପଡ଼ାଶୁଣାପରେ ପରୀକ୍ଷା କରିଲେ ଯେ ଲୋକର ଗୋଟାଏ ଗାଡ଼ିରୁ ଅବହେଳାରେ ନଷ୍ଟ ହୋଇଯାଏ । ମୁଁ କହେ, ଯାହାର ସତରେ ଯାଏ, ତାର ପିବାଟା ହିଁ ଉଚିତ । ଏଲ୍‌କିପାଶ୍ କରିବାର ମର୍ଯ୍ୟାଦା ଯେଉଁମାନଙ୍କ ପାଖରେ ଥାଏ ଥାଉ, ମୋ ପାଖରେ କିନ୍ତୁ ନାହିଁ । ତୁମେ ସାଗିପାରିବନି ଉପୀନଦା, ମୁଁ ତୁମକୁ ଯେମିତି ଜାଣେ ଏମାନେ ତାର କାଣିଚ୍ଛଏ ସୁଦ୍ଧା ଜାଣନ୍ତିନି । ଜିମ୍‌ନାଷ୍ଟିକର ଆଖଡ଼ାରୁ ଆରମ୍ଭ କରି ଫୁଟବଲ କ୍ରିକେଟ ପର୍ଯ୍ୟନ୍ତ ତୁମର ଚରିଦିନ ଯତନ ଥିଲା । ତୁମର ଅନେକ ଦିନ ଅନେକ ସମୟ ନଷ୍ଟ ହେବାର ଦେଖିଛି, ଅନେକଗୁଡ଼ାଏ ପରୀକ୍ଷା ଦେବାର ମଧ୍ୟ ଦେଖିଚ, ସେଗୁଡ଼ାକ ସାଙ୍ଗମଙ୍ଗ ଅନେକ ସ୍କଲରସିପ୍ ନେଇ ପାଶ କରିବାର ମଧ୍ୟ ଦେଖିଛି; କିନ୍ତୁ କୌଣସି ଦିନ ତ ତୁମକୁ ଏକ୍‌ଜାମିନର କଥା ଗୁଡ଼ିବାର ଶୁଣିନି ।

ଉପେନ୍ଦ୍ର କଥାଟାକୁ ଚାପି ଦେବା ପାଇଁ କହିଲେ—ମୁଁ ଯେ କ'ଣ କରେଇ ଜାଣେନି ସତୀଶ !

ସତୀଶ କହିଲା—ମୁଁ ମଧ୍ୟ ଅନେକ ସମୟରେ ଏହି କଥା ଭାବେ । ସଂସାରରେ ଏଇ କଥାଟା କାହିଁକି ଯେ ତୁମେ ଜାଣିନ, ମତେ ବଡ଼ ଆଶ୍ଚର୍ଯ୍ୟ ବୋଧହୁଏ । କିନ୍ତୁ ସେ କଥା ଥାଉ, ତୁମର ଏହି ବିପଦର ଖବରରେ ଏ କମିଟିଟି କେଉଁଥିପାଇଁ କି ?

ଶୀତଦିନର ଖବର ଆଡ଼କୁ ପିଠି କରି, ମୁଣ୍ଡରେ ର୍ୟାପେର ଜଡ଼େଇ ଏମାନଙ୍କ ଏଇ ବୈଠକଟି ବେଶ୍ ଜମି ଉଠିଥିଲା । ବେଳ ଯେ ଏତେ ହୋଇଗଲାଣି, କାହାର ନଜର ନାହିଁ । ସତୀଶ କଥାରେ ବେଳକୁ ଦେଖି, ସମସ୍ତେ ଏକ ସମୟରେ ଉଠି ଠିଆହେଲେ । ସମ୍ଭବତଃ ପରେ ପରେ ... ପଚାରିଲେ—ଉପେନ୍ଦ୍ରବାବୁ ତାହା ହେଲେ ? '

ଉପେନ୍ଦ୍ର କହିଲେ—ମୁଁ ତ କହୁଚି, ମୋର କୌଣସି ଆପତ୍ତି ନାହିଁ । ତେବେ ତୁମମାନଙ୍କ ସ୍ୱାମିଜୀଙ୍କ ଉଦ୍ଦେଶ୍ୟଟା ଯଦି ପୂର୍ବାହ୍ନରୁ ଟିକିଏ ଜଣାଯାଆନ୍ତା, ଟିକିଏ ସ୍ପଷ୍ଟ ବୋଧ କରନ୍ତି । ନିତାନ୍ତ ବୋକାଙ୍କ ଭଳି କୌଣସି ଜାଗାକୁ ଯିବା ମତେ କମିତି କମିତି ଲାଗେ ।

ଭୂପତି କହିଲା—କିନ୍ତୁ କୌଣସି କଥା ସେ କହିନାହାନ୍ତି । ବରଂ ଏଭଳି କହିଲେ, ଯାହା ଜଟିଳ ଓ ଦୁର୍ବୋଧ୍ୟ ତାହା ବିଶଦଭାବରେ ପରିଷ୍କାର କରି ବୁଝାଇବା ଲାଗି ସମୟ ଓ ସୁବିଧା ନ ହେବା ପର୍ଯ୍ୟନ୍ତ ଏକବାରେ ନ କହିବା ହିଁ ଭଲ । ଏଥିରେ ଅଧିକାଂଶ ସମୟ ସୁଫଳ ପରିବର୍ତ୍ତେ କୁଫଳ ହିଁ ଫଳେ ।

ଯାଉ ଯାଉ କଥାବାର୍ତ୍ତା ହେଉଥିଲା । ଏତେ ସମୟ ପରେ ସମସ୍ତେ ବାହାର ହୋଇ ରାସ୍ତାର ଗୋଟିଏ ପାଖରେ ଯାଇ ଠିଆହେଲେ ।

ସତୀଶ ଧରି ବସିଲା, "ଘଟଣାଟା କ'ଣ ଉପୀନଦା !"

ଉପେନ୍ଦ୍ରକୁ ବାଧା ଦେଇ ଭୂପତି କହିଲା—ସତୀଶବାବୁ, ଆପଣଙ୍କୁ କିନ୍ତୁ ଲମ୍ବା ଖାତାରେ ଦସ୍ତଖତ କରିବାକୁ ପଡ଼ିବ । କାହିଁକି, ବର୍ତ୍ତମାନ ଆମେ ଠିକ୍ ଭାବରେ କହିପାରିବୁନି । ପରଦିନ ଅପରାହ୍ନରେ ସ୍ୱାମିଜୀ ନିଜେ ବୁଝେଇଦେବେ ।

ସତୀଶ କହିଲା—ଲୋକେ ନ ଶୁଣି ମଧ୍ୟ ଅନେକ କଥା କହୁଥାଆନ୍ତି—ସେ କଥା ନୁହେଁ । କଥା ଆପଣମାନଙ୍କୁ ହିଁ ନେଇ । କିଛି ନ ଜାଣି ମଧ୍ୟ ଏ ଅନୁଷ୍ଠାନଟିକୁ ଆପଣମାନେ ଯେତେ ମହତ୍ ବୋଲି ବିଶ୍ୱାସ କରିପାରିଛନ୍ତି, ମୁଁ ଯଦି ସେତିକିଟା ନ ପାରେ ତ ମତେ ଦୋଷ ଦେବନି । ବରଂ ଯାହା ଜାଣେ, ତାହାର ଭଲ ମନ୍ଦ କେଉଁଥିରେ ବୁଝି ହୁଏନା ସେଇଟାକୁ ଅପେକ୍ଷା କରି, ତାର କ୍ଷତି କରି, ଗୋଟାଏ ଅନିର୍ଦ୍ଦିଷ୍ଟ ମହତ୍ତ୍ୱ ପଛରେ ଧାଇଁବା ମୋ ପକ୍ଷରେ ସମ୍ଭବ ନୁହେଁ ।

ଉପସ୍ଥିତ ଛାତ୍ରମଣ୍ଡଳୀ ଭିତରେ ବୟସରେ, ଲେଖାପଢ଼ାରେ ଭୂପତି ହିଁ ସବୁଠାରୁ ଶ୍ରେଷ୍ଠ ବୋଲି ସେ ଯାହା କିଛି କହୁଥିଲା । ସତୀଶ କଥାରେ ହସି ସେ କହିଲା—ସତୀଶବାବୁ, ସ୍ୱାମିଜୀଙ୍କ ଭଳି ମହତ୍ ବ୍ୟକ୍ତି ଯେ ଭଲ କଥା କହିବେ, ତାଙ୍କର ଉଦ୍ଦେଶ୍ୟ ଯେ ଭଲ, ଏ ବିଶ୍ୱାସ କରିବା ତ କଠିନ ନୁହେଁ ।

ସତୀଶ କହିଲା—ବ୍ୟକ୍ତିବିଶେଷ ପକ୍ଷରେ କଠିନ ନୁହେ ମାନୁଛି । ଏଇ ଦେଖନ୍ତୁ ନା, ଏନ୍‌ଟ୍ରାନ୍‌ସ ପାଶ କରିବାଟା ସେଭଳି କିଛି ବଡ଼ କଥା ନୁହେ, ଅଥଚ ପାଶ କରିବା ଦୂରର କଥା ତିନି ଥର ବର୍ଷ ମଧ୍ୟରେ ମୁଁ ତାହା ପାଖକୁ ସୁଦ୍ଧା ଯାଇପାରିଲିନି । ଆଚ୍ଛା, ଏହି ସ୍ୱାମିଜୀ ଲୋକଜଣଙ୍କୁ ଆଗରୁ କେବେ ଦେଖିଛ କିମ୍ବା ତାଙ୍କ ସମ୍ବନ୍ଧରେ କ'ଣ କିଛି ଶୁଣିଚ ?

କେହି ଯେ କିଛି ଜାଣନ୍ତି ନ, ସମସ୍ତେ ସ୍ୱୀକାର କଲେ । ସତୀଶ କହିଲା—ହେଇ ଦେଖନ୍ତୁ, ଗୋଟିଏ ଗେରୁଆ ବସନ ଛଡ଼ା ତାଙ୍କର କୌଣସି ସାର୍ଟିଫିକେଟ ନାହିଁ । ତଥାପି ଆପଣମାନେ ମାତି ଉଠିଚନ୍ତି ଏବଂ ମୁଁ ନିଜେ କାମଦାମ ଛାଡ଼ି ତାଙ୍କର ବକ୍ତୃତା ଶୁଣିପାରୁନି ବୋଲି ମୋ ଉପରେ ସମସ୍ତଙ୍କର ରାଗ ।

ଭୂପତି କହିଲା—ମାତିଉଠିଲେ କ'ଣ ଉଦ୍ଦେଶ୍ୟ ସଫଳ ହୁଏ ସତୀଶ ବାବୁ ! ଏଇ ଗେରୁଆ ଲୁଗା ପିନ୍ଧା ଲୋକଗୁଡ଼ାକ ଜଗତକୁ ଯେ ଅନେକ କିଛି ଜିନିଷ ଦେଇଯାଇଛନ୍ତି । ସେ ଯାହା ହେଉ, ମୁଁ ରାଗ କରିନି; ଦୁଃଖ କରୁଚି । ଜଗତର ସମସ୍ତ ବସ୍ତୁ ସଫେଇ ସାକ୍ଷୀର ହାତ ଧରି ହାଜର ହୋଇ ପାରନ୍ତି ନି ବୋଲି, ମିଥ୍ୟା ବୋଲି ତ୍ୟାଗ କରିବାକୁ ବସିଲେ, ଅନେକ ଭଲ ଜିନିଷରୁ ଆମକୁ ବଞ୍ଚିତ ହୋଇରହିବାକୁ ପଡ଼େ । ଆପଣ ନିଜେ କୁହନ୍ତୁ ଦେଖି, ଯେତେବେଳେ ସଙ୍ଗୀତର ସା-ରେ-ଗା-ମା- ସାଧୁଥିଲେ, ସେତେବେଳେ କେତେ ବା ରସର ଆସ୍ୱାଦନ ପାଉଥିଲେ ? କେତେ ବା ତାର ଭଲ ମନ୍ଦ ବୁଝୁଥିଲେ ?

ସତୀଶ କହିଲା— ମୁଁ ଠିକ ସେଇ କଥା କହୁଥିଲି । ସଙ୍ଗୀତର ଗୋଟାଏ ଆଦର୍ଶ ଯଦି ଆମର ସମ୍ମୁଖରେ ନ ଥାଆନ୍ତା, ମଧୁର ରସାସ୍ୱାଦର ଆଶା ଯଦି ନ କରନ୍ତୁ, ତାହା ହେଲେ ଏତେ କଷ୍ଟ କରି ସା-ରେ-ଗା-ମା ସାଧନ୍ତ ନ । ଓକିଲାତି ଭିତରେ ଟଙ୍କାର ଗନ୍ଧ ଯଦି ନ ପାଆନ୍ତେ, ତାହାହେଲେ ଏକବାର ଫେଲ କରି କ୍ଷାନ୍ତ ହୁଅନ୍ତେ । ବାରମ୍ବାର ଏଭଳି ପ୍ରାଣପାତ କରି ଆଇନ ବହିଗୁଡ଼ାକ ମୁଖସ୍ଥ କରନ୍ତେ ନାହିଁ । ଉପୀନଦା ହୁଏତ ସ୍କୁଲରେ ମାଷ୍ଟରୀଗିରି କରି ଏତେ ଦିନ ଧରି ସନ୍ତୁଷ୍ଟ ରହି-ଥାଆନ୍ତେ ।

ଉପେନ୍ଦ୍ର ହସିବାକୁ ଲାଗିଲେ; କିନ୍ତୁ ଭୂପତିର ମୁହଁ ଲାଲ ହୋଇ-ଉଠିଲା । ଏକ ଗୁଣ ଖୋଞ୍ଚାକୁ ଯେ ଦଶ ଗୁଣ କରି ସତ୍ତାଶ ଫେରାଇ ଦେଇଛି, ତାହା ସମସ୍ତେ ବୁଝିପାରିଲେ ।

ଶେଷକୁ ଚୁପି ଭୂପତି କହିଲା—ଆପଣଙ୍କ ସହିତ ତର୍କ କରିବା ବୃଥା । ଗୋଟାଏ ଜିନିଷର ଭଲ ମନ୍ଦ ଯେ କେତେ ରକମରେ ପ୍ରମାଣ ହୋଇପାରେ, ତା ହୁଏତ ଆପଣ ଜାଣନ୍ତି ନାହିଁ ।

କଥା କଥାରେ ସମସ୍ତେ ରାସ୍ତାର ଗୋଟିଏ ପାଖରେ ଥକ୍କା ମାରି ବସି ପଡ଼ିଥିଲେ । ସତ୍ତାଶ ଠିଆହୋଇ ହାତଯୋଡ଼ି କହିଲା—ମାଫ୍ କରନ୍ତୁ ଭୂପତି ବାବୁ ! ନିଅ ରକମ 'ପ୍ରମାଣ' ଓ ନିତିଶ ରକମ "ପ୍ରତ୍ୟକ୍ଷରେ ଆଲୋଚନା" ଏତେ ଖରାରେ ସହ୍ୟ ହବ ନା । ତା ଅପେକ୍ଷା ସନ୍ଧ୍ୟା ପରେ ବାପାଙ୍କ ବୈଠକଖାନାକୁ ଆସିବେ, ସେଇଠି ଦ'ପହରଠୁ ରାତିପର୍ଯ୍ୟନ୍ତ ତର୍କ ବିତର୍କ ହୋଇପାରେ । ପ୍ରଫେସର ନବୀନବାବୁ, ସଦର-ବାଲା ଗୋବିନ୍ଦବାବୁ; ସେ ଘରର ଭଟ୍ଟାଚାର୍ଯ୍ୟ ମହାଶୟ ପର୍ଯ୍ୟନ୍ତ ଏ ବିଷୟ ନେଇ ରାତ୍ରୀର ରାତି ପର୍ଯ୍ୟନ୍ତ ଗପସପ କରିଥାଆନ୍ତି । ତାଙ୍କ ଘରେ ଆମର ଆଡ୍ଡା । ଆଡ୍ଡା ଚଉଡ଼ା ବୁଡ଼ାଙ୍କ ବେଶ୍ କାୟିଦାରେ ବର୍ତ୍ତମାନ ସୁଦ୍ଧା ପାକଲ ହୋଇ ଉଠି ନ ସତି, କିନ୍ତୁ ହିହରେ ମୋର ରଙ୍ଗ ଧରିଛି । ଅସମୟରେ ପାଚି, ଗଛତଳେ ପଡ଼ି କୁକୁର ବିଲୁଆଙ୍କ ପେଟରେ ପଡ଼ିବାକୁ ଚାହେଁ ନା । ତେଣୁ ଏଇଟାକୁ ବାଦଦେଇ ଆଉ କିଛି ଯଦି କହିବାର ଥାଏ ତ କୁହ, ନ ହେଲେ ଅନୁମତି ଦେଲେ ବିଦାୟ ନେଇ ଚାଲିଯିବି ।

ଯୋଡ଼ହାତ ସତ୍ତାଶ କଥାରେ ସମସ୍ତେ ହସିଉଠିଲେ । ରୁଷ୍ଟ ଭୂପତି ଦ୍ୱିଗୁଣ ଉଦ୍ଦୀପ୍ତ ହୋଇ ଉଠିଲା । ରାଗରେ ମୁଣ୍ଡର ତର୍କର ସୂତ୍ର କୁଆଡ଼େ ଛୁଣ୍ଡି ଗଲା । ଏହିଭଳି ଅବସ୍ଥାରେ ଯାହା ପ୍ରଥମରୁ ମୁହଁରେ ଆସେ, ସେତିକ ତର୍ଜନ କରି କହିଚାଲିଲା—ଆପଣ ତାହା ହେଲେ ଦେଖୁଛି ଈଶ୍ୱରଙ୍କୁ ବି ମାନନ୍ତି ନି ।

ସତ୍ତାଶ ଭୂପତିର ଆରକ୍ତ ମୁହଁକୁ ତୀକ୍ଷ୍ଣ ଦୃଷ୍ଟିପାତ କରି ଉପେନ୍ଦ୍ର ମୁହଁ ଆଡ଼କୁ ଚାହିଁ ହୋ ହୋ କରି ହସିଉଠିଲା । କହିଲା—ଓ ଉପୀନଦା, ଭୂପତିବାବୁ ଏଥର ପକ୍ଷ ନେଲେଣି । ଆମଭଳି ଦଶ ବାରଟା କୁକୁର ମଧ୍ୟ ଏଥର ଆଉ ପାଖ ଲାଗିପାରିବେ ନା । ଭୂପତି ଆଡ଼କୁ ଚାହିଁ

କହିଲା—ଠିକ୍ କହିଛନ୍ତି, ଠିକ୍ କହିଛନ୍ତି ଭୂପତିବାବୁ, "ବୋଲ୍ଡ୍ ଗ୍ରେସ୍" ଖେଳରେ ଧାଁ ଧପଡ଼ ନ କରିପାରିଲେ, ବୋଲ୍ଡ୍‌କୁ ଛୁଆଁ ପକେଇବା ବରଂ ଭଲ ।

ଏହି ଅପବାଦର ଆଘାତରେ ଭୂପତି ରାଗରେ ତାତି ଠିଆ ହେବା-ମାତ୍ରେ ଉପେନ୍ଦ୍ର ତା ହାତକୁ ଧରି କହିଉଠିଲେ—ରୂପକର ଭୂପତି, ମୁଁ ଏ ଲୋକଟାକୁ ଜବତ୍ କରୁଚି । ବୋଲ୍ଡ୍ ଛୁଆଁ ପକ୍ଷ ନେବା ଏସବୁ କି କଥା, କି ରେ ସତୀଶ ? ବାସ୍ତବିକ ତୋର ଯେଉଁଭଳି ସନ୍ଦେହଗ୍ରସ୍ତ ପ୍ରକୃତି, ସେଥିରେ ସନ୍ଦେହ ହୋଇପାରେ ତୁ ଈଶ୍ୱରଙ୍କୁ ବି ମାନୁନା ।

ସତୀଶ ଗମ୍ଭୀର ବିସ୍ମୟ ପ୍ରକାଶ କରି କହିଲା,—ହାୟରେ ଅଦୃଷ୍ଟ ! ଈଶ୍ୱରଙ୍କୁ ମାନେନା ! ଖ୍ରୀଷ୍ଟଶରୀରବିତରେ ମାନେ । ଥିଏଟରର ଆଡ୍ଡା ଭାଙ୍ଗିବା ପରେ ରାତି ଅଧରେ ଗୋରସ୍ଥାନ ପାଖ ଦେଇ ଏକାକୀ ଫେରିବା ବାଟରେ ଯେତେବେଳେ ଭୟରେ ବୁକୁର ରକ୍ତ ବରଫ ହୋଇ-ଯାଏ, ତୁମେ ଭଲ ମଣିଷ ଦଳକ ତା'ର କ'ଣ କିଛି ଖବର ରଖ ? ହୟତ କଣ ଉପୀନଦା, ଭୂତପ୍ରେତ ମାନେ, ଈଶ୍ୱର ମାନୁନ ?

ତାର ଏ କଥାରେ ବୃଦ୍ଧ ଭୂପତି ସମେତ ସମସ୍ତେ ହସିଉଠିଲେ । କହିଲେ,—ସତୀଶବାବୁ, ଭୂତକୁ ଭୟ କରିବା ମାତ୍ରେ ଈଶ୍ୱରଙ୍କୁ ସ୍ୱୀକାର କରିବାକୁ ପଡ଼େ—ଏ ଦୁଇଟା ଜିନିଷ ତୁମ ପାଖରେ ଏକ ?

ସତୀଶ କହିଲା,—ବିଲକୁଲ ଏକ । ପାଖାପାଖି ରହିଲେ ଛାଡ଼ିବାର ଯୁ ନାହିଁ । କେବଳ ମୋ ପକ୍ଷରେ ନୁହେଁ, ଆପଣଙ୍କ ପକ୍ଷରେ ଏବଂ ଉପୀନଦାଙ୍କ ପକ୍ଷରେ ମଧ୍ୟ ଏବଂ ଯେଉଁମାନେ ଶାସ୍ତ୍ର ଲେଖନ୍ତି, ସେମାନଙ୍କ ପକ୍ଷରେ ମଧ୍ୟ । ଇଏ ଗୋଟିଏ କଥା । ନ ମାନୁଚ ତ ବହୁତ ଆଚ୍ଛା ! କିନ୍ତୁ ମାନିଲେ ଆଉ ରକ୍ଷା ନାହିଁ । ଆପଦ-ବିପଦ, ଭଲମନ୍ଦରେ ଅନେକ ଦିଗରୁ ଅନେକ ରକମର ଭାବ ଦେଖିଚି, ବାକ୍‌ବିତଣ୍ଡା ବହୁତ ଶୁଣିଚି, କିନ୍ତୁ ଯେଉଁ ଅନ୍ଧକାର ସେଇ ଅନ୍ଧକାର । ଗ୍ରେଟ ଗୋଟିଏ ନିରାକାର ବ୍ରହ୍ମକୁ ମାନ ବା ହାତ ପାଦ ଥିବା ତେତିଶକୋଟି ଦେବତାଙ୍କୁ ସ୍ୱୀକାର କର—କୌଣସି ଫନ୍ଦ କରନା । ସମସ୍ତେ ଗୋଟିଏ ଶିକୁଳିରେ ବନ୍ଧା । ଗୋଟିକୁ ଟାଣି-ଦେଲେ ସମସ୍ତେ ଆସି ହାଜର ହେବେ । ସେଇ ସ୍ୱର୍ଗ ନରକ ଆସିବ, ଇହକାଳ ପରକାଳ ଆସିବ, ଅମର ଆତ୍ମା ଆସି ପଡ଼ିବ, ଯେତେବେଳେ କବର ସ୍ଥାନର ଦେବତାଗୁଡ଼ିକୁ ଡେଣ୍ଡେଇବ କମିତି କାଳଘାଟର କାଙ୍ଗାଳ

ଭଲ ! ଜଣେ କାହାକୁ ଚୁପ୍‌ଚାପ୍ କ'ଣ ଘଣ୍ଟେ ଦେଇ ପରିତ୍ରାଣ ପାଇବାର ସାଧ କ'ଣ ତୁମର ଅଛି ? ନିମିଷକରେ ସେ ଯେଉଁଠି ଥିବେ, ଆସି ପହଁଞ୍ଚିବେ । ଈଶ୍ୱରଙ୍କୁ ମାନେ, ଆଉ ଭୂତକୁ ଭୟ କରେନା—ସେ କଥା ଦେଖିବାର ଗୁଣ ନାହିଁ ଭୂପତିବାବୁ !

ସତୀଶ ଯେଉଁଭଳି ଭଙ୍ଗୀ କରି ସେ କଥାର ଉପସଂହାର କଲା, ସେଥିରେ ସମସ୍ତେ ବଡ଼ ପାଟିରେ ହସିଉଠିଲେ । ଅପେକ୍ଷାକୃତ ଲଘୁବୟସ୍କ ଦୁଇ ଜଣ ବାଳକଙ୍କ ହାସ କୋଳାହଳରେ ରବିବାରର ଅଳସ ମଧ୍ୟାହ୍ନ ଚଞ୍ଚଳ ହୋଇଉଠିଲା ।

ଉପେନ୍ଦ୍ରର ସ୍ତ୍ରୀ ସୁରବାଳା ପ୍ରେରିତ ଯେଉଁ ଗୁରୁକଥାଟା ଦୂରରେ ଠିଆହୋଇ ଗାମ୍ଭୀର୍ଯ୍ୟ ହେଉଥିଲା, ସେ ବି ଅପ୍ରୀତିକର ରହିପାରିଲାନି, ମୁରୁକି ମୁରୁକି ହସି ପକାଇଲା ।

କଳାହାରି ମେଘ ଇତିପୂର୍ବରୁ ଯେଉଁ ଆକାର ଧାରଣ କରିଥିଲା, ଏସବୁ ହାସ ଝଡ଼ରେ ତାହା କୁଆଡ଼େ ବୋଇଲେ କୁଆଡ଼େ ଉଡ଼ିଗଲା ।

କାହାରି ହୋସ ନାହିଁ ଯେ, ଦିପହରର ବନ୍ଧୁ ସମୟ ଗଡ଼ିଗଲାଣି । ଏତେପର୍ଯ୍ୟନ୍ତ ଘର ଭିତରେ କ୍ଷୁତ୍‌ପିପାସାତୁର ଗୃହକର୍ତ୍ତ୍ରୀ ଦଳଙ୍କ ଗ୍ଲାସ ଉପରେ ଚେଁ ଚୁଁ କରୁଛନ୍ତି ଓ ଯେତେବେଳ ଘରେ ବ୍ରାହ୍ମଣ ପୂଜାରୀ କର୍ମତ୍ୟାଗର ଦୃଢ଼ସଙ୍କଳ୍ପ ବାରମ୍ବାର ଘୋଷଣା କରିଦେଲେଣି ।

## ଦୁଇ

ତିନି ମାସ ପରେ, କଲିକତାର ଗୋଟାଏ ବସାରେ ଦିନେ ସକାଳବେଳା ନିଦ ଭାଙ୍ଗିବା ପରେ ସତୀଶ ଶେଯର ଏପାଖ ସେପାଖ ହେଉହେଉ ହଠାତ୍ ସ୍ଥିର କଲା, ଆଜି ସେ ସ୍କୁଲକୁ ଯିବ ନାହିଁ । ସେ ହୋମିଓପ୍ୟାଥିକ ସ୍କୁଲରେ ପଢ଼ୁଥିଲା । ଏଇ ସଙ୍କଳ୍ପଟା ତାର ମନରେ ଯେମିତି ସୁଧା ବର୍ଷଣ କଲା ଏବଂ ମୁହୂର୍ତ୍ତକ ଭିତରେ ବିକଳ ଦେହଟାକୁ ସବଳ କରିଦେଲା । ସେ ପ୍ରଫୁଲ୍ଲ-ମୁଖରେ ବସି ତମାଖୁ ଲାଗି ଡାକ ଛାଡ଼ିଲା ।

ଘରେ ପ୍ରବେଶ କଲା ସାବିତ୍ରୀ । ସେ ଟିକିଏ ଦୂରରେ ମେଜ ଉପରେ ବସି ହସହସ ମୁହଁରେ ଚାହିଁଲା, କ'ଣ ନିଦ ଭାଙ୍ଗିଲା ବାବୁ ! ସାବିତ୍ରୀ ଘରର ଚାକରାଣୀ ଓ ରୋଷେଇଆଣୀ । ପୈଶ କରେନା ବୋଲି ସମସ୍ତ ଖର୍ଚ୍ଚ ବାର୍ଚ୍ଚ ଆରମ୍ଭକରି ଟଙ୍କା କଉଡ଼ି ତାରି ହାତରେ । ଦେଖିବାକୁ ବେଶ ସୁନ୍ଦରୀ । ବୟସ ବୋଧହୁଏ ଏକୋଇଶ-ବାଇଶ ପାଖାପାଖି; କିନ୍ତୁ ମୁହଁକୁ ଦେଖିଲେ ଆଉ ଟିକିଏ କମ୍ ବୋଲି ମନେହୁଏ । ସାବିତ୍ରୀ ସଫା ଶୁକ୍ଳଲୁଗା ପିନ୍ଧେ ଏବଂ ଓଠ ଦିଓଟି ପାନ ଓ ଗୁଣ୍ଡି ରସରେ ଦିନରାତି ଲାଲକରି ରଖିଥାଏ । ସେ ହସି ହସି କଥା କହିବା ଯେଉଁଭଳି ଜାଣେ, ସେ ହସର ଦାମ ଯେ କେତେ ସେଭଳି ଜାଣେ । ଗୃହସୁଖବଞ୍ଚିତ ବସାର ସମସ୍ତଙ୍କ ଉପରେ ତାର ଗୋଟାଏ ଆନ୍ତରିକ ସ୍ନେହ ମମତା ଥିଲା । ଅଥଚ ତାର କିଏ ପ୍ରଶଂସା କରି କହିଲେ—ସେ କହେ ଯତ୍ନ ନ ନେଲେ ଆପଣମାନେ ରହିବେ କାହିଁକି କହିଲେ ବାବୁ ! ତା ଛଡ଼ା ଘରର ଧନୀମାନଙ୍କ ପାଖରେ ନିନ୍ଦାକରି କହିବେ, ବସାରେ ଏଭଳି ଚାକରାଣୀ ଯେ, ପେଟପୂରି ଦିବେଳା ଖାଇବାକୁ ବି ଦିଏନା । ଏ ଅପଯଶ ପାଇବା ଅପେକ୍ଷା ଟିକିଏ ଖଟିବା ଭଲ—ଏତିକି କହି ସେ ହସହସ ମୁହଁରେ କାମକୁ ଚାଲିଯାଏ । ବସାରେ କେବଳ ସତୀଶ ତାର ନାଁ ଧରି ଡାକେ, ଯାହା ତାହା ପରିହାସ କରେ, ଯେତେବେଳେ ସେତେବେଳେ ବକ୍‌ସିସ୍ ବି ଦିଏ । ତେଣୁ ସତୀଶ ଉପରେ ସାବିତ୍ରୀର ସ୍ନେହ ଅତିରିକ୍ତ ରହିବା ସ୍ୱାଭାବିକ । ଦିନତମାମ କାମ କରୁକରୁ ବୋଧହୁଏ, ଏଇଥିପାଇଁ ତାର ଗୋଟିଏ ଆଖି ଓ ଗୋଟିଏ କାନ ଏହି ଉନ୍ମତ୍ତ ବଳିଷ୍ଠ ସୁରୂପଦର୍ଶନ ଯୁବକଟିର ଉଦ୍ଦେଶ୍ୟରେ ନିଯୁକ୍ତ ଥାଏ । ବସାର ସମସ୍ତେ ଏକଥା ଜାଣନ୍ତି ଏବଂ କେହି କେହି ସକୌତୁକ ଇଙ୍ଗିତ କରିବାକୁ ମଧ୍ୟ ଛାଡ଼ନ୍ତି ନାହିଁ । ସାବିତ୍ରୀ ଜବାବ ନ ଦେଇ ମୁହଁକୁ ବଙ୍କେଇ ହସି ହସି କାମକୁ ଚାଲିଯାଏ ।

ସତୀଶ କହିଲା—ହଁ ନିଦ ଭାଙ୍ଗିଲା । ଏତିକି କହି କହୁ ତକିଆ ତଳୁ ଗୋଟାଏ ଟଙ୍କା ଠଣ୍‌କରି ଫୋପାଡ଼ିଦେଲା ।

ସାବିତ୍ରୀ ଟଙ୍କାଟିକୁ ଉଠେଇ ନେଇ କହିଲା—ସକାଳବେଳା ପୁଣି କଣ ଆଣିବାକୁ ପଡ଼ିବ ?

ସତୀଶ କହିଲା—ସନ୍ଦେଶ ! କିନ୍ତୁ ମୋ ଲାଗି ନୁହେଁ । ଟଙ୍କାଟା ଏଇଠି ରଖିଦେଇ ଯା । ରାତିରେ ତୋ ବାବୁ ଲାଗି କିଣି ନେଇଯିବୁ ।

ସାବନୀ ଗଡ଼ିକର ଟଙ୍କାଟା ବଛଣା ଉପରେ ଫୋପାଡ଼ି ଦେଇ କହିଲା—ରଖିଦଅ ତୁମର ଟଙ୍କା । ଆମର ବାବୁ ସନ୍ଦେଶ ଖାଇବାକୁ ଭଲ ପାଆନ୍ତି ନାହିଁ ।

ସତୀଶ ପୁଣି ଟଙ୍କା ଫୋପାଡ଼ି ଦେଇ ଅନୁନୟ ସ୍ୱରରେ କହିଲା—ମୋ ମୁଣ୍ଡ ଖାଇଲପରି ସାବନୀ, ଏ ଟଙ୍କା ମନେ କୌଣସିମତେ ଫେରେଇ ପାରିବୁନି । ମୁଁ ସତରେ ତୋର ବାବୁ ସନ୍ଦେଶ ଖାଇବା ପାଇଁ ଦେଇଛ ।

ସାବନୀ ଟିକିଏ ଅଭିମାନଥା ସ୍ୱରରେ କହିଲା—ଯେତେବେଳେ ସେତେବେଳେ ମାଇପିଙ୍କ ଭଲ ଗୁଣ ପକାନ୍ତି, ଏ ଭାରି ଅନ୍ୟାୟ । ବାବୁ ଫାବୁ ମୋର କେହି ନାହାନ୍ତି । ବାବୁ ତ ଆପଣ, ଆପଣମାନେ ।

ସତୀଶ ହସିହସି କହିଲା, ଆଚ୍ଛା ଟଙ୍କା ଦେ । କିନ୍ତୁ କହ, ମୋ ଛଡ଼ା ଯଦି ଆଉ କୌଣସି ବାବୁ ତୋର ଥାଆନ୍ତି, ତାହାହେଲେ ତାର ଗୁଣ ।

ସାବନୀ ହସିଉଠିଲା, କହିଲା—ମୋର ବାବୁ କ'ଣ ଆପଣଙ୍କର ସଉତୁଣୀ, ମୁଣ୍ଡ ଖାଉଛ ଯେ ।

ସତୀଶ କହିଲା—ମୁଁ ତାର ମୁଣ୍ଡ ଖାଉଛି ନା ସେ ମୋର ଖାଉଛି ? ମୁଁ ତ ତାକୁ ବରଂ ସନ୍ଦେଶ ଖୁଆଉଛି ।

ସାବନୀ ମୁହଁ ବୁଲେଇ ହସ ଦମନ କରି ହଠାତ୍ ଗମ୍ଭୀର ହୋଇ କହିଲା—ଗୃହକର୍ତ୍ତ ଗୃହକର୍ତ୍ତ୍ରୀଙ୍କ ସାଙ୍ଗରେ ଏଭଳି କଥା କହିଲେ, ଛୋଟ ଲୋକ ପ୍ରଶ୍ରୟ ପାଏ, ଆଉ ମାନନ୍ତିନି, ଟିକିଏ ବୁଝି ସୁଝି କଥା କୁହନ୍ତୁ ବାବୁ, ନଚେତ୍ ଲୋକେ ନିନ୍ଦା କରିବେ । ଏତିକି କହି ଟଙ୍କାଟାକୁ ହାତରେ ଉଠେଇ ସେ ଘର ଭିତରୁ ବାହାରିଗଲା । କିନ୍ତୁ ସଙ୍ଗେ ସଙ୍ଗେ ଫେରିଆସି ପଚାରିଲା, ଏ ଓଳି କ'ଣ ରନ୍ଧା ହେବ ?

ରନ୍ଧନଶାଳା ସମ୍ପର୍କୀୟ ଯାବତୀୟ ବ୍ୟାପାରରେ ସତୀଶ ଯେ ଜଣେ ଗୁଣୀ ଲୋକ, ସେ ପରିଚୟ ସାବନୀ ପୂର୍ବରୁ ପାଇଥିଲା । ସେଇଥିଲାଗି ପ୍ରତ୍ୟହ ସକାଳବେଳା ଥରେ ଥରେ ଆସି ସତୀଶର ହୁକୁମ ନେଇ ଯାଏ ଏବଂ ରୋଷେଇ ଘରର ନିଜେ ଠିଆହୋଇ ବ୍ରାହ୍ମଣ ପୂଜାରୀଙ୍କଦ୍ୱାରା ଯାହା କିଛି ନିଖୁଣ ଭାବରେ ରନ୍ଧେଇଥାଏ । ଇତିମଧ୍ୟରେ ଗୃହକର୍ତ୍ତ ତମାଖୁ ଦେଇ ଯାଇଥାଏ । ସତୀଶ ଡେଉଁ ଉଠି ପୁଣି ଥରେ ଶୋଇପଡ଼ି କହିଲା—ଯାହା ଖୁସି କର ।

ସାବିତ୍ରୀ କହିଲା—ଆହୁରି କ'ଣ ରାଗ ଅଛି ନା କ'ଣ ?

ସତୀଶ କାନ୍ଧି ଆଡ଼କୁ ମୁହଁ ଟାକୁ ରଖି ତମାଖୁ ଧୂଆଁ ଟାଣୁ ଟାଣୁ କହିଲା—ପୁରୁଷ ଲୋକଟିକି, ରାଗ ରହିବନି ? ଆଜି ମୁଁ ବିଲକୁଲ ଖାଇବିନି ।

ସାବିତ୍ରୀ କହିଲା—ଆଉ କୁଉଠି ଜୁଟିଯାଇଚି ବୋଧହୁଏ । କିନ୍ତୁ ମୋ ଯାହା ହେଉ ପଛକେ ସତୀଶବାବୁ, ସ୍କୁଲକୁ ଯିବାକୁ ପଡ଼ିବ, ତାହା କହିରଖୁଚି ।

ଏଇ ଅଳ୍ପକାଳ ଭିତରେ ନିୟମିତ ସ୍କୁଲ ଯିବା କଥାଟା ପୁଣି ସତୀଶକୁ ବୁଝାଇବା ଭଳି ବ୍ୟାପି ଧରିଥିଲା ଏବଂ ନାନା ଛଳରେ ନାନା ଉପଲକ୍ଷରେ ସ୍କୁଲ ଯିବାଟାକୁ ସେ ଏଡ଼େଇ ଯେ ଚାଲିଚି, ଏକଥା ସାବିତ୍ରୀ ଲକ୍ଷ୍ୟ କରିଚି । ଆଜି ସେଇ ଛଳନାର ପୁନରାବୃତ୍ତିର ସୂତ୍ରପାତ ଯେ ହେଉଛି, ଜାଣିପାରିଲା ।

ସତୀଶ ଧଡ଼ପଡ଼ ହୋଇ ଉଠିବସି କୃତ୍ରିମ କ୍ରୋଧ ସ୍ୱରରେ କହିଲା—ଶୁଭକର୍ମର ଆରମ୍ଭରେ ବାଧା ଦେନା କହୁଚି ।

ସାବିତ୍ରୀ କହିଲା—ସେ କଥା ତ କହିଲେ, ବୁଝିଲି । କିନ୍ତୁ ଏଣ୍ଟ୍ରାନ୍ସ ପାଶ କରିବାକୁ ଚଉଦ ବର୍ଷ କଟିଗଲା, ଏଇ ଡାକ୍ତରୀ ପାଶ କରିବାକୁ ଚଉଷଠି ବର୍ଷ କଟିଯିବ ଯେ ।

ସତୀଶ ରାଗ ରାଗ କଣ୍ଠରେ କହିଲା, ମିଛ କଥା କୁହନା ସାବିତ୍ରୀ ! ମୁଁ ଏଣ୍ଟ୍ରାନ୍ସ ପାଶ କରିନି ।

ସାବିତ୍ରୀ ହସିଉଠିଲା । କହିଲା—କ'ଣ ହେଲା, ଏତକ ବି ହୋଇନି ?

ସତୀଶ କଡ଼ ଲେଉଟାଇ କହିଲା—ନା । ଈର୍ଷାରେ ମାଷ୍ଟରଗୁଡ଼ାକ ମତେ ପାଶ କରିବାକୁ ଦେଲେନି ।

ସାବିତ୍ରୀ ଏଥର ମୁହଁରେ ଲୁଗା ଦେଇ ହସିବାକୁ ଲାଗିଲା । ତା ପରେ କହିଲା—ତାହା ହେଲେ ଏଇଟା ହେବ ତ ?

'କେଉଁଟା ?'

'ଏଇ ଡାକ୍ତରୀଟା ।'

ସତୀଶ କିଛି ସମୟ ଚୁପ୍‌ରହି କହିଲା—ଆଚ୍ଛା ସାବିତ୍ରୀ, ଗଧଙ୍କ ଭଳି ଲୋକଗୁଡ଼ାକ ଏକ୍‌ଜାମିନେସନ୍ ପାଶ କରି କ'ଣ କରନ୍ତି କହିପାରିବୁ ?

ସାବିତ୍ରୀ ହସକୁ ଚାପି କହିଲା—ଗଧ ନୁହଁ, କିନ୍ତୁ ଗଧ ନୁହଁ । ଯେଉଁମାନେ ଠିକ୍ ଗଧ, ସେମାନେ ପାରନ୍ତିନି ।

ସତୀଶ ବ୍ୟସ୍ତ ହୋଇ ବାହାରକୁ ମୁଣ୍ଡଟାକୁ ବଢ଼େଇ ଥରେ ଦେଖିନେଲା । ପରକ୍ଷଣରେ ସ୍ଥିର ହୋଇ ବସି ଟିକିଏ ଗମ୍ଭୀର ହୋଇ କହିଲା—କେହି ଯଦି ଶୁଣେ ନା ପ୍ରକୃତରେ ନିନ୍ଦା କରିବେ । ମୋର ମୁହଁ ଆଗରେ ତିଆରିହୋଇ ମତେ ଗଧ କହୁଛୁ, ଯାର କୌଣସି କୈଫିୟତ ଦେଲେ ବି ଚଳିବନି ।

ହାୟରେ ! କର୍ମଦୋଷରେ ଆଜି ସାବିତ୍ରୀ ମେସର ଚାକରାଣୀ । ତେଣୁ ସେ ଏ ଆଘାତ ଟିକକ ସହିନେଇ କହିଲା—ସତ କଥା । ଏତିକି କହି ସେ ଧୀରେ ଧୀରେ ବାହାରିଗଲା ।

ସତୀଶ ଅଳସୁଆଙ୍କ ଭଳି ପୁଣି ଥରେ ଶେଯରେ ଶୋଇରହିଲା । ତା ମନରେ କର୍ମହୀନ ସାରାଦିନର ଛବିଟି ଉଜ୍ଜ୍ୱଳ ହୋଇ ଉଠୁଥିଲା । କିନ୍ତୁ ସାବିତ୍ରୀର କଥାର ଆଘାତରେ ସେ ଛବିଟିର ଅଧିକାଂଶ ମଳିନ ହୋଇପଡ଼ିଲା ଏବଂ ଯେଉଁ କଥାଟିକ ବଦଳି କରି ସାବିତ୍ରୀ ନିଜେ ଚାଲିଗଲା, ତାହା ତାର ଛୁଟିର ଆନନ୍ଦକୁ ବଢ଼େଇ ଦେଇ ଗଲାନି ଯଦିଓ ସେ ମନେ ମନେ ବୁଝିଲା, ଆଜି କାମ କରିବାରେ କୌଣସି ଲାଭ ହେବ ନାହିଁ, ତଥାପି କିଛି ନ କରିବା ଲୋଭକୁ ମଧ୍ୟ ସେ ଛାଡ଼ି ନ ପାରି ଅଳସ ବିରକ୍ତ ମୁହଁରେ ବିଛଣାରେ ହିଁ ପଡ଼ିରହିଲା । କିନ୍ତୁ ଯଥା ସମୟରେ ଗାଧୋଇବା ଲାଗି ଡାକିଦା ଆସିଲା । ସତୀଶ ଉଠିଲାନି । କହିଲା—ଏତେ ତରବର କାହିଁକି ? ଆଜି ମୁଁ ବାହାରିବ ନାହିଁ ।

ସାବିତ୍ରୀ ଘରେ ପଶି କହିଲା—ସେ କଥା ଚଳିବନି । ଆପଣଙ୍କୁ ଇସ୍କୁଲ ଯିବାକୁ ପଡ଼ିବ; ଯାଅ କି ଶୀଘ୍ର ଗାଧୁଆ ସାରି ଖାଇନିଅ ।

ସତୀଶ କହିଲା—ତୋତି ମୋର କ'ଣ ଅଛି ଯେ ଏଇମିତି ହଇରାଣ କରୁଚୁ ? ଆଜି ମୁଁ ପାଦମେକଂ ନ ଗଚ୍ଛାମି ।

ସାବିତ୍ରୀ ଟିକିଏ ହସିଲା । କହିଲା—ନ ଯିବ ତ ନାହିଁ, ଗାଧୋଇ ଖାଇ ଦିଅ । ତୁମର ଏ ଅଫିଟରେ ଝାର୍ସି ଚାକର କି କଷ୍ଟ ପାଉଚନ୍ତି, ଦେଖିପାରୁନ ?

ସନ୍ତୋଷ କହିଲା—ଇଏ କି ରକମ ଗୃହର ଗୃହିଣୀ ଯେ ନ'ଟା ନ ବାଜୁଣୁ କଷ୍ଟ ପାଉଛନ୍ତି । ନା, ଏ ବସା ବଦଳାଇବାକୁ ପଡ଼ିବ, ନଇଲେ ଦେହ ଭଲ ରହିବନି ।

ସାବିତ୍ରୀ ହସିହସି କହିଲା—ତାହାହେଲେ ମତେ ବି ତ ବଦଳେଇବାକୁ ପଡ଼ିବ । ଏତିକି କହିଦେଇ ଚଞ୍ଚଳ ନିଜ କଥାଟାକୁ ଘୋଡ଼ିଦେଇ କହିଲା—ଯେତେଦିନ ଏଇଠି ଥିବ, ସେତେଦିନ ଯାଏଁ ତୁମକୁ ଏଇ ବସାର ନିୟମ ମାନି ଚଳିବାକୁ ପଡ଼ିବ; ଇସ୍କୁଲକୁ ଯିବାକୁ ବି ପଡ଼ିବ । ହଉ, ଉଠୁନା ବେଳ ହୋଇ ଯାଉଛି ଯେ ! କହି ଦେଇ ସନ୍ତୋଷର ଧୋତି, ଗାମୁଛା ଗାଧୁଆ ଘରେ ରଖି ଶୀଘ୍ର ଶୀଘ୍ର ବାହାରିଗଲା ।

ସନ୍ତୋଷ ପ୍ରତିଦିନ ନିୟମିତ ସଂଧ୍ୟା କରେ । ଆଜି ସେ ସ୍ନାନ କରି ଆସି ପୂଜା-ଆସନରେ ବସିବାକୁ ଡେରି କରିବାକୁ ଲାଗିଲା । ସାବିତ୍ରୀ ଦୁଇ ତିନି ଥର ଆସି ଦେଖିଯାଇ ଦରଜା ବାହାରୁ ଡାକିଲା—ଆଜି କାହିଁକି, ଭାତ ବଢ଼ା ହୋଇ ଥଣ୍ଡା ହୋଇଗଲାଣି ଯେ । ଇସ୍କୁଲକୁ ଯିବାକୁ ହେବନି, ଦୟାକରି ଦିଟା ଖାଇଦେଇ ଯାଅ ।

ସନ୍ତୋଷ ଆଉରି ପାଞ୍ଚ ଛଅ ମିନିଟ ଚୁପଚାପ ବସିବା ପରେ ହଠାତ୍ ଠିଆହୋଇ କହିଲା, ପୂଜା ପୂଜି ସଂଧ୍ୟା ଆଦି ସମୟରେ ଗୋଳମାଳ କଲେ କ'ଣ ହୁଏ ଜାଣୁ ?

ସାବିତ୍ରୀ କହିଲା,—ଭୁଲ କଲେ କ'ଣ ହୁଏ ଜାଣ ?

ସନ୍ତୋଷ ମୁହଁକୁ ଉଠେଇ କହିଲା—ଭୁଲ କରୁଥିଲି ? କେବେ ନୁହେଁ ।

ସାବିତ୍ରୀ କ'ଣ ଗୋଟାଏ କହିବାକୁ ଯାଉଥିଲା, ନିଜକୁ ରୋକି ନେଲା, ତା ପରେ କହିଲା—ସେ କଥା ତୁମେ ଜାଣ; କିନ୍ତୁ ଅନ୍ୟ ଦିନ-ମାନଙ୍କରେ ତ ଏତେ ଡେରି ହୁଏନା, କହି ଚାଲିଗଲା ।

ଆଜି ଶୀତ ଦିନର ମଧୁର ମଧ୍ୟାହ୍ନରେ ବସା ଗୋଟିକଯାକ ନିର୍ଜନ ଓ ନିସ୍ତବ୍ଧ । ଏ ମେସରେ ସମସ୍ତେ କିରାଣୀ । ସମସ୍ତେ ଅଫିସ ଯାଇଛନ୍ତି । ପୂଜାରୀମାନେ ବୁଲିବାକୁ ଯାଇଛନ୍ତି । ବେହେରା ସଉଦା କରିବାକୁ ଯାଇଛି । ସାବିତ୍ରୀର ମଧ୍ୟ କୌଣସି ପାଟିତୁଣ୍ଡ ଶୁଭୁନି । ସନ୍ତୋଷ ନିଜ ଘରେ ପ୍ରଥମେ ଦିବାନିଦ୍ରାର ମିଥ୍ୟାଚେଷ୍ଟା କରିସାରି ଏବେକ୍ଷଣି ଉଠିବସି ଯାହାତାହା

ପଡ଼ିଥିଲା । ତାର ଗୋଡ଼ ପାଖରେ ଝରକାଟା ବନ୍ଦ ଥିଲା । ସେଇଟାକୁ ଖୋଲିଦେଇ ଘୁଞ୍ଚ ଆଡ଼କୁ ଚାହିଁ ତତ୍‌କ୍ଷଣାତ୍ ବନ୍ଦ କରିଦେଲା । ଘୁଞ୍ଚର ଗୋଟାଏ ପାଖରେ ବସି ସାବିତ୍ରୀ ମୁଣ୍ଡର ବାଳଗୁଡ଼ାକୁ ଶୁଖାଉ ଥିଲା ଏବଂ ଠିକଏ ଆଗକୁ ନଇଁ କ'ଣ ଗୋଟାଏ ବହି ଦେଖୁଥିଲା । ଝରକା ଖୋଲିବାର ଶବ୍ଦ ଶୁଣି ଚକିତ ହୋଇ ମୁଣ୍ଡର ଓଢ଼ଣା ଟେକିନେଇ ଉଠି ଦେଖିଲା, ଝରକା ବନ୍ଦ ହୋଇଯାଇଛି । ସଙ୍ଗେ ସଙ୍ଗେ ସେ ଘର ଭିତରେ ପଶି କହିଲା—ବାବୁ ମତେ କ'ଣ ଡାକୁଥିଲେ ?

ସତୀଶ କହିଲା—ନା ଡାକିନି ତ ।

—ପାନ ପାଣି ଆଣିବି ?

ସତୀଶ ମୁଣ୍ଡ ହଲାଇ କହିଲା—ଆଣ ।

ସାବିତ୍ରୀ ପାନ, ପାଣି ଆଣି ବିଛଣା ପାଖରେ ରଖିଦେଇ ଘରର ପ୍ରତ୍ୟେକ ଝରକା ଗୋଟିକ ପରେ ଗୋଟିଏ ଖୋଲିଦେଇ ଟେବୁଲ ଉପରେ ବସି କହିଲା—ତମାଖୁ ଠିକ୍‌କରି ଦେଇ ଆସୁଚି ।

ସତୀଶ ପଚାରିଲା—ବେହାରା କୁଆଡ଼େ ଗଲା କି ?

ବଜାରକୁ ଯାଇଚି କହି ସାବିତ୍ରୀ ଚାଲିଗଲା ଏବଂ ଟିକକ ପରେ ତମାଖୁ ସଜେଇ ହାଜର କରିଦେଇ ଖୋଲା ଝରକାର ଆଗରେ ବସି ହସହସ ମୁହଁରେ କହିଲା—ଆଜି ମିଛୁଟାରେ ଇସ୍କୁଲକୁ ଗଲନି ।

ସତୀଶ କହିଲା, ଏକଥା ସତ । ମୋର ଧାତୁଟା କିଛିଟା ସ୍ୱତନ୍ତ୍ର, ତେଣୁ ମଝିରେ ମଝିରେ ଏମିତି ନ କଲେ ଦେହ ଅସୁସ୍ଥ ହୋଇପଡ଼େ । ତା ଛଡ଼ା ମୁଁ ତ ସତମତ ଡାକ୍ତର ହେବାକୁ ଚାହୁଁନି । ଇଆଡ଼ୁ ସିଆଡ଼ୁ ଟିକଏ ଟିକଏ ଶିଖିନେଇ ଆମର ଗାଁ ଘରକୁ ଫେରି ଗୋଟାଏ ବିନା ପଇସାରେ ଡାକ୍ତରଖାନା ଖୋଲିଦେବି । ଚିକିତ୍ସା ଅଭାବରେ ଗାଁ ଗଣ୍ଡାର ଦୁଃଖୀ ଗରିବ ଲୋକେ ଯେଉଁଭଳି ହଇଜାରେ ନିପାତ ହୋଇଯାଆନ୍ତି, ସେମାନଙ୍କର ଚିକିତ୍ସା କରିବା ମୋର ଉଦ୍ଦେଶ୍ୟ ।

ସାବିତ୍ରୀ କହିଲା, ବିନା ପଇସାରେ ଚିକିତ୍ସା କରିବା ଲାଗି ଭଲ ଶିଖିବାର ଆବଶ୍ୟକତା କଣ ନାହିଁ ? ଭଲ ଡାକ୍ତର କ'ଣ ବଡ଼ଲୋକଙ୍କ ପାଇଁ, ଆଉ ଗରିବଙ୍କ ପାଇଁ ଅଧାପଢ଼ା ଡାକ୍ତର ! କିନ୍ତୁ ତା ହେବ କିମିତି ? ଆପଣ ଚାଲିଗଲେ ବିପିନବାବୁ ହେଉକାଙ୍କ ଭାରି ମୁସ୍କିଲ ହେବ ଯେ ।

ବିପିନବାବୁଙ୍କ କଥା ପଡ଼ିବା ମାତ୍ରେ ସତୀଶ ଲଜ୍ଜିତ ହୋଇ କହିଲା—ମୁସ୍କିଲ ଆଉ କଣ ? ମୋ ଭଳି ବନ୍ଧୁ ବହୁତ ଜୁଟିଯିବେ ଯେ । ତା ଛଡ଼ା ସେଠିକି ମୁଁ ଆଉ ଯାଉନି ।

ସାବିତ୍ରୀ ଆଶ୍ଚର୍ଯ୍ୟ ହୋଇ କହିଲା—ଯାଉନା ? ତାହା ହେଲେ ତାଙ୍କୁ ଗାଉଣା ବାଜଣା ଶିଖେଇବ କିଏ ?

ସତୀଶ ଅତି ବିରକ୍ତହୋଇ କହିଲା, ଗାଉଣା ବାଜଣା ସତେ ଯେମିତି ମୁଁ ଶିଖାଏ ?

ସାବିତ୍ରୀ କହିଲା—କେଜାଣି ବାବୁ, ଲୋକେତ କହନ୍ତି ।

କେହିକହୁ କହନ୍ତିନି—ତୁ ବନେଇ କରି କହୁଛୁ ।

ତୁମକୁ ବିପିନବାବୁ ମୋ ସାହେବ କୁହନ୍ତି—ଇଏ କ'ଣ ବନେଇବା କଥା ?

ଏ କଥା ଶୁଣି ସତୀଶ ନିଆଁ ହୋଇଉଠିଲା । ତାର କାରଣ ଅଛି । ବିପିନ ସହିତ ଘନିଷ୍ଠ ସମ୍ପର୍କ ରହିଲେ, ବାହାରର ଲୋକଙ୍କ ସମାଲୋଚନାର ପାତ୍ର ହେଲେ ସେଇ ସମାଲୋଚନାର ଫଳ କ'ଣ ହୁଏ, ସେ କଥା ତାକୁ ଜଣାଥିଲା । କଲିକତାବାସୀ ବିପିନର ସାଂସାରିକ ଅବସ୍ଥା ଓ ତାର ଆମୋଦପ୍ରମୋଦର ଅପର୍ଯ୍ୟାପ୍ତ ସାଜସରଞ୍ଜାମ ଭିତରେ ପ୍ରବାସୀ ସତୀଶର ସ୍ଥାନ ଲୋକଚକ୍ଷୁରେ ଯେ ନିମ୍ନସ୍ତରକୁ ଖସିଆସିବ, ସତୀଶର ଅନ୍ତରସ୍ଥ ଏଇ ଉଦ୍‌କଣ୍ଠିତ ସଂଶୟ ସାବିତ୍ରୀର ତୀକ୍ଷ୍ଣ ଆଘାତରେ ଏକାବେଳକେ ଉଗ୍ରମୂର୍ତ୍ତି ଧରି ବାହାରେ ଆସି ପଡ଼ିଲା । ସେ ଦଇଟାଯାକ ଆଖିକି ଘପ୍ରକରି ଗର୍ଜିଉଠିଲା—କଣ ହେଲା—ମୁଁ ତୋ ସାହେବ, କିଏ କହୁଛି ଶୁଣେ ?

ସାବିତ୍ରୀ ମନେ ମନେ ହସି କହିଲା—ତାହା ନାଁ । କହିବ ବାବୁ ? ଯାଏ ରଖାଲବାବୁଙ୍କ ବିଛଣାଟା ଖଟରେ ଦେଇ ଆସେ ।

'ବିଛଣା ଥାଉ—ନାଁ ଟା କୁହ ।'

'ସାବିତ୍ରୀ ହସି ହସି କହିଲା,—କୁମୁଦିନୀ ।'

ସତୀଶ ବିସ୍ମିତ ହୋଇ କହିଲା, ତାକୁ ତୁ ଜାଣିଲୁ କିମିତି ?

ସାବିତ୍ରୀ କହିଲା—ସେ ମୋତେ କାମ କରିବାଲାଗି ଡକେଇ ପଠେଇ ଥିଲେ ।

ତତେ ? ସାହସ ତ କମ୍ ନୁହେ । ତୁ କ'ଣ କହିଲୁ ?

ଏପର୍ଯ୍ୟନ୍ତ କିଛି କହିନ । ଶୁଣୁଚ, ବେଶୀ ଦରମା, କାମକମ୍; ତେଣୁ ଲୋଭ ହେଉଛି । ସଜ୍ଜଣ ଆଖି ଦେଖାରୁ ମନେ ହେଲା ସେମିତି ଅଗ୍ନି ସ୍ଫୁଲିଙ୍ଗ ବାହାରିଗଲା । ସେ କହିଲା—ଇଏ କିଛି ନୁହେଁ, ଚପିନାର ଗୋଟିଏ ଉଦ୍ଦେଶ୍ୟ । ତୋର ନାଁ । ସେ ପ୍ରାପ୍ୟ ସବୁ ସମୟ ଧରିଥାଏ ।

ସାବିତ୍ରୀ କହିଲା, ଧରନ୍ତୁ, ମୋ ନା । ଧରନ୍ତୁ । ତାହାହେଲେ ବୋଧହୁଏ ମୋ ପ୍ରତି ତାଙ୍କର ମନ ଧରିଚ ।

ସଜ୍ଜଣ ସାବିତ୍ରୀ ଆଡ଼କୁ କଠୋର ଦୃଷ୍ଟିକ୍ଷେପ କରି କହିଲା—ଧରଉଚ । ଶହେ ଟଙ୍କା ଫାଇନ ଦେଇ ଏପର୍ଯ୍ୟନ୍ତ ଲୋକବନ୍ଧାରୁ ଉଦ୍ଧାର ପାଇନ । ପୁଣି ଦେଖୁଚ, ଦେବାକୁ ପଡ଼ିବ । ଆଚ୍ଛା ତୁ ଯାଆ ।

ସାବିତ୍ରୀ ଚାଲିଗଲା । ରାଖାଲର ବିଛଣା ଖଟରେ ଦେଇ ଶୀଘ୍ର ଫେରିଆସି ଝରକା ଫାଙ୍କଦେଇ ଦେଖିଲା, ସଜ୍ଜଣ କମିଜ ପିନ୍ଧିଚି ଏବଂ ବାକ୍ସ ଖୋଲି ତାଡ଼ାଏ ନୋଟ ପକେଟରେ ଲୁଚେଇ ନେଉଚି । ସାବିତ୍ରୀ ଦୁଆର ବନ୍ଧରେ ହାତ ଦେଇ ପଥରୋଧ କରି ଠିଆହୋଇ କହିଲା—କେଉଁଠିକି ଯିବ ?

—କାମ ଅଛି, ବାଟ ଛାଡ଼ ।

—କି କାମ ଶୁଣେ ?

ସଜ୍ଜଣ ନମ୍ର ହୋଇ କହିଲା—ଚାଲିଯାଆ ।

ସାବିତ୍ରୀ ଗଲାନି । ହସି ହସି କହିଲା—ଭଗବାନ ! ତୁମକୁ ଦେଖୁଚି କୌଣସି ଗୁଣରୁ ବଞ୍ଚିତ କରି ନାହାନ୍ତି । ଇତିପୂର୍ବରୁ ଜରିମାନା ଦେବା ହୋଇଯାଉଚି ?

ସଜ୍ଜଣ ଭ୍ରୂକୁଞ୍ଚିତ କଲା, କିଛି କହିଲାନି ।

ସାବିତ୍ରୀ କହିଲା—ଇଏତ ବଡ଼ ଅନ୍ୟାୟ । ମୁଁ କୋଉଠି କାମ କରେ ବା ନକରେ ମୋର ଇଚ୍ଛା—ତୁମେ କାହିଁକି ଯାଉଚ କଳି ଲଗାଇବା ପାଇଁ ?

ସଜ୍ଜଣ କହିଲା—କଳି କରେ ବା ନ କରେ ସେଇଟା ମୋର ଇଚ୍ଛା, ତୁ କାହିଁକି ବାଟ ଓଗାଳୁଚୁ ?

ସାବିତ୍ରୀ ଦି'ହାତ ଯୋଡ଼ି କହିଲା—ଆଚ୍ଛା ଟିକିଏ ଅପେକ୍ଷା କରନ୍ତୁ, ମୁଁ ଆସିଲେ ଯାଇ ଯିବ ।

ସଜ୍ଜଣ ଫେରିଯାଇ ଖଟ ଉପରେ ବସିବାମାତ୍ରେ ସାବିତ୍ରୀ ବାହାରକୁ ଆସି ଖଟ୍‌କିନି କବାଟର ଶିକୁଳିଟା ଲଗେଇ ଦେଇ ଝରକା ବାଟେ

କହିଦେଇ ଗଲା—ଶାନ୍ତ ନ ହେଲେ ଦୁଆର ଖୋଲିବନି, ତଳକୁ ଗଲି । ଏତିକ କହି ସତେ ସତେ ସେ ତଳକୁ ଚାଲିଗଲା । ବାହାରକୁ ନ ଯାଇ ଯାଉ ସତୀଶ କିଛି ସମୟ ଚୁପକରି ବସିରହିବା ପରେ ଦେହରୁ କାମିଜଟା ବାହାର କରି ତଳେ ଫୋପାଡ଼ିଦେଇ ଚିତ୍ ହୋଇ ଶୋଇପଡ଼ିଲା ।

ବିପିନ ସହିତ ତାର ପରିଚୟ ଆଲ୍ହାବାଦରେ । କଲିକତା ଆସି ଏହା ଯଥେଷ୍ଟ ଘନୀଭୂତ ହେଲେ ମଧ ବସା ଭିତରେ ତାର ଯେତେବେଳେ ସେତେବେଳେ ଯିବା ଆସିବାଟା ଯେ ଶେଷରେ ସୀମା ଲଙ୍ଘୁଥିଲା, ସେ କଥା ନିଜେ ସେ ଲକ୍ଷ୍ୟ କରିଥିଲା । ଆଜି ସାବିତ୍ରୀ କଥାରେ ସେଇ କାରଣଟା ଏକାବେଳକେ ସୁସ୍ପଷ୍ଟ ହୋଇଉଠିଲା । ସତୀଶର ବନ୍ଧୁ ବୋଲି ଏବଂ ବଡ଼ଲୋକ ବୋଲି ଏ ବସାରେ ତା ପ୍ରତି ଯଥେଷ୍ଟ ସମ୍ମାନ ଥିଲା । ସତୀଶର ଅନୁପସ୍ଥିତିରେ ତାର ଆଦର ଅଭ୍ୟର୍ଥନାରେ ଯେପରି କୌଣସି ତ୍ରୁଟି ନ ହୁଏ, ଏ ଭାର ସତୀଶ ନିଜେ ସାବିତ୍ରୀ ଉପରେ ଦେଇଥିଲା । ଏଇ ଖାତିର୍ ଓ ଯତ୍ନ ବିପିନବାବୁ ସେ ପୂର୍ଣ୍ଣମାତ୍ରାରେ ଆଦାୟ କରି ନେଇଥିଲା, ଏ ସମ୍ବାଦ ବସାକୁ ଫେରିଆସି ସତୀଶ ଯେତେବେଳେ ସେତେବେଳେ ଜାଣିପାରୁଥିଲା । ନିଜ ମନର ଏଇ ସରଳ ଉଦାରତା ତୁଳନାରେ ବିପିନର ଏଇ କଦାକାର ଲୁବ୍ଧତା, ଗଭୀର କୃତଘ୍ନତା ଭଳି ଆଜି ତାର ବକ୍ଷ ଭେଦ କଲା ଏବଂ ସମସ୍ତ ନିମନ୍ତ୍ରଣ, ଆମନ୍ତ୍ରଣ, ସୌହାର୍ଦ୍ଦ୍ୟ, ଘନିଷ୍ଠତା ମୁହୂର୍ତ୍ତକ ଭିତରେ ତା ପାଖରେ ବିପ ପାଲଟିଗଲା । ବାହ୍ୟିକ ଭାବରେ ସେ ଚୁପ୍‌ହୋଇ ପଡ଼ିରହିଲା ସତ, ମର୍ମନ୍ତୁଦ ଆକ୍ରୋଶ ପିଞ୍ଜରାବଦ୍ଧ ହିଂସ୍ରଜନ୍ତୁ ଭଳି ନିମାଗତ ତାର ଅନ୍ତର ଦେଇ ଯେମିତି ଏ କୋଣ ସେ କୋଣ ହେବାକୁ ଲାଗିଲା ।

ଘଣ୍ଟାକ ପରେ ଫେରିଆସି ସାବିତ୍ରୀ ଝରକା ବାହାରୁ ଆସ୍ତେ ଆସ୍ତେ କହିଲା—ରାଗିଗଲକି ବାବୁ ?

ସତୀଶ ଜବାବ ଦେଲାନି ।

ଶିକୁଳି ଖୋଲି ସାବିତ୍ରୀ ଘର ଭିତରକୁ ଆସି କହିଲା—ଆଚ୍ଛା ଏ କି

ଅତ୍ୟାଚାର କୁହନ୍ତୁ ତ ?

ସତୀଶ କୌଣସି ଆଡ଼କୁ ନ ଚାହିଁ ପଚାରିଲା—କାହାର ଅତ୍ୟାଚାର ?

ସାବିତ୍ରୀ କହିଲା—ସମସ୍ତେ ନିଜର ଭଲ ଖୋଜନ୍ତି । ମୁଁ ଯଦି ଅନ୍ୟ କୌଣସିଠି ଟିକିଏ ଭଲ କାମ ପାଏ, ତୁମେ ସେଥିରେ ବାଦ ସାଧୁଚ କାହିଁକି ?

ସତୀଶ ଉଦାରଭାବ ନେଇ କହିଲା—ବାଦ ସାଧିବି କାହିଁକି ? ତୋର ଯଦି ଇଚ୍ଛା, ଯିବୁ ।

ସାବିତ୍ରୀ କହିଲା—କିନ୍ତୁ ତୁମେ ଯେ ଆମର ନୂତନ ମୁନିବଟିକୁ ମାରଧର କରିବାର ଆୟୋଜନ କରୁଚ ।

ସତୀଶ ଶେଯରୁ ଉଠି ବସିପଡ଼ି କହିଲା—ତୁ କ'ଣ କରନ୍ତୁ ସାବିତ୍ରୀ, ତୋ ନିଜ ଜିନିଷଟି ଯଦି କେହି ଭୁଲେଇ ନେଇଯାଏ ।

'କିନ୍ତୁ ମୁଁ କ'ଣ ତୁମର ଜିନିଷ ?' କହିଦେଇ ଫିକିକି ହସି ପକେଇଲା ।

ସତୀଶ ଲଜ୍ଜିତ ହୋଇ କହିଲା—ଦୂର୍, ତା ନୁହେଁ—କିନ୍ତୁ—

ସାବିତ୍ରୀ କହିଲା—କିନ୍ତୁ ରେ କିଛି କାମ ନାହିଁ । ହେଉ ମୁଁ ଯିବିନି । ସତୀଶର ସାର୍ଟଟା ମାଟିରେ ଲୋଟି ପଡ଼ିଥିଲା, ସାବିତ୍ରୀ ତାକୁ ଉଠାଇନେଇ ପକେଟରୁ ନୋଟଗୁଡ଼ାକ ବାହାର କରି ପକାଇଲା । ବାକ୍ସରେ ଚାବି ଲଗାହୋଇ ରହିଥିଲା, ନୋଟଗୁଡ଼ିକ ଭିତରେ ରଖିଦେଇ ବନ୍ଦ କରିଦେଇ ଚାବି ନିଜ ଅଙ୍ଗ୍ ବିହରେ ପୂରାଉ ପୂରାଉ କହିଲା—ଏ ଚାବି ମୋ ପାଖରେ ରହିଲା, ଏଁ । ଟଙ୍କା ଦରକାର ହେଲେ କହିବ ଫିଟେଇଦେବି ।

ସତୀଶ କହିଲା— ଯଦି ଚୋରି କରୁ ?

ସାବିତ୍ରୀ ସେ କଥାରେ ହସିଦେଇ କାନିରେ ବନ୍ଧା ହୋଇଥିବା ଚାବି ଗୋଛାକ ଝଣ ଝଣ କରି ପିଠି ଉପରକୁ ଫୋପାଡ଼ି ଦେଇ କହିଲା—ମୁଁ ଚୋରି କଲେ ତୁମ ଦେହକୁ ଲାଗିବ ନା ?

ସତୀଶ ସାବିତ୍ରୀର ମୁହଁକୁ କ୍ଷଣେକାଳ ସ୍ଥିର ଦୃଷ୍ଟିରେ ଚାହିଁ ରହିଲା । ସେଇ କ୍ଷଣିକର ଦୃଷ୍ଟିରେ ସେ କ'ଣ ଦେଖିବାକୁ ପାଇଲା ସେଇ କେବଳ ଜାଣେ । ଚମକି ପଡ଼ି କହିଲା—ସାବିତ୍ରୀ, ତୋର ଘର କେଉଁ ଦେଶରେ ?

—ବଙ୍ଗଳା ଦେଶରେ ।

—ତାଠୁ ଅଧିକ କିଛି କ'ଣ କହିବୁ ନି ?

—ନା ।

—ଘର କେଉଁଠି ନ କହ; କହ କେଉଁ ଜାତିର ?

ସାବିତ୍ରୀ ମୁରୁକି ମୁରୁକି ହସି କହିଲା—ସେତିକି ଜାଣିଲେ କ'ଣ ହେବ ? ମୋ ହାତରେ ଭାତ ଖାଇବନି ତ !

ସତୀଶ କିଛି ସମୟ ଭାବି କହିଲା—ସେ କଥା ନୁହେଁ । କିନ୍ତୁ ଜୋର କରି ଧରେଇଦେଲେ 'ନା' କହିପାରୁନା ?

ସାବିତ୍ରୀ ତାର ଦୁଇ ଆକୃଷ୍ଟ ଉଜ୍ଜ୍ୱଳ ଚକ୍ଷୁ ସତୀଶର ମୁହଁ ଉପରେ ନିବଦ୍ଧ କରି ମୁହୂର୍ତ୍ତିକ ପରେ ହସିଉଠିଲା । ପିଲାଙ୍କ ଭଳି ମୁଣ୍ଡକୁ ହଲାଇ କଣ୍ଠସ୍ୱରରେ ଅନିର୍ବଚନୀୟ ସୋହାଗ ଢାଳି କହିଲା—ନା କହିପାରୁନି କାହିଁକି, ଲୁହ ତ ?

ଅକସ୍ମାତ ସତୀଶ ମୁଣ୍ଡକୁ ଭୂତ ଚାପି ବସିଲା । ତାର ବୁକୁର ରକ୍ତ ତରଳି ଉଠିଲା । ସେ ତତ୍‌କ୍ଷଣାତ ଗମ୍ଭୀର ସ୍ୱରରେ କହି ପକାଇଲା—କାହିଁକି ଜାଣେନା ସାବିତ୍ରୀ କିନ୍ତୁ ତୁ ରାନ୍ଧିଦେଲେ ଖାଇବନି ବୋଲି କହିବାଟା ମୋ ପକ୍ଷେ ବଡ଼ କଠୋର !

'କଠୋର ? ଆଚ୍ଛା, ଦିନେ ସେସବୁ କଥା ଦେଖାଯିବ । ଆରେ ଯା—ରାଖାଲବାବୁଙ୍କ କଡ଼ାଧୁଆ ଟିକିଆଟା ଖବରେ ଦେବାକୁ ଭୁଲିଯାଇଚି । କହିଦେଇ ନିମିଷକ ଭିତରେ ସେ ଘରୁ ବାହାରିଗଲା ।

'ଗୋଟାଏ କଥା ଶୁଣି ଯା ସାବିତ୍ରୀ !' କହି କହି ହଠାତ୍ ସତୀଶ ଆଗକୁ ବଢ଼ିଯାଇଁ ହାତକୁ ବଢ଼େଇ ତାର କାନିର ଧଡ଼ି ପାଖୁଟା ଧରି ପକେଇଲା । ସାବିତ୍ରୀ ଦୁଇ ଆଖିରେ ବିଦ୍ୟୁତ ଖେଳେଇ ଦେଇ 'ଛି,ଆସୁଚି' କହି ଝିଙ୍କି ହୋଇ ନିଜକୁ ମୁକୁଳେଇ ଦ୍ରୁତପାଦରେ ଅଦୃଶ୍ୟ ହୋଇଗଲା ।

ହଠାତ୍ ଯେପରି କମିତି ଗୋଟାଏ କାଣ୍ଡ ଘଟିଗଲା । ତାର ଏଇ ଅକସ୍ମାତ୍ ସହାସ ପଳାୟନ, ସେଇ ଅସ୍ପଷ୍ଟ ସ୍ୱରର "ଆସୁଚି", ସେଇ ଚକ୍ଷୁର ବିଦ୍ୟୁତ ବଜ୍ରାଗ୍ନି ଭଳି ସତୀଶର ସମସ୍ତ ଦୁର୍ବୁଦ୍ଧିକୁ ନିମିଷକରେ ପୋଡ଼ି ଧ୍ୱଂସ କରିଦେଲା । କୁତ୍ସିତ ଲଜ୍ଜାର ଧିକ୍‌କାରରେ ତାର ସମଗ୍ର ଶରୀର ଶୃଙ୍ଖଳବଦ୍ଧ ସର୍ପ ଭଳି ଗୋଳେଇଘାଣ୍ଟି ହେବାକୁ ଲାଗିଲା । ତାର ମନେହେଲା, ଇହଜନ୍ମରେ ସେ ଆଉ ସାବିତ୍ରୀକୁ ମୁହଁ ଦେଖେଇ ପାରିବନି ଏବଂ ପଛରେ କୌଣସି ପ୍ରୟୋଜନରେ ପୁଣି ଆସିପାରେ, ଏଇ ଆଶଙ୍କାରେ ସେ ଘରଙ୍କ ସଙ୍ଗେ ଖଣ୍ଡିଏ ଚଦର ଟାଣି ଦେଇ ଝଡ଼ବେଗରେ

ବାହାରିଗଲା । ତିନି ଘଣ୍ଟା ପିଢ଼ି ବାଜା ଅଛି, ଉପରୁ ସାବିତ୍ରୀର ଗଳାଟି ପୁଣି ଥରେ ଶୁଣିବାକୁ ପାଇଲା । ସେ ସେତେବେଳେ ଘରୁ ଧାଇଁଆସି ମୁହଁକୁ ବଢ଼େଇ ଡାକିବାକୁ ଲାଗି—ଜଳଖିଆ ଖାଇଦେଇ ଯାଅ ବାବୁ. ନଇଲେ ଫେରି ଆସିବାରେ ଯଦି ଡେରି ହୁଏନା, ସବୁ ନଷ୍ଟ ହୋଇଯିବ !

କିନ୍ତୁ ଯିମିତି କିଛି ଶୁଣିବାକୁ ପାଉନି, ଏଇ ଭାବରେ ସତୀଶ ଊର୍ଦ୍ଧ୍ୱଶ୍ୱାସ ଛାଣି ବାହାରି ଆସିଲା ।

ତା ଆରଦିନ ସକାଳବେଳା ସାବିତ୍ରୀ ଯେତେବେଳେ ରନ୍ଧା କ'ଣ ହେବ ପଚାରିବାକୁ ଆସିଲା, ସତୀଶ ଆସ୍ତେ ଆସ୍ତେ କହିଲା—କିଛି ମନେ କରନା ସାବିତ୍ରୀ !

ସାବିତ୍ରୀ ବିସ୍ମୟ-ସ୍ୱରରେ ପ୍ରଶ୍ନ କଲା—କ'ଣ ମନେ କରିବିନି ?

ସତୀଶ କିଛି ନ କହି ଚୂପ୍ ରହିଲା ।

ସାବିତ୍ରୀ ମୃଦୁହାସ ହସି କହିଲା—ବେଶ୍ ଯା ହେଉ, ମୋର ସମୟ ନାହିଁ; କ'ଣ ରନ୍ଧା ହେବ କୁହ ।

'ମୁଁ ଜାଣେନା, ତୋର ଯା ଇଚ୍ଛା ।'

ଆଚ୍ଛା କହି ସାବିତ୍ରୀ ଚାଲିଗଲା ଦ୍ୱିତୀୟ ପ୍ରଶ୍ନ କଲାନି ।

ଘଣ୍ଟେ ଦୁଇ ଘଣ୍ଟା ପରେ ଫେରି ଆସି କହିଲା—ଇଏ କି କାଣ୍ଡ କହିଲ—ଆଜି କ'ଣ ପାଦମେକଂ ନ ଗଳୁ ?

ସତୀଶ ଚୁପ ରହିଲା ।

ସାବିତ୍ରୀ କହିଲା—ନ' । ବାଜିଗଲାଣି ଯେ ।

ସମୟ ଗଡ଼ିଯିବା ସମ୍ବାଦରେ ସତୀଶ ତଳେ ହେଲେ ଉଦ୍‌ବେଗ ପ୍ରକାଶ ନ କରି କହିଲା—ବାବୁ, ମତେ ଆଜି କିଛି ଭଲ ଲାଗୁନି ।

ଏଇସବୁ ଅନ୍ୟାୟ ଆଳସ୍ୟ, ବୃଥା ସମୟ ନଷ୍ଟ ସାବିତ୍ରୀ ବିଲକୁଲ ଦେଖିପାରେନା । ତେଣୁ କେତେଦିନ ହେଲା ଭିତରେ ଭିତରେ କ୍ରୁଦ୍ଧ ଏବଂ ଅସନ୍ତୁଷ୍ଟ ହୋଇ ଉଠିଥିଲା ସେ । ଟିକିଏ ରୁକ୍ଷ ସ୍ୱରରେ ପ୍ରଶ୍ନ କଲା—କୁହ ତ କ'ଣ ଭଲ ଲାଗୁନି ? କ'ଣ ପଢ଼ିବାକୁ ଯିବାଟା ?

ସତୀଶ ନିଜେ ମନେ ମନେ ବିରକ୍ତ ହୋଇ ଉଠିଥିଲା—ଜବାବ ଦେଲା ନି ।

ତାର ମୁହଁ ଆଡ଼କୁ ଚାହିଁ ସାବିତ୍ରୀ ଏତିକି ବୁଝିପାରିଲା ଏବଂ କିଛି ସମୟ ନୀରବ ରହି କଣ୍ଠସ୍ୱରକୁ ଟିକିଏ କଅଁଳିଆ କରି କହିଲା—ଲେଖା ପଢ଼ା ଭଲ

ଲାଗୁନ ! ଭଲ ଲାଗୁଛି କ'ଣ ଝିଅ ପିଲାଙ୍କ କାନ ଟଣାଟଣି କରିବା ? ଯାଅ ଇସ୍କୁଲକୁ । ବୃଥାଟାରେ ମେସ୍‌ରେ ବସିରହି ଉପଦ୍ରବ କର ନା !

ତାର ଉତ୍ତରର ଭିତରେ ଯଦିଓ ଆନ୍ତରିକ ସ୍ନେହ ଓ ଏକାନ୍ତ ମଙ୍ଗଳେଚ୍ଛା ବ୍ୟତୀତ ଆଉ କିଛି ନ ଥିଲା, ତଥାପି କଥାର ଭଙ୍ଗୀଟା ସତୀଶର ସର୍ବାଙ୍ଗରେ ଯେଉଁଲି ବିନ୍ଧିଆଣି ବୋଲି ଦେଇଗଲା । ଦେଖୁ ଦେଖୁ ମୁହଁ, ଆଖି ରାଗରେ ଲାଲ ହୋଇଉଠିଲା । କହିଲା—ଯାହା ମୁହଁରେ ଆସୁଛି କହିଚାଲିଛ, ଦେଖୁଛି । ପ୍ରଶ୍ରୟ ପାଇଲେ କେବଳ କୁକୁର ମୁଣ୍ଡ ଉପରକୁ ଉଠେନା, ମଣିଷକୁ ବି ମନେ ପକେଇଦିଏ ।

ଏ ତ ପୂରାପୂରି ଗାଳିଗୁଲଜ !

ସାବିତ୍ରୀ ମୁହୂର୍ତ୍ତିକ ପାଇଁ ଚୁପଚାପ ରହି ବିନମ୍ର ସ୍ୱରରେ କହିଲା—ହୁଏ, ସତୀଶବାବୁ ହୁଏ । ନ ହେଲେ ତୁମକୁ ମନ କରିଦେବାକୁ ପଡ଼ି-ଥାଆନ୍ତା କାହିଁକି, ଏଇଟା ଭଦ୍ରଲୋକର ବସା, ବୃନ୍ଦାବନ ନୁହେଁ । କହି ଦ୍ରୁତପାଦରେ ବାହାରିଗଲା । ଦୁଃସହ ବିସ୍ମୟରେ ସତୀଶ ସ୍ତମ୍ଭିତ ହୋଇ ରହିଲା । ସାବିତ୍ରୀ ଯେ ତାକୁ ଏଭଳି ବାନ୍ଧିପାରେ, ଏକଥା ତା ମନରେ କେବେ ସୁଦ୍ଧା ଭାବି ନ ଥିଲା । କିଛି ସମୟ ଏକାକୀ ବସିରହିବା ପରେ ହଠାତ୍ ଠିଆ ହୋଇପଡ଼ିଲା ଏବଂ କୌଣସିମତେ ଗାଧୁଆ ଖିଆ ଶେଷକରିଦେବା ଛଳରେ ବାହାରି ହେଲା ।

ସାରାଦିନ ତାର ଅପମାନହତ କ୍ଷୁବ୍ଧଚିତ୍ତ ତାର ପ୍ରବୃତ୍ତିକୁ ଶାସନ କରିବାକୁ ଲାଗିଲା ଏବଂ ଯେପର୍ଯ୍ୟନ୍ତ ଏହି ଅଭାବନୀୟ ଅଦ୍ଭୁତ ବ୍ୟବହାରର ତାତ୍ପର୍ଯ୍ୟ ଖୋଜି ପାଇଲା ନାହିଁ, ସେତିକି ତାର ମନ ଭିତରେ ଗୋଟାଏ କଥା ବାରମ୍ବାର ଇତସ୍ତତଃ ହୋଇ ଦାଗକାଟି ଚାଲିଲା । କାହିଁକି ସେ କାନଟାକୁ ଧରିଥିଲା, କ'ଣ ତାର କହିବାକୁ ଥିଲା ଏବଂ ସାବିତ୍ରୀ ଯଦି ଏଭଳି ଚାଲି ନ ଯାଇଥାନ୍ତା, ତାହାହେଲେ ତାକୁ କ'ଣ ବୋଲି କହିଥାଆନ୍ତା, କରିଥାଆନ୍ତା ? ତାର ଅପଦସ୍ଥ କ୍ରୁଦ୍ଧ ଅନ୍ତଃକରଣ ନିରନ୍ତର ଏହି ସମସ୍ତ ଚିନ୍ତା ପ୍ରଶ୍ନରେ ସାବିତ୍ରୀ ଅପେକ୍ଷା ତାକୁ ଅଧିକତର ନିଷ୍ଠୁରଭାବରେ ଅବିଶ୍ରାନ୍ତ ବାନ୍ଧିବାରେ ଲାଗିଲା । ଏଭଳି ଭାବେ ସେ ସାରାଦିନ ନିଜ ଅସ୍ତ୍ରରେ ନିଜେ କ୍ଷତବିକ୍ଷତ ହୋଇ ଦିନାନ୍ତେ ଗଙ୍ଗାତୀରରେ ଆସି ପହଞ୍ଚିଲା ଏବଂ ନିର୍ଜ୍ଜନ ଭଳି ପଥରଉପରେ ବସିରହିଲା ।

କାଲି ଯେତେବେଳେ ସାବିତ୍ରୀ ପାଖରେ ମନର ଦୁର୍ବଳତା ହଠାତ୍ ପ୍ରକାଶିତ ହେବାରେ ମନଳଜ୍ଜାରେ ଊର୍ଦ୍ଧ୍ୱଶ୍ୱାସ ଛାଡି ସେ ପଳେଇ ଯାଇଥିଲା, ସେତେବେଳେ ସେ ଲଜ୍ଜା ଭିତରେ କିଭଳି ଟିକିଏ ମାଧୁର୍ଯ୍ୟ ମିଶି ରହିଥିଲା । କିଏ ଯେଭଳି ଅନ୍ତରାଳରେ ଥାଇ ଭାଗ ନେଇଥିଲା । କିନ୍ତୁ ଆଜି ସାବିତ୍ରୀର ବିଦ୍ରୂପ-ବହ୍ନିରେ ସେଇ ରସର ଲେଶଟିକକ ପର୍ଯ୍ୟନ୍ତ ଶୁଖିଯାଇ ନିଃସଙ୍ଗ ଲଜ୍ଜା ଏକାବେଳକେ ଶୁଷ୍କ, କଠିନ ହୋଇପଡ଼ି ତା ବୁକୁ ଭିତରେ ଏକପ୍ରକାର ଜ୍ୱାଳା ସୃଷ୍ଟି କଲା । ସେଦିନ ତାର ଆତ୍ମସମ୍ଭ୍ରମ କେବଳ ମୁଣ୍ଡଟେକି ରହିଥିଲା, ଆଜି ତାର ଅଣ୍ଟା ଭାଙ୍ଗିପଡ଼ିଲା । ସବୁଠୁ ବାଧିଲା ଏଇ ଦୁଃଖଟା ଯେ, ଏଇ ସ୍ତ୍ରୀଲୋକଟିକୁ ସେ ଯେତେଦିନ ଯେତେ ପରିହାସ କରିଚି, ସେ ସବୁଗୁଡ଼ାକ ଯେମିତି କଦର୍ଯ୍ୟ ହୋଇପଡ଼ିଚି । କାଲି ସକାଳବେଳା ପର୍ଯ୍ୟନ୍ତ ପ୍ରକୃତିରେ ତାର ପରିହାସ ଭିତରେ ରହସ୍ୟ ଛଡ଼ା ଦ୍ୱିତୀୟ ପୂର୍ଣ୍ଣ ଅର୍ଥ ନ ଥିଲା । ନିର୍ଜନ ମଧ୍ୟାହ୍ନର ଏଇ ଟିକକ ଅସଂଯମ ପରେ ସେକଥା ତ ମୁହଁରେ ଆଣିବାକୁ ମଧ୍ୟ ବାଟ ରହିଲା ନାହିଁ । ଆସକ୍ତ ହୃଦୟ ବହୁଦିନରୁ ଲୁକ୍କାୟିତ ଅବସ୍ଥାରେ ଅପେକ୍ଷା କରି ରହି ନ ଥିଲା, ଏକଥା ତ ସାବିତ୍ରୀ କୌଣସିମତେ ବିଶ୍ୱାସ କରିବ ନି । ସେ କହିବ, ସ୍ତ୍ରୀ ମନରେ ସେଇ କଥା ଥିଲା; କିନ୍ତୁ ତା ମନରେ ତ କିଛି ନ ଥିଲା । ଏଇ ସତ୍ୟଟା ତାକୁ ବୁଝାଇ କହିବା ଲାଗି ସମୟ ଓ ସୁଯୋଗ ଆଉ କ'ଣ କେବେ ମିଳିବ ?

ସେ ଭଲ ପିଲା ନୁହେଁ, ସେ ଲଜ୍ଜା ବି ତାର ବେଶୀ ନ ଥିଲା; କିନ୍ତୁ ଭଣ୍ଡାମିର ଅପବାଦ ସେ ସହ୍ୟ କରିବ କିପରି ? ସେ ମନେ ମନେ କହିଲା— ଯଦି ଚୋର ତେବେ ଚୋରଙ୍କ ଭଳି ହାତରେ ସିନ୍ଧକାଠି ଥାଇ ଧରା ପଡ଼ିଲା ନି କିମିତି ? ସାବିତ୍ରୀ ଯେ ମନେ ମନେ ହସି ହସି କହିବ—ଏ ସାଧୁ ଜଟା କମଣ୍ଡଳୁ ପିଠିରେ ବାନ୍ଧି ତ୍ରିଶୂଳ ଦେଇ ସିନ୍ଧ ଖୋଳୁଥିଲା, ଧରାପଡ଼ିଲା । ଏଇ ଅପବାଦର କଳ୍ପନା ତାକୁ ଦଗ୍ଧ କରୁଥାଏ । ଏଭଳି ଭାବରେ ବସିରହି-ଥିବା ଅବସ୍ଥାରେ କେତେବେଳେ ଯେ ରାତି ବଢ଼ିଗଲାଣି, ସେ ଜାଣି-ପାରିଲାନି । କେତେବେଳେ ଭଟ୍ଟା ଶେଷହୋଇ ଜୁଆରପାଣି ପାଦ ପାଖରେ ଆସି . ଲାଗିଲାଣି, କେତେବେଳେ ଯେ କଲିକତାର ଆଲୁଅଗୁଡ଼ାକ ଉଜ୍ଜ୍ୱଳ ହୋଇଉଠିଚି, କେତେବେଳେ ମୁଣ୍ଡ ଉପରେ ଆକାଶ କଳାହୋଇ ନକ୍ଷତ୍ର ଫୁଟିଉଠିଚି, କୌଣସି କଥା ସେ ଜାଣିପାରି ନି ।

ଥଣ୍ଡା ହାଓ୍ୱାରେ ତା ଦେହଟା ଶୀତ ଶୀତ ବୋଧହେଲା । ଚଟକଲ ଘଡ଼ିରେ ସେତେବେଳେ ବାରଟା ବାଜିବାର ଶୁଭିଲା । ସନ୍ତୋଷ ଉଠି ମେସ୍ ଅଭିମୁଖେ ଚାଲିଲା । ଏହି ସମୟରେ ମନେହେଲା, ସେ ତାର କାଳ୍ପନିକ ଆଶଙ୍କାଟିକ ଭୁଲି ଯାଇଥିଲା । କିନ୍ତୁ ଚାଲୁ ଚାଲୁ ବସାର ଦୂରତ୍ୱ ଯେତିକି ହ୍ରାସ ପାଇ- ଆସିଲା, ମନ ତାର ପୁନର୍ବାର ସେଇ ଅନୁପାତରେ ଶ୍ରେଷ୍ଟ ହୋଇଆସିଲା । ଶେଷରେ ଗଳି ମୋଡ଼ ପାଖକୁ ଆସି ମନେହେଲା ଯେମିତି ତାର ଗୋଡ଼ ଆଉ ଉଠୁନି । ଧୀରେ ଧୀରେ କୌଣସି ରକମରେ ସେ ବସା କବାଟ ଆଗକୁ ଆସି ଚୁପ୍‌କରି ଠିଆହୋଇ ରହିଲା । ମେସ୍ ଗୋଟାକଯାକ ନିସ୍ତବ୍ଧ । କେଉଁଠି କିଏ ଯେ ଚେଇଁଚି, ସେଭଳି ମନେ ହେଉନି । ଯଦିବା ସେ ଜାଣେ, ସାବିତ୍ରୀ ଏତେ ରାତିରେ ନିଶ୍ଚୟ ତା ଘରକୁ ଫେରି ଯାଇଥିବ, ତଥାପି ଦୁଆର ବାଡ଼େଇବାକୁ ତାର ସାହସ ହେଉନି । ବଡ଼ ଭୟ ଲାଗୁ- ଥାଏ । ପରେ କେହି ଆସି ଶିକୁଳି ଖୋଲିଦେଲା । ଠିକ୍ ଏହି ସମୟରେ କବାଟଟା ଯେମିତି ଖୋଲିଗଲା ସେହି ମୁହୂର୍ତ୍ତରେ ସନ୍ତୋଷ କୌଣସି ପଦେ ସୁଦ୍ଧା କଥା କହିପାରିଲା ନି । ତା ପରେ କହିଲା, କିଏ ବେହାରା ?

—ହଁ ବାବୁ !

—ସମସ୍ତେ ଖାଇସାରିଲେଣି ତ ?

—ହଁ, ହଜୁର !

—ସାବିତ୍ରୀ ଚାଲିଗଲାଣି ?

—ଆଜ୍ଞା ହଁ, ମତେ ବସି ରହିବାକୁ କହି ଏଇଲାଗେ ଚାଲିଗଲା ।

ସନ୍ତୋଷ ମନେକଲା, ଯେମିତି ସେ ବଞ୍ଚିଗଲା । ଖୁସିହୋଇ ସେ ଦୁଆର ବନ୍ଦ କରିଦେବାକୁ କହି ଉପରକୁ ଉଠିଗଲା । ବେହାରା ଆସି କହିଲା—ବାବୁ, ଆପଣଙ୍କ ମିଲ ?

—ମିଲ୍ ଥାଉ, ମୁଁ ଖାଇଆସିଚି ।

ବେହାରା କହିଲା—ଆପଣଙ୍କ ପାନ, ପାଣି ସବୁ ଏଇ ଟେବୁଲ ଉପରେ ଅଛି ।

—ଆଚ୍ଛା, ତୁ ଶୋଇବୁ ଯା ।

ବେହାରା ଚାଲିଗଲା । ସନ୍ତୋଷ ଶେଯରେ ଧଡ଼୍ ଧଡ଼୍ ଶୋଇ ପଡ଼ିଲା ।

କଳହ କରି ସାବିତ୍ରୀର ମନ ଭଲ ନ ଥିଲା । ସତୀଶ ତାକୁ କଟୂକ୍ତି କଲେ ମଧ୍ୟ ଉତ୍ତର ଦେବା ଯେ ତାର ଉଚିତ ହୋଇନି, ଏଇ ଅନୁତାପ ସାରା ଦିପହରଟା ତାକୁ ବହୁତ କଷ୍ଟ ଦେଇଛି । ତେଣୁ ସନ୍ଧ୍ୟା ପରେ କୌଣସି ଏକ ସମୟରେ କ୍ଷମାଭିକ୍ଷା କରିନେବା ଲାଗି ଅପେକ୍ଷା କରି କରି ଯେତେ-ବେଳେ ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଗଲା, ସେତେବେଳେ ତାର ଆଶା ଆଶଙ୍କାରେ ପରିଣତ ହୋଇଉଠିଲା ।

ସେ ଜାଣେ ବିପିନବାବୁଙ୍କ ଛଡ଼ା ସତୀଶର କାହା ପାଖକୁ ଯିବାର ସ୍ଥାନ ନାହିଁ । ତେଣୁ ତାର ବଡ଼ ଭୟ ହେଲା, ହୁଏତ ସତୀଶ ସେଇ ଦଳ ଭିତରକୁ ଆଜି ଚାଲିଯାଇଥିବ । କ୍ରମଶଃ ରାତି ବଢ଼ି ବଢ଼ି ଚାଲିଲା; କିନ୍ତୁ ସତୀଶର ଦେଖା ନାହିଁ । ଆଉ କୁଆଡ଼େ ଯିବା କଥା କଳ୍ପନା ନ କରିପାରି ସଂଶୟ ଯେତେବେଳେ ବିଶ୍ୱାସରେ ଦୃଢ଼ୀଭୂତ ହୋଇଉଠିଲା, ସେତେ-ବେଳେ ପ୍ରତୀକ୍ଷା କରିବା ତା ପକ୍ଷରେ ଅସମ୍ଭବ ହୋଇଉଠିଲା । ବସ୍ତୁତଃ ତାର ଘୃଣାବୋଧ ହେବାକୁ ଲାଗିଲା ଯେ କ୍ଷମାଭିକ୍ଷା କରିବା ଲାଗି ସେ ଏଭଳି ଗୋଟିଏ ଲୋକର ବାଟ ଚାହିଁବସିଛି । ତେଣୁ ବେହାରୀକୁ ବସିବାକୁ କହି-ଦେଇ ସାବିତ୍ରୀ ବହୁତ ରାତିରେ ଘରକୁ ଫେରିଲା । ଘରକୁ ଯାଇ ବିଛଣାରେ ପଡ଼ି ରହିଲା, ଆଖିରେ ନିଦ ଆସିଲା ନାହିଁ । ସାରା ଦେହଟା କି ଏକ ଅଭୂତପୂର୍ବ ଅସ୍ୱସ୍ତିରେ ସକାଳ ଲାଗି ଛଟପଟ ହେବାକୁ ଲାଗିଲା । ଘରର ଗ୍ରେଟ ଟାଇମ୍‌ପିସଟାର ସବୁ ଘଣ୍ଟାଗୁଡ଼ାକ ବାଜିଗଲା । ସେ ଚେଇଁ ରହି ସବୁ ଶୁଣିଲା । ସକାଳ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବା ତା ପକ୍ଷରେ ସମ୍ଭବ ହେଲା ନାହିଁ । ତେଣୁ ଅନ୍ଧାର ଥାଉ ଥାଉ ଉଠିପଡ଼ି ଲୁଗା-ପଟା ପିନ୍ଧି, ମୁହଁ ଧୋଇ ବାହାର ହୋଇ ପଡ଼ିଲା । ରାସ୍ତାରେ ସେତେବେଳେ ମାରୁଆଡ଼ି ରମଣୀମାନେ ଦଳ ବାନ୍ଧି ଗୀତ ଗାଇ ଗାଇ ଗଙ୍ଗାସ୍ନାନରେ ଚାଲିଥାଆନ୍ତି । ସେଇଆଡ଼କୁ ମୁହଁ କରି ସାବିତ୍ରୀ ଯେମିତି କହିଲା, — ମା ଗଙ୍ଗା, ମେସକୁ ଯାଇଁ ଯେମିତି ସବୁ ଭଲ ଖବର ପାଇବି ! ତାର ଓଷ୍ଠାଧର କମ୍ପି ଉଠିଲା, ତପ୍ତ ଅଶ୍ରୁରେ ଭରିଉଠିଲା ଦୁଇ ଚକ୍ଷୁ । ଏଇ କମ୍ପିତ ଆଶଙ୍କାରେ ସାରା ମନ ପରିପୂର୍ଣ୍ଣ କରି ସେ ରାସ୍ତାରେ ବେଗେ ବେଗେ ଚାଲୁ ଚାଲୁ ମନେ ମନେ ସହସ୍ର ବାର କହି ଯାଉଥାଏ—ସବୁ ଯେମିତି ଭଲଥିବ । ଯାହା ଇଚ୍ଛା କରନ୍ତୁ ପଛକେ, ସେ ଭଲ ଥାଆନ୍ତୁ । ବସାରେ ପହଞ୍ଚି ଉକା-

ଡାକ କରିବା ପରେ ବେହାରା ଦରଜା ଖୋଲିଦେଇ ଖବର ଦେଲା—ସତୀଶବାବୁ ବହୁତ ରାତିରେ କୁଆଡ଼ୁ କ'ଣ ଖାଇଦେଇ ଆସିଲେ । ଏ ସମ୍ବାଦ ଯେ ପ୍ରଥମରୁ ଦେବା କଥା, ବୁଢ଼ା ବେହାରାଙ୍କ ଅଜଣା ନଥିଲା । ସାବିତ୍ରୀ ଉପରକୁ ଉଠୁଥିଲା । କିନ୍ତୁ କ'ଣ କେଜାଣି ଭାବି ଅଟକିଗଲା । ଲଲାଟ କୁଞ୍ଚିତ କରି ପ୍ରଶ୍ନ କଲା; ଖାଇ ନାହାନ୍ତି ତାହାହେଲେ ?

—ନା ତ, ସବୁ ଜିନିଷ ଘୋଡ଼ାଇ ହୋଇ ରହିଛି ।

ସାବିତ୍ରୀ ଖାଲି ଗୋଟାଏ ହୁଁ ମାରି ଉପରକୁ ଚାଲିଗଲା । ତାର ଦୁଶ୍ଚିନ୍ତାଗ୍ରସ୍ତ ମନ ନିର୍ଭୟ ହେବାମାତ୍ରେ ପୁଣି ଈର୍ଷାରେ ଜଳିଉଠିଲା ।

ତା ଆରଦିନ ସକାଳ ହେବାମାତ୍ରେ ସତୀଶର ନିଦ ଭାଙ୍ଗିଲା ଏବଂ ନିଦ ଭାଙ୍ଗିଲା ବୋଲି ଜାଣିପାରିଲା ସାବିତ୍ରୀ । ଠିକ୍ ସେଇ ସମୟରେ ମୁହଁ ଗୋଟାକଯାକ ମେଘାଚ୍ଛନ୍ନ କରି ସାବିତ୍ରୀ ଆସି ଠିଆହେଲା । ତାର ମୁହଁ ଆଡ଼କୁ ଥରେମାତ୍ର ଅନେଇ ସତୀଶ ମୁଣ୍ଡ ତଳେଇଲା । କିଛିକ୍ଷଣ ପରେ ସାବିତ୍ରୀ କହିଲା – କ'ଣ ରନ୍ଧାହେବ ବୁଝିବାକୁ ଆସିଲି ।

ସତୀଶ କୌଣସିଆଡ଼କୁ ନ ଅନେଇ କହିଲା – ରୋଜ ଯାହୁଏ ତାଇ ହେଉ ।

"ଆଚ୍ଛା" କହି ସାବିତ୍ରୀ ଯିବାକୁ ଚେଷ୍ଟା କରୁ କରୁ ଠିଆ ହୋଇପଡ଼ି କହିଲା—ଲେଖାପଢ଼ା ଭଲ ବାବୁଙ୍କର କ'ଣ ଖାଇବା ପିଇବା ଆଉ ଭଲ ଲାଗୁ ନାହିଁ ?

ସତୀଶ ଆସ୍ତେ ଆସ୍ତେ କହିଲା – ମୁଁ ଖାଇ ଆସିଥିଲି । ଭୟରେ ମିଛ କହି ପକେଇଲା, କିନ୍ତୁ କୋଉଠି ଖାଇ ଆସିଥିଲା, ଏକଥା ମଧ୍ୟ ସାବିତ୍ରୀ ଘୃଣାରେ ପଚାରିନି ! କିଛି ସମୟ ଚୁପ ରହି କହିଲା—ଆଜିକି ଛଅ ଦିନ ହେଲା ତୁମେ ଇଆଡ଼େ ସିଆଡ଼େ ବୁଲିଯାଉଛ କାହା ଭୟରେ ଶୁଣେ ? ଅସୁବିଧା ହେଲେ ମତେ ତ ଜବାବ ଦେଇପାରନ୍ତ ।

ସତୀଶ କହିଲା—ତୋର ଅପରାଧ ? ତା ଛଡ଼ା ମୁଁ ଜବାବ ଦେଲା ଭଳି ଲୋକ ନୁହେଁ । ବସା ତ ଏକା ମୋର ନୁହେଁ ।

ସାବିତ୍ରୀ କହିଲା—ଏକା ତମର ହୋଇଥିଲେ, ଜବାବ ଦିଅନ୍ତି ବୋଧହୁଏ । ଆଚ୍ଛା, ମୁଁ ତାହାହେଲେ ନିଜେ ଯାଉଛି ।

ସନ୍ତୋଷ ଉତ୍ତର ଦେଲାନି । ମୌନ ରହିବା ଦେଖି ସାବିତ୍ରୀ ମନେ ମନେ ଅଧିକ ଜଳଉଠି କହିଲା—ମୁଁ ଗଲେ ତୁମେ ବଡ଼ ଖୁସି ହେବନା ? ତୁମର ଗୋଡ଼ ତଳେ ପଡ଼ୁଚି ସନ୍ତୋଷବାବୁ, ହଁ କି ନା—ଯାହା ହେଲେ ଗୋଟାଏ କିଛି ଜବାବ ଦିଅ ।

ତଥାପି ସନ୍ତୋଷ ନିରୁତ୍ତର ରହିଲା; କାରଣ ସାବିତ୍ରୀ ଯେ ଏ ବସାର କ'ଣ, ସେ କଥା ସେ ଜାଣେ ଏବଂ ଇମିତିକା ହଠାତ୍ ଚାଲିଗଲେ କଥାଟା ଚାପି ରହିଯିବନି, ବରଂ କଥା ଗୋଟାକଯାକ ମୁହଁରେ ଘଣ୍ଟାଘଣ୍ଟି ହୋଇ କିଭଳି ଏକ ଜଘନ୍ୟରୂପ ଧାରଣ କରିବ । ଏ କଥା ଅନୁମାନ କରି ସନ୍ତୋଷ ବଡ଼ ଭୟ ପାଇଲା । କିଛି ସମୟ ଚୁପ ରହି ଧୀରେ ଧୀରେ କହିଲା—ମତେ ମାଫ କର ସାବିତ୍ରୀ ! ଯେଉଁ କେଇଟା ଦିନ ମୁଁ ଏଠି ଅଛି, ସେତକ ଦିନ ଅନ୍ତତଃ ତୁ କେଉଁଠିକି ଯାଅ ନା ।

ଅନ୍ୟ କୌଣସି ସମୟ ହୋଇଥିଲେ ସନ୍ତୋଷ ସଙ୍ଗେ ସଙ୍ଗେ କ୍ଷମା କରିଥାଆନ୍ତା । କିନ୍ତୁ ଏ ସମ୍ବନ୍ଧରେ ସେ ମନରେ ଏକ ଅମୂଳକ ସନ୍ଦେହ ପୋଷଣ କରିଥିଲା । ତେଣୁ ଏଇ ମୃଦୁ କଣ୍ଠସ୍ୱରକୁ କଳ୍ପନା କରି ସେ ଅନ୍ଧ ହୋଇ ଉଠିଥିଲା ଏବଂ ନିଜ ଗଳାର ଅନୁକରଣ କରି ତତ୍କ୍ଷଣାତ୍ ସାବିତ୍ରୀ କହିଉଠିଲା—ଏତେ ଆଡ଼ମ୍ବରରେ କ୍ଷମା ଭିକ୍ଷା କରି ସାଧୁ ହେବାକୁ ଯାଉଚ କେଉଁଥିପାଇଁ କି ? ମୋର ଭଳି ଗୋଟିଏ ନୀଚ ସ୍ତ୍ରୀଲୋକ ଲୁଗାକାନି ଧରି ଟାଣିବା କଣ ନୂଆ ହେଲା ଯେ ଲଜ୍ଜାରେ ବିଲକୁଲ ମରି ଯାଉଚ ? ତା ଅପେକ୍ଷା ବରଂ ଘରକୁ ଚାଲିଯାଅ । କଲିକତାରେ ରହି ବୃଥାଟାରେ ନଷ୍ଟ ହୋଇଯିବ ସିନା ! ଲେଖାପଢ଼ା ତୁମର କାମ ନୁହେଁ ।

ଯେଉଁ ସନ୍ତୋଷ ନିଜ ଉଗ୍ର ପ୍ରକୃତିହେତୁ କାହାକୁ ମଧ୍ୟ ସହ୍ୟ କରେନା, କଥାକୁ ସହ୍ୟ କରିବା ଯାହାର ବିଲକୁଲ ଅଭ୍ୟାସ ନାହିଁ, ସେ ଏତେ ବଡ଼ ଅପମାନସୂଚକ କଥା ଶୁଣି ମଧ୍ୟ ନିର୍ବାକ ରହିଲା । ଅପରାଧୀ ମନ ତାର ଅସହ୍ୟ ଗୁରୁଭାରଗ୍ରସ୍ତ ଭାରବାହୀ ଜୀବଭଳି ଏଭଳି ନିରୁପାୟ ଭାବରେ ରାସ୍ତା ଉପରେ ହାମୁଡ଼ି ପଡ଼ିଥିଲା ଯେ ସାବିତ୍ରୀର ବାରମ୍ବାର ଏଇ ନିଷ୍ଠୁର ଆଘାତରେ ମଧ୍ୟ ସେ କୌଣସିମତେ ମୁଣ୍ଡ ଟେକି ଠିଆହୋଇ ପାରିଲା ନାହିଁ । ସାବିତ୍ରୀର କିନ୍ତୁ ଚମକ ଭାଙ୍ଗିଗଲା । ତାର ସ୍ପର୍ଦ୍ଧା ଯେ ବୋଧକୁ ମଧ୍ୟ

ଝଟିଗଲା, ତାହା ତାର ନିଜ କାନରେ ବାଜିଲା । ସେ ଅନେକ ସମୟ ଧରି ହୁନିତାନ ଠିଆ ହୋଇ ରହି ଧୀରେ ଧୀରେ ବାହାର ହୋଇଗଲା ।

ତିନି

ଆଜି ବି ସାବିତ୍ରୀ ସବୁ କାମଦାମରେ ବ୍ୟାପୃତ ରହି ସାରାଦିନ ଉତ୍କଣ୍ଠିତ ହୋଇ ରହିଲା । ସତୀଶ ଯଦି କାଲି ଭଳି ରାଗିଥାନ୍ତା କିମ୍ବା କଥାର ଗୋଟାଏ କିଛି ଉତ୍ତର ଦେଇଥାଆନ୍ତା ତ ଭଲ ହୋଇଥାଆନ୍ତା । କିନ୍ତୁ ସେ କିଛି କଲା ନାହିଁ । ଗମ୍ଭୀର [illegible] ମୁହଁରେ ଖାଇବା ପିଇବା ଶେଷକରି ନିସ୍ତବ୍ଧରେ ଘରେ ବସିରହିଲା । ଆଡ଼ୁଆଳରେ ରହି ସାବିତ୍ରୀ ସବୁ କଥା ଲକ୍ଷ୍ୟ କରିବାକୁ ଲାଗିଲା, କିନ୍ତୁ ସେ ଘରକୁ ଆସିବାକୁ ମଧ୍ୟ ସାହସ କଲା ନାହିଁ । ପ୍ରତିଦିନ ସନ୍ଧ୍ୟା ପୂର୍ବରୁ ସେ ନିଜେ ଯାଇ ତା ଘର ଝାଡ଼ୁ ଦେଇ ଆସେ, ଆଜି ବେହାରାକୁ ପଠେଇଦେଲା ଏବଂ ସନ୍ଧ୍ୟା ବେଳେ ସେ ନିଜେ ଯାଇ ଆଲୁଅ ଜାଳିଦେଇ ଆସିଲା ।

ରୋଜ ଏଇ ସମୟରେ ରାଖାଲବାବୁଙ୍କ ଘରେ ପଶାଖେଳର ଆଡ୍ଡା ବସେ । ଆଜି ମଧ୍ୟ ବସିଲା ଏବଂ ଖୁବ୍ ପାଟିତୁଣ୍ଡ କ୍ରମଶଃ ଉଚ୍ଚତର ହେବାକୁ ଲାଗିଲା । ଆଗ ଖୋଲା ଘରରେ କେହି ନ ଥିଲେ । ସାବିତ୍ରୀ ଇତସ୍ତତଃ ଗୁହିଁ ତାର ସମସ୍ତ ସଂକୋଚବୋଧକୁ ଫୋପାଡ଼ି ଦେଇ ନିଃଶବ୍ଦ ପଦକ୍ଷେପରେ ସତୀଶର ଘରକୁ ପଶି ଆସିଲା । ସତୀଶ ବିଛଣାରେ ଶୋଇ ହୋଇ ପଡ଼ିରହି ହୁଏତ ଘର ଉପରର କଡ଼ିକାଠଗୁଡ଼ାକ ଗଣୁଥିଲା । ସାବିତ୍ରୀ ବସିଲା ଏବଂ କ୍ଷଣିକ ପାଇଁ ନୀରବରେ ବସିରହିବା ପରେ କହିଲା—ଆହ୍ନିକ ଲାଗି କଣ ସ୍ଥାନ କରିଦେବି ?

ସତୀଶ କହିଲା— ଦେ କରିଦେ ।

ପୁଣି ସାବିତ୍ରୀ ନିର୍ବାକ ରହିବାକୁ ପଡ଼ିଲା । କିନ୍ତୁ କେତେକ ମୁହୂର୍ତ୍ତ ପରେ କହିଉଠିଲା, ଆଚ୍ଛା, ଲୋକେ କଣ କହିବେ ବୋଲନ୍ତୁ ତ !

ସନ୍ତୋଷ କୌଣସି ଉତ୍ତର ଦେଲାନି । ସାବିତ୍ରୀ କହିଲା—ତୁମେ ମତେ ରହିବାକୁ କହିଲ; କିନ୍ତୁ ନିଜେ କି କାଣ୍ଡ କରୁଚନ୍ତି କୁହନ୍ତୁ ତ ଦେଖି । ସନ୍ତୋଷ ଗମ୍ଭୀର ଭାବରେ କହିଲା—ମୁଁ କୌଣସି କାଣ୍ଡ କରିନି; ଚୁପ୍ କରି ରହିଚି ମାତ୍ର ।

ସାବିତ୍ରୀ କହିଲା—ଏହି ଚୁପ୍ କରି ରହିବାଟା ହିଁ ସବୁଠାରୁ ଅସୁନ୍ଦର । ସମସ୍ତେ ଯେତେବେଳେ ଚୁପ ରହି ନାହାନ୍ତି, ସେତେବେଳେ ତୁମେ ଚୁପ କରି ରହିଲେ ତ କଥା ନିଶ୍ଚୟ ଉଠିବ—ଏଇଟା କ'ଣ ଭଲ ? ମୁହୂର୍ତ୍ତେ କାଳ ସ୍ଥିର ରହି କହିଲା—ଖୋଞ୍ଚାଖୋଞ୍ଚି କରି ଘା କରିବା ସମ୍ବନ୍ଧରେ ଗୋଟାଏ କଥା ଅଛି; ତୁମେ ଠିକ୍ ସେଇଭଳି କରୁଚ । ଦୋଷ ନାହିଁ; ଅଥଚ ଦୋଷୀ ସାଜି ବସିଚ । ଏହି କଥାକୁ ପାଞ୍ଚ ଜଣ କୁହାକୁହି ହେବେ, ହସ କୌତୁକ କରିବେ । ତାହା ହୁଏତ ତୁମର ବରଦାସ୍ତ ହେବ, କିନ୍ତୁ ମୋର ତ ଆଦୌ ହେବ ନାହିଁ—ତାହା ହେଲେ ଦେଖୁଚ, ମତେ ହିଁ ଶେଷରେ ଯିବାକୁ ପଡ଼ିବ ।

ସନ୍ତୋଷ ମନେ ମନେ ଅସ୍ଥିର ହୋଇପଡ଼ି କହିଲା—ଦୋଷ କ'ଣ କିଛି କରିନି ?

ସାବିତ୍ରୀ କହିଲା—ନା, ଟିକିଏ ତଳେଇ କରି ଭାବି ଦେଖ । ମନଟା ଆପେ ଆପେ ପରିଷ୍କାର ହୋଇଯିବ । ମୋ ସମ୍ବନ୍ଧରେ ତୁମ ଭଳି ଦୋଷ— ସାବିତ୍ରୀ ଆଉ କିଛି କହିପାରିଲା ନାହିଁ । ଧାବମାନାଶ୍ୱ, ଅକସ୍ମାତ୍ ଗଭୀର ଗର୍ତ୍ତ ମୁହଁକୁ ଆସି ତାର ଦୁଇପାଦ ବଢ଼େଇ ଦେଇ ଯେଉଁଭଳି ପ୍ରାଣପଣେ ନିଜକୁ ରୋକି ଠିଆହୁଏ, ସାବିତ୍ରୀର ଚଳନ୍ତ ଜିହ୍ୱା ଠିକ ସେହିଭଳି ଅଟକିଗଲା । ତା'ର ଏଇ ଆକସ୍ମିକ ନିସ୍ତବ୍ଧତାରେ ବିସ୍ମିତ ସନ୍ତୋଷ ମୁହଁ ଉଠେଇବା ମାତ୍ରେ ଦୁଇଜଣଙ୍କର ଆଖିକି ଆଖି ମିଳିଗଲା । ନିଜ ଲଜ୍ଜାରେ ସାବିତ୍ରୀ ନିଜେ ମରିଗଲା । ସିଏ ଏଇ କଥାଟା କହିବାକୁ ଯାଉଥିଲା ଯେ ତା ଭଳି ନାରୀ ସମ୍ବନ୍ଧରେ ଏଭଳି ଅପବାଦରେ ଲଜ୍ଜାର କୌଣସି କାରଣ ନାହିଁ—ଏଇ ଲଜ୍ଜାରେ ହିଁ ତାର ସମସ୍ତ ଲୋମକୂପ ଶିହରି ଉଠିଲା ।

ସନ୍ତୋଷ କିଛି କହିବାକୁ ଯାଉଥିଲା; କିନ୍ତୁ ସାବିତ୍ରୀ ରୋକି ଦେଇ କହିଲା—ଚୁପ୍ ରୁହ, ନିଜେ ବୁଝ । ସିନ୍ଦୁଟାରେ ତଳକୁ ଟାଣ କରି

ନିଜକୁ କଷ୍ଟ ଦିଅନା । ଅରେ ଏ ବେହାଗୀ ! ବାବୁଙ୍କର ସଂଧ୍ୟା ଜାଗା ଟିକିଏ ଶୀଘ୍ର ଧୋଇ ଦେ; ମୁଁ ବନ୍ଦ୍ନ ସମୟ ହେଲା, ଆସନ ଧରି ଠିଆ ହୋଇ ରହିଛ ।

ବେହାଗୀ କ'ଣ ଗୋଟେ କାମରେ ଲଆଡ଼କୁ ଆସିଥିଲା ତତକ୍ଷଣାତ୍ ପାଣି ଆଣିବାକୁ ଚାଲିଯିବା ପରେ ସାବର୍ଣ୍ଣୀ ଲଜ୍ଜିତ ଅଭିମାନ ସ୍ୱରରେ କହିଲା,—ତୁମର ବ୍ୟବହାରରେ ଆଜିକି ଦୁଇଦିନ ହେଲା ମୁଁ ଉତ୍ତେଜିତ କାରଣ ଅତିଷ୍ଟ ହୋଇ ଉଠିଛି କ'ଣ ଆଖିକି ଦେଖି ବୁଝି ପାରୁନ ? ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ।

ତାହାର ଏତେ ବେଗି ବେଗି ଏତେ କଥା ସଂପୂର୍ଣ୍ଣ ହୃଦୟଙ୍ଗମ କରିବାର ଅବକାଶ ସହାଣ ପକ୍ଷରେ ସମ୍ଭବ ହେଲାନି, ତଥାପି ତାର ଅନ୍ତରର ଗ୍ଲାନି ଯେମିତି ସ୍ୱଚ୍ଛ ହୋଇ ଆସିଲା ଏବଂ ପରକ୍ଷଣରେ କ୍ଷମାପ୍ରାର୍ଥୀ ଅପରାଧୀ ଭଳି ଅନୁତାପ କଣ୍ଠରେ କହିଲା—କାହିଁ କବେ ମୁଁ ଅପମାନିତ କରିନି ?

ସାବର୍ଣ୍ଣୀ ଅଧୀର ହୋଇ କହିଲା—ମଣିଷ ଯଦି ବୁଝିବାକୁ ଚେଷ୍ଟା କରିବନି ବୁଝେଇବ କିମିତି ? ଶହେ ଥର, ହଜାର ଥର କହିଛି, ଏଇଥିରେ କୌଣସି ଝିଅର ଅପମାନ ହୁଏନି । ଦୟା କରି ମନକୁ ସୁସ୍ଥ କରି ନିଅ—ଏତିକିମାତ୍ର ତୁମ ପାଦତଳେ ମୋର ମିନତି ।

ପ୍ରତ୍ୟୁତ୍ତରରେ ସହାଣ କ'ଣ ଗୋଟାଏ କହିବାକୁ ଯାଉଥିଲା, କିନ୍ତୁ ସାବର୍ଣ୍ଣୀ ତାର ଭ୍ରୂକୁଞ୍ଚିତ ଇଙ୍ଗିତରେ ନିଷେଧ କରି ସଙ୍ଗେ ସଙ୍ଗେ କହି ଉଠିଲା—ଏଇ ଯେ ବେହାଗୀ ।

ବେହାଗୀ ଗାଲରେ ପାଣି ଆଣି ଉପସ୍ଥିତ ହୋଇଥିଲା । ସାବର୍ଣ୍ଣୀ ତା ହାତରୁ ଗାଲ ନେଇ ଘରର ଗୋଟାଏ କୋଣ ଧୋଇଧାଇ କାନିରେ ପୋଛି ଦେଇ ସହାଣକୁ ଲକ୍ଷ୍ୟ କରି କହିଲା—ଯାଅ, ଗୋଡ଼ ହାତ ଧୋଇ ଲୁଗା ପାଲଟି ସଂଧ୍ୟା କରି ବସ । ମଠାଟା ସେଇ ଅନୁଗୁଣିରେ ଅଛି; କହି ହାତରେ ଦେଖେଇ ଦେଲା । ସହାଣର ଦୁର୍ବିସହ ହୃଦୟଭାର ଯେମିତି ସବୁତକ ନେଇଗଲା ସାବର୍ଣ୍ଣୀ । ପରେ ପରେ ବେହାଗୀକୁ ଚାଲ ବୋଲି କହି ଘରୁ ବାହାରିଗଲା ।

ସତୀଶ ମନ ଦେଇ ସଂଧ୍ୟାକୃତ୍ୟ ଶେଷ କରିବା ପରେ ଉଠି ଆସି ଦେଖିଲା ଇତି ମଧ୍ୟରେ କିଏ ନିଃଶବ୍ଦରେ ଆସି ଭାତ ବାଢ଼ି ଦେଇ ଯାଇଛି । ଯଦିଓ ଘରେ କେହି ନ ଥିଲେ, ତଥାପି ସେ ମନେ କଲା; ସେ ଏକା ନାହିଁ । ଆସନରେ ବସି ସେ ଆସ୍ତେ ଆସ୍ତେ କହିଲା—ଏବେ ଏତେ ବେଶୀ ଖାଇଲେ ଆଉ ଖାଇ ପାରିବନି ଯେ ।

ବାହାରୁ ଜବାବ ଆସିଲା; ଏତେ ବେଶୀ କାହିଁକ — କିନ୍ତୁ ଖାଇବାକୁ ପଡ଼ିବନି । ବିପିନ ବାବୁ ଘରୁ ନିମନ୍ତ୍ରଣ ଆସିଛି ?

ସତୀଶ ହସି ଉଠିଲା । କହିଲା—ତୁ ଯା; ଜଳେଇ ପୋଡ଼ି ମାରନା । ମୁଁ କୁଉଠିକି ଯାଇ ପାରିବିନି ।

ସାବିତ୍ରୀ ଆଡ଼ୁଆଳରେ ରହି କହିଲା—ସେ କ'ଣ କହି ଯାଇ-ଚନ୍ତି, ପରି । କୁଆଡ଼େ ଯିବାକୁ ହେବ, ତୁମେ ଜାଣ । ତା ଛଡ଼ା ନଗଲେ ତାଙ୍କର ସବୁ ଆୟୋଜନ ପଣ୍ଡ ହୋଇଯିବ ଯେ । ଗାଉଣା-ବାଜଣା—

'ହେଲେ ହେଉ', କହି ସତୀଶ ଏ ପ୍ରସଙ୍ଗ ବନ୍ଦ କରି ଦେଇ ମୀରବରେ ଖାଇବାକୁ ଲାଗିଲା । ଖାଇସାରି ବିଛଣା ଉପରକୁ ଉଠିଲି । ଟେବୁଲରେ ଥିବା ଆଲୁଅଟାକୁ ଟାଣିଆଣି ସୁନାପିଲାଭଳି କ'ଣ ଗୋଟାଏ ଡାକ୍ତରୀ ବହି ଖୋଲି ଚିତ୍ ହୋଇ ଶୋଇପଡ଼ିଲା । କିନ୍ତୁ ସେଦିନ ବହିରେ ମନ ଲାଗିଲା ନାହିଁ । ତାର ଦୁଶ୍ଚିନ୍ତାମୁକ୍ତ ମନ ବନ୍ଧନମୁକ୍ତ ଘୋଡ଼ାଭଳି ଅନାବଶ୍ୟକ ଭାବରେ ଛୁଟିବାକୁ ଲାଗିଲା ।

ରେଷେଇଘରେ ଚୁଲି ଲିଭେଇ ଦେଇ ପୂଜାରୀ ବେହାରୀଙ୍କୁ ଗଞ୍ଜେଇ ଧରଉଥିଲା । ରାଖାଲବାବୁଙ୍କ ଘରେ ସେତେବେଳେ କୋଳାହଳ କ୍ରମଶଃ ଦୁରନ୍ତ ହୋଇ ଉଠୁଥିଲା ।

ସତୀଶ ଡାକିଲା – ସାବିତ୍ରୀ !

ସାବିତ୍ରୀ ସେତେବେଳେ ଇରୁଣ୍ଡି ବାହାରେ ବସିଥିଲା, କହିଲା—ଆଜ୍ଞା ।

ସତୀଶ କହିଲା—ବିପିନବାବୁଙ୍କ ନିମନ୍ତ୍ରଣ ରକ୍ଷାକରିବା ମହାପାପ । ନ ବୁଝିଶୁଝି ପାପ କରି ପକେଇଚି, କିନ୍ତୁ ବୁଝିଶୁଝି କରିବି ନାହିଁ ।

ସାବିତ୍ରୀ ପଚାରିଲା—ପାପ ! କାହିଁକି ?

ସତୀଶ କହିଲା—ମୁଁ ଜାଣେ କେଉଁଠି ତାର ଗାଉଣା-ବାଜଣାର ଆୟୋଜନ ଚାଲିଚି । କେବଳ ସେଇ ଜାଗାଟାକୁ ଯିବାହିଁ ପାପ କାର୍ଯ୍ୟ ।

ବେଶ ତ ! ସେଭଳି ସ୍ଥାନକୁ ଗଲନି ।

ସତୀଶ ଉତ୍ତେଜିତ ହୋଇ କହିଲା, କେବେ ଯିବିନି; କିନ୍ତୁ ସେମାନେ ଯେ ମତେ ମହିଳେ ନିଷ୍କୃତି ଦେବେ; ମନେ ହେଉନି । ତେଣୁ ତତେ ଆଗରୁ ସାବଧାନ କରିଦେଉଚି ଯଦି କିଏ ଆସେ ଫେରାଇଦେବୁ । କହିବୁ; ମୁଁ ଘରେ ନାହିଁ, ରାତିରେ ଆସିବେନି ବୁଝିଲୁ ?

ସାବିତ୍ରୀ କହିଲା, ବୁଝିଲି ।

ସତୀଶ ଗୋଟାଏ କର୍ତ୍ତବ୍ୟ ପାଳନ କରି ସୁସ୍ଥ ଭାବରେ ନିଃଶ୍ୱାସ ନେଇ କିଛି ସମୟ ନୀରବ ରହି କହିଲା, କୁଆଡୁ ଥଣ୍ଡା ହାଓ୍ୱା ଆସୁଚି ସାବିତ୍ରୀ, ଝରକାଗୁଡ଼ାକ ବନ୍ଦ କରିଦେ ।

ସାବିତ୍ରୀ ଘର ଭିତରେ ପଶି ଝରକା ବନ୍ଦ କରିବାକୁ ଲାଗିଲା, ସତୀଶ ନିର୍ଲିପ୍ତ ଚକ୍ଷୁରେ ଚାହିଁ ରହିଲା । ଚାହିଁ ଚାହିଁ ଅକସ୍ମାତ୍ କୃତଜ୍ଞତାରେ ତାର ବୁକୁ ଭରିଉଠିଲା । ସ୍ନିଗ୍ଧ କଣ୍ଠରେ କହିଲା, ଆଚ୍ଛା ସାବିତ୍ରୀ, ତୁ ନିଜକୁ ମାଚ ସ୍ତ୍ରୀ ଲୋକ ବୋଲି କାହିଁକି କହୁ ?

ସାବିତ୍ରୀ ଫେରିପଡ଼ି କହିଲା—କ'ଣ ହେଲା ? ସତ କଥାଟା କହିବନି ?

ସତୀଶ କହିଲା, ଏ କଥା କୌଣସିମତେ ସତ ନୁହେଁ । ତୁ ଗଙ୍ଗାଜଳରେ ଠିଆହୋଇ କହିଲେ ବି ମୁଁ ବିଶ୍ୱାସ କରିବନି ।

ସାବିତ୍ରୀ ହସି ହସି କହିଲା—କାହିଁକି କରିବନି ?

ତାହା ଜାଣେନା । ବୋଧହୁଏ କଥାଟା ସତ ନୁହେଁ ବୋଲି । ମାଚଲୋକଙ୍କ ଭଳି ତୋର ତ ବ୍ୟବହାର କଥାବାର୍ତ୍ତା ଆକୃତି ପ୍ରକୃତି କିଛି ନୁହେଁ । ଏତେ ଶିକ୍ଷା ଦୀକ୍ଷା ତୋର ହେଲା କୁଆଡୁ ?

ସାବିତ୍ରୀ ନିକଟରେ ଟେବୁଲ ଉପରେ ବସିଥିଲା । ସତୀଶ କଥାରେ ହସି ସେ କହିଲା—ଏତେ ? କେତେ ଶୁଣେ ?

ସତୀଶ ଏକଥାକୁ ବ୍ୟାଖ୍ୟା କରିବାପାଇଁ ବହିଟାକୁ ପାଖରେ ରଖିଦେଇ ହଠାତ୍ ହିଁ କରି ଅଟକିଗଲା । ଅଦୂରରେ ବାହାରୁ କେହି ଆସିଲାଭଳି ଯୋତା ଖଡ଼ଖଡ଼ ଶବ୍ଦ ଶୁଭିଲା ଏବଂ ଟିକିଏ ପରେ କିଏ ଜଣେ ଡାକିବାର ଶୁଣାଗଲା, ସତୀଶବାବୁ !

ସତୀଶ ବୁଝି ପାରିଲା, ଇଏ ନିଶ୍ଚୟ ବିପିନ ଦଳ । ତାକୁ ଧରିବାକୁ ଆସିଚନ୍ତି । ଆଉ କୌଣସି କଥା ଭାବି ପାରିଲାନି ସେ—ବିବର୍ଣ୍ଣ ମୁଖରେ

ଫୁ କରି ଆଲୁଅ ଲିଭେଇ ଦେଇ ଶୋଇପଡ଼ିଲା । ନିକଟରେ ସାବଣୀ ବସିଥିବା ଅବସ୍ଥାରେ ବ୍ୟାକୁଳ ହୋଇ କହିଲା—ଇଏ କ'ଣ କଲ ?

ଘର ମୁହଁ ଉପରେ କବାଟ ସମ୍ମୁଖରେ ଦୁଇଟି ମୂର୍ତ୍ତି ଆସି ଠିଆ ହେଲେ । ଜଣେ କିଏ କହିଲା, ଏଇତ ସତ୍ତୀଶବାବୁଙ୍କ ଘର ।

ଆଉ ଜଣେ କହିଲା, ଶୁଣିଥିଲା ତ କହିଲ ବାବୁ ଘରେ ଅଛନ୍ତି ବୋଲି ।

ପ୍ରଥମ ଲୋକ ଜଣକ ରାଗରେ କହିଲା—କିରେ ଘର ଗୋଟାକଯାକ ତ ଅନ୍ଧକାର ! ଭଦ୍ରଲୋକେ କ'ଣ କେବେ ସନ୍ଧ୍ୟାବେଳେ ଘରେ ଥାଆନ୍ତି ?

ଦ୍ୱିତୀୟ ବ୍ୟକ୍ତି ଉତ୍ତରରେ କ'ଣ କିଛି ଅସ୍ପଷ୍ଟ ଭାବରେ କହି ପକେଟରୁ ଦିଆସିଲି ବାହାରକରି ଅନିଶ୍ଚିତ କମ୍ପିତ ହାତରେ ଆଲୁଅ ଜାଳିବାକୁ ପ୍ରସ୍ତୁତ ହେଲେ ।

ବିଛଣା ଉପରେ ସତ୍ତୀଶର ଦେହ ଗୋଟାକଯାକର ରକ୍ତ ଯେମିତି ପାଣି ପାଟିଗଲା । ସେ ବଲାତ୍ମ କମ୍ବଳ ଗୋଟାକଯାକ ଦେହରେ ମୁଣ୍ଡରୁ ଶେଷଯାଏଁ ଘୋଡ଼େଇ ଦେଲା ଏବଂ ଅନ୍ଧାରଟାରେ ଟେବୁଲ୍ ଉପରେ ସାବଣୀ ଲଜ୍ଜାରେ କାଠ ପାଲଟିଗଲା ପରି ବସି ରହିଲା ।

ଦିଆସିଲିକାଠି ଜଳି ଉଠିଲା ।—ଏ ଯେ ଏଠି ବସି ରହିଛି କିଏ ? ପ୍ରଥମ ବ୍ୟକ୍ତି ଘରେ ପଶି ଖୋଜାଖୋଜି କରି ଆଲୁଅ ଜଳାଇବା ମାତ୍ରେ ସାବତ୍ରୀ ଉଠି ଠିଆହେଲା ।

ଦ୍ୱିତୀୟ ବ୍ୟକ୍ତି ଟିକିଏ ଦୂରରେ ଠିଆହୋଇ ପଚାରିଲା—ସତ୍ତୀଶବାବୁ କୁଆଡ଼େ ?

ସାବଣୀ ନିଃଶବ୍ଦରେ ବିଛଣାଟିକି ଦେଖାଇଦେଇ ବାହାରକୁ ଚାଲିଗଲା । ସେ ଚାଲିଯିବା ମାତ୍ରେ ମାତାଲ ଦୁଇ ଜଣ ମୁହଁରେ ଅଟ୍ଟହାସ ଶୁଣାଗଲା । ସେହି ହସର ରୋଳ ଓ ଅର୍ଥ ସାବଣୀ କାନରେ ଯାଇ ପଡ଼ିଲା । ଇଆଡ଼େ କମ୍ବଳ ଭିତରେ ରହି ସତ୍ତୀଶ ମରଣ କାମନା କରି ଚାଲିଥାଏ ।

ସେମାନେ ସତ୍ତୀଶଙ୍କୁ ଟାଣି ନେଇଗଲେ । ଅଟ୍ଟହାସ ସେମିତି ଅବିଶ୍ରାନ୍ତ ଭାବରେ ଚାଲିଥାଏ । ସେ ଅଟ୍ଟହାସ ବଗିଚା ଭିତରେ ମିଳେଇ ଗଲା ପର୍ଯ୍ୟନ୍ତ ସାବଣୀ ଗୋଟିଏ ଅନ୍ଧାରୁଆ କୋଣରେ କାନ୍ଥ ଉପରେ ମୁଣ୍ଡ ରଖି ବଜ୍ରାହତ ଭଳି ଠିଆହୋଇ ରହିଥାଏ ।

କିନ୍ତୁ ବସାର କେହି କିଛି ଜାଣି ପାରିଲେ ନାହିଁ । ପୂଜାରୀମାନେ ଗଞ୍ଜେଇ ଟଣା ସାରି ଏଇ ଗଞ୍ଜେଇରେ କଉଚି ମଣିଷକୁ ମୋକ୍ଷଦାନ କରିବାର କ୍ଷମତା ରହିଛି, ସେଇ କଥାହିଁ ସେମାନେ ଉକ୍ତ ବେହାରୀଙ୍କୁ ବୁଝେଇବାରେ ବ୍ୟସ୍ତ ଏବଂ ପାଖଘରେ ରଖାଲ ବାବୁଙ୍କ ପଣାଟେଳାଳୀ ଦଳ ହାଉଁତଆଉଁ ପଣା ମଣିଷ ଡାକ ଶୁଣିବାକୁ ପାଏ କି ନା, ତାହାହିଁ ଭାବି ଗୁଲିଥିଲେ ।

ରାସ୍ତାଉପରକୁ ଆସି ତିନିଜଣଯାକ ଗୋଟିଏ ଗାଡ଼ିରେ ବସିଲେ । ସେମାନଙ୍କ ଉନ୍ମତ୍ତ ହସ ସହ୍ୟ କରି ନପାରି ସଙ୍ଗୀଣ ତୀକ୍ଷ୍ଣ ଭାବରେ କହିଲା, ହୁଏତ ଆପଣମାନେ ହସ ବନ୍ଦ କରନ୍ତୁ; ନଚେତ୍ ମତେ ମାଫ କରନ୍ତୁ, ମୁଁ ଗାଡ଼ିରୁ ଓହ୍ଲାଇଯିବି ।

ପ୍ରଥମ ବ୍ୟକ୍ତି 'ଆଚ୍ଛା' କହି ଭୟଙ୍କରଭାବେ ହସିଉଠିଲା ଏବଂ ତାର ବନ୍ଧୁ ଜଣକ ତାକୁ ଧମକ ଦେଇ ଆଉରେ ବନ୍ଦକର କହି ସିଏବି ଜୋରରେ ହସି ଉଠିଲା । ଏହି ମାତାଲ ଦୁଇଟା ସାଥିରେ ବାକ୍ୟବ୍ୟୟ ନିଷ୍ଫଳ ବୁଝି ସଙ୍ଗୀଣ ନିଷ୍ଫଳ କ୍ରୋଧରେ ମଟର ଝରକା ବାହାରେ ଚୁପ ଚାପ ଚକେଇ ରହିଲା ।

ସନ୍ଧ୍ୟାରେ ଅନ୍ଧକାର ବାରଣ୍ଡାରେ ସାବିତ୍ରୀ ଚୁପଚାପ୍ ବସି ରହିଥିଲା । ବୋଧହୁଏ ସନ୍ଧ୍ୟାର ସେଇ ଲଜ୍ଜାକର ଘଟଣା କଥାହିଁ ମନେ ମନେ ଆଲୋଚନା କରୁଥିଲା । ଏଭଳି ସମୟରେ ବେହାରୀ ଆସି ପହଞ୍ଚିଲା ଏବଂ ତାକୁ ଲକ୍ଷ୍ୟକରି କହିଲା, ମା, ସମସ୍ତେ ଖାଇପିଇ ସାରିଲେଣି, ପୂଜାରୀ ତମକୁ ଜଳଖିଆ କରିବାକୁ ଡାକୁଛନ୍ତି ।

ସାବିତ୍ରୀ ମୁହଁକୁ ଉଠେଇ ଅବସନ୍ନ ଭାବରେ କହିଲା, ମୁଁ ଆଜି ଖାଇବିନି ବେହାରୀ, କହିଦେ । ବେହାରୀ ସାବିତ୍ରୀକୁ ଟିକିଏ ଭଲ ସ୍ନେହ କରେ । ଚିନ୍ତିତ ହୋଇପଡ଼ି କହିଲା, ଖାଇବୁନି କାହିଁକି ମା, କଣ ଦେହ ଖରାପ ଅଛି ?

ନା, ଦେହ ଖରାପ ନାହିଁ ଯେ, କିନ୍ତୁ ଖାଇବାକୁ ଆଜି ଆଦୌ ଇଚ୍ଛା ହେଉନି । ତୁ ଯା ଖାଇପକା । ବେହାରୀ କହିଲା, ତେବେ ଚାଲ ତୁମକୁ ଘରେ ପହଞ୍ଚେଇ ଦେଇ ଆସେ ।

ସାବତ୍ରୀ କହିଲା, ଆଚ୍ଛା ଚାଲ । କିନ୍ତୁ ଗୋଟିଏ କଥା ଅଛି ବେହାରୀ; ସନ୍ତୋଷ ବାବୁ ଏପର୍ଯ୍ୟନ୍ତ ଫେରି ନାହାନ୍ତି, ତୁ ଚେଇଁ ରହି ପାରିବୁତ ?

ବେହାରୀ ଉଦ୍‌ବେଗ ସ୍ୱରରେ କହିଲା ମୁଁ ? ଶୋଇପଡ଼ିଲେ ମୋର ଅଣ୍ଟା ଧରିପକାଏ । ତେବେ କଣ ହେବ ବେହାରୀ ?

ବେହାରୀ କିଛି ସମୟ ଭାବି କହିଲା ପୂଜାରୀ ଗୋସେଇଁଙ୍କୁ କହିଦେଇ ଯା ।

ସାବତ୍ରୀ ସଙ୍ଗେ ସଙ୍ଗେ କହିଲା—ସେ କଥା ହେବନି ବେହାରୀ ବ୍ରାହ୍ମଣ ଗୋସାଇଁଙ୍କୁ ମୁଁ ଶୀତରେ ଏତେ କଷ୍ଟ ଦେଇ ପାରିବ ନାହିଁ ।

ଅନିଚ୍ଛାକ ବେହାରୀ କିଛି ସମୟ ନୀରବ ରହି କହିଲା—ହେଉ, ମୁଁ ଜଗି ରହିବି, ତେବେ ଚାଲ ତମକୁ ଛାଡ଼ିଦେଇ ଆସେ ।

ସାବତ୍ରୀ ଉଠି ଠିଆହେଲା । ପାଦେ ଦୁଇପାଦ ଅଗ୍ରସର ହୋଇ ଅଟକି ଯାଇ କହିଲା, ତୁ ଆଗ ଖାଇପକା ତାପରେ ଯିବା । ଘରେ ସେମିତି କାମନାହିଁ ।

ବେହାରୀ ଚାଲିଯିବା ପରେ ସାବତ୍ରୀ ସେଇଠିକି ଫେରିଆସି ବସିଲା ଏବଂ ଅନ୍ଧକାରର ଆକାଶ ଆଡ଼କୁ ଚାହିଁ ରହିଲା । ଆଜି ସନ୍ତୋଷ ସମ୍ବନ୍ଧରେ ତାର ଆଶଙ୍କା ଥିଲା ଯଥେଷ୍ଟ । ସେ ମାତାଲଗୁଡ଼ାକ ହାବୁଡ଼ରେ ପଡ଼ି ଯାଇଛି ଏ କଥା ସେ ଆଖିରେ ଦେଖି କୌଣସିମତେ ଘରକୁ ଫେରିବା ଲାଗି ଇଚ୍ଛା ହେଲାନି ତାର । ଯଦିଓ ପୂର୍ବାପୂର୍ବରୁ ସେ ନିର୍ବୁଦ୍ଧିର ନିଦାରୁଣ ଲାଞ୍ଛନାରେ ଜଳପୋଡ଼ି ଛଟପଟ ହୋଇ ସକାଳୁ ସକାଳୁ କାମ ସାରି ଦେବାଲାଗି ସ୍ଥିର କରିଥିଲା, କିନ୍ତୁ ଆଜି ରାତିଭଳି ଏହି ଲୋକଟିକୁ ମନେ ମନେ କ୍ଷମା ନକରି ତାର ଅବଶ୍ୟମ୍ଭାବୀ ଦୁର୍ଗତିର କୌଣସି ଗୋଟାଏ ଉପାୟ ନକରି ସେ କୌଣସି ରକମ ଘରକୁ ଫେରି ଆସିପାରିଲାନି ।

ବେହାରୀ ଖାଇପିଇ ସାରି ଆସିବାପରେ କହିଲା—ତୁ ଶୋଇ-ପଡ଼ ବେହାରୀ, ମୁଁ ଅଛି ।

ବେହାରୀ ଆଶ୍ଚର୍ଯ୍ୟ ହୋଇ କହିଲା—ତୁ କଣ ଘରକୁ ଯିବୁନି ? ବାବୁ ଫେରି ଆସନ୍ତୁ । ତାପରେ ମୋତେ କ'ଣ ଛାଡ଼ିଦେଇ ଆସି ପାରିବୁନି ?

କାହିଁକି ପାରିବନି ମା, ନିଶ୍ଚୟ ପାରିବ ।

ତାହାନହେଲେ ସେଇଆ ହେଉ । ତୁ ଯାଇ ଶୋଇବୁ, ମୁଁ ଚେଇଁ ରହୁଛି ।

ବେହାରା ଝିପିହୋଇ ଚାଲିଯିବା ପରେ ସାବିତ୍ରୀ ଦେହରେ ଗୋଟାଏ ର୍ୟାପର ଦେଇ ବସି ରହିଲା ।

ଏଇ ମାତାଲ ଦୃଶ୍ୟ ଯାହା ଆଖିରେ ଦେଖି ଯାଇଛନ୍ତି, ନିଶ୍ଚୟ ବାହାରେ ଯାଇ ସତୀଶବାବୁଙ୍କୁ ସେ ଥଟ୍ଟା ଚଗୁଲି କରୁଥିବେ, ଏ ବିଷୟରେ ତା ମନରେ ଯେପରି ଘୋର ସଂଶୟ ରହିଥିଲା, ସେହିଭଳି ଏହି ଘଟଣାର ବିଶ୍ରୀ ଅର୍ଥ ନେଇ କେହି କରିବେନ, ସେଥିରେ କୌଣସି ସନ୍ଦେହ ନଥିଲା ତାର । ବିପିନବାବୁ କି ଧରଣର ଲୋକ, ସାବିତ୍ରୀ ଭଲ ଭାବରେ ଜାଣେ । ସେ ଏକଥା ନିଶ୍ଚୟ ଶୁଣିବେ ଏବଂ ଏ ବସାରେ ତାଙ୍କର ଯେତେବେଳେ ଯିବାଆସିବା ରହିଛି, ସେତେବେଳେ କେହି ବଞ୍ଚିତ ରହିବେନି । ତାପରେ କେଉଁ ମୁହଁରେ ବା ସତୀଶବାବୁ ଏ ବସାରେ ରହିବେ ? ଏ ଅପମାନର ଲଜ୍ଜା କ'ଣ ସେ ସହ୍ୟ କରିପାରିବେ ? ହଠାତ୍ ଯାହା ଘଟିଗଲା, ତା ତ ଗଲା କଥା ଗଲା, ନିଜେ ସିନା ସବୁ ସମ୍ଭାଳି ଚୁପ ମାରି ରହିଯିବ, କିନ୍ତୁ ସତୀଶବାବୁ ?

କ୍ରମଶଃ ରାତି ବଢ଼ିବାକୁ ଲାଗିଲା । କିନ୍ତୁ ସତୀଶର ଦେଖା ନାହିଁ । ନିକଟେ କୌଣସି ପଡ଼ଶା ଅଡ଼ଶା ଘରର ବଡ଼ ଘଣ୍ଟାଟାରେ ଟଂ ଟଂ କରି ଦୁଇଟା ବାଜିଲା । ନିସ୍ତବ୍ଧ ଗମ୍ଭୀର ରାତ୍ରିରେ ତାହା ସୁସ୍ପଷ୍ଟ ଭାବରେ ସାବିତ୍ରୀ କାନରେ ପଡ଼ିଲା । କୋମଳ ଶୀତଳ ବାୟୁ ଖୋଲାଛାତ ଉପର ଦେଇ ତାର ଦୁଇଟି ଆଖିକି ନିଦରେ ଚାପି ଧରିବାକୁ ଚେଷ୍ଟା କଲା, ତଥାପି ସେ ଚେଇଁ ରହି ବାହାର ଦରଜା ଆଡ଼େ କାନ ଡେରି ରହିଲା । ଏହିଭଳି ତନ୍ଦ୍ରା-ଜଡ଼ିତ ଆଖିରେ ବସି ବସି ରହିବାପରେ ପାହାନ୍ତିଆର ଠିକ ପୂର୍ବରୁ ସେ ଶୁଣିବାକୁ ପାଇଲା ବାହାରେ ଗୋଟିଏ ଗାଡ଼ିର ଶବ୍ଦ । କାନପାତି ବୁଝି ପାରିଲା, ଗାଡ଼ିଟା ଆସି ଠିକ୍ ବସାଘର ଦୁଆରେ ଠିଆହେଲା । ସାବିତ୍ରୀ ଧୀରେ ଧୀରେ ନିଃଶବ୍ଦରେ ଆସି ଦୁଆର ପାଖରେ ସତର୍କ ହୋଇ ଠିଆ-ହେଲା । ପାଖରେ ହୁଏତ କେହି ଥିବେ, ସେଇ ଭୟରେ ଦୁଆର ଖୋଲି-ବାକୁ ସାହସ କଲାନି । ବିଳମ୍ବ ହେଲା, କେହିହେଲେ ଦୁଆର ବାଡ଼େଇ-ବାର ଶୁଣାଗଲା ନାହିଁ । ଯେଉଁ ଗାଡ଼ିଟି ଆସିଥିଲା, ସେଇଟି ଫେରିଗଲା । ହଠାତ୍ ସାବିତ୍ରୀ ଅଧୀରତା ଓ ଆଶଙ୍କାରେ ଜଲଦି ଦୁଆରଟାକୁ ଖୋଲି

ମକାଇଲା । ସମ୍ପଣ ବାହାରର ଚୌକାଠରେ ଆଉଜି ଆଖି ବୁଜି ବସି ରହିବ । ମାଂଶୁ ମୁଖ । ତାର ଲୁଗାପଟା ଗୁଡ଼ାକରେ କାଦୁଅ ଏବଂ କପାଳର ଗୋଟିଏ ଧାରରେ ରକ୍ତର ଧାର । ଅଧୂରବର୍ତ୍ତି ଘୋସ ଆଲୁଅରେ ସ୍ପଷ୍ଟ ଦେଖି, ସାବତ୍ରୀ ଅମୃ ଧରି ରହି ପାରିଲାନି, କାନ୍ଦି ପକେଇଲା । ଆଖି ପଲକରେ ସମ୍ପଣ ଆଗରେ ଆଣ୍ଠୁ ମାଡ଼ି ବସି ସମ୍ପଣ ମୁହଁକୁ ଟେକିଧରି କହିଲା, ବାବୁ, ଉପରକୁ ଚାଲ ।

ସମ୍ପଣ ମୁଣ୍ଡ ହଲେଇ କହିଲା, ନା, ବେଶ ଅଛୁ ।

ଏଇ ଯେ ଘଷ୍ଟା, ଘରକୁ ଚାଲନ୍ତୁ ।

ସମ୍ପଣ ପୁଣି ମୁଣ୍ଡଲାଡ଼ି କହିଲା, ନା, ଯିବନି, ବେଶ୍ ଏଠି ଅଛି ।

ସାବତ୍ରୀ ଧମକ ଦେଇ କହିଲା, ଉଠ କହୁଚି ।

ଧମକବାଣରେ ସମ୍ପଣ ରକ୍ତବର୍ଣ୍ଣବିହ୍ୱଳ ଚକ୍ଷୁରେ କିଛି ସମୟ ଚାହିଁ ରହି ସାବତ୍ରୀଆଡ଼କୁ ଦୁଇ ହାତ ବଢ଼େଇ କହିଲା, ତେବେ ଚାଲ ।

ସାବତ୍ରୀ କାନ୍ଧ ଉପରେ ଭର ଦେଇ ସମ୍ପଣ ଉଠି ଠିଆହେଲା ଏବଂ ସାବତ୍ରୀକୁ ଆଶ୍ରା କରି ବହୁ ବିଳମ୍ବରେ ଠିକି ଠିକି ଉପର ଘରେ ଆସି ଶୋଇପଡ଼ିଲା । ଜଡ଼ିତ କଣ୍ଠରେ କହିଲା, ସାବତ୍ରୀ ! ତୋର ଋଣ ମୁଁ କୌଣସି ଜନ୍ମରେ ସୁଦ୍ଧା ପରିଶୋଧ କରିପାରିବନି ।

ସାବତ୍ରୀ କହିଲା, ଆଚ୍ଛା, ତୁମେ ଶୋଇପଡ଼ ।

ସମ୍ପଣ ହଠାତ୍ ଉଠିପଡ଼ିଲା, କ'ଣ କହିଲୁ, ଶୋଇବି ? କେବେ ହେବନି ।

ପୁଣି ସାବତ୍ରୀ ଧମକ ଦେଇ କହିଲା, ପୁଣି ଥରେ ହେଇ କହ ! କହୁଚି ଶୁଅ ।

ସମ୍ପଣ ଶୋଇ ପଡ଼ିଲା । କିଛି ସମୟ ଚୁପ୍ ରହି କହିଲା, କିନ୍ତୁ ତୋର ଧାର—

ସାବତ୍ରୀ "ଆଚ୍ଛା" କହି ଉଠିଆସିଲା । କିଛିସମୟ ପରେ ଆଲୁଅ ଲଗେଇ କ୍ଷତ ପରୀକ୍ଷା କରି ଧୋଉ ଧୋଉ କହିଲା, କୁଉଠି ପଡ଼ିଗଲ ନା କ'ଣ ?

ସତୀଶ ମୁଣ୍ଡ ହଲେଇ କହିଲା—ନା, ସତ୍ୟନ ତ !

ସାବିତ୍ରୀ ସଜଳ କଣ୍ଠରେ କହିଲା ଆଉ କେବେ ସବୁ ମଦ ଖାଅ କହି ରଖୁଛ ମୋ ମ ଗୋଡ଼ତଳେ ମୁଣ୍ଡ ବାନ୍ଧେଇ ବାନ୍ଧେଇ ମରମିବ ।

ସତୀଶ ସତେଙ୍କ ସଙ୍ଗେ କହିଲା, ଶପଥ କରୁଛି; ଆଉ କେବେ ଖାଇବିନି ।

ମୋ ରାଣ ଛୁଇଁ କୁହ—କହି ସାବିତ୍ରୀ ତାର ଡାହାଣ ହାତକୁ ବଢ଼େଇଦେଲା ।

ସତୀଶ ନିଜ ଦୁଇ ହାତରେ ତାର ଜଳସିକ୍ତ ଶୀତଳ ହାତଟିକୁ ଟାଣିନେଇ କହିଲା, ତୋ ରାଣ ଛୁଇଁ କହୁଚି, କେବେ ଖାଇବିନି ।

ସାବିତ୍ରୀ ହାତକୁ ଟାଣି ନେଇ କହିଲା, କ'ଣ ମନେ ରହିବ ?

ନ ରହିଲେ, ତୁ ମନେ ପକେଇଦେବୁ ।

ଆଚ୍ଛା, ମୁଁ ଯାଉଚି କି, ତୁମେ ଶୋଇପଡ଼ । ସାବିତ୍ରୀ ନିଃଶବ୍ଦରେ କବାଟ ବନ୍ଦ କରିଦେଇ ବାହାରେ ଆସି ଠିଆହେଲା । ଆକାଶରେ ସେତେବେଳେ ଶୁକ୍ରତାରା ଦପ୍ ଦପ୍ ହୋଇ ଜଳୁଥାଏ । ସେଇ ଆଡ଼କୁ ଅନେଇ ସାବିତ୍ରୀ ହାତଯୋଡ଼ି କାନ୍ଦି କାନ୍ଦି କହିଲା, ଭଗବାନ ! ତୁମେ ସାକ୍ଷୀ ଥାଅ !

ରାତିର ଅନ୍ଧକାର ସେତେବେଳକୁ ସ୍ୱଚ୍ଛ ହୋଇ ଆସିଥାଏ । ଇଆଡ଼େ ଉପରେ ରାସ୍ତା ବଳଦ ଗାଡ଼ିର ଶବ୍ଦ । ସିଆଡ଼େ ମଇଦା କଳର ବଂଶୀର ଶବ୍ଦ ଆସି କାନରେ ବାଜୁଥାଏ । ସାବିତ୍ରୀ ଶୀଘ୍ର ଶୀଘ୍ର ଉପରୁ ତଳକୁ ନଇଁ ଆସି ଚୋରେଇ ଘରେ ଶୋଇପଡ଼ିଲା । କ୍ଷଣକେ ପରେ ତା ଆଖିରେ ନିଦ ମାଡ଼ି ଆସିଲା ।

## ଫୁଁର

ସକାଳ ବେଳା, ଦଶଟା । ଗାଧୁଆ ଗାଧୋଇ ଶେଷ କରି ଦିବାକର ସତୀଶଦାର ଆଗରେ ଠିଆହୋଇ ଡାକ ପକେଇଲା ପ୍ରକାଶ, ଶୀଘ୍ର ଶୀଘ୍ର ଖାଇ ବାଢ଼, ବହୁତ ବେଳ ହୋଇଗଲାଣି ।

ପାଖରେ ଭଣ୍ଡାର ଘର । ତାର ପାଟି ଶୁଣି ମାମୁଁ ଝିଅ ବଡ଼ଭଉଣୀ ମାହେଶ୍ୱରୀ ବାହାରକୁ ଆସି କହିଲା, ଆରେ ଏ ଏଁବୁ, ତୋର ପେଟଁ ଅପେକ୍ଷା କରି ବସିଚି । ଗାଧୁଆ ତ ସରିଲାଣି, ଉପରକୁ ଯାଇ ଦଅଁ ପୂଜା ସାରି ଦେଇ ଆସ । ସବୁ ଯୋଗାଡ଼ ଦେଇ ଆସିଚି, ଘଇଣ୍ଟା ପଡ଼ି, ଟିକଏ ପୂଜା କରି ଦେ ।

ମହେଶ୍ୱରୀ ଏ ଘର ବଡ଼ଝିଅ ଓ ଗୃହିଣୀ । ଗୃହବର୍ଷ ହେଲା ବିଧବା ହୋଇ ଯାଇ ବାପା ଘରକୁ ଚାଲିଆସିଚି ।

ଦିବାକର ସ୍ତମ୍ଭିତ ହୋଇପଡ଼ିଲା । କିଛି ସମୟ ଚୁପ ରହି କହିଲା, ମୁଁ ପାରିବନି ଦିଦି । ଆଜି ମୋର କଲେଜର ପ୍ରଥମ ପିରିଅଡ଼, ନଗଲେ ପଢ଼ା ନଷ୍ଟ ହୋଇଯିବ ।

ମହେଶ୍ୱରୀ ହସି ହସି କହିଲା, କ'ଣ ରେ ତୋର ପ୍ରଥମ ପିରିଅଡ ନଷ୍ଟ ହୋଇଯିବ ବୋଲି କ'ଣ ଦଅଁ ଅପୂଜା ରହିଯିବେ ?

ଦିବାକର କହିଲା, ମଝିଆ ଭାଇଙ୍କୁ ଟିକିଏ କୁହ, ଆଜି ତାଙ୍କର କଚେରି ବନ୍ଦ ।

ମହେଶ୍ୱରୀ କହିଲା, ଧୀରେନର କାଲିଠୁ ଦିହ ଭଲ ନାହିଁ, ସେ ତ ଗାଧୋଇବନି, ପୂଜା କିମିତି କରିବ ?

ଦିବାକର ପୁଣି ପ୍ରଶ୍ନ କଲା—କାହିଁକି ଭଟ୍ଟାଚାର୍ଯ୍ୟ ମହାଶୟ; ସିଏତ ଅଛନ୍ତି ।

ମହେଶ୍ୱରୀ କହିଲା—ସେ ବାପାଙ୍କ ପାଖରେ ପଶା ଖେଳରେ ବ୍ୟସ୍ତ, ଖେଳ ଯେ କେତେବେଳେ ସରିବ ଠିକ୍ ନାହିଁ ।

ତେବେ ସାନ ଭାଇନାଙ୍କୁ କହ । ସେ ତ ସେଇ ବାରଟା ପରେ ଯାଇ ଅଦାଲତକୁ ଯାଆନ୍ତି । ବହୁତ ସମୟ ଅଛି ।

ମହେଶ୍ୱରୀ ବିରକ୍ତ ହୋଇ କହିଲା—କ'ଣ ଯେ ଯୁକ୍ତିତର୍କ କରୁଚୁ ଦିବା; ତାର କ'ଣ କିଛି ଠିକଣା ଅଛି ? କାଲି ରାତିରେ ଜପାନ୍ ଥିଏଟର ଦେଖିବାକୁ ଯାଇଥିଲା, ଏପର୍ଯ୍ୟନ୍ତ ଉଠିନି । ଏତେବେଳ ହେଲା ଉଠିନି, ମୁହଁ ଧୋଇନି; ଚାହା ଖାଇନି । ରାତି ଅନିଦ୍ରା ରହି କ'ଣ ତାର ଦେହ ଭଲ ଥିବ ? ତା ଛଡ଼ା କ'ଣ କେବେ ପୂଜାପୂଜି କରେ ନା କରିବ ?

ଇଆଡ଼େ ପୂଜାରୀ ଭାତ ବାଢ଼ି ଦେଇ ଡାକ ପକାଉଚି । ଦିବାକର କହିଲା, କୌଣସି ନା କୌଣସି ଗୋଟାଏ କାମରେ ବନ୍ଧୁ ଆସି ମୋର ସବୁଦିନ ପ୍ରଥମ ପରିଅଡ଼ଟା ନଷ୍ଟ । ପରୀକ୍ଷା କିମିତି ଦେବି କହିଲୁ ?

ମହେଶ୍ୱରୀ ସେତେବେଳକୁ ରାଗି ଉଠିଥାଏ । କହିଲା— ପରୀକ୍ଷା ନଦେଲେ ଚଳେ, କିନ୍ତୁ ଦିଅଁ ପୂଜା ରୋଜ ନକଲେ ନଚଳେ । ଠିଆ-ହୋଇ ତୋ ସାଥିରେ ତର୍କ ବିତର୍କ କରିବାକୁ ମୋର ସମୟ ନାହିଁ--ବହୁତ କାମପଡ଼ି ରହିଚି ।

ପୂଜାରୀ ଡାକ ପକାଇ କହିଲା—ଦିବାବାବୁ, ଭାତ ଦେଇ ଠିଆ ହୋଇ ରହିଚି, ଶୀଘ୍ର ଆସନ୍ତୁ ନା ।

ମହେଶ୍ୱରୀ ତା ପ୍ରତି ତର୍ଜନ କରି କହିଲେ, ତୁମର କୌଣସି ଅକଲ ନାହିଁ ଦେଖୁଚି । ମୁଁ ତାକୁ ପୂଜା କରିବାକୁ ପଠଉଚି; ତୁମେ କ'ଣ ନା ଡାକ ଛୁଡ଼ଉଚ, ଭାତ ଖାଇବ ଆସ । ଭାତ ଥାଳୀ ଲୁଚେଇ ନେଇଆସ; ପୂଜାସାରି ଆସିବ; ତା ପରେ ସାଇ ଖାଇବାକୁ ହେବ— ଆଦେଶ ଦେଇ ମହେଶ୍ୱରୀ ଗମ୍ଭୀର ଘର ଭିତରକୁ ପଶି ଆସିଲେ । ଘରେ ନାରାୟଣ-ଶିଳା ପ୍ରତିଷ୍ଠିତ । ନିଇତି ପୂଜା କରିବା ପାଇଁ ଜଣେ ବ୍ରାହ୍ମଣ ପୁରୋହିତ ବି ଅଛନ୍ତି । ସେ ଘରେ ରହନ୍ତି । କିନ୍ତୁ ଘରର ମୁରବୀ ବାପା ଶିବ-ପ୍ରସାଦଙ୍କ ଭକ୍ତି ତାଙ୍କର ବି ପଶାଖେଳରେ ଝୁଙ୍କ ଖୁବ ବେଶୀ । ଶିବପ୍ରସାଦ କିଛି ଦିନ ହେଲା ଚାକିରୀରୁ ପେନସନ୍ ଗ୍ରହଣ କରି ତାଙ୍କର ପଶ୍ଚିମାଞ୍ଚଳରେ ଥିବା ବଗିଚା ଘରେ ରହିଚନ୍ତି । ସକାଳେ ଗୁଡ଼ା, ପାନ ଖିଆ ସରିବାପରେ ଡାକ ପଡ଼େ ପୁରୋହିତ ମହାଶୟଙ୍କୁ । ଡାକ ଛୁଡ଼ନ୍ତି—"ଆରେ ଏ ଭୃତ୍ୟ, ଭଟ୍ଟାଚାର୍ଯ୍ୟ ମହାଶୟଙ୍କୁ ଡାକିଲୁ । ଗୋଟାଏ ଦାନ ହେଲେ ଆଜି ପକେଇ ଦେବା । ପରେ ଏକ ଦାନ ଦୁଇ ଦାନ ଖେଳୁ ଖେଳୁ ବେଳ ବଢ଼ିଯାଏ । ପୁରୋହିତଙ୍କୁ ପୂଜା କରିବା ଲାଗି ସମୟ ମିଳେନା । ମଝିରେ ମଝିରେ ପୂଜା ଲାଗି ତାଗିଦ କରି ମହେଶ୍ୱରୀ ଚାକରକୁ ପଠାନ୍ତି; କିନ୍ତୁ ହେଇ ଉଠୁଚୁ କହି କହି ଆଉ ଉଠିବା ହୁଏନା । ପୂଜା ସମୟ ଯେ କେତେବେଳୁ ଅତିବାହିତ ହୋଇଯାଏ କାହାରି ହୋସ ରହେନା । କେତେଦିନ ହେଲା ବାପାଙ୍କ ଦେହ ଭଲ ନାହିଁ, କିନ୍ତୁ ଖେଳିବାକୁ ଭଲ ପାଉଚନ୍ତି ଜାଣି ମହେଶ୍ୱରୀ ଆଉ ପୁରୋହିତଙ୍କୁ ଡ଼କେଇ ପଠାନ୍ତିନ । ମୁକ୍ତ ତାକୁଦେଇ କିବା ଦିବାକରକୁ କହି ପୂଜା କରେଇ ନଅନ୍ତି ।

ସକାଳେ ଖାଇବାର ଅଭ୍ୟାସ ଏବଂ ସମସ୍ତ ବ୍ୟବହାରର ନ ଥିଲା । ପ୍ରତିଦିନ ସକାଳେ ତାକୁ ଗୃହର ଝରକା ବଜାରକୁ ଯିବାକୁ ହେଉଥାଏ । ଆଜ ସିଏ କୌଣସିମତେ ବଜାରରୁ ଫେରି, ନଚାଇଁ ମାତ୍ର ଖାଇବାକୁ ଯାଉଥିଲା ।

ବ୍ୟବହାର ପୂଜା କରିବାକୁ ଗଲା । କିନ୍ତୁ ଆସନରେ ବସି ଭାବିବାକୁ ଲାଗିଲା । ଘରଦ୍ୱାରରେ ଆସି ରହିବାର ଏଇ ସୁଖ ! ଯଦ୍ୟପି ତାର ଭଲ କରି ଜ୍ଞାନ ହେବା ପରଠାରୁ ସେ ପର ଘରେ ରହିଆସିଛି ଏବଂ ବହୁ ଦୁଃଖ ତାର ଅଭ୍ୟାସରେ ପଡ଼ିଯାଇଛି, ତଥାପି ସଣିଷର ଯେଉଁ ଜିନିଷଟି କୌଣସି ଦୁଃଖରେ ବି ମରେନା—ସେଇ ଭବିଷ୍ୟତର ଆଶା, ଆଘାତ ପାଇ ... ର ଯେମିତି କଡ଼ ଲେଉଟେଇ ମୁଣ୍ଡ ଟେକି ଉଠିଛି । ରାଗରେ ତାର ସର୍ବାଙ୍ଗ ଜଳି ଉଠୁଥିଲା । ଖଟୁଲି ଉପରୁ ଶାଳଗ୍ରାମଗୁଡ଼ିକୁ ଆଣି ତାମ୍ରକୁଣ୍ଡ (କଣ୍ଠା) ବିହନରେ ଥୋଇଲା ଏବଂ ବିନା ମନ୍ତ୍ରରେ ସେଇଁ ଗୁଡ଼ିକ ଉପରେ ପାଣି ଛିଞ୍ଚିଦେଇ ଭିଜା ଭିଜା ଅବସ୍ଥାରେ ନେଇ ସବୁଗୁଡ଼ିକୁ ଖଟୁଲି ଉପରେ ରଖିଲା । ଫୁଲ ଦେବା, ତୁଳସୀପତ୍ର ସଜେଇବା, ଘଣ୍ଟି ବଜେଇବା ଇତ୍ୟାଦି ହାତର କାମଗୁଡ଼ାକ ଅଭ୍ୟାସଗତ ଭାବରେ ଚାଲିଲା ସତ; କିନ୍ତୁ ବିଦ୍ୱେଷର ଜ୍ୱାଳାରେ ଭିତରେ ତାର ଗୋଟିଏ ହେଲେ ମନ୍ତ୍ର ଆବୃତ୍ତି ହେଲାନି ।

ଏହିଭଳି ପୂଜାର ତାମସା ଶେଷ କରି ସେ ଯେତେବେଳେ ଉଠି ଠିଆହେଲା, ସେତେବେଳେ ତାର ମନେ ହେଲା, ପୂଜା ତ ଆଦୌ ହେଲାନି, କ'ଣ ସେ ପୁଣି ଫେରିଯିବ, ଏ ଦ୍ୱିଧା ତା ମନରେ ଜାଗ୍ରତ ହେଲା ସତ; କିନ୍ତୁ ସେତିକିବେଳେ ତାର ମନେହେଲା କଲେଜର ପ୍ରଥମ ଘଣ୍ଟାଅଡ଼ ଶେଷ ହୋଇଯାଇଥିବ, ସେ କୌଣସି ଆଡ଼କୁ ନ ଚାହିଁ, ଦ୍ରୁତପାଦରେ ସିଡ଼ିଦେଇ ତଳକୁ ଖସି ଆସିଲା । ସିଧା ବାହାରକୁ ଚାଲିଗଲା । ମହେଶ୍ୱରୀ ଗମ୍ଭୀର ଘର ଭିତରକୁ ଦେଖିବାକୁ ଯାଇ ଡାକି କହିଲେ— ଖାଇ ଗଲୁନି ଯେ !

ନା, ସମୟ ନାହିଁ ।

ମହେଶ୍ୱରୀ କହିଲେ—ତାହା ହେଲେ କଲେଜରୁ ଟିକିଏ ଶୀଘ୍ର ଚାଲିଆସିବୁ । ଆରେ ଏ ପୂଜାରୀ, ବ୍ୟବହାରବାକୁ ପାଇଁ ସବୁ ଠିକ୍ କରି ରଖିଥିବ ।

ଦିବାକର ଉତ୍ତର ନ ଦେଇ ଚାଲିଗଲା । ତାର ବାହାରର ଶ୍ରେଷ୍ଠ ଉଚ୍ଛ୍ୱାସଟି ଭିତରକୁ ଆସି ଲାଗି ଗିଲି ଗିଲି ଆଖିରୁ ତାର ପାଣି ବାହାରି ଆସିଲା ।

ମାମନାର ବୈଠକଖାନାରୁ ସେତେବେଳେ ବି ତାଶ ଖେଳର ହୁଙ୍କାର ଶୁଣାଯାଉଥିଲା । ହଠାତ୍ ଦ୍ୱାର ପାଖରେ ଶବ୍ଦ ଶୁଣି ଦିବାକର ପଛକୁ ଫେରି ଦେଖିଲା, ଚାକରାଣୀ ଠିଆହୋଇ ରହିଛି । ସଙ୍ଗେ ସଙ୍ଗେ ସାର୍ଟ କନାରେ ମୁହଁଟାକୁ ପୋଛି ନେଇ ପଚାରିଲା—କ'ଣ କଲେ ?

—ଶ୍ରେଷ୍ଠ ସାଆନ୍ତାଣୀ ଡାକୁଛନ୍ତି ।

—ଯାଉଛି, ତୁ ଯା ।

ଚାକରାଣୀ ଚାଲିଯିବା ପରେ ଦିବାକର ଶ୍ରେଷ୍ଠ ଟାଇମ୍‌ପିସ୍‌ଟା ଆଡ଼କୁ ଚାହିଁ କିଛି ସମୟ ଇତସ୍ତତଃ ହୋଇ ବାଁ ହାତରେ ଧରିଥିବା ବହି-ଗୁଡ଼ାକ ରଖିଦେଲା । ପୁଣି ଥରେ ଆଖିଟାକୁ ପୋଛିପକେଇ ଭିତରକୁ ଫେରିଗଲା ।

ଦିବାକରକୁ ଡକେଇ ପଠେଇ ସୁରବାଳା ନିଜ ଘର ଆଗରେ ଅପେକ୍ଷା କରି ରହିଥିଲା । ଦିବାକର ପାଖକୁ ଆସି କହିଲା, କ'ଣ କି ?

ସୁରବାଳା ପ୍ରକାଶ୍ୟରେ କିଛି କହେନାହିଁ, ଅନ୍ତରାଳରୁ ଯାହା ହେଲେ କହେ । ମୁଣ୍ଡର ଓଢ଼ଣାଟା ଆଉ ଟିକିଏ ଟାଣିନେଇ କହିଲା—ଘର ଭିତରକୁ ଆସ, କାମ ଅଛି । କହି ଘରକୁ ପଶିଆସି ଦେଖାଇ ଦେଲା—ଟେବୁଲ ଉପରେ ଆସନ ପଡ଼ିଛି, ତା ଉପରେ ଏକ ଗ୍ଲାସ ଦୁଧ । ପ୍ଲେଟ ଦେହରେ ଗୋଟିଏ ସନ୍ଦେଶ—ଦେଖେଇ ଦେଇ କହିଲା—ଖାଇଦେଇ ସ୍କୁଲକୁ ଯାଅ ।

ଦିବାକର କୌଣସି କଥା ନ କହି, ଖାଇ ବସିଲା ।

ଟିକିଏ ଦୂରରେ ସାନ ଭାଇନା ଉପେନ୍ଦ୍ରନାଥ ଶୋଇଥାଆନ୍ତି—ଦିବାକର ଖାଇସାରି ଚାଲିଯିବା ମାତ୍ରେ, ମୁଣ୍ଡକୁ ଉଠେଇ ସ୍ତ୍ରୀକୁ ଡାକ କହିଲେ—ଇଏ ପୁଣି କ'ଣ ?

ସୁରବାଳା ଖାଇବା ଜାଗାଟିକୁ ପରିଷ୍କାର କରି ନେଇଥିଲା, ଚମକି ଉଠି ପଚାରିଲା—ତୁମେ ଜେଗିଛ ନା କ'ଣ ?

"ଦଶଟା ଘଣ୍ଟା ! ଏଗାରଟା ପର୍ଯ୍ୟନ୍ତ କୋଉ ମଣିଷ ଘୁମେଇ ପାରେ ?"

ସୁରବାଳା ହସି ହସି କହିଲା—ତୁମେ ସବୁ ପାର । ନହିଲେ କ'ଣ ମଣିଷ ଏଗାରଟା ପର୍ଯ୍ୟନ୍ତ ଶେଯରେ ପଡ଼ି ରହିପାରେ ?

ଉପେନ୍ଦ୍ର କହିଲା—ସମସ୍ତେ ପାରନ୍ତିନି କିନ୍ତୁ ମୁଁ ପାରେ । ତାର କାରଣ ହେଉଚି, ଶୋଇ ରହିବାଠୁ ବଳି ସଂସାରରେ ଆଉ କୌଣସି ଭଲ ଜିନିଷ ଅଛି ବୋଲି ମୋର ମନେ ହୁଏନା । ସେ ଯାହାହେଉ— ଦିବାକର ?

ସୁରବାଳା କହିଲା—ଦିବାକର ରାଗରେ ନ ଖାଇ କଲେଜକୁ ଚାଲି ଯାଉଥିଲେ, ସେଇଥି ପାଇଁ ଉଠେଇ ପଠେଇଲି ।

—କାରଣ ?

ସୁରବାଳା କହିଲା—ରାଗ ହେବା ସ୍ୱାଭାବିକ । ବଚରାକର ପଢ଼ିବା- ପାଇଁ ତ ଜଲେ ହେଲେ ସମୟ ନାହିଁ । ସକାଳୁ ବଜାରରୁ ଫେରି, ପୁଣି ବାଡ଼ି ପୂଜା । କୋଉ କୋଉ ଦିନ ଏଗାରଟା, ବାରଟା ବାଜି ଯାଉଚି । କୁହ ତ ଦେଖି, କେତେବେଳେ ବା ଖାଇବେ, କେତେବେଳେ ବା ପଢ଼ିବାକୁ ଯିବେ ?

—ଠିକ୍ କଥାଟା ବୁଝିପାରୁନି । ଭଟ୍ଟାଚାର୍ଯ୍ୟ ମହାଶୟଙ୍କର କ'ଣ ଜର ହୋଇଚି ?

—ଜର ହେବ କାହିଁକି ? ବାପାଙ୍କ ସାଙ୍ଗରେ ପଶାଖେଳ ଚାଲିଚି । ଆଉ ତାଙ୍କର ବା ଦୋଷ କ'ଣ ? ବାପା ଡାକି ପଠେଇଲେ, ନାହିଁ ବୋଲି କହି ପାରିବେନି ।

ଉପେନ୍ଦ୍ର କହିଲା—ହୁଏତ ସେତକ ପାରିବେନି; କିନ୍ତୁ ଚାକର ସାଥିରେ ବଜାର ସଉଦା ତ କରିପାରନ୍ତେ ।

ସୁରବାଳା କହିଲା—କେତେଟା ଦିନ ସଉକରେ ଯାଇଥିଲେ । କିନ୍ତୁ ତା ପରେ ଦିବାକରଙ୍କୁ ବରାବର ଯିବାକୁ ପଡ଼ିଲା ।

'ହୁଁ',କହି ଉପେନ୍ଦ୍ର କଡ଼ ଲେଉଟାଇବା ମାତ୍ରେ, ସୁରବାଳା କହି ଉଠିଲା— ଉଠିବନି କି, କଡ଼ ଲେଉଟେଇଲଣି ଯେ ।

ଉପେନ୍ଦ୍ର ଚୁପ କରି ଆଉ କିଛି ସମୟ ଶେଯରେ ପଡ଼ି ରହିବା ପରେ ଉଠି ବସିଲା ଏବଂ ତୁନିତାନି ବାହାରକୁ ଚାଲିଗଲା ।

ସେଦିନ ବିଅଁ ପୂଜା ହେଲାନି । ସେଇ କଥା ଭାବି ଭାବି ଦିବାକର ଅପ୍ରସନ୍ନ ମୁଖରେ ଧୀରେ ଧୀରେ କଲେଜକୁ ଚାଲିଗଲା । ଘରେ ଏଇ ଟିକିକ ଭିତରେ ଏତେ କଥା ଘଟିଗଲା, ସେ କଥା ତା ମନରେ ନ ଥିଲା । ସେ ଖାଲି ଭାବୁଥିଲା,ବିଅଁ ଅପୂଜା ରହିଲେ । ଅନେକ ଦିନ ଅନେକ ଅସୁବିଧା ସତ୍ତ୍ୱେ, ସେ ଏ କାମଟିରେ କେବେ ଅବହେଳା କରେନା, କରିବା କଥା ମଧ୍ୟ କୌଣସି ଦିନ ମନରେ ଉଦୟ ହୋଇନି । ବିଶେଷ କରି ଏହି କାରଣରୁହିଁ ସେ ଆଜିକା କଥା ଭାବି ଭାବି ମନରେ ଦୁଃଖ ଅନୁଭବ କଲା । ଯଦିବା ଯୁକ୍ତିତର୍କଦ୍ୱାରା ମନକୁ ବାରମ୍ବାର ସାନ୍ତ୍ୱନା ଦେବାକୁ ଲାଗିଲା ଯେ, ଭଗବାନ ଗୋଟିଏ ମାତ୍ର ସ୍ଥାନରେ ଆବଦ୍ଧ ନୁହନ୍ତି, ତେଣୁ ଗୋଟିଏ ସ୍ଥାନରେ ଭୋଗ ନ ଛୁଟିଲେ ମଧ୍ୟ ଅନ୍ୟ ସ୍ଥାନରେ ଭୋଗ ପାଉଥିବେ । ତଥାପି ତାର ସେଇ ଯେ ଅଭୁକ୍ତ ଦେବତାଟି ତାର ଅର୍ଘ୍ୟ ପୂଜ୍ୟ ଏବଂ ଭୋଗରୁ ବଞ୍ଚିତ ହୋଇ ବିମୁଖରେ ସିଂହାସନରେ ବସି ରହିଲେ, ତାର ପ୍ରତିହିଂସାର ଆଶଙ୍କା ତା ମନରୁ କୌଣସିମତେ ଦୂର ହେଲାନି ।

କଲେଜରେ ଯାଇ ଶୁଣିଲା, ପ୍ରଫେସର ଅସୁସ୍ଥ; ତେଣୁ ପ୍ରଥମ ପିରିଅଡ଼ କ୍ଲାସ ହୋଇନି । ଦିବାକରର ମନରେ ଖୁସି । ପରୀକ୍ଷା ନିକଟେଇ ଆସୁଚି, ପିଲାଏ ହାଜର୍ ହିସାବ ଲାଗି କଲେଜ କିରାଣୀ ପାଖରେ ଯାଇ ରୁଣ୍ଡ । ଉପସ୍ଥିତି ପକାଅ ବୋଲି ପାଟିଛୁଣ୍ଡି । ଦିବାକର ମଧ୍ୟ ଯାଇ ସେଇଠି ହାଜର । କିନ୍ତୁ ଅଫିସର ପାଖକୁ ଆସି ବିଅଁ ପୂଜା ନ କରି ଆସିଚି, ଏକଥା ସ୍ମରଣ କରିବା ମାତ୍ରେ, ତାର ଗୋଡ଼ ଅଟକି ଗଲା ।

ଜଣେ କିଏ ପଚାରିଲା—କିରେ ଆସୁନୁ, ଠିଆ ହେଲୁ କାହିଁକି ?

ଦିବାକର ସଂକ୍ଷେପରେ ଉତ୍ତର ଦେଲା—ଆଜିକି ଥାଉ ।

—ଆଜିକି ଥାଉ ? କାହିଁକିରେ ? ଯାହା ହେବ, ଆଜି ହେବ ।

'ନା ଥାଉ' କହି, ସେ ଫେରି ଆସିଲା । ହାଜର୍ ଦେବା ସମ୍ବନ୍ଧରେ ତା ମନରେ ଯଥେଷ୍ଟ ସନ୍ଦେହ ରହିଥିଲା । ସେ ସନ୍ଦେହର ମୀମାଂସା କରିବାର ସାହସ ଆଜି ପାଇଁ ତାର କୌଣସିମତେ ହେଲା ନା ।

ନ ଖାଇ ଆସିଥିଲେ ମଧ୍ୟ ଘରକୁ ଫେରିବାର ବିଶେଷ କିଛି ଦରକାର ବୋଲି ସେ ମନେ କରୁନଥିଲା । ନାନା କାରଣରୁ ତାକୁ ଭୋକ

ନେଉ ନ ଥିଲେ । ଛୁଟି ପରେ, କଲେଜ ଫାଟକ ପାଖରେ ଆସି ଦେଖିଲା, ତାଙ୍କର ବି. ଏ. କ୍ଲାସର ପିଲାଏ ଏକାଠି ମିଶି ମାଟିଭୁଣ୍ଡ କୋଳାହଳ କରୁଚନ୍ତି । ଦିବାକର ଅନ୍ୟଆଡ଼କୁ ମୁହଁ ଫେରେଇ ଚାଲିଆସିଲା—ଗଙ୍ଗାନଦୀ ଆଡ଼କୁ ପଡ଼ିଥିବା ରାସ୍ତାରେ । ଘାଟର ଦକ୍ଷିଣପଟେ କଙ୍କାଳ ଭଳି ପଡ଼ି ରହିଚି । ଦିନେ ଯେ ଏହି କୋଠାର ଦେହ ଥିଲା, ମନ ଥିଲା, ପ୍ରାଣ ଥିଲା, ସ୍ଥାନେ ସ୍ଥାନେ ଇଟାର ଭଗ୍ନସ୍ତୂପଗୁଡ଼ାକ ସେଇ କଥାର ପ୍ରମାଣ ଦିଅନ୍ତି । କେବେ, କିଏ ବନେଇଥିଲା, କିଏ ଆସି ଏଠି ବସେ, କିଏ ସ୍ନାନ କରେ. ତାର କୌଣସି ସାକ୍ଷ୍ୟ କୌଣସିଠି ନାହିଁ । ଶୀତଳ ଶୀର୍ଣ୍ଣ ଗଙ୍ଗା ସେଇଠି ମ୍ଳାନ ହୋଇ ଅବଶ୍ରାନ୍ତ ଭାବରେ ସମୁଦ୍ର ଆଡ଼କୁ ଚାଲିଚି । କୂଳ ଦେଶରେ ଯେଉଁ ବୃକ୍ଷଗୁଡ଼ିକ ସୂର୍ଯ୍ୟର ଉତ୍ତାପ ଓ ଗଙ୍ଗାର ଶୀତଳବାୟୁ ସେବନ କରୁଚନ୍ତି । ତାରି ଗୋଟିଏ ଧାରେ ଦେଇ ଦିବାକର ଗଙ୍ଗା କୂଳରେ ଆସି ଠିଆହେଲା । ଗୋଟିଏ ଆଡ଼େ ପଡ଼ିଥିବା ଗୋଟିଏ ଇଟାଗଦା ଉପରେ ଯୋତା କାଢ଼ି ରଖିଲା । କମିଜ ଖୋଲି ଦେଇ ବହିଗୁଡ଼ାକ ତାରି ଉପରେ ଥୁଆ ଦେଲା । ତାପରେ ପାଣି ପାଖକୁ ଯାଇ ଗୋଡ଼ ହାତ ଧୋଇ ଗଙ୍ଗାଜଳ ମନ୍ତ୍ରରେ ଛିଞ୍ଚି ଅଦ୍ଭୁତ ବ୍ରହ୍ମ ଦେବତାଙ୍କୁ ସ୍ମରଣ କଲା । ମୂଳରୁ ଶେଷଯାଏ, ସମସ୍ତ ମନ୍ତ୍ର ସାବଧାନତା ସହକାରେ ଆବୃତ୍ତି କରି ପ୍ରଣାମ କରି ଉଠିବା ମାତ୍ରେ ସେ ଅନୁଭବ କଲା, ଯେମିତି ତାର ହୃଦୟପୁରର ଅନେକ ଉତ୍ସାହ ହୋଇ ପଡ଼ିଚି । ଯୋତା, କାମିଜ ପିନ୍ଧି ବହି ଧରି ଗଳିଟିକୁ ଫେରି-ରତ ରତ ସମୟ । ହିନ୍ଦୁସ୍ଥାନୀ ସ୍ତ୍ରୀ ଲୋକେ ସେତେବେଳକୁ ମୁଣ୍ଡରେ ମାଟିବାଲ ନେଉଥାନ୍ତି ।

ପାଞ୍ଚ

ସୁରବାଳାର ବାପା ଠିକାଦାରୀ କାମରେ ବିପୁଳ ସମ୍ପତ୍ତି ଅର୍ଜନ କରି ତାଙ୍କର ବକ୍ସାର ଘରେ ରହୁଥାଆନ୍ତି । ସେମାନେ ଦୁଇ ଭଉଣୀ । ସୁରବାଳା ବଡ଼, ଶଚୀ ସ୍ଥେଟ । ତାର ବିବାହ ହୋଇନି, ବାପଘରେ ଥାଏ ।

ବାହାରରେ ସୁରବାଳାର ଡାକ ନାଁ ଥିଲା—ପଶୁପତି ! କେବଳ ବାପା ଏ ନାଁ ଟି ଦେଇଥିଲେ । ପଶୁପକ୍ଷୀଙ୍କୁ ପୋଷିବା ସୁରବାଳାର ବଡ଼ ସଉକ । କୁକୁର, ବିରାଡ଼ି, ଧଳା ମୂଷା, ଶୁଆଶାରୀ ତାରି ଆଶ୍ରୟରେ ଶ୍ରୀବୃଦ୍ଧି ଲାଭ କରି ଚାଲିଲେ । ସବୁରି ଉପରେ ସମାନ ସ୍ନେହ ମମତା । ବାପାଙ୍କୁ ଦେଲେ ସେଗୁଡ଼ିକ ଲାଗି ସେ କେତେ ନ କାନ୍ଦନ୍ତି ! ଯାହା ହେଉ ସୁରବାଳା ଆସିବା ପରେ ଶଚୀର ସ୍ନେହ ଆଦରରେ ସେଗୁଡ଼ିକ ଭଲ ଅଛନ୍ତି । ସୁରବାଳାର ଏ ସବୁ ବିବରଣୀ ମହେନ୍ଦ୍ର ଜାଣି ଥିବାରୁ, ସେ. ଡାକ ନାଁ ଟି ଏଠାରେ ପ୍ରଚଳିତ । ଯେଉଁମାନେ ବୟସରେ ବଡ଼, ସେମାନେ କେବଳ 'ପଶୁ' ବୋଲି ଡାକନ୍ତି, ଦାସ ଦାସୀମାନେ କଏ ବା 'ପଶୁ ସାଆନ୍ତାଣୀ', କେହି କେହି ସାନ ସାଆନ୍ତାଣୀ ବୋଲି ଡାକନ୍ତି ।

କାମଦାମ ସାରି ସେଦିନ ଘରକୁ ଆସିଲାବେଳକୁ ବହୁତ ରାତି ହୋଇଯାଇଥାଏ । ଉପେନ୍ଦ୍ର କହିଲା—ପଶୁ, ତୁମ ବାପା ଶଚୀ ଲାଗି ବରପାତ୍ର ଠିକ୍ କରି ଦେବା ପାଇଁ ମୋତେ ତାଗିଦ କରି ଚିଠି ଲେଖିଛନ୍ତି । ଶଚୀ ତୁମଠୁ କେତେ ବଡ଼ ଜାଣ ତ ?

—ବଡ଼ ଭଉଣୀ ହୋଇ ଏତକ ଜାଣିନ ? ମୋର କୋଳରେ ଗୋଟିଏ ଭାଇ ହୋଇ ଅନ୍ତୁଡ଼ିଶାଳରେ ମରିଯାଇଥିଲା—ତା ପରେ ଶଚୀ । ଗୀତା ହେଲେ, ମୋଠୁ ପ୍ରାୟ ସାତବର୍ଷ ବଡ଼ ।

—ଏ ହିସାବରେ ଦେଖିଲେ, ଶଚୀର ବୟସ ବାର କି ତେର !

—ହଁ, ସେଯା ହେବ ! ରୋଗିଣୀଟା ବୋଲି ଏତେଦିନ ଯାଏଁ ବାହା ନହୋଇ ରହିଛି । ମୋ ଭଳି ବଡ଼ହା ହୋଇଥିଲେ, ଭାରି ବିପଦ ହୋଇ ଥାଆନ୍ତା !

ଉପେନ୍ଦ୍ର ହସି ଉଠିଲା, କହିଲା—ବିପଦ ଆଉ କ'ଣ ? ବାପାଙ୍କର ତ ଟଙ୍କାର ଅଭାବ ନାହିଁ । ଏହି ଜିନିଷ ଥିଲେ, ସବୁ ଜିନିଷ ସୁଲଭ ହୁଏ । ତୁମ ବେଳକୁ ମୁଁ ଯେମିତି ଉପରେ ପଡ଼ିଥିଲି, ସେଭଳି ଉପରେ ପଡ଼ିବା ଭଳି ଲୋକ ତ ସଂସାରରେ କମ୍ ନାହାଁନ୍ତି ।

ସୁରବାଳା କହି ଉଠିଲା—ତୁମେ କ'ଣ ବାପାଙ୍କ ଟଙ୍କା ଦେଖି ଯାଇଥିଲ ?

—ନା, କହିଲେ ତୁମ ପାଖରେ ମୋର ସମ୍ମାନଟା ବଢ଼ନ୍ତା; କିନ୍ତୁ ମିଛ କଥାଟା କହିବାକୁ ଜିଭ ଲେଉଟୁନି ।

—କିନ୍ତୁ ଯାହା କହିଲ, ସେଇଟା ଯେ ମିଛ ।

—ମିଛ କଥା କୋଉଥିପାଇଁ ?

—ମିଛ ବୋଲି କହିବାଟାହିଁ ମିଛକଥା । ତୁମେ ଯାହା ମଣୁଛକେ କୁହ, କିନ୍ତୁ ବାପାଙ୍କ ଟଙ୍କା ଦେଖି ଯେ ତୁମେ ଯାଉନା, ଏକଥା ନିଶ୍ଚୟ ସ୍ୱୀକାର କରିବ । ବାପାଙ୍କ ଟଙ୍କା ଥାଉ ବା ନ ଥାଉ, ତୁମକୁ ଯିବାକୁହିଁ ପଡ଼ନ୍ତା । ମୁଁ ଯେଉଁଠି, ଯେଉଁ ଘରେ ଜନ୍ମିଥାଆନ୍ତି ନା କାହିଁକି, ତୁମକୁ ସେଇଠିକି ଯିବାକୁ ପଡ଼ିଥାଆନ୍ତା, ବୁଝି ପାରୁଚ ?

ଉପେନ୍ଦ୍ର ନିଜକୁ ଟିକିଏ ଗମ୍ଭୀର କରି ନେଇ କହିଲା—କଥାଟା ବୁଝି ପାରୁଚି । କିନ୍ତୁ ଧର ତୁମେ ଯଦି କାୟସ୍ଥ ଘରେ ଜନ୍ମିଥାଆନ୍ତ ।

ସୁରବାଳା ଖିଲ୍ ଖିଲ୍ ହସି ଉଠିଲା, କହିଲା—ବେଶ୍ ଯାହା ହଉନା ତୁମେ ! ବ୍ରାହ୍ମଣ ଘର ଝିଅ, କ'ଣ କେବେ କାୟସ୍ଥ ଘରେ ଜନ୍ମି-ପାରେ ? ଏଇ ବୁଦ୍ଧିରେ ତୁମେ ଓକିଲାତି କରନା ?

ଉପେନ୍ଦ୍ର ଅଧିକ ଗମ୍ଭୀର ସ୍ୱରରେ କହିଲା—ସତ କଥା । ବୋଧ-ହୁଏ ସେଇଥିପାଇଁ ରୋଜଗାର ହେଉନି ।

ସୁରବାଳା ନିଜ କଥାରେ ବ୍ୟଥିତ ହୋଇ ସାନ୍ତ୍ୱନା ସ୍ୱରରେ କହିଲା -ରୋଜଗାର ହେବନି,ଖୁବ୍ ହେବ । ହୁଏତ ଟିକିଏ ଡେରି ହୋଇ-ପାରେ, ଏଇତ ! କିନ୍ତୁ ତା ବୋଲି ତୁମର ରୋଜଗାର ଦରକାର ବା କଣ ? ହସି ହସି କହିଲା—ବାରଟାରୁ ଚାରିଟା ପର୍ଯ୍ୟନ୍ତ ମୋ ସାମନାରେ ହାଜର ଥିଲେ ତ, ମୁଁ ତୁମକୁ ପାଞ୍ଚଶ ଟଙ୍କା କରି ଦେଇ ପାରିବ । ବାପା ତ ମତେ ମାସକୁ ମାସ ଅଢ଼େଇଶ ଟଙ୍କା କରି ଦିଅନ୍ତି, ଦରକାର ପଡ଼ିଲେ ଆଉ ଅଢ଼େଇଶ ପଠାଇବା ପାଇଁ କହିବି ।

ଉପେନ୍ଦ୍ର କହିଲା—ଧର ମୁଁ ତାକୁ ନେଲି କିନ୍ତୁ ମତେ କ'ଣ କରିବାକୁ ହେବ କୁହ । ବାରଟାରୁ ଚାରିଟା ପର୍ଯ୍ୟନ୍ତ ତୁମ ଆଗରେ ଠିଆ ହୋଇ ରହିବାକୁ ପଡ଼ିବ, ଏଇ ତ ?

ସୁରବାଳା କହିଲା—ହଁ । ଯଦି ଏତେ ସମୟ ଠିଆହୋଇ ରହିପାରିବନି, ତାହା ହେଲେ ବସିପଡ଼ିବ ।

ସୁରବାଳା ମୁହଁକୁ ଟେକି କହିଲା—କିନ୍ତୁ ଶୋଇ ପାରିବନି । ବସିବ ନଚେତ ଠିଆହେବ । ଏଇ ସର୍ତ୍ତ ! ହାକିମ ପାଖରେ ଫାଙ୍କି କରିଲେ, ଫାଇନ୍ ହୋଇଯିବ ।

—ଫାଇନ୍ ଦେଇ ନ ପାରିଲେ ?

ଅଟକ ରହିବାକୁ ପଡ଼ିବ । ଘରଟାରୁ ବାହାରକୁ ଯାଇ ପାରିବନି, ବୁଝିଚ ।

ଉପେନ୍ଦ୍ର ମୁଣ୍ଡକୁ ଝାଡ଼ି କହିଲା—ନା, ମୁଁ ବୁଝିନି କାହିଁକି, ବୁଝୁଚି । ଦେଖୁଚି ହାକିମ ଘର କଡ଼ା । ଶୃଙ୍ଖଳା ବଜାୟ ରଖି ପାରିଲେ ହେଲା ।

ସୁରବାଳା ତାର ଦୁଇଟି କୋମଳ ବାହୁରେ କଣ୍ଠବେଷ୍ଟନ କରି କହିଲା—କଡ଼ା ନୁହେଁ ମ କଡ଼ା ନୁହେଁ । ଶୃଙ୍ଖଳା ନଷ୍ଟହୁ ବଜାୟ ରହିବ, ଗୋଟିଏ ଦିନ ପରୀକ୍ଷା କରି ଦେଖନା ! କିଛି ସମୟ ପରେ ସୁରବାଳା ନିଜକୁ ମୁକ୍ତ କରି ପଚାରିଲା—ବାବାଙ୍କ ଚିଠିର ଜବାବ ଦେବ ?

ଉପେନ୍ଦ୍ର କହିଲା—ଖୋଜା ଖୋଜି କିଛି ଦରକାର ନାହିଁ, ପାପ ଆପେ ଆପେ ହାଜର ହେବ, ଏଇ କଥା ଲେଖିବ ।

—ଛିଃ, ଇଏ କି କଥା ମ ? ବାବାଙ୍କ ସାଥିରେ କ'ଣ ତୁମର ଥଟ୍ଟା ଚଳେ ?

—ଏତେ ସମୟ ପର୍ଯ୍ୟନ୍ତ ତୁମେ କ'ଣ ମୋ ସାଙ୍ଗରେ ଥଟ୍ଟା କରୁଥିଲ ?

ସୁରବାଳା ଅପ୍ରସ୍ତୁତ ହୋଇ କହିଲା—ଦେଖ, ଥଟ୍ଟା ଆନନ୍ଦୀ କରନି, କିନ୍ତୁ ବାବାଙ୍କ ପାଖକୁ ଏଭଳି ଚିଠି ଲେଖିବାର ଦରକାର ନାହିଁ । ସତେ ମୋର ତ ବିଶ୍ୱାସ, ଶରୀର ପାପ ଠିକ୍ ହୋଇ ରହିଚି, ତା ଛଡ଼ା ଅନ୍ୟ ବାଟ ନାହିଁ; କିନ୍ତୁ ତୁମ ମୁହଁରୁ ଏକଥା ଶୁଣିଲେ ବାବା ରାଗିବେ ।

ଉପେନ୍ଦ୍ର ଟିକିଏ ହସି ଦେଇ କହିଲା—ସତେରେ କହୁଚି ଶରୀର ପାପ ଠିକ୍ ହୋଇ ରହିଚି, ସେ ପାପକୁ ତୁମେ ଜାଣ, ମୁଁ ବି ଜାଣେ ।

ସୁରବାଳା ଉତ୍‌କଣ୍ଠିତ ହୋଇ ପଚାରିଲା—କିଏ କୁହ ତ ?

ଉପେନ୍ଦ୍ର କହିଲା—ଏବେ କହିବିନି । ସବୁ ଠିକ୍ କରିଦେଇ, ତା ପରେ ତୁମକୁ କହିବି ।

ସୁରବାଳା କିଛି ସମୟ ନୀରବ ରହି କହିଲା—ଆଚ୍ଛା ହେଉ ! କିନ୍ତୁ ଗୋଟିଏ କଥା ତୁମକୁ କହି ରଖୁଚି—ଶରୀର ଟିକିଏ ଦୋଷ ଅଛି, ସେଇ ଦୋଷ ଟିକକ ଗୋପନ ରଖି ପାପ ସ୍ଥିର କରିବା ଉଚିତ ମନେ କରୁନି । ତାହାର କିଛି ଭଲ ହେବନି ।

ଉପେନ୍ଦ୍ର ଉଦ୍‌ବିଗ୍ନ ହୋଇ ପ୍ରଶ୍ନକଲା—ଦୋଷ ଆଉ କ'ଣ ?

ସୁରବାଳା କହିଲା—ବାବାଙ୍କର ଇଚ୍ଛା ବୋଧହୁଏ, ଏହି ଟିକକ ଦୋଷ ଗୋପନ ରଖିବା । ଶଚୀ ଲେଖାପଢ଼ା ସବୁଥିରେ ଉତ୍ତମ । ବାପାଙ୍କର ମଧ୍ୟ ଅନେକ ଟଙ୍କା ଅଛି, କିନ୍ତୁ ଶଚୀକୁ କ'ଣ ତୁମେ ଭଲ କରି ଦେଖିନ ?

ଉପେନ୍ଦ୍ର କହିଲା—ଦେଖିଚି; କିନ୍ତୁ ଭଲ କରି ଦେଖିବାର ସାହସ ?

—ତୁମ ଗୋଡ଼ତଳେ ପଡ଼ୁଚି । ଆଗେ ମୋ କଥା ଶୁଣ, ତା' ପରେ ଯାହା ଖୁସି କୁହ ପଛେ । ତୁମେ ତ ଜାଣ, ଶଚୀ ପିଲାଟି ବହୁତ ରୋଗା । ଦୁଇ ତିନିଥର ମରୁ ମରୁ ବଞ୍ଚିଚି । ପରେ ତାର ଦେହ ଭଲ ହୋଇଉଠିଲା, କିନ୍ତୁ ଗୋଡ଼ ବଇଠା ଫୁଲି ଉଠିଲା । ଡାକ୍ତର ଅପରେସନ କରି ତାକୁ ବଞ୍ଚେଇଲେ କିନ୍ତୁ ଗୋଡ଼ ଆଉ ସିଧା ହେଲାନି । ସେଇ ଦିନଠୁ ଟିକିଏ ଟେଙ୍ଗେଇ ଟେଙ୍ଗେଇ ଚାଲେ । ଡାକ୍ତର କହିଚନ୍ତି, ବୟସ ହେଲେ ସିଧା ଚାଲି ପାରିବ; କିନ୍ତୁ ଏ ଆଶ୍ୱାସନା ଉପରେ ବିଶ୍ୱାସ କରି କିଏ କ'ଣ ବିବାହ କରିବ ? ଯିଏ ଭଲ ପିଲା, ତାକୁ ନିଶ୍ଚୟ ଭଲ ପିଲା ଜୁଟିବ । ଜାଣିଶୁଣି ଶଚୀଭଳି ଝିଅକୁ ବିବାହ କରିବାକୁ ଯେ କୌଣସି ପିଲା ମନା କରିବା ସ୍ୱାଭାବିକ । ଆଉ ଯିଏ କେବଳ ଟଙ୍କା ଲୋଭରେ ବିବାହ କରିବ, ସେ ତ ନିଶ୍ଚୟ ଅସତ୍ ପାତ୍ର ।

ଉପେନ୍ଦ୍ର ଧୀରସ୍ଥିର ଭାବରେ ଶୁଣି କହିଲା—ମୁଁ ତ ଶଚୀକୁ ବହୁଥର ଦେଖିଚି କିନ୍ତୁ ନୋଟେଇ ଟେଙ୍ଗେଇ ଚାଲିବାର ତ କେବେ ଦେଖିନି ।

ସୁରବାଳା ମୃଦୁହସା ଦେଇ କହିଲା—ପୁରୁଷ ଲୋକେ କ'ଣ କିଛି ଦେଖିବାକୁ ପାଆନ୍ତି ! କିନ୍ତୁ ଝିଅମାନଙ୍କ ଆଖିକୁ ତ ଫାଙ୍କି ଦେଇ ହେବନି । ନିମିଷକ ଭିତରେ ତାଙ୍କ ଆଖିରେ ସବୁ ଧରାପଡ଼ିଯାଏ ।

ଉପେନ୍ଦ୍ର କହିଲା—କିନ୍ତୁ ଶଚୀର ତ କୌଣସି ଝିଅ ସହିତ ବିବାହ ହେବନି; ତେଣୁ ଝିଅମାନଙ୍କ ଆଖିକି ବା ସେ ଭୟ କରିବ କାହିଁକି ?

—ସେ କି କଥା ! କେ ଠକି ବିବାହ ଦେବାକୁ ଇଚ୍ଛା ଥିଲେ, ଟେରା, କଣା ଝିଅକୁ ମଧ୍ୟ ବିବାହ କରେଇ ଦିଆଯାଇ ପାରେ, କିନ୍ତୁ ପରେ ?"

ଉପେନ୍ଦ୍ର ଭାବୁଥିଲା, ତେଣୁ କିଛି ଉତ୍ତର ଦେଲାନି । ସୁରବାଳା ପୁଣି ଥରେ କହିଲା—ଗତ ପୂଜା ସମୟରେ ଆମର ବକ୍ସାରଠାରେ, ଠିକ ଏଇ ରକମ କଥାବାର୍ତ୍ତା ହୋଇଥିଲା । ପିଉସୀନାନୀ ଓ ମା' ଦୁହେଁଯାକ ମିଶି କହୁଥିଲେ ଯେ, ବିବାହ ପୂର୍ବରୁ ଏସବୁ କଥାର ଆଲୋଚନା ଦରକାର ନାହିଁ । ବିବାହ ହାଇ ସାରିଲା ପରେ ଜୁଆଇଁଙ୍କି କହି ଦେଲେ ଚଳିବ ।

ଉପେନ୍ଦ୍ର କହିଲା—ବେଶ୍ ତ ।

—ବେଶ୍ କ'ଣ କହୁଚ ମ      ମୁଁ କହୁଚ, ଶାସ୍ତ୍ର ନଣନ୍ଦଙ୍କୁ ବାଦଦେଇ ଖାଲି ଜୁଆଇଁ ମାନିଗଲେ ଚଳିବନି । ଶଚୀର ଯିଏ ବର ହେବ, ସେ ତାକୁ ଭଲପାଇ ପାରେ; କିନ୍ତୁ ଭୁଲାରେ ଗୋଟାଏ ଦୋଷ ଦେଖି ପ୍ରଥମରୁ ତାକୁ ହତାଦର କଲେ ତ କୌଣସି ଦିନ ସେମାନେ ଘର-ସଂସାର କରି ପାରିବେନି ।

ଉପେନ୍ଦ୍ର କହିଲା—ପାରିବେ, ନିଶ୍ଚୟ ପାରିବେ । କାହିଁକ ନା, ଦିବାକର ତୁମ ଭଉଣୀକୁ ହତାଦର କରିବନି, ତୁମେ କମ୍ଭା ନାନୀ କେହି ଶଚୀକୁ ଗଞ୍ଜଣା ଦେଇ ପାରିବନି ।

ଏକଥା ଶୁଣି, ସୁରବାଳା ଅବାକ୍ । ବହୁକାଳ ସ୍ଥିର ନିଶ୍ଚଳ ଅବସ୍ଥାରେ ବସିରହି କହିଲା—ତେବେ କ'ଣ ଦିବାକର ସହିତ ଶଚୀର···

ଉପେନ୍ଦ୍ର କହିଲା—      କ କ'ଣ ହେଲା କ ?

—କିନ୍ତୁ ବାବା ତ ରାଜି ହେବେନି ।

—କାହିଁକ ?

—ତାଙ୍କର ମା, ବା     ନାହାନ୍ତି, ଘରଦ୍ୱାର ନାହିଁ—ଏକବାରେ କିଛି ନାହିଁ ଯେ ।

ଉପେନ୍ଦ୍ର ସଙ୍କେଷପରେ କହିଲା—କାହିଁକ, ମୁଁ ତ ଅଛି ।

—ତେବେ ବି ବାପା ରାଜି ହେବେନି !

ଉପେନ୍ଦ୍ର କହିଲା—ଅସଲ କଥା ହେଉଚି, ତୁମେ ରାଜି ନୁହଁ ।

ସୁରବାଳା ଚୁପ୍ ।

ଉପେନ୍ଦ୍ର କିଛି ସମୟ ନୀରବ ରହି, ହଠାତ୍ କଡ଼ ଲେଉଟାଇ ଶୁଖିଲା ଶୁଖିଲା ନୀରସ ଗଳାରେ କହିଲା—ରାତି ବହୁତ ହେଲାଣି, ଏଥର ଶୁଅ ।

ସେଦିନ ରାତିରେ ସୁରବାଳା ବହୁ ସମୟ ପର୍ଯ୍ୟନ୍ତ ଚେଇଁ ରହିଲା । ହଠାତ୍ ସେ ଯେତେବେଳେ ଜାଣିପାରିଲା ଯେ ସ୍ୱାମୀ ନିର୍ବିଘ୍ନରେ ଶୋଇ-ପଡ଼ିଲେଣି, ଯେତେବେଳେ ତାର ଦୁଇ ଚକ୍ଷୁ ଦେଇ ତପ୍ତଅଶ୍ରୁ ଉଚ୍ଛ୍ୱସିତ ହୋଇ ଉଠିଲା । ସ୍ୱାମୀର ଅସୀମ ସ୍ନେହରେ ସେ ସନ୍ଦିହାନ ନୁହେଁ, କିନ୍ତୁ କାନ୍ଦି କାନ୍ଦି ସେ ଏଇ କଥାହିଁ ଭାବିବାକୁ ଲାଗିଲା ଯେ ଏଇ ସାତ ଆଠ ବର୍ଷ ଧରି ଘନିଷ୍ଠ ମିଳନ ସତ୍ତ୍ୱେ, ସେ ଏ ଲୋକଟାର ଆଦି ଅନ୍ତ କିଛି ହେଲେ ପାଇପାରିଲା ନାହିଁ । ପ୍ରଥମେ ପ୍ରଥମେ ସେ ଅନେକ ଥର ମନେ କରିଛି ଯେ ଏଇ ଖାମଖିଆଲ ଲୋକଟାର ମିଜାସରେ କିଛି ହେଲେ ନାହିଁ । କେତେ-ବେଳେ କି କାରଣରୁ ଯେ ଇଏ ରାଗି ଉଠନ୍ତି, ଜାଣିବା ବା ବୁଝିବାର ଜୋ ତାର ନାହିଁ, କିନ୍ତୁ ପରେ ସେ ପରିଷ୍କାର ବୁଝିଥିଲା ଯେ ତାକୁ ସମ୍ପୂର୍ଣ୍ଣ ବୁଝିବାଭଳି କ୍ଷମତା ତାର କୌଣସି ଦିନ ହେଉ ବା ନ ହେଉ ତାଙ୍କର କୌଣସି କାମ ଅହେତୁକ ବା ଅନିଶ୍ଚିତ ପ୍ରକୃତିର ଲୋକଙ୍କ ଭଳି ନୁହେଁ । ସେଇଥିଲାଗି ଏଇ ଦୁର୍ବୋଧ ସ୍ୱାମୀଟି ନେଇ ତାର ବଡ଼ ଭୟ ଓ ଚିନ୍ତା । ଯେତେବେଳେ ହେଲେ ଖୋଞ୍ଚା ଖାଇ ସେ ମନରେ ଏଇ ଦୁଃଖ କରିଥାଏ ଯେ, ଭଗବାନ ଯଦି ତାର ଭାଗ୍ୟ ଏଭଳି କଲେ, ଏଇ ଭାଗ୍ୟକୁ ମାନି ଚଳିବାଭଳି ବୁଦ୍ଧି ଦେଲେନି କାହିଁକି ? ଆଜି ମଧ୍ୟ ମନେ ମନେ ଏଇ କଥା ଭାବି ଭାବି, କାରଣ କ'ଣ ମନ ଭିତରେ ଯେତିକି ସେ ଖୋଜିବାରେ ଲାଗିଲା, ସେତିକି ନିଜ ଭିତରେ କୌଣସି ଦୋଷ ନ ଦେଇ ବଡ଼ ହତାଶ ହୋଇପଡ଼ିଲା । ଭଉଣୀ ସମ୍ବନ୍ଧରେ ଭଉଣୀର ଏହି ସ୍ୱାଭାବିକ ଆଶଙ୍କା କେଉଁ କାରଣରୁ ଯେ ଦୋଷାବହ, ଏଇ କଥା ସେ କୌଣସିମତେ ଭାବି ପାରିଲାନି ।

ବାହାରେ ଶୀତଦିନିଆ ସୁଦୀର୍ଘ ରାତି ସେମିତି ସ୍ତବ୍ଧ, ନିସ୍ତବ୍ଧ । ଖାଲି କେତେହେଲେ ଜଣାଇ ଦେଉଥାଏ କଚଣ ଘଣ୍ଟା ।

## ଛଅ

ତା ଆରଦିନ ଅପରାହ୍ନରେ ମହେଶ୍ୱରୀ ବାହାରକୁ ଆସିଲେ । ଉପେନ୍ଦ୍ର ଘର ଭିତର ଖଟୁଲି ଉପରେ ଯାଇ ବସିଲା । ମହେଶ୍ୱରୀ କହିଲେ—ମହିଆଁ ବୋଉ, ଉପେନ୍ଦ୍ର ବସିବ ଆସନଟା ପକେଇ ଦେ ।

ଉପେନ୍ଦ୍ର କହିଲା—ଆସନ ପକା ଆଉ ନାହିଁ । ଆଗେ ଶୁଣ, ମୁଁ ତମେ ଗୋଟେ କଥା କହିବାକୁ ଆସିଛି ।

ଶୁଣିବା ଲାଗି ମହେଶ୍ୱରୀ ଉପେନ୍ଦ୍ର ମୁହଁ ଆଡ଼କୁ ଚାହିଁ ରହିଲେ ।

ଉପେନ୍ଦ୍ର କହିଲା—ଶଶୁର ଶଚୀ ପାଇଁ ପାତ୍ର ଠିକ୍ କରିବାକୁ ପଅରଦିନ ଗୋଟାଏ ଚିଠି ଦେଇଚନ୍ତି । ତୁ ତାଙ୍କ ଘରକଥା ଯେତେ ଜାଣୁ; ତା'ଠୁ ବେଶୀ ଆମେ କେହି ଜାଣୁନା । ତେଣୁ ପଚାରୁଚି, ଶଚୀ ଦିହରେ କ'ଣ କିଛି ଦୋଷ ଅଛି ?

ମହେଶ୍ୱରୀ ସ୍ୱାମୀଙ୍କ ଭଗ୍ନସ୍ୱାସ୍ଥ୍ୟ ନେଇ ଜୀବନର ଶେଷ କେତେ ବର୍ଷ ସେ ବକ୍ସାରରେ ପ୍ରାକ୍ଟିସ କରୁଥିଲେ । ସେଇଠି ଥିଲାବେଳେ ସୁରବାଳା ବାପାଙ୍କର ଗୋଟାଏ ଘର ଭଡ଼ା ନେଇ ପାଖାପାଖି ରହୁଥିଲେ । ଫଳରେ ଉଭୟ ପରିବାର ମଧ୍ୟରେ ଖୁବ୍ ଘନିଷ୍ଠତା ଦେଖାଦେଇଥିଲା । ସୁରବାଳାର ବିବାହ ପ୍ରସଙ୍ଗ ମଧ୍ୟସ୍ଥି ନିଜେ ମହେଶ୍ୱରୀ କରିଥିଲେ । ତେଣୁ ମହେଶ୍ୱରୀ କିଛି ସମୟ ଉପେନ୍ଦ୍ର ମୁହଁକୁ ଚାହିଁରହି କହିଲେ—ପଣ୍ଟୁ କ'ଣ କହୁଚି ? (ମହେଶ୍ୱରୀ ସୁରବାଳାକୁ ପଣ୍ଟୁ ବୋଲି ଡାକନ୍ତି ।)

—ସିଏ କହୁଚି, ଶଚୀ ଟିକିଏ ଖୁଣ୍ଟୀ ।

ମହେଶ୍ୱରୀ ଅଳ୍ପ ହସି ଦେଇ କହିଲେ—ଖୁଣ୍ଟୀ ନୁହେଁ ମ । ପିଲାଦିନେ ଅପରେଶନ ହେବାରୁ ବାଁ ଗୋଡ଼ଟା ଟିକିଏ ଟାଣିହୋଇ ପଡ଼ୁଥିଲା, କିନ୍ତୁ ଏତେଦିନ ହେଲା, ବୋଧହୁଏ ସେ ଦୋଷ ଆଉ ନ ଥିବ ।

—ଆଉ କିଛି ଦୋଷ ନାହିଁ ତ ?

—ନା ।

--ଶୁଣୁଚି, ଶଶୁରଙ୍କର ଅଗାଧ ସମ୍ପତ୍ତି, ତୋର କଣ ମନେ-ହେଉଚି ନାନି ?

—ମୁଁ ଯେତେଦୂର ଜାଣେ, ସେଯା ।

ଉପେନ୍ଦ୍ର ସେତେବେଳକୁ ଆଉ ଟିକିଏ ପାଖକୁ ଲାଗିଆସି ଟିକିଏ ଗମ୍ଭୀର ହୋଇ କହିଲା—ତେବେ ଦେତେ ଗୋଟିଏ କଥା ପଗ୍ଭରେ ମାରେ ନାନି ? ଶଚୀ, ସୁରବାଳା ଦୁଇ ଭଉଣୀ ତ ତାଙ୍କ ବାପାଙ୍କ ଅନ୍ତେ ହେବେ ସମ୍ପତ୍ତିର ମାଲିକ । ତେଣୁ ଏତେ ସମ୍ପତ୍ତି ଅନ୍ୟ ହାତରେ ସମର୍ପି ଦେବା ତ ମୂର୍ଖତା ହେବ ।

ମହେଶ୍ୱରୀ କହିଲେ—ସେ କଥା ତ ଜାଣେ; କିନ୍ତୁ ଉପାୟ କ'ଣ କହି ହସିଦେଲେ ।

ଉପେନ୍ଦ୍ର ହସି କହିଲା—ହସ କଥା କିଛି ନାହିଁ ନାନି, ପଶୁ ହୁଏତ ରାଗିଯିବ, ସେଇଥିପାଇଁ ଏକଥା କହିନି । ମୁଁ ବଡ଼ା କଥା ଭାବୁଥିଲି ।

ଶୁଣିବା ମାତ୍ରେ ମହେଶ୍ୱରୀଙ୍କ ମୁହଁ କଳା ପଡ଼ିଗଲା । ସେ ବଡ଼ାକରକୁ ଦେଖି ପାରନ୍ତିନି । ଉପେନ୍ଦ୍ର ଦୃଷ୍ଟି ଅତି ତୀକ୍ଷ୍ଣ । ନାନୀଙ୍କ ମୁହଁରୁ ଯଥେଷ୍ଟ ବିରକ୍ତିର ଆଭାସ ପାଇ ମଧ୍ୟ ସେ ପଗ୍ଭରିଲା—କ'ଣ କହୁଚୁ ନାନି ?

ମହେଶ୍ୱରୀ ମୁଣ୍ଡ ନୁଆଇଁ ଛଳନା କରି ଭାତ ଦେଖୁଥିଲେ । ମୁହଁକୁ ଉଠେଇ ହସ ଫୁଟେଇ କହିଲେ—ବେଶ୍ ଭଲ ହେବ ।

ଉପେନ୍ଦ୍ର କହିଲା—ଖାଲି ଭଲ ହେବ, ବେଶ ଭଲ ହେବ କହି-ଦେଲେ ତ ଚଳିବନି, ଏ କାମ ପୂରାପୂରି ତୋର । ପଶୁର ବିବାହ ତୋର ଜିଦ୍‌ଆରେ, ତୋରି ଆୟୋଜନରେ ହୋଇଥିଲା, ଏବେ ବି ସେ କହୁଚି, ତା ଭଲ ଭାଗ୍ୟବଶ ସମସ୍ତେ ଯିମିତି ହୁଅନ୍ତୁ । ମୋର ବିଶ୍ୱାସ, ତୁ ଯେଉଁଠି ହାତ ଦେବୁ ନା, ସେଠି ସୁନା ଫଳ ଉଠିବ ।

ମହେଶ୍ୱରୀ ଚିନ୍ତିତ ଅବସ୍ଥାରେ କହିଲେ—କିନ୍ତୁ ଶଚୀର ଟିକିଏ ରହିଛି ଯେ ।

—ସେଇଥିପାଇଁ ତ ତତେ ହାତ ଦେବାକୁ କହୁଚି । ତୋର ପୁଣ୍ୟରେ ସବୁ ନିର୍ଦ୍ଦୋଷ, ନିଖୁଣ ହୋଇ ଉଠିବ ।

ଉପେନ୍ଦ୍ର କଥାରେ ମହେଶ୍ୱରୀର ମନଟା ଟିକିଏ ଖଟ୍‌କା ପଡ଼ିଗଲା । କହିଲେ—କିନ୍ତୁ ଉଦୀନ ଦିବାକରର ମନକଥା ତୁ ବୋଧହୁଏ ବୁଝିନୁ । ଘର ଭିତରେ ଥିଲେ କ'ଣ ହେଲା, ସେ ଯେମିତି ଘରଛଡ଼ା, ସେଇଥିଲାଗି ଭୟ । ପଛରେ ଏଇ ଟିକିକ ଖୁଣ ସବୁ ଅସୁଖର କାରଣ ହୋଇ ଉଠିପାରେ । ଆଉ ଗୋଟିଏ କଥା, ଦିବାକର କ'ଣ ରାଜି ହେବ ?

କାହିଁକି ହେବନି । ଦୁନିଆଁରେ ତାର ନିଜର ବୋଲି କେହି ନାହିଁ । ନିଜର ବୋଲି କିଛି ନ କଲେ, ମୁଣ୍ଡ ଗୁଞ୍ଜି ଠିଆହେବା ଲାଗି ଜାଗା ଟିକିଏ ବି ମିଳିବନି । ତାର ଏ ସୁବିଧା ଛାଡ଼ିବା କେବଳ ବୋକାମି ହେବନି—ପାପ ।

ମହେଶ୍ୱରୀ ହସିବାକୁ ଲାଗିଲେ । ଇଏ କ'ଣ ତୋର ଓକିଲାତି ବ୍ୟବସାୟ ହେଇଚି କିରେ । କେବଳ ମହକ୍‌କିଲ ଟଙ୍କା ଉପରେ ଆଖି ରଖି ଆଉ ସବୁ ଦିଗରୁ ଦୃଷ୍ଟି ଫେରେଇ ନେବୁ ? ପସନ୍ଦ ଅପସନ୍ଦ ବୋଲି ତ ଗୋଟାଏ କଥା ଅଛି ।

ଉପେନ୍ଦ୍ର କହିଲା—ଥିଲେ ଥାଉ ନାନୀ । ଯେଉଁମାନେ ପ୍ରୀତିକୁ ନେଇ ପାଣିଗ୍ରହଣ କରିବେ କରନ୍ତୁ, କିନ୍ତୁ ମୁଁ ସେ ଦଳରେ ଯୋଗଦେବାକୁ ଚାହେଁନା । ଆଉ ଶଚୀଭଳି ଝିଅକୁ ଯା'ର ପସନ୍ଦ ହୁଏନା, ସେ ତ ଆଦୌ ବିବାହ କରିବା ଉଚିତ ନୁହେଁ ।

ଉପେନ୍ଦ୍ରର ବ୍ୟଗ୍ରତାରେ ମହେଶ୍ୱରୀ କୌତୁକବୋଧ କରୁଥିଲେ । କହିଲେ—ସିଏ ବୋଧହୁଏ ଆଜି କଲେଜକୁ ଯାଇନି । ଥରେ ପଚାରି ବୁଝ, ତା ମତ କ'ଣ ? ବୋଧହୁଏ ସେ ତା ଘର ଭିତରେ ଅଛି ।

—ଅଛି ? କିଏ ଅଛି, ଆରେ ଏ ଭୂତ ! ଦିବାକରବାବୁଙ୍କୁ ଡାକିଲୁ—ନାନୀ ଡାକୁଚନ୍ତି ବୋଲି କହିବୁ ।

କିଛି ସମୟ ପରେ ଦିବାକର ଘର ଭିତରକୁ ପଶି ଆସିବା ମାତ୍ରେ ଉପେନ୍ଦ୍ର କହିଲା—ଆରେ ଦିବା, ତୋର ବିବାହ ପ୍ରସଙ୍ଗ ଠିକ କରିଦେଇଚି । ପରୀକ୍ଷା ସରିଲେ ଦିନ ସ୍ଥିର ହେବ । ନାନୀ, ଭଟ୍ଟାଚାର୍ଯ୍ୟ

ମହାଶୟଙ୍କ ପାଣ୍ଡିତ୍ୟ ଦେଖିବାକୁ ଲୁବ୍ଧ, ଆଉ ଏ ସମ୍ବନ୍ଧରେ ବାବାଙ୍କ ମତଟା ମଧ୍ୟ ଜାଣି ରଖିବା ଉଚିତ । ଶଚୀ ସାଙ୍ଗରେ ଦିବାର ବାହାଘର ହେବ ଶୁଣିଲେ, ଭାରି ଖୁସି ହେବେ ସେ । ଆରେ ତୁ ହଁଟା କରି ଠିଆହେଲୁ ଯେ ! ତୋର ସାନ ଭାଉଜର ଶ୍ରେଷ୍ଠ ଭଉଣୀ ଶଚୀ, ଦେଖିଚୁଟିକି ? ଦେଖିନୁ ? ହଁ, ଶଚୀକି ଦେଖିବାର କୌଣସି ଆବଶ୍ୟକତା ବି ନାହିଁ ; ଠିକକ ପୂର୍ବରୁ ନାନାକୁ କହୁଥିଲି, ତା ଭଳି ଝିଅକୁ ଯାର ପସନ୍ଦ ହୁଏନା, ତାର ବିବାହ କରିବା ଉଚିତ ନୁହେଁ । ପିଲାଦିନେ ବାଁ ପାଦରେ ଅଧୋ-ପଘାତ ହେବା ହେତୁ, ଟିକିଏ ଖ୍ରୋଟେଇ ଖ୍ରୋଟେଇ ଚାଲୁଥିଲା । ସେଇ କଥାରେ ଏହିକ୍ଷଣି ନାନାଙ୍କୁ କହୁଥିଲି ଯେ ଶଚୀର ସାମାନ୍ୟ ଖୁଣ, ତ୍ରୁଟି ଦିବାକର ଯଦି ଆତ୍ମୀୟ ହୋଇ ମାର୍ଜନା କରି ନ ପାରେ ତାହାହେଲେ କ'ଣ ବା ସେ କରିବ ? ତା ଛଡ଼ା ଶ୍ରେଷ୍ଠ ଶ୍ରେଷ୍ଠ ଦୋଷ ତ୍ରୁଟି ନେଇ ହଇଚଇ କରିବା ତ ଉଚ୍ଚ ଶିକ୍ଷାର ଫଳ ନୁହେଁ, ମୋଟେ । ନିର୍ଦ୍ଦୋଷ, ନିର୍ଗୁଣ ଏ ଦୁନିଆରେ ଖୋଜିଲେ ଗୋଟିଏ ବି ମିଳିବନି, ସେଭଳି ଆଶା କରି ବସିବା ଯେ ପାଗଳାମି ତାହା ଦିବା ଜାଣେ । ଆଉ କ'ଣ କହୁଚି କି ନାନା, ଦିବାକରର ବିବାହ କଥା ଶୁଣିଲେ ସୁରବାଳା ଏକ୍‌ବାରେ ଆନନ୍ଦରେ ନାଚିଉଠିବ । ଓଃ ତୋର ତାହା ହେଲେ ସମସ୍ତ ନଷ୍ଟ ହେଉଚି । ତେବେ ତୁ ଯା, ମୁଁ ଶଶୁରଙ୍କ ପାଖକୁ ଚିଠି ଲେଖି ଜଣାଇ-ଦେଉଚି । ଏତିକି କହି ଉପେନ୍ଦ୍ର ଉଠି ଠିଆହେଲା, ଗଲାବେଳକୁ ମହେଶ୍ୱରୀକି କଟାକ୍ଷରେ ଗୋଟାଏ ଇଙ୍ଗିତ ଦେଇଗଲା ।

ମହେଶ୍ୱରୀ ମୁଣ୍ଡକୁ ନୁଆଇଁ ଭାତ ବାଣ୍ଟିବାକୁ ଲାଗିଲେ । ଦିବାକର ସ୍ତମ୍ଭିତ ଭାବରେ ସେମିତି ଠିଆହୋଇ ରହିଥାଏ । ପ୍ରବଳ ଝଡ଼ ଯେମିତି କାଠି କୁଟା ଧୂଳି ସହିତ ଉଡ଼େଇ ନେଇଯାଏ, ସେଇଭଳି ଉପେନ୍ଦ୍ର ସମସ୍ତ ବାଧା ବିଘ୍ନ, ଓଜର ଆପତ୍ତି ନିଜ ଇଚ୍ଛାନୁଯାୟୀ ଯେମିତି ଉଡ଼େଇ ନେଇ-ଗଲା । ନିସ୍ତବ୍‌ଧ ଭାବରେ ଏକଆଡ଼େ ମହେଶ୍ୱରୀ, ଅନ୍ୟ ଆଡ଼େ ଦିବାକର ଚିନ୍ତାଗ୍ରସ୍ତ । ବହୁ ସମୟ ଧରି ମହେଶ୍ୱରୀ ମୁହଁରୁ କୌଣସି ସ୍ୱରଶବ୍ଦ ନଶୁଣି ଦିବାକର ପଚାରିଲା—ଏ ସବୁ କ'ଣ ହେଉଚି ନାନୀ ?

ମହେଶ୍ୱରୀ ମୁହଁକୁ ଉଠେଇ କହିଲେ, ସବୁ ତ ଶୁଣିଲୁ ?

ଦିବାକର ପଚାରିଲା—ଏତେ ତରବର କାହିଁକି ?

ମହେଶ୍ବରୀ କହିଲେ—ଶଚୀର ବିବାହ ବୟସ ଗ୍ଲଲିଯାଉଛି, ବାକି ଆସନ୍ତା ସବୁ ବର୍ଷଗୁଡ଼ାକ ଅଶୁଦ୍ଧ ।

ତାପରେ କୌଣସି କଥା ଦିବାକରର ମୁଣ୍ଡରେ ଢୁକିଲାନି, ଖାଲି ସେ ମନେ ମନେ ଭାବୁଥାଏ, ଉପୀନଦା ଚିଠି ଲେଖି ସାରିବେଣି, ଜରୁରୀ ଚିଠି ଭାବି ଗ୍ଳକର ନେଇ ଡାକଘରେ ପକେଇ ସାରିବଣି । ସେ ମନେ ମନେ ସଂକଳ୍ପ କରିଥିଲା, ଜୀବନରେ କେବେ ହେଲେ ବିବାହ କରିବନି । ଏ ସଂକଳ୍ପ ଏଭଳି ଅକସ୍ମାତ ଭାବରେ ଏକାବେଳକେ ଭାସିଯିବ, ଏକଥା ଭାବି ଭାବି ବ୍ୟତିବ୍ୟସ୍ତ ହୋଇପଡ଼ିଲା ।

ସେ ଅଷ୍ଥିର ଚିତ୍ତରେ ଉପେନ୍ଦ୍ର ଘର ଆଡ଼କୁ ଚ୍ଳିଗଲା । ଘରେ ପଶିବା ମାତ୍ରେ ସୁରବାଳା ତାର ଅପ୍ରସନ୍ନ ମୁହଁଟିରେ ଓଢ଼ଣା ଟାଣି ଦେଇ ଆଲମାରୀ ପଛ ଆଡ଼କୁ ଗ୍ଲଲିଗଲା । ଉପେନ୍ଦ୍ର ଟେବୁଲ ପାଖରେ କାଗଜ କଲମ ନେଇ ବସିଥିଲେ । ଦିବାକରକୁ ଦେଖି ପଚ୍ଚାରିଲେ—ଆଉ କ'ଣ ?

ଦିବାକର ମନେ ମନେ ଭାବି ଯାହା କହିବାକୁ ଆସିଥିଲା, ଠିକ ଭାବରେ କହିବାକୁ ସମୟ ପାଇଲାନି । ଇଆଡ଼େ ଲୁଗାକାନିର ଗୋଟିଏ ଧଡ଼ି ଆଲମାରୀ ପାଖରେ ଦେଖାଯାଉଛି । ତାକୁ ଦେଖି ତା ମୁହଁରୁ କୌଣସି କଥା ଫୁଟିଲା ନାହିଁ । ସେ ବଡ଼ ସଙ୍କୁଚିତ ବୋଧ କଲା ।

ଉପେନ୍ଦ୍ର ପଚ୍ଚାରିଲେ—କ'ଣ କରେ, କହୁନୁ ?

ଦିବାକର କୌଣସି କଥା ନ କହି ଖାଲି ଆଲମାରୀ ଆଡ଼କୁ ଗ୍ଳହିଁ ରହିଲା ।

ଉପେନ୍ଦ୍ର ସବୁ ଦେଖି ମଧ ନ ଦେଖିଲା ପରି କହିଲେ, ମୋର ସମୟ ନାହିଁ ଦିବା ।

ଦିବାକର ପାଖକୁ ଲଗି ଆସି ଧୀରେ ଧୀରେ କହିଲା, ଏତେ ତରବର କାହିଁକି ?

ଉପେନ୍ଦ୍ର କହିଲେ—କାହିଁ କିଛି ତରବର ତ ନାହିଁ, ବର୍ତ୍ତମାନ ଆଉ ମାସେ ଦୁଇମାସ ଅଛି, ତୋର ପରୀକ୍ଷା ସରୁ ।

ତେବେ ଆଜି ଚିଠି ଲେଖିବା ଦରକାର କ'ଣ ? କିଛି ଦିନ ପରେ ଲେଖିଲେ ତ ଚଳିବ ।

ହୋଇପାରେ, କିନ୍ତୁ କିଛି ଦିନ ପରେ ଲେଖିଲେ ତୋର କ'ଣ ସୁବିଧା ହେବ, ଶୁଣେ ।

ଦିବାକର ଆସ୍ତେ ଆସ୍ତେ କହିଲା, ଭାବଚିନ୍ତା ଲେଖିବା ଉଚିତ ।

ଉପେନ୍ଦ୍ର କହିଲେ, ହଁ ଉଚିତ ନୁହେଁ କ'ଣ, ତୁ ବିବାହ କଥା ଭାବୁ, ଆଜି ମୁଁ ତୋର ପରୀକ୍ଷା କଥା ବସି ଭାବିବି ।

କିନ୍ତୁ ଏଭଳି ଦାୟିତ୍ୱ ଗ୍ରହଣ ପୂର୍ବରୁ –

ଜ୍ଞାନ ଥିବା ଭଲ ହେଲେ କିଛି କହ । ଆସ୍ତୁ ଏଇ ଚେୟାର ଉପରେ ବସ । ଦେଖି ଭାବି କ'ଣ କରିବୁ ଦେଖି ।

ଦିବାକର ନିରୁତ୍ତର ।

ଉପେନ୍ଦ୍ର କହିଲେ – ଶୁଣ ଦିବାକର, ଯେ କୌଣସି କଥା ହେଉ, ଶେଷପର୍ଯ୍ୟନ୍ତ ଭାବି ଦେଖିବା ମଣିଷ ପକ୍ଷରେ ଅସାଧ୍ୟ । ସିଏ ଯେତେ ବିଚକ୍ଷଣ ପଣ୍ଡିତ ହୁଅନ୍ତୁ ପଛକେ, ଶେଷ ଫଳ ଠିକଣା ପାଇଁ ସେଇ ଭଗବାନଙ୍କ ହାତକୁହିଁ ଅପେକ୍ଷା କରିଥାଏ । ତେବେ ଆଗରୁ ଯେଉଁ ଠିକଣା ଭାବି ଦେଖାଯାଇପାରେ, ସେ ଠିକଣା ଲାଗି ଅଧଘଣ୍ଟାରୁ ଅଧିକ ସମୟ ଲାଗେନା । ତୁ ତାହାହେଲେ ଭାବିବା ପାଇଁ କିଛିଦିନ ସମୟ ଚାହିଁବା କାହିଁକି କହିଲୁ ?

ଦିବାକର ମୁହଁ ଉଠେଇ କହିଲା—ସମସ୍ତେ କ'ଣ ଏତେ ଚଞ୍ଚଳ ଭାବିଦେଇ ପାରନ୍ତି ?

—ହଁ ପାରନ୍ତି । ଏକଥା ମନେ ରଖିବା ଉଚିତ ଯେ, ଇଆଡ଼ୁ ସିଆଡ଼ୁ ଚିନ୍ତା କରିବାରେ ଆଦି ଅନ୍ତ କିଛି ନ ଥାଏ । ଏ ଚିନ୍ତା ଦୁଇ ଚାରି ଦିନ କାହିଁକି, ଦି ବର୍ଷରେ ବି ସରେନା । ତେବେ ଏ ସମ୍ବନ୍ଧରେ ଯେଉଁ ଠିକଣା ଭାବିବା କଥା, ସେ ଚିନ୍ତା ତ ସରିଛି । ଶଚୀକୁ ବିବାହ କଲେ ସେ ଚିନ୍ତା ଚଳିତ କେଉଁଦିନ କରିବାକୁ ପଡ଼ିବନି । ଦ୍ୱିତୀୟ କଥା ପସନ୍ଦ ଅପସନ୍ଦ ନେଇ । ଅବଶ୍ୟ ସେ ନିଷ୍ପତ୍ତି ଅନ୍ୟ କେହି କରିପାରିବେନି, ତୁ କ'ଣ ସେଇ ପସନ୍ଦ ଅପସନ୍ଦ କଥା ଭାବୁଛୁ ?

ଏଥରକରେ ଉପେନ୍ଦ୍ର ଶଚୀର ରୂପର ଯେଉଁ ଇଙ୍ଗିତ ଦେଇ-ଦେଲେ, ସେଥିରେ ଦିବାକର ଏକବାରେ ଲଜ୍ଜିତ । ସଙ୍ଗେ ସଙ୍ଗେ କହି ପକାଇଲା—ସେକଥା ମୁଁ କେବେ ଭାବିନି ।

—ତା ହେଲେ ତ ଭଲ ହେଲା; କାରଣ ଏ କଥାଟା ମତେ ଅନ୍ତତଃ ସାରଶୂନ୍ୟ ହେଉନା କାହିଁକି—ବାହାରର ଗୋଟାଏ କିଛି ଆଡ଼ମ୍ବର ରହିଛି । ପ୍ରଥମେ ଏଇ ଯେ ରୂପ କଥା ପଡ଼େ, ସେଇଟା ମଣିଷର ଭିତରେ ବାହାରେ ଏଭଳି ଭେଳିକି ଲଗେଇଦିଏ ଯେ ତାର ଭଲମନ୍ଦ ଅତି ସାବଧାନରେ ନିରୂପଣ କରିବାଟା ହିଁ ମୁଖ୍ୟବସ୍ତୁ ହୋଇପଡ଼େ । ତେଣୁ ରୂପଟା କିଛି ନୁହେଁ । ଯେଉଁ ବସ୍ତୁଟି ନ ପାଇ ମଣିଷ ସାରା ଜୀବନ ହାସୁ ହାସୁ କରେ, ସେ ଜିନିଷଟି କୁଆଡ଼େ ପଛରେ ପଡ଼ିରହେ । ପସନ୍ଦ କରି-ବାର ଯେଉଁ ସାରସାମଗ୍ରୀ ସେ ଜିନିଷଟିକୁ ପାଇ ନ ପାରିଲେ ସଂସାର ବିଫଳ ହୋଇ ଠିଆହୁଏ । ତା ଉପରେ ତ ଜୋର ଜବରଦସ୍ତି କରି-ହୁଏନା; ତେଣୁ ତାକୁ ବିନା ପରୀକ୍ଷାରେ ନିର୍ବିଚାରରେ ଭଗବାନଙ୍କ ଦୁହାଇ ଦେଇ ଲୋକେ ଗ୍ରହଣ କରନ୍ତି । ଆଉ ଯେଉଁଟି କିଛି ନୁହେଁ, ନିରର୍ଥକ, ଦି ଚାରି ଦିନରେ ଯାହା ନଷ୍ଟ ହୋଇଯାଏ, ଆଖିରେ ଥରେ ଦେଖିଲେ ଯାର ଭଲମନ୍ଦ, ଦୋଷଗୁଣ ଧରାପଡ଼େ, ସେଇଥିଲାଗି ପରୀକ୍ଷା ନିରୀକ୍ଷାର ଶେଷ ନ ଥାଏ । ଦିବାକର ! ସାଢ଼େ ପନ୍ଦରଣା ଯାଏଁ ଯଦି ତୁ ଆଖିବୁଜି ଦେଇପାରୁ, ତେବେ ବାକି ଦୁଇଟା ପଇସା ପାଇଁ ଗୁରୁଜନଙ୍କ ଅବାଧ ହୋଇ ବିଦ୍ରୋହ କରନା । ବରଂ ମୁଁ ଆଶୀର୍ବାଦ କରୁଛି, ତୋର ଭବିଷ୍ୟତ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହେଉ । ତୁ କୌଣସି ଦିନ ଏକଥା ଭୁଲିଯାଆନା ଯେ ରୂପ ମଣିଷର ସବୁକିଛି ନୁହେଁ ଏବଂ କେବଳ ସୌନ୍ଦର୍ଯ୍ୟଚର୍ଚ୍ଚା ହିଁ ବିବାହର ଉଦ୍ଦେଶ୍ୟ ନୁହେଁ ।

ଦିବାକର ମୁଣ୍ଡକୁ ନୁଆଇଁ ନିରୁତ୍ତର ରହିଲା । ଉପେନ୍ଦ୍ର ମଧ୍ୟ ଅନେକ ସମୟ ଧରି ଚୁପ୍ ରହି ଶେଷରେ କହିଲା—ତାହାହେଲେ ଏବେ ତୁ ଯାଆ ।

ଦିବାକର ମୁଣ୍ଡକୁ ନୁଆଇଁ ଧୀରେ ଧୀରେ କହିଲା—ମୋର ରୁଚି ନାହିଁ । ଯାନ ଭାଇନା, ମତେ କ୍ଷମା କର । ବିଶେଷ କରି ବଡ଼ଲୋକର ଝିଅ !

ହଠାତ୍ ଏଭଳି ଉତ୍ତର ଉପେନ୍ଦ୍ର ଆଶା କରି ନ ଥିଲା; ତେଣୁ ସ୍ତମ୍ଭୀଭୂତ ହୋଇପଡ଼ିଲା । ଦିବାକର ଅଳ୍ପଭାଷୀ; ତେଣୁ ତା କଥାର ଗୁରୁତ୍ୱ ସେ ଭଲଭାବରେ ବୁଝିପାରିଲା । କିନ୍ତୁ କୌଣସି କାମରେ ଅସଫଳ ହୋଇ ପଡ଼ିବାର ତାର ସ୍ୱଭାବ ନୁହେଁ । ଆଗରେ ଥିବା କାଗଜ କଲମକୁ

ହାତରେ ଠେଲିଦେଇ କହିଲା—ରୁଚି ନାହିଁ ! ତା ନ ଥାଇ ପାରେ; କିନ୍ତୁ ବଡ଼ଲୋକ ଝିଅ ବୋଲି ତାର କି ଅପରାଧ କହିଲୁ ଶୁଣେ ।

ଦିବାକର କହିଲା—ତାର କିଛି ଅପରାଧ ନାହିଁ; କିନ୍ତୁ ମୁଁ ଦରିଦ୍ର ।

ଉପେନ୍ଦ୍ର କହିଲା—ତୁ ଯାହା କହୁଚୁ ତାର ଅର୍ଥ ହେଉଚି, ଗରିବ ଘର ଝିଅ ତତେ ଯେଉଁଭଳି ସମ୍ମାନ, ଶ୍ରଦ୍ଧା, ଭକ୍ତି କରିବ, ଧନୀଘର ଝିଅ ସେଭଳି କରିବନି । କିନ୍ତୁ ମୁଁ ପଚାରୁଚି, ସ୍ତ୍ରୀ ସମ୍ବନ୍ଧରେ ସମ୍ମାନ ବା ଭକ୍ତିର କ'ଣ ବା ଧାରଣା ଅଛି ତୋର ଶୁଣେ ? ଅବଶ୍ୟ ଯଦି ଜିଦ୍ ଧରି ବସୁ ଯେ ତୁ ବିବାହ ବିଲକୁଲ୍ କରିବୁନି, ସେ ଅନ୍ୟ କଥା; କିନ୍ତୁ ନିତାନ୍ତ ଅମୂଳକ ଅସଙ୍ଗତ ଦୋଷର ଭାର ଅନ୍ୟ ଜଣକ ଉପରେ ଲଦି-ନେଇ ନିଜର ଦାରିଦ୍ର୍ୟର ଦୁହାଇଦେବା ନିତାନ୍ତ ଅସଙ୍ଗତ । ପୁରାଣ, ଇତିହାସ ତ ପଢ଼ିଚୁ । ସୀତା, ସାବିତ୍ରୀ ପ୍ରଭୃତି ସାଧ୍ୱୀ ସ୍ତ୍ରୀମାନଙ୍କର କଥା ଯାହା ଲେଖା ଅଛି, ସେମାନେ ରଜାଝିଅ ହୋଇ ସୁଦ୍ଧା କୌଣସି ଗରିବ ଘରର ଝିଅଙ୍କ ଅପେକ୍ଷା ତ କୌଣସି ଗୁଣରେ କମ୍ ନ ଥିଲେ । ବଡ଼ଲୋକ ଘରର ଝିଅଙ୍କ ବିରୁଦ୍ଧରେ ଗୋଟାଏ ପ୍ରବାଦ ପ୍ରଚଳିତ ରହିଚି ବୋଲି ଯେ ତାକୁ ନିର୍ବିଚାରରେ ମାନିନେବାକୁ ପଡ଼ିବ, ତାର କୌଣସି କାରଣ ମୁଁ ଦେଖିବାକୁ ପାଉନି ।

ଦିବାକର ତ ସବୁ ଶୁଣୁଥିଲା, ତା ଛଡ଼ା ଆଉ ଜଣେ ଶ୍ରୋତ ଆଲମାରି ଆଡ଼ୁଆଳରେ ରହି ମଧ୍ୟ ଶୁଣୁଥିଲା । ତାର ଲୁଗାକାନି ଆଖି ଆଗରେ ପଡ଼ିବାମାତ୍ରେ ଉପେନ୍ଦ୍ର କହିଉଠିଲା—ସେଇ ବଡ଼ଲୋକର ଆଉ ଗୋଟିଏ ଝିଅ ତ ଏଇ ଘରେ ଅଛି ଏବଂ ତାର ଅର୍ଦ୍ଧେକ ରୂପଗୁଣ ନେଇ ଯଦି ଶର୍ଚୀ ଆସେ, ତାହାହେଲେ ପୃଥିବୀର ଯେ କୌଣସି ସ୍ୱାମୀ ନିଜକୁ ଭାଗ୍ୟବାନ ମନେକରିବା କଥା । କିଛି ସମୟ ସ୍ଥିର ରହି ପୁଣି ଉପେନ୍ଦ୍ର କହିଲା—ତୋର ରୁଚି ନାହିଁବୋଲି କହୁଚୁ । ପିଲାଦିନେ ସ୍କୁଲକୁ ଯିବା ପାଇଁ ତୋର ରୁଚି ନ ଥିଲା ମୁଁ ଦେଖିଚି । ଧର୍ମ କର୍ମରେ କାହା-କାହାର ରୁଚି ନ ଥାଏ । ଜନ୍ମଭୂମି ଉପରେ ମଧ୍ୟ କାହାରି କାହାରି ଅରୁଚି ଥାଏ; କିନ୍ତୁ ତା ବୋଲି କଣ ଏସବୁ ରୁଚିକୁ ପ୍ରଶ୍ରୟ ଦିଆଯାଇ ପାରେ ?

ହଠାତ୍ ଏହି ସମୟରେ ଆଲମାରୀ ଆଡ଼ୁଆଳରେ ଚୁଡ଼ିଶବ୍ଦ ଶୁଣି ଦିବାକର ଚକିତ ହୋଇ ଉଠି ଠିଆହେଲା । ମୁହୂର୍ତ୍ତକ ମଧ୍ୟରେ ସେ କ'ଣ ଯେ ସ୍ଥିରକଲା, ସେ ଜାଣେ । ସୁରବାଳା ପାଖକୁ ଆସି କହିଲା— ଭାଉଜ, ତମେ ଯଦି ଖୁସି ହବ, ତାହାହେଲେ ଭାଇନାଙ୍କୁ କହିବି, ଚିଠି ଲେଖିଦେବେ ।

ସୁରବାଳା ତନ୍ମୟ ହୋଇ ସ୍ୱାମୀଙ୍କ କଥା ଶୁଣିଥିଲା । ଗୋଟାଏ ଅନିର୍ବଚନୀୟ ଶାନ୍ତି ଓ ତୃପ୍ତିର ତରଙ୍ଗ ତାର ସମସ୍ତ ଇଚ୍ଛା, ତାର ସମସ୍ତ କାମନା ଓ ସ୍ୱାତନ୍ତ୍ର୍ୟକୁ ଭସାଇ ଆଣି ସ୍ୱାମୀଙ୍କ ଇଚ୍ଛାର ପାଦତଳେ ବାରମ୍ବାର ଆତ୍ମସମର୍ପଣ କରିଥିଲା । ସେ କିଛିହେଲେ ସ୍ଥିର କରି ନାହିଁ; କିନ୍ତୁ ଲୁଗା କାନିରେ ଆଖିକି ପୋଛିପାଛି ଏକାନ୍ତ ଚିତ୍ତରେ ସ୍ୱାମୀଙ୍କି ଲକ୍ଷ୍ୟକରି କହିଲା—ସେ କେବେହେଲେ ମିଛ କହନ୍ତିନି । ମୁଁ କହୁଚି—ତୁମର ଭଲ ହେବ, ମୁଁ ମଧ୍ୟ ଖୁବ୍ ଖୁସି ହେବି ।

ଦିବାକର ଉପେନ୍ଦ୍ରକୁ ଚାହିଁ ଦେଖିଲା । ମୁକ୍ତ ବାତାୟନ ଦେଇ ଅପର୍ଯ୍ୟାପ୍ତ ଆଲୋକ ଆସି ତା ମୁହଁରେ ବାଜିହୋଇ ପଡ଼ିଚି । ସେ ମୁହଁରେ ଉଦ୍‌ବେଗ ନାହିଁ, ଦୁଃଶ୍ଚିନ୍ତାର କୌଣସି ଚିହ୍ନ ସୁଦ୍ଧା ନାହିଁ—ଅତି ପବିତ୍ର ଓ ମଙ୍ଗଳମୟ ବୋଧ ହେଲା ।

ଦିବାକର କହିଲା—ତୁମେ ଯାହା ଭଲ ଭାବୁଚ, କର । ମୋର ସମୟ ନଷ୍ଟ ହେଉଚି, ଯାଉଚି । ସେ ଚାଲିଯିବା ପରେ ସୁରବାଳା ଉପେନ୍ଦ୍ର ପାଖରେ ଆସି ବସିଲା । ସଜଳ ଚକ୍ଷୁ । ସ୍ୱାମୀ ଆଡ଼କୁ ଚାହିଁ କହିଲା—ମତେ କ୍ଷମାକର । ମୁଁ ଭୁଲ ବୁଝିଥିଲି । ତୁମେ ଯାହା କରୁଚ, ସେଥିରେ ଶତୀର ନିଶ୍ଚୟ ମଙ୍ଗଳ ହେବ । ଏହି ଥରକ ପାଇଁ ମାଫ କର । ଉପେନ୍ଦ୍ର ଚିଠି-ଲେଖା ଶେଷ କରି ସାରିଥିଲା । ମୁହଁକୁ ଉଠେଇ କହିଲା- ଆଚ୍ଛା !

## ସାତ

ସେଇ ଦିନଠୁ ଦିବାକର ଭାବିଲାଗିଲା ଖାଲି ତାର ବିବାହ କଥା । ଶଚୀ କିମିତି ଦେଖିବାକୁ, ସେ କ'ଣ କରେ, କ'ଣ ଭାବେ, କ'ଣ ପଢେ, ତା ସହିତ ବିବାହ କଲେ ସେ କିଭଳି ଭାବିବ, ଏଇସବୁ କଥା । ରାତିରେ ପଢ଼ାପଢ଼ିରେ ବହୁତ ବାଧା ଦେଖାଦେଲା । ଅଥଚ ମାତାଲ ଯେମିତି ତାର କଳ୍ପନାର ଆତିଶଯ୍ୟରେ ସ୍ପଷ୍ଟ କରି କିଛି ଭାବିପାରେନା, ତାର ମନରେ ମଧ୍ୟ ସେହିଭଳି ସୁସ୍ପଷ୍ଟ କିଛି ଭାବି ନ ପାରି ଖାଲି ଆକାଶ କୁସୁମ ଗୁନ୍ଥିବାରେ ଲାଗିଲା । କୌଣସି କାମ ହେଲାନି ।

ପରୀକ୍ଷାର ଭୟ ଯେତେ ଥର ତାକୁ ଗୃବୁକ ଦଳ ଫେରାଇ ଆଣି ପାଠରେ ନିଯୁକ୍ତ କରୁଥାଏ, ସେତିକି ଥର ସେ କୁଆଡ଼େ ଉଭେଇଯାଇ, ଖାଲି ସ୍ୱପ୍ନର ଜାଲ ବୁଣିଚାଲିଲା । ବହୁ ସମୟ ଯାଏଁ ଏଇ ବିଦ୍ରୋହୀ ମନ ପଛରେ ଧାଁ ଧପଡ଼ ନ କରିପାରି ଦିବାକର ଅନୁତାପ କଲା ଯେ ତାର ବୃଥା ସମୟ ନଷ୍ଟ ହୋଇଯାଉଚି; କିନ୍ତୁ କି ଅଭୂତପୂର୍ବ ପରିବର୍ତ୍ତନ ! କାହାର ନିଶା ଯେ ତାକୁ ଅକସ୍ମାତ୍ ଏଭଳି ମାତାଲ କରି ଦେଇଚି, ତାର କୌଣସି କାରଣ ସୁଦ୍ଧା ସେ ଖୋଜି ପାଇଲାନି । ଶେଷରେ ସେ ମନେ ମନେ ସ୍ଥିର କଲା ଯେ ଏ ବିବାହ ପ୍ରସ୍ତାବରେ ତାର ସମ୍ପୂର୍ଣ୍ଣ ଅନିଚ୍ଛା ଏବଂ ଏକାନ୍ତ ବିତୃଷ୍ଣା । ଯଦି ପୂଜମାପୁ କୌଣସି ଆତ୍ମୀୟର ମାନରକ୍ଷା କରିବାକୁ ହୁଏ ତ ନିତାନ୍ତ ଉଦାସୀନ ଭଳି କରିବ । ଏହା କହି ଦ୍ୱିଗୁଣ ଆଗ୍ରହର ସହିତ ଖୁବ୍ ବଡ଼ ପାଟିରେ ପଢ଼ିବାକୁ ଆରମ୍ଭକଲା । କିନ୍ତୁ ମନକୁ ଆଜି ସଂଯତ ରଖିବା ସମ୍ଭବ ନୁହେଁ, ସିଏ ଯେ ଖେଳ ମଝିରୁ ଚାଲିଆସିଚି, ଆକାଶକୁସୁମ ଗୁନ୍ଥାମାଳାର ଅଧାଅଧି ଫୋପାଡ଼ିଦେଇ ଜବରଦସ୍ତି ପଢ଼ା ମୁଖସ୍ଥ କରିଚାଲିଚି, ତାକୁ ସମ୍ପୂର୍ଣ୍ଣ କରିବାର ସୁଯୋଗ ସେ ଆଦୌ ଖୋଜି ପାଇଲା ନାହିଁ । ତା ଛଡ଼ା କଳ୍ପନାର ଯେଉଁ ବସନ୍ତ ମଳୟ ଏହିକ୍ଷଣି ତାର ଦେହକୁ ଛୁଇଁ ଦେଇଗଲା, ସେ ସ୍ପର୍ଶ କି ମଧୁର ! ତାର ଚତୁର୍ଦ୍ଦିଗରେ ଯେ

ସୌନ୍ଦର୍ଯ୍ୟ ସୃଷ୍ଟି ଚାଲିଥିଲା. ସେ ଠିକ ଦୁପହର ସୂର୍ଯ୍ୟ ଆଡ଼କୁ ମୁହଁ ଟେକି ଅନେଇଦେଲା ମାତ୍ରେ ଆଖି ବୁଜିଦେଲେ ମଧ୍ୟ ଆଲୋକର ସବୁର ବିଚିତ୍ର ବର୍ଣ୍ଣରେ ଅନୁଭୂତ ହୋଇଥାଏ । ପଡ଼ା ପ୍ରସ୍ତୁତ କରିବାର ଏକାନ୍ତ ଉଦ୍ୟମ ମଧ୍ୟ ଦେଇ ଅସ୍ପଷ୍ଟ ମାଧୁର୍ଯ୍ୟର କମ୍ପନ ସେଇଭଳି ତାର ସମଗ୍ର ଦେହକୁ ବ୍ୟାପି ଗଲା । କଣ୍ଠସ୍ୱର ମନ୍ଦରୁ ମନ୍ଦତର, ଦୃଷ୍ଟି ତାର କ୍ଷୀଣରୁ କ୍ଷୀଣତର ହୋଇ ଆସିବାକୁ ଲାଗିଲା ଏବଂ ଏହି ସମସ୍ତ ଧରପଗଡ଼, ବାଦାନୁବାଦ ମଝିରେ ହଠାତ୍ ସେ ନିଜେ ଅନ୍ୟ ଏକ ଖେଳରେ ମାତିଗଲା । ତା ଆଖି ଆଗରେ ଅସଂଖ୍ୟ ଆଲୋକ, କାନ ପାଖରେ ଅଗଣିତ ବାଦ୍ୟ ଓ ମନ ଆଗରେ ବିବାହର ଗୋଟାଏ ବିରାଟ ସମାରୋହ ଅବତୀର୍ଣ୍ଣ ହୋଇ-ଆସିଲା । ଏସବୁର କେନ୍ଦ୍ରବିନ୍ଦୁ ସେ ନିଜକୁ ବର ବେଶରେ କଳ୍ପନା କରି ରୋମାଞ୍ଚିତ ହୋଇଉଠିଲା । ତା ପରେ ସେ ଏପର୍ଯ୍ୟନ୍ତ ଯାହା କିଛି ଶୁଣିଥିଲା, ଦେଖିଥିଲା, ଛାୟାଛବି ଭଳି ସେସବୁ ମନର ମଝିରୁ ବିଚିତ୍ର ବର୍ଣ୍ଣରେ ଅସମ୍ଭବ ଭାବରେ ଦ୍ରୁତ ଗତିରେ ଛୁଟି ଚାଲିଗଲା । କେଉଁଠି ସେ ସ୍ଥିର ହୋଇପାରିଲା ନାହିଁ, କୌଣସି କଥା ଠିକ୍ ଭାବରେ ହୃଦୟଙ୍ଗମ କରି-ପାରିଲା ନାହିଁ, କେବଳ ବିସ୍ମିତ ପୁଲକରେ ସ୍ୱପ୍ନାବିଷ୍ଟ ଭଳି ସ୍ତବ୍ଧ ହୋଇ ବସିରହିଲା ।

## ଆଠ

ବିପିନର ନିମନ୍ତ୍ରଣ ରକ୍ଷି ଆସିବା ପରଦିନ ସନ୍ଧ୍ୟାର ଖାଇବା ଶେଷ ହେବା ମାତ୍ରେ ନିଦ ଭାଙ୍ଗି ବିଛଣାରେ ଉଠି ବସିଲାବେଳକୁ ବେଳ ଆସି ହୋଇଥାଏ ଦଶ । ତାର ଘର ସେତେବେଳକୁ ବନ୍ଦ ହୋଇଯାଇଥାଏ । ଆଜି ସକାଳେ ଆକାଶ ମେଘମୁକ୍ତ । ଘରଆଡ଼େ ଖରା । ଏହି ଗ୍ରୀଷ୍ମ ଉତ୍ତାପରେ ସବୁ ଝରକା କବାଟ ଡାଡିରେ ଭିତରଟା ଯେ କିପରି ଅସହ୍ୟ ବୋଧ ହେଉଥିଲା, ସେ ନିଜେ ଅନୁଭବ ନ କରି ପାରିଥିଲେ ମଧ୍ୟ ତା ଦେହକୁ ଦେଖିଲେ ମନେ ହେଉଥିଲା, ଅଜ୍ଞାତରେ ସେ ଯେପରି ସବୁ ଅନୁ-ଭବ କରିପାରୁଛି । ଦେହ ଗୋଟାକଯାକ ଝାଳରେ ଓଦା ଏବଂ ସମସ୍ତ

ଅନ୍ତରେନ୍ଦ୍ରିୟ ପାଣି ଅଭାବରେ ଉନ୍ମତ୍ତ ଭଳି ହାହାକାର କରୁଚି । ସତ୍ୟଶ ଉଠିଲାମାତ୍ରେ ବଡ଼ ବ୍ୟସ୍ତ ହୋଇ ହଠାତ୍ ମୁଣ୍ଡପାଖ ଝରକାଟା ଖୋଲି ଦେବାମାତ୍ରେ ଦଳକାଏ ସୂର୍ଯ୍ୟକିରଣ ତା ମୁହଁ ଉପରେ ପଡ଼ି ଯେମିତି ତାର ସାରା ଦେହଟାକୁ ଦଗ୍ଧ କରିଦେଲା ।

ଗୋଟାକଯାକ ରାତି ମଜ୍ଜି ଆଳ ରହିବା ପରେ ଦଶଟା ବେଳର ନିଦ୍ରାଭଙ୍ଗର ଗ୍ଲାନି ସେଇ ମାତାଲମାନଙ୍କୁହିଁ ଜଣା । ଏହି ଗ୍ଲାନିକୁ ଗର୍ଜମାନ୍ତି କରି ସତ୍ୟଶ ବେହାରା ବେହାରା ବୋଲି ବଡ଼ ପାଟିରେ ଡାକ ଛାଡ଼ିଲା । ବେହାରା ସଙ୍ଗେ ସଙ୍ଗେ ହାଜର ।

—ଶୀଘ୍ର ଗ୍ଲାସେ ପାଣି ଆଣିଲୁ ।

ବେହାରା ପଚାରିଲା—ତମାଖୁ ଦେବଟିକି ?

—ନା, ଆଗ ତୁ ପାଣି ଆଣ ।

ବେହାରା ନ ଯାଇ ପଚାରିଲା, କ'ଣ ପୂଜା ସନ୍ଧ୍ୟା ପାଇଁ ପାଣି ?

ପୂଜା ସନ୍ଧ୍ୟା କଥା କହିବାମାତ୍ରେ ସତ୍ୟଶ ଏକବାରେ ନିଆଁ ଖଣ୍ଡ । ପାଜି କୁଆଡ଼କାର ! ତୋର ଏତେ ମୁଣ୍ଡ ଘୂରୁଉଚି କାହିଁକି ? ଯା ପାଣି ଆଣିଲୁ ।

ଧମକ ପାଇ ବେହାରା ପାଣି ଆଣିବା ଲାଗି ତଳକୁ ଧାଇଁ ଆସିଲା । ଗ୍ରୋଷେଇଘର ବାରଣ୍ଡାରେ ବସି ସାବିତ୍ରୀ ଗୁଆକାଟାରେ ବ୍ୟସ୍ତ ଥିଲା । ମୁରୁକି ହସ ହସି କହିଲା—କ'ଣ ସତ୍ୟଶ ବାବୁ ତମାଖୁ ମଗେଇ ପଠେଇଲେ ?

ବେହାରା ମୁହଁଟାକୁ ପାଣ୍ଡୁର କରି କହିଲା—ନା, ପାଣି ଦରକାର ।

—ଗାଧୋଇଲେନି କି, ଆହ୍ନିକ କଲେନାହିଁ, ପାଣି କାହିଁକି ରେ ?

ବେହାରା ବିରକ୍ତ ହୋଇ କହିଲା—ମୁଁ ଜାଣେ ନା । ହୁକୁମ ହେଲା ପାଣି ଦରକାର, ନେଇ ଯାଉଚି ।

ସାବିତ୍ରୀ ଗୁଆକାତି ରଖି କହିଲା—ଆଚ୍ଛା, ମୁଁ ନେଇ ଯାଉଚି ତୁ କିଛି ବରଫ କିଣି ଆଣିଲୁ ।

ବେହାରା ପଇସା ନେଇ ବରଫ କିଣିବାକୁ ଗଲା ।

ସାବିତ୍ରୀ ଉପରକୁ ଉଠି ପଡ଼ି କହିଲା—ଗଲ ଗାଧୋଇ ଆସିବ । ମୁଁ ଆହ୍ନିକର ଜାଗାଟା ପରିଷ୍କାର କରି ରଖୁଚି ।

ସନ୍ତୋଷ ମନେ ମନେ ଅତି ବିରକ୍ତ ହୋଇ କହିଲା— ବେହାଲା କୋଉଠି ?

ସାବିତ୍ରୀ ହସକୁ ଚପେଇ କହିଲା—ସେ ବରଫ କିଣିବାକୁ ଯାଇଛି ! ବାବୁ ଦୋଷ କଲ,ଆପେ ଆପେ ଦଣ୍ଡ ଭୋଗିବା ଭଲ, ସେଥିରେ ପ୍ରାୟଶ୍ଚିତ୍ତ ହୋଇଥାଏ । ସଂଧ୍ୟା ଆହ୍ନିକ ନ କଲ କେବେ ତ ତୁମେ ପାଣି ସୁଦ୍ଧା ଛୁଅଁ ନ । ଆଜ ପାଣି ପାଇଁ ପ୍ରତିବାଦ ଯେ ନିଷ୍ଫଳ, ସେ କଥା ଜାଣି ସନ୍ତୋଷ ଶେଯରୁ ଉଠି, ଗାମୁଛା କାନ୍ଧରେ ପକେଇ ଗାଧୋଇ ଗଲା ।

ଖିଆପିଆ ସାରି ସନ୍ତୋଷ ପୁଣି ଥରେ ଶୋଇବାର ଆୟୋଜନ କରିବା ମାତ୍ରେ ସାବିତ୍ରୀ ଆସି ଦୁଆରେ ଠିଆ । ତାକୁ ଯେମିତି ସେ ଦେଖି ପାରୁନ, ଏହିଭଳି ଭାବରେ ସନ୍ତୋଷ କାନ୍ଥ ଆଡ଼କୁ ମୁହଁ ବଙ୍କେଇ ଶୋଇ-ପଡ଼ିଲା ।

ସାବିତ୍ରୀ ମନେ ମନେ ହସି ହସି କହିଲା— ରାତିର କଥାଗୁଡ଼ାକ ବାବୁଙ୍କର ମନେ ଅଛି କି ନାହିଁ ଜାଣିବାକୁ ଆସିଲି ।

ସନ୍ତୋଷ ଉତ୍ତର ଦେଲା—ନାହିଁ ।

ସାବିତ୍ରୀ କହିଲା—ତେବେ ନିଦ ଭାଙ୍ଗିଗଲେ ଦୟାକରି ଟିକିଏ ଡାକେଇ ପଠେଇବେ, ସେ କଥାଗୁଡ଼ାକ ମନେ ପକେଇଦେବି କହି କବାଟ ବନ୍ଦ କରିଦେଇ ଚାଲିଗଲା ।

ଗତ ରାତିର ସବୁ ଘଟଣା ସନ୍ତୋଷର ମନେରଖିବା ସମ୍ଭବ ନୁହେଁ, ନ ଥିଲା ମଧ୍ୟ । ବିପିନବାବୁଙ୍କ ମଜଲିସରୁ କେତେବେଳେ, କାହା ସହିତ ସେ ଆସିଲା; ଆସିବା ପରେ କ'ଣ କରିଥିଲା, ଏସବୁ କଥା ତା ମନରେ ବଡ଼ ଅସ୍ପଷ୍ଟ ବୋଧ ହେଉଥିଲା । ଏହି ଅସ୍ପଷ୍ଟତାକୁ ସ୍ପଷ୍ଟ କରିବାର ସ୍ପୃହା ଯେ ନ ଥିଲା ତାର, ତାହା ନୁହେ । କିନ୍ତୁ ଏକ ଅସ୍ୱାଭାବିକ ଲଜ୍ଜାର ଆଶଂକା ଯେପରି ତାକୁ କୌଣସି ପ୍ରକାରେ ପାଦ ବଢ଼େଇବାକୁ ଦେଉ ନ ଥିଲା । କେବଳ ସଂଧ୍ୟା ବେଳେ ସେ କ'ଣ କରିଥିଲା, ସେତକ ମନେଥିଲା । ସେଇ କଥାଟା ହିଁ ତାର ମେଘାଚ୍ଛନ୍ନ ସ୍ମୃତିର ଆକାଶରେ ଶୁକ୍ର-ତାରା ଭଳି ଜଳୁଥିଲା । କିନ୍ତୁ ତାଠୁ ଅଧିକ ଜ୍ୟୋତିଷ୍ମାନ୍ ଦୁଷ୍ଟ ଗ୍ରହ ଯେ ସେଇ ମନର ମେଘ ଆଢ଼ୁଆଳରେ ଲୁଚିଛି, ସାବିତ୍ରୀର ଇଙ୍ଗିତ ସେଇ ଆଡ଼କୁ ଆଙ୍ଗୁଳି ସଂକେତ କରିବା ମାତ୍ରେ ତାର ଆଖିର ନିଦ ମରୁଭୂମିର

ବାସ୍ପ ପରି କୁଆଡ଼େ ଉଡ଼ିଗଲା । ଗତ ସଂଧ୍ୟାରେ ହତବୁଦ୍ଧି ହୋଇ ପଡ଼ି ରହିବାର ଫଳଟା ଯେ ଶେଷ ପର୍ଯ୍ୟନ୍ତ କି ରୂପ ଧରି ଠିଆହେବ, ସେ ସମ୍ବନ୍ଧରେ ତା ମନରେ ଯଥେଷ୍ଟ ଉତ୍କଣ୍ଠା ଥିଲା; ତଥାପି ତା ଭିତରେ ଯେ ପ୍ରକୃତରେ କିଛି ଦୋଷ ନ ଥିଲା, ଭାବି ଭାବି କିଛି ସାନ୍ତ୍ୱନା ଲାଭ କରୁଥିଲା । ଏବଂ ଦୋଷ ନ କରିବା ମଝିରେ ଯେ ଗୋଟିଏ ପ୍ରକୃତ କଥା ପ୍ରଚ୍ଛନ୍ନ ଅବସ୍ଥାରେ ଥାଏ, ସେଇ କଥା ତାର ଅଜ୍ଞାତସାରରେ ତାକୁ ଆଶ୍ରୟ ଦେଇଥିଲା । କିନ୍ତୁ ସାବିତ୍ରୀ ଏହିକ୍ଷଣି ଯାହା କହିଦେଇ ଗଲା, ତା ଭିତରେ ପ୍ରବେଶ କରିବାର ସାହସ ତାର କାହିଁ ? ମାତାଲ ହେବାର ଅଭିଜ୍ଞତା ଥିଲା ସତ, କିନ୍ତୁ ଅଚେତନ ହୋଇ ପଡ଼ିବାର ଅଭିଜ୍ଞତା ସେ କୋଉଠୁ ପାଇବ ? କେତେ ମାତାଲଙ୍କୁ କେତେ ନା କ'ଣ କାଣ୍ଡ କରିବାର ଘଟଣା ସେ ନିଜ ଆଖିରେ ଦେଖିଛି ତ ଏବେ ନିଜ ବେଳକୁ ଏଇ କାମଟା କରିନି ବୋଲି କହିବା ଭଳି ଆଶା ତାର ନାହିଁ । ତେଣୁ ଏହି ସମ୍ଭବ ଅସମ୍ଭବ ସମସ୍ୟା ତା ପକ୍ଷରେ ଯେତିକି ଜଟିଳ ହେବାକୁ ଲାଗିଲା, ପୀଡ଼ିତ ଚିତ୍ତ ସେତିକି ସମ୍ଭବ ଅସମ୍ଭବ ଭିତରେ ରେଖା ଟାଣିଦେବା ଲାଗି ତାକୁ ବାଧ୍ୟ କଲା । ପୁଣି ତା ମନ ଭିତରେ ନିଆଁ ଜଳିଉଠିଲା ଏବଂ ପୁଣି ଉଠି ବସି ଜୀବନରେ ମଦସ୍ପର୍ଶ ନ କରିବା ଲାଗି ଶପଥ ନେଇ ପୁଣି ପ୍ରାୟଶ୍ଚିତ୍ତ କଲା ।

ଝରକା ଖୋଲିଦେଇ ସତୀଶ ଡାକିଲା—ବେହାରା !

ବେହାରା ରାଖାଲବାବୁଙ୍କ ବିଛଣାଟାକୁ ଝରରେ ନେଇ ଦେଉଥିଲା, ଡାକ ଶୁଣିବା ମାତ୍ରେ ଆସି ଠିଆହେଲା ।

ସତୀଶ କହିଲା—ଆଚ୍ଛା ଯାହା କରୁଚୁ କର, ସାବିତ୍ରୀକୁ ଗ୍ଲାସେ ପାଣି ଆଣିବାକୁ କହି ଦେ ।

ବେହାରା କହିଲା—ମୁଁ ଆଣି ଦେଉଚି ବାବୁ, ସିଏ ଏବେ ପୂଜା-ପୂଜାରେ ବ୍ୟସ୍ତ ।

ସତୀଶ ଆଶ୍ଚର୍ଯ୍ୟ ହୋଇ କହିଲା—ଆହ୍ନିକ କରୁଚି କିଏ ସାବିତ୍ରୀ ?

—ଆଜ୍ଞା ହଁ, ସେ ତ ପ୍ରତିଦିନ କରନ୍ତି । ଏକାଦଶୀରେ ମୁହଁରେ ଜଳ ବି ଦିଅନ୍ତି ନି, ମାଛ ଖାଆନ୍ତି ନି, ରାତିରେ ଖାଆନ୍ତି ନି, ଭଦ୍ର ଘରର ଝିଅ ନା, ସେଇଥିପାଇଁ କି ।

ସତୀଶ ଆହୁରି ଆଶ୍ଚର୍ଯ୍ୟ ହୋଇ କହିଲା—ଭଦ୍ରଘରର ଝିଅ କ'ଣ କରେ !

— ଜାଣେ ବାବୁ, ଭଦ୍ରଘରର ଝିଅ,ଅଦୃଷ୍ଟରେ ଯିଏ ଆଜ ଏଭଳି···

—ଆଚ୍ଛା, ତୁ ଯା ପାଣି ଆଣ ।

ବେହାରି ଯିବାପରେ ସତୀଶ ଚିତ୍‌ହୋଇ ଶୋଇପଡ଼ିଲା । ସାବିତ୍ରୀକୁ ଗୃହଦାସୀ ଭଳି ବ୍ୟବହାର କରିବାରେ ସେ କାହିଁକି କୁଣ୍ଠାବୋଧ କରେ, ତାର ମନ କାହିଁକି କମିତି କମିତ ହୋଇଯାଏ, ପ୍ରଶ୍ନ ଲାଞ୍ଛନାର ଗୃହରେ ସେ କାହିଁକି ମୁଣ୍ଡ ଟେକିପାରେନା, ସେ କିଛି ଧରିପାରେ ନା । ଆଜି ବେହାରି ମୁହଁରୁ ଏଇ ଟିକିକ ପରିଚୟ ପାଇ ସେ କେବଳ ବିସ୍ମୟରେ ଆନନ୍ଦିତ ହୋଇଉଠିନ, ତାର ସମଗ୍ର ମନ ଯେପରି କୌଣସି ଅପରିଚିତର କ୍ଳେଦାକ୍ତ ବାହୁ ପାଖରୁ ଅକସ୍ମାତ୍ ମୁକ୍ତ ପାଇ ପବିତ୍ର ହୋଇଉଠିଲା । ସେ ବେହାରିର କଥାକୁ ସଂପୂର୍ଣ୍ଣ ସତ୍ୟ ବୋଲି ଗ୍ରହଣ କରିବାକୁ ତିଳେ ହେଲେ ଦ୍ୱିଧା କଲା ନାହିଁ ।

ପାଣି ଆଣିବାକୁ ଡେରି ହେବାକୁ ଲଗିଲା । କୌଣସି କାରଣରୁ ହୁଏତ ଡେରି ହୋଇଥିବ, ସେଥିପାଇଁ ସେ ପାଟିତୁଣ୍ଡ ନ କରି ଚୁପ ରହିଲା । ତଥାପି ବେହାରିର ଦେଖା ନାହିଁ । ଶୋଷରେ ତାର କଣ୍ଠ ଶୁଖି ଆସୁଥାଏ; ବେହାରି କ ଆଉଥରେ ଡାକିବ ବୋଲି ମନରେ ସ୍ଥିର କରି ଶେଯରୁ ଉଠିବସିଲା ମାତ୍ରେ ଦେଖିବାକୁ ପାଇଲା, ହାତରେ ପାଣିଗ୍ଲାସ ଧରି ସାବିତ୍ରୀ ଆସୁଚି । ଏହି ଆଗୃହପରିପୂର୍ଣ୍ଣା ହତଭାଗିନୀକୁ ମନେହେଲା ଆଜି ସେ ନୂଆ କରି ଦେଖୁଚି । ସେହି ପଲକର ଦୃଷ୍ଟିପାତରେ ତାର ହୃଦୟର ସମସ୍ତ ରନ୍ଧ୍ର ଯେପରି କରୁଣା ଓ ଶ୍ରଦ୍ଧାରେ ପରିପୂର୍ଣ୍ଣ ହୋଇ-ଉଠିଲା । ଯେଉଁସବୁ କଥା ସେ ଆଗ କହୁଥିଲା, ବର୍ତ୍ତମାନ କହିବାକୁ ଜିଭ ଲେଉଟିଲା ନାହିଁ । ସାବିତ୍ରୀ ହାତରୁ ପାଣିଗ୍ଲାସଟା ନେଇ ଢକଢକ କରି ସବୁତକ ପିଇଦେଇ ଗ୍ଲାସଟିକୁ ତଳେ ରଖି କହିଲା—ବହୁତ କଥା ଅଛି କହିବାକୁ ।

ସାବିତ୍ରୀ ମୁହଁକୁ ତଳକୁ କରି କେବଳ ଅନେଇଁ ରହିଲା ।

ସତୀଶ କହିଲା, ପ୍ରଥମତଃ ମତେ କ୍ଷମା କର ।

ସାବିତ୍ରୀ କହିଲା, ଦ୍ୱିତୀୟତଃ······

କାଲି କମିଶ୍ନ ଏଠିକି ଆସିଲି, ତୁ ତ ଦେଖିଚୁ, କହ ।

ରାତି ପାହାନ୍ତାରେ ଗାଡ଼ିରେ ଆସିଲ ।

ତା ପରେ ?

ରାସ୍ତା ଉପରେ ଶୋଇବାର ବ୍ୟବସ୍ଥା କରିଥିଲି ।

ଭଲ କରିନ, ଉଠେଇ ଆଣିଲ କିଏ ?

ମୁଁ ।

ଆଉ କିଏ ଥିଲା ? ଏତେ ବଡ଼ ଜଡ଼ ପଦାର୍ଥଟା ଉପରକୁ ଉଠେଇଦେଲା କମିତି ?

ସାବିତ୍ରୀ ହସି ହସି କହିଲା—ଭୟ କରନ୍ତୁ ନା, ମେସରେ କେହି କିଛି ଜାଣନ୍ତି ନ ।

ସତୀଶ ଦୀର୍ଘନିଶ୍ୱାସ ଟାଣି କହିଲା—ରକ୍ଷା ! କିନ୍ତୁ ତୋ ସହିତ କୌଣସି ରକମର ଦୁର୍ବ୍ୟବହାର କରିନ ତ ?

ନା ।

ସତୀଶ ଅତି ପ୍ରଫୁଲ୍ଲ ହୋଇଉଠି କହିଲା—ତେବେ କୋଉ କଥା ମୋର ମନେ ପକେଇଦେବାକୁ ଚାହୁଁଥିଲୁ ?

ତୁମର ଶପଥ । ରାଗ ଦେଖେଇଥିଲ, କେବେ ଆଉ ମଦ ଖାଇବନି ବୋଲି ।

ହଠାତ୍ ରାଗ ପକେଇଦେଲି ମୁଁ ? କାହିଁକି ? ଏଭଳି ତ ଦୁର୍ବୁଦ୍ଧି ମୋର ହେବା କଥା ନୁହେଁ ।

ବୋଧହୁଏ ମୁଁ କହିବାରୁ କରିଥିଲ ।

ସତୀଶର କଣ୍ଠସ୍ୱର ଧୀର ହୋଇଆସିଲା । କହିଲା—ମୋର ମନେ ପଡ଼ୁଚି ସାବିତ୍ରୀ ! ତତେ ଛୁଇଁ ଶପଥ କରିଥିଲି ନା ?

ସାବିତ୍ରୀ ନିସ୍ତବ୍ଧ ।

ସତୀଶ କହିଲା—ହଁ ତା ହେଇଥିବ, କିନ୍ତୁ କାଲି ସଂଧ୍ୟା ବେଳର ଘଟଣା ତୋର ମନେ ଅଛିଟି କି ?

ଏଥର ସାବିତ୍ରୀ ହସି ପକେଇଲା । କହିଲା—ହଁ, ଠିକ୍ ମନେ ଅଛି ।

ଲୋକେ ଶୁଣିବାକୁ ପାଇବେ ବୋଧହୁଏ । ତାର ଉପାୟ କ'ଣ ?

ସାବିତ୍ରୀ ଗମ୍ଭୀର ହୋଇ କହିଲା—ହବ ଆଉ କଣ ? ଆଉ କୌଣସି ବସା କରନ୍ତୁ, ନଇଲେ ଘରକୁ ଚାଲିଯାଆନ୍ତୁ ।

ଆଉ କ'ଣ ?

ସାବିତ୍ରୀ ମୁହଁରେ କୌଣସି ଉଦ୍‌ବେଗ ପ୍ରକାଶ ପାଇଲା ନାହିଁ । ଶାନ୍ତ ସହଜ ଭାବରେ କହିଲା—କିଛି ଭାବନା । ଏ ମେସରେ ବାବୁମାନେ ଯଦି ରଖନ୍ତି ତ ଭଲ କଥା ରହିବ, ନ ରଖିଲେ, ଅନ୍ୟ କୌଣସି ବସାକୁ କାମ ଦେଖି ଚାଲିଯିବି । ଯେଉଁଠି ଖଟିବି, ସେଇଠି ଖାଇବି । ସେଥିଲାଗି ଚିନ୍ତା କାହିଁକି ?

ସତୀଶର ବିରାଟ ମନଟା ଯେମିତି ପର୍ବତଶିଖରରୁ ପାଦଦେଶରେ ପଡ଼ି ଚୂର୍ଣ୍ଣବିଚୂର୍ଣ୍ଣ ହୋଇପଡ଼ିଲା । ତାର ଏଠି ରହିବା ନ ରହିବାରେ ସାବିତ୍ରୀର କୌଣସି ଯାଏ ଆସେ ନା । ଏ ସମ୍ପର୍କରେ ସେ ବିଲକୁଲ ଉଦାସୀନ । ସେ କଡ଼ା ଲେଉଟେଇ ଜଣାଇଦେଲା, ଆଉ ତାର କୌଣସି କଥା କହିବାର ନାହିଁ; କାରଣ ସାବିତ୍ରୀର ଏହି ନିଃଶଙ୍କ ସ୍ପଷ୍ଟ ଜବାବ୍ ପରେ ଆଉ କୌଣସି ପ୍ରଶ୍ନ ତା ମୁହଁରେ ଆସିଲା ନାହିଁ । ଅଥଚ କେତେ କଥା ଯେ ତାର କହିବାର ଥିଲା । ସାବିତ୍ରୀ ଖାଲି ଗ୍ଲାସଟାକୁ ଉଠେଇ ଚାଲିଗଲା, ସତୀଶ ଚୁପ କରି ବସିରହିଲା ।

ହାୟରେ ମଣିଷର ମନ । ଏଇଟା ଯେ କିମିତି ଭାଙ୍ଗେ, କମିତି ଗଢ଼ିହୁଏ, ତାର କୌଣସି ତତ୍ତ୍ୱ ଖୋଜିବାକୁ ମିଳେନା । ଏ ମନ ଯେ ଏତକ ଟିକିଏ ଆଘାତରେ ଏକାବେଳକେ ଧୂଳିରେ ଲୋଟିପଡ଼େ, କେତେ ପ୍ରଚଣ୍ଡ ଆଘାତ ଯେ ହସ ହସ ମୁହଁରେ ସହ୍ୟକରିପାରେ, ତାର କୌଣସି ହିସାବ ସୁଦ୍ଧା ମିଳେନା । ଅଥଚ ଏହି ମନନେଇ ମଣିଷର କେତେ ଗର୍ବ ! ଯାହାକୁ ଆୟତ୍ତ କରିହେଇ ପାରେନା, ଚିହ୍ନି ମଧ୍ୟ ହୁଏନା, କେବଳ ଯେ 'ମୋର' ବୋଲି ତାର ମନ ଧରିଯାଏ ! କେବଳ ବା ତାକୁ ନେଇ ନିରୁଦ୍‌ବେଗରେ ଘର କରିଯାଇଥାଏ ।

ସାବିତ୍ରୀ ବହୁତବେଳୁ ଗଲେ ମଧ୍ୟ ସତୀଶ ସେଇମିତି ବସିରହିଲା । ତାର ହୃଦୟ ଭିତରଟା ଠିକ ଦୁଃଖ କଷ୍ଟରେ ନୁହେଁ, କେବଳ ଏକ ଜ୍ୱାଳାରେ ଯେମିତି ଜଳିପୋଡ଼ି ଉଠିଲା । ଯାହାକୁ ଭଲ ପାଏ, ସେ ଯଦି ଭଲ ନ ପାଏ, ଏପରିକି ଘୃଣା ବି କରେ, ତାହା ସହ୍ୟ କରିହୋଇପାରେ, କିନ୍ତୁ ଯାର ସ୍ନେହ ସୋହାଗ ପାଇବ ବୋଲି

ବିଶ୍ୱାସ କରନ୍ତି, ସେଇଠି ଭୂଲ ଭାଙ୍ଗିଯିବାଟାହିଁ ସବୁଠାରୁ ନିଦାରୁଣ। ପ୍ରଥମ କଥାଟା ବ୍ୟଥା ଦିଏ; କିନ୍ତୁ ଶେଷ କଥା ବ୍ୟଥା ଦିଏ, ଅପମାନ ବି ଦିଏ। ଏ ବ୍ୟଥାର ପ୍ରତିକାର ନାହିଁ କି ନାଲିଶ ବି ନାହିଁ। ଯାହା ନିଜ ପାଇବାର କଥା ନୁହେଁ, ସେ ଭଲ ପାଏନା—ଏଥିରେ କ'ଣ କିଛି କହିବାର ଥାଏ ! କିନ୍ତୁ ଏହି 'ନଥିବାଟାରେ'ପ୍ରାଣରେ ଏତେ ଲାଞ୍ଛନା ଲାଗେ,ବେଦନାର କାରଣ ଖୋଜି ମିଳେନା ବୋଲି କଥା ଏଭଳି ଅସହ୍ୟ ହୋଇପଡ଼େ।

ଯାହା ହେଉ, ସାବିତ୍ରୀର ଏଇ ନିଶ୍ଚିନ୍ତ ଓ ସରଳ କର୍ତ୍ତବ୍ୟ ନିର୍ଦ୍ଧାରଣ କେବଳ ତାର ହୃଦୟ ମାନଚିତ୍ରଟାକୁ ଉଦ୍‌ଘାଟିତ କଲାନି, ତାହା ସତୀଶର ହୃଦୟର ଛବିଟାକୁ ବାହାରର ଆଲୋକକୁ ଟାଣି ଆଣି-ଦେଲା। ଏହି ଦୁଇଟିଯାକ ମାନଚିତ୍ରକୁ ପାଖାପାଖି ରଖି ସେ ସ୍ତମ୍ଭିତ ହୋଇ ରହିଲା। ସେ ନିଶ୍ଚିତ ଭାବରେ ଜାଣିଥିଲା,ସାବିତ୍ରୀ ତାକୁ ଭଲ ପାଏ, ବରଂ ସେ ଭଲ ପାଏନା। କିନ୍ତୁ ଏବେ ସେ ଦେଖିଲା, ଠିକ ବିପରୀତ କଥା, ସେ ଭଲ ପାଏ, ସାବିତ୍ରୀ ଭଲପାଏନା। ଏଇ ଘୃଣିତ କଥାଟାକୁ ସ୍ୱୀକାର କରିବାରେ କେବଳ ଲଜ୍ଜାରେ ତାର ମୁଣ୍ଡ ତଳକୁ ନଇଁ ଆସିଲାନି, ନିଜ ମନର ଏଇ ନୀଚ ପ୍ରବୃତ୍ତିରେ ତାର ନିଜ ଉପରେ ଘୃଣା ଜନ୍ମି ଆସିଲା। ତାର ଗତକାଲି ରାତିର କାମଗୁଡ଼ାକ ନିଶ୍ଚୟ ଯେ ଲଜ୍ଜାକର, ଏଥିରେ କୌଣସି ସନ୍ଦେହ ନାହିଁ। ତାର ଜୀବନରେ ଏଭଳି ଅନେକ ରାତିର ଅନେକ ଲଜ୍ଜା ଜମିରହିଛି ସତ, କିନ୍ତୁ ଏଇ ଇତରତାର ତୁଳନାରେ ସେସବୁ ଅକିଞ୍ଚିତକର ହୋଇଉଠିଲା।

ଏ ବସାରେ ତ ଦିନେ ହେଲେ ଆଉ ରହିଲେ ଚଳିବନି। ଏଠି ରହିବା ନ ରହିବା ସମ୍ବନ୍ଧରେ ସେ ସଂପୂର୍ଣ୍ଣ ଉଦାସୀନ ନୁହେଁ,ଏ କଥା ଙ୍କ ସେ କୌଣସିମତେ ସ୍ୱୀକାର କରି ପାରିବନି। ସେ କଠୋର ପ୍ରତିଜ୍ଞା କରି ବସିଲା ଯେ ବେଦନାର ଗୁରୁଭାରରେ ମନ ତାର ଭାଙ୍ଗି ଯଦି ଅଣୁ ପରମାଣୁ ହୋଇଯାଏ, ତଥାପି ସେ ଏଇ ନୀଚତାକୁ ପ୍ରଶ୍ରୟ ଦେଇ କଦାପି ଅଧଃପଥରେ ଗତି କରିବନି।

ବାହାରେ ଯେ ବେଳ ବହୁତ ହୋଇ ଆସିଲାଣି, ସେ ବିଷୟରେ ସତୀଶର ହୋସ ନ ଥିଲା। ହଠାତ୍ ବସାକୁ ପ୍ରତ୍ୟାଗତ କିରାଣୀମାନଙ୍କ ପାଟିତୁଣ୍ଡରେ ସେ ଚକିତ ହୋଇ ଝରକା ବାହାରକୁ ଅନେଇ ଦେଖିଲା

ଉଠିପଡ଼ିଲା । ସଙ୍ଗେ ସଙ୍ଗେ ଦେହରେ ପାଞ୍ଜାବିଟାକୁ ଗଳେଇଦେଇ ଚାଦରଟାକୁ କାନ୍ଧରେ ପକେଇ ଅଲକ୍ଷିତ ଭାବରେ ନିଃଶବ୍ଦରେ ବାହାରକୁ ଚାଲିଆସିଲା । ଏତିକିକ୍ଷଣି ମୁହଁ ହାତ ଧୋଇବା ପାଇଁ କହିବାକୁ ସାବିତ୍ରୀ ଆସି ହାଜର ହେବ ଏବଂ ଜଳଖିଆ ଖାଇବା ଲାଗି ଜିଦ୍ କରି ବସିବ । ଆଜି ପେଟରେ ତାର ଆଦୌ ଭୋକ ନାହିଁ; କିନ୍ତୁ ସାବିତ୍ରୀ ଏ କଥାରେ କୌଣସି ରକମ ବିଶ୍ୱାସ କରିବନି । ଅନୁରୋଧ କରିବ, ଖାଇ ପକାଅ, ଭୋକ ହେବ, ଇମିତି ନାନା କାକୁତି ମିନତି କରିବ, ହୁଏତ ଶେଷରେ ରାଗକରି ଚାଲିଯିବ । ଏଇ ସମସ୍ତ ମୌଖିକ ସ୍ନେହର ବାକ୍-ବିତଣ୍ଡାରୁ ତାର ଜୀବନରେ ଆଜି ଏଇ ପ୍ରଥମ । ସେ ନିଜକୁ ଅକୃତ୍ରିମ ଘୃଣା ସହକାରେ ଦୂରେଇ ନେଇଗଲା ।

ରାସ୍ତାରେ ବୁଲି ବୁଲି ସନ୍ଧ୍ୟାହେବାର ଠିକ୍ ପୂର୍ବରୁ ଦର୍ଜିପଡ଼ାର ଗୋଟିଏ ଗଳିର ମୋଡ଼ରେ ହଠାତ୍ ପଛରୁ ଗୋଟିଏ ପରିଚିତ କଣ୍ଠର ଡାକ ଶୁଣି-ବାକୁ ପାଇଲା—'କିଏ ସାନବାବୁ ନା ?'

ସତୀଶ ଫେରିପଡ଼ି କହିଲା—ହଁ, ମୋକ୍ଷଦା ଟି କି ?

ଚାକରାଣୀ ମୋକ୍ଷଦା ବହୁତ ଦିନ ଆଗେ ତାଙ୍କ ଗାଁରେ ତାଙ୍କ ଘରେ କାମ କରୁଥିଲା । ଛୁଟି ନେଇ କଲିକତା ଆସିଲା, ଆଉ ଫେରିନି । କହିଲା—ହଁ, ବାବୁ, ମୁଁ । ସାନବାବୁ, ଖଣ୍ଡିଏ ଚିଠି ଆସିଚି, ପଢ଼ିଦେଇ ପାରିବେ ?

ସତୀଶ ହସି ହସି କହିଲା—ଏତେ ବଡ଼ କଲିକତାଟାରେ ଖଣ୍ଡିଏ ଚିଠି ପଢ଼ିବାକୁ ଲୋକ ମିଳିଲାନି ତତେ ? ହଉ କାହିଁ ଚିଠି କାହିଁ ?

ଚିଠି ଖଣ୍ଡିକ ଆମ ଘରେ ଅଛି ବାବୁ ! ଅଚିହ୍ନା ଲୋକକୁ ଦେଇ ପଢ଼ାଇବାକୁ ସାହସ ହେଲାନି । କ'ଣ କିଛି ଲେଖାଥିବ । ତେବେ ଆମ ଘରେ ଗୋଟିଏ ଝିଅ ଅଛି, ସେ ଲେଖାପଢ଼ା ଜାଣେ, କିନ୍ତୁ ତାକୁ ଏଇ ଦୁଇ ଦିନ ହେଲା ଦେଖିବାକୁ ପାଉନି । ଏତେ ରାତିରେ ଘରକୁ ଫେରେ ଯେ ତାକୁ ଦେଇ ପଢ଼େଇବାକୁ ସମୟ ହୁଏନା ।

ସତୀଶ ପଚାରିଲା—ଘରଟା ତୋର କେତେ ଦୂର ?

ହୁଁ, ଟିକିଏ ଦୂର ହେବ ନିଶ୍ଚୟ । ବଡ଼ ବଜାର ସେପାଖେ ଗୋଟାଏ ଗଳି ଭିତରେ । ବାବୁ, ଯଦି ତୁମର ଠିକଣାଟା କହିଦିଅନ୍ତ, ତାହାହେଲେ କାହାଁକୁ ହେଲେ ସାଙ୍ଗରେ ନେଇ ତୁମ ବସାକୁ ଯାଇ ପଢ଼ିଦେଇ ଆସନ୍ତି ।

'ଆଚ୍ଛା', କହି ସତୀଶ ତାର ଶୋଭାବଜାରର ଠିକଣାଟା କହିଦେଲା ଏବଂ କିମିତି ଯିବାକୁପଡ଼େ ବୁଝାଉଥାଏ,କହୁଥାଏ । କିନ୍ତୁ ବାଟ ଆସିବା ପରେ ମୋକ୍ଷଦା ହଠାତ୍ ଅଟକିଯାଇ କହିଲା—କିନ୍ତୁ ଯଦି ମନେ ନ କରନ୍ତି,କହନ୍ତି । କହିବାକୁ ସାହସ ହେଉନି । ଯଦି ଟିକିଏ ପାଦର ଧୂଳି ପକାନ୍ତା, ତାହାହେଲି ଆମ ଘର ଏଇଠୁ ବେଶୀ ଦୂର ନୁହେଁ ।

ସତୀଶ କିଛି ସମୟ କ'ଣ ଭାବି କହିଲା—ଆଚ୍ଛା ଚାଲ ।

ଆଜି ବସାକୁ ଫେରିବା ଲାଗି ତାର ଆଦୌ ଇଚ୍ଛା ନ ଥିଲା । ଏମିତି ବୁଲିବୁଲି କରି ଅଧିକ ରାତିରେ ବସାକୁ ଗଲାବେଳକୁ ସାବିତ୍ରୀ ତା ଘରକୁ ଚାଲି ଯାଇଥିବ । ତାପରେ ଯାଇ ସେ ବସାକୁ ଫେରିବ । ମନେ ମନେ ସେ ଏଇ କଥା ସ୍ଥିରକରି ବୁଲିବାକୁ ବାହାରିଗଲା । ତେଣୁ ସହଜରେ ସମ୍ମତି ଜଣେଇ, ଗୋଟେ ଦିଟା ଗଳି ପାରହୋଇ ସେମାନେ ଗୋଟାଏ ଦୋତଲା ଘର ମୁହଁରେ ଆସି ପହଞ୍ଚିଲେ ।

"ଟିକିଏ ଅପେକ୍ଷା କରନ୍ତୁ" କହି ମୋକ୍ଷଦା ଭିତରେ ପ୍ରବେଶ-କଲା ଏବଂ ସଙ୍ଗେ ସଙ୍ଗେ ଗୋଟାଏ କିରାସିନି ଡିବି ହାତରେ ଧରି ଆସି ବାଟ ଦେଖେଇ ଦେଖେଇ ଉପରକୁ ନେଇଗଲା । ଏପଟେ ଗୋଟିଏ ଗ୍ଲେଟ ଟେବୁଲ ଉପରେ ଗୋଟିଏ ପିତ୍ତଳ ଦୀପ ଜଳୁଥିଲା । ସେଇ ଘରଟିକି ଦେଖେଇ ଦେଇ କହିଲା—ଏଇଠି ଟିକିଏ ବସିଥାନ୍ତୁ କି, ମୁଁ ତମାଖୁ ସଜ କରି ନେଇ-ଆସୁଚି ।

ସତୀଶ ଘର ଭିତରକୁ ପଶିଲା । ଦେଖିଲା, ଗ୍ଲେଟ ଘରଟିଏ ହେଲେ କ'ଣ ହେବ, ବେଶ ପରିଷ୍କାର ପରିଛନ୍ନ । ବଡ଼ ଆରାମ ବୋଧ ହେଲା ତାର । ଗୋଟିଏ ଦିଗରେ ଗୋଟିଏ ଚୌକି ଉପରେ ଗୁଡ଼ାଏ କଂସା ପିତ୍ତଳ ବାସନ ବେଶ୍ ଜକ୍ ଜକ୍ । କାଛର ଗୋଟିଏ ସେଲ୍ଫ ଉପରେ ଗୋଟିଏ ଟାଇମପିସ୍ ଘଡ଼ିରେ ବାଜିଚି ଆଠଟା । ସତୀଶ ଏବୁଣ୍ଡି ଆରପଟେ ଜୋତାକୁ ନେଖାଲି ରଖିଦେଇ ଖଟ ଉପରେ ପଡ଼ିଥିବା ସାଦା ଗ୍ଲାଦରବସ୍ତ୍ର ବିଛଣାଟି

ଉପରେ ଯାଇ ବସିଲା ଏବଂ ଘରର ଅନ୍ୟ ଆସବାବପତ୍ରଗୁଡ଼ିକୁ ମନେ ମନେ ପରୀକ୍ଷା କରିବାକୁ ଲାଗିଲା । ପ୍ରଥମେ ନଜରରେ ପଡ଼ିଲା ଗୋଟିଏ ବୁକ୍ ସେଲ୍ଫ ଉପରେ । ସଜାହୋଇ ରହିଛି କେତେଗୁଡ଼ିଏ ବହି । ବହିରୁ ଖଣ୍ଡିଏ ଝିଙ୍କି ଆଣି ପ୍ରଥମ ପୃଷ୍ଠା ଲେଉଟାଇ ଲେଉଟାଇ ଦେଖିଲା ଇଂରାଜୀ ଅକ୍ଷରରେ ନାଁ ଲେଖା ହୋଇଛି—ଭୁବନଚନ୍ଦ୍ର ମୁଖାର୍ଜୀ ।

ସେ ବହି ଖଣ୍ଡିକ ରଖିଦେଇ, ଆଉ ତିନି ଚାରିଟି ବହି ଖୋଲି, ସେଇ ଗୋଟିଏ ନାଁ ଦେଖି ବହିଗୁଡ଼ିକ ଯଥାସ୍ଥାନରେ ରଖିଦେଇ ଆସି ବସିଲା ।

ମୋକ୍ଷଦା ହୁକା ଦେହରେ ତମାଖୁ ଭର୍ତ୍ତିକରି ଆଣିଲା ।

ସତ୍ୟେଶ ହୁକାକୁ ହାତରେ ଧରି କହିଲା—ଘରଟି ତ ବେଶ୍ ପରିଷ୍କାର ପରିଚ୍ଛନ୍ନ, ଉଠିବାକୁ ଇଚ୍ଛା ହେଉନାହିଁ ।

ମୋକ୍ଷଦା ମୁରୁକିହସା ଦେଇ କହିଲା—ଉଠିବେ କାହିଁକି, ବସୁ ନାହାନ୍ତୁ ! ଘରଟି କିନ୍ତୁ ମୋର ନୁହେଁ, ଆଉ ଜଣେ ଝିଅର ।

ସତ୍ୟେଶ ପଚାରିଲା—ସେ ଝିଅଟି କେଉଁଠି ?

ସେ ବାବୁମାନଙ୍କ ଗୋଟିଏ ବସାରେ କାମ କରେ । ଆସିଲା ବେଳକୁ ପ୍ରାୟ ରାତି ହୋଇଯାଏ, ତେଣୁ ଘରର ଚାବି ମୋର ପାଖରେ ଥାଏ । ମତେ ମାଉସୀ ବୋଲି ଡାକେ ।

ସତ୍ୟେଶ କହିଲା—ଯାହା ତାକୁ ତେବେ ଏ ଭୁବନବାବୁ କେତେ-ବେଳେ ଆସିବେ ?

ମୋକ୍ଷଦା ଆଶ୍ଚର୍ଯ୍ୟ ହୋଇ କହିଲା—ଭୁବନବାବୁ ! ସେ ପୁଣି କିଏ ?

ଭୁବନ ଚନ୍ଦ୍ର ମୁଖାର୍ଜୀ, ଜାଣୁନା ?

ଅକସ୍ମାତ୍ ମୋକ୍ଷଦା ଭ୍ରୂ ପ୍ରସାରିତ କରି କହିଲା—ଓ ! ଆମର ସେଇ ମୁଖୁର୍ଜ୍ୟେ ମହାଶୟ ! ନା ନା, ଆଉ ତାଙ୍କୁ ଆସିବାକୁ ହେଆ ଯିବନି !

କାହିଁକି ? ମରିଯାଇଛନ୍ତି ନା କଣ ?

ମୋକ୍ଷଦା ହଟାଯାକ ଆଖିକୁ ଘୁରାଇକରି କହିଲା—ନା ମରିଯିବେ କାହିଁକି ? ମରିଯାଇଥିଲେ ତ ଭଲ ହୋଇ ଥାଆନ୍ତା । ବ୍ରାହ୍ମଣ ଲୋକ,

ଜାତିରେ ପୁରୁଷଶ୍ରେଷ୍ଠ, ଆମମାନଙ୍କ ମଥାର ମଣି, ନାରାୟଣ ତୁଲ୍ୟ ! ତାଙ୍କୁ ଅଭକ୍ତି କରନ୍ତୁ ନା । ତାଙ୍କ ପାଦଧୂଳି ମୁଣ୍ଡରେ ଲଗାଇବା କଥା । କିନ୍ତୁ ସତ କହୁଚି, କୋଉଦିନ ଆଖି ଆଗରେ ପଡ଼ନ୍ତେ କି ଗ୍ରାଞ୍ଜିଣ୍ଡି ମୁଠାରେ ନମାରି ଛାଡ଼ିଲେ ଯାଇ ମୋ ନାଁ ମୋକ୍ଷଦା ।

ସତୀଶ ହସିଉଠିଲା । କହିଲା—ରାଗରେ ବ୍ରାହ୍ମଣ ଗୋସେଇଁ କି ସେଭଳି ଅଭକ୍ତି କରି ମାରି ପକାନା । ବେଶ୍ ଭକ୍ତିକରି ଏଇମିତି ମନେ ମନେ ଗାଳିଦେଲେ ଚଳିବ; ପାପ ହେବନି, କିନ୍ତୁ ସେ ଲୋକଟି କିଏ ?

ମୋକ୍ଷଦା ଉଦ୍ଧତ ଭାବରେ କହିଉଠିଲା— ଲୋକଟାର ପରିଚୟ ଦେବି କଣ—ସେ ମଣିଷ ନୁହନ୍ତି; ହାଡ଼ ଚମାର । ଏଇ ଯେ ଝିଅଟି କଥା କହୁଥିଲି, ତାକୁ ଯେମିତି ଭସାଇ ଦେଇଗଲା, ସେ କ'ଣ ଆପଣମାନଙ୍କ ଭଳି ଭଦ୍ରଲୋକର କାମ ? ଛି ଛି; ବେକରେ ଦେବା ପାଇଁ ଦଉଡ଼ି ଜୁଟିଲାନି !

ସତୀଶ ଅତ୍ୟନ୍ତ କୌତୂହଳୀ ହୋଇ ପଚାରିଲା—ସେ କିଏ ? କରନ୍ତି କ'ଣ ?

ହଠାତ୍ ଦ୍ୱାର ଆରପଟୁ ଉତ୍ତର ଆସିଲା—ଲୋକଟିକୁ ତ ଆପଣ ଚିହ୍ନନ୍ତି ନାହିଁ, କ'ଣ ହେବ ତା କଥା ଶୁଣି ?

ସତୀଶ ଚମକି ଉଠିଲା ।

ମୋକ୍ଷଦା ମୁହଁକୁ ଆଉଡ଼େଇ କହିଲା—ସାବି କଲୋ, କେତେବେଳେ ଆସିଲୁ ?

ସାବିତ୍ରୀ ଘର ଭିତରକୁ ପଶିଆସି କହିଲା—ଏଇ ତ ଆସୁଚି । ବାବୁଟିକୁ କୋଉଠୁ ପାଇଲୁ ମାଉସୀ ।

ମୋକ୍ଷଦା କହିଲା—ଯାହା କଥା କହୁ ନ ଥିଲି, ଏ ଇ ସେଇ ଆମର ସାନବାବୁ । ଆଜକି ଦୁ'ଦିନ ହେଲା ବୋହୂମା ପାଖରୁ ଚିଠି ଖଣ୍ଡିଏ ପାଇଚି, ପଢ଼େଇ ପାରିନି । ବାବୁଙ୍କୁ ଦେଖି ଡାକିଆଣିଚି ଘରକୁ । ପାଦଧୂଳି ଘରେ ପଡ଼ୁ ବୋଲି ।

ତେବେ ପାଦଧୂଳି ତୋ ଘରେ ନ ପକେଇ ମୋ ଘରେ କାହିଁକି ? ମୋକ୍ଷଦା କ୍ଷୁଣ୍ଣ ହୋଇ କହିଲା—ରାଗ କାହିଁକି ସାବି ? ଆମ ଘରେ ଭଦ୍ରଲୋକ ବସିପାରିବା ଭଳି ଜାଗା ଅଛି ? ସେଇଥିପାଇଁ ତୋ ଘରେ ନେଇ

ବସେଇଦେଇଛି । କେଡ଼େ ଭଲ ଲୋକ ଏମାନେ, ଖୁସି ହୁଅନ୍ତୁ ନା ରାଗି ଯାଉଛୁ ?

ସାବିତ୍ରୀ ହସି ହସି କହିଲା—ରାଗିବି କାହିଁକି ଲୋ ମାଉସୀ ? କିନ୍ତୁ ଖାଲି ଖାଲି ଏମିତି ଚାଦର ଧରିଲେ ନେଲେ ଯେ ପାପ ହୁଏ ! ଜଳ କିଛି ଯୋଗର ବ୍ୟବସ୍ଥା କର । ହେ ବ୍ରାହ୍ମଣ ଗୋସେଇଁ, ଭୋକ ଲାଗୁଛି କି ?

ସତୀଶ ଅତ୍ୟନ୍ତ ସଙ୍କୁଚିତ ହୋଇ ବସିଥିଲା, ମୁଣ୍ଡକୁ ହଲାଇ କହିଲା—ନା !

ସାବିତ୍ରୀର ଅଭଦ୍ର ପ୍ରଶ୍ନରେ ବିରକ୍ତ ହୋଇ ମୋକ୍ଷଦା କହି ଉଠିଲା – ଏମିତି କ'ଣଗୁଡ଼ାଏ କଥା କହୁଚୁ କି ଲୋ ସାବି ! ଭଦ୍ରଲୋକଙ୍କ ସାଙ୍ଗରେ କ'ଣ ଏମିତି କଥାବାର୍ତ୍ତା କରନ୍ତି ?

ସାବିତ୍ରୀ ଖୁବ୍ ଜୋରରେ ହସି ହସି କହିଲା – କଥାଟା କ'ଣ ମନ୍ଦ ହେଲା ? ଆଚ୍ଛା ଭୋକର କଥା ଛାଡ଼, ଆଜି ପର୍ଯ୍ୟନ୍ତ ନାହିଁ, ତୁ ଯା କି ଦୋକାନରୁ କିଛି ଜଳଖିଆ କିଣିଆଣ, ମୁଁ ଜାଗା କରିଦେଉଛି ।

ମୋକ୍ଷଦା ଅସ୍ଫୁଟ ସ୍ୱରରେ କ'ଣ ଗୁଡ଼ାଏ ବକି ବକି ଗୃହ ଛିବାରେ ସାବିତ୍ରୀ କହିଲା – କାଲି ରାତିରୁ ତ ଏତେ ସମୟ ଉପାସରେ କଟିଲାଣି, ସନ୍ଧ୍ୟା ବେଳେ କମିତି କୁଆଡ଼େ ଖସିଆସିଲ, ଜାଣି ପାରିଲି ନାହିଁ । ଏଥର ଉଠ, ସନ୍ଧ୍ୟା ଆହ୍ନିକ କରି କିଛି ଖାଇପକା । ଏଇ ସେଇ ଅଲଗୁଣିରେ ଗାମୁଛା ଅଛି, ପାଲିଟି ପକା ମୋର ସାଥିରେ ଆସ, ନା ନା ଡେରିକଲେ ଚଳିବନି, ଉଠ, ବେଗି ଉଠିଲ ।

ସତୀଶ ମୁଣ୍ଡ ହଲାଇ କହିଲା – ସତ କହୁଛି ଭୋକ ନେଇନି ।

ସାବିତ୍ରୀ କହିଲା—ନହେଲେ ବି ଖାଇବାକୁ ପଡ଼ିବ । ତାର ପ୍ରଥମ କାରଣ—ଭୋକ ନାହିଁ; ଏ କଥାରେ ମୋର କୌଣସି ବିଶ୍ୱାସ ନାହିଁ । ଦ୍ୱିତୀୟତଃ........

ସତୀଶ ମୁହଁର ଭାବକୁ ଅଧିକ ଟାଣ କରିନେଇ କହିଲା—ଦ୍ୱିତୀୟ କାରଣ ମିଛ, ଏହି ପ୍ରଥମଟା ହିଁ ସବୁ । ସବୁ ସମୟରେ ତୋର ଜିଦ୍ ଆଉ ଜବରଦସ୍ତି । ଏହି ଜିଦ୍ ସଙ୍ଗରେ ଯୁଦ୍ଧ କରିବାକୁ କା'ର୍ ସାଧ ନଥାଏ ।

ସାବିତ୍ରୀ ମୁହଁକୁ ଟେକି ଟିକିଏ ହସିଦେଇ କହିଲା—ତେବେ ମିଛଟାରେ ଚେଷ୍ଟାକର କାହିଁକି ?

ସନ୍ତୋଷ ଆଉରି ଗମ୍ଭୀର ହୋଇ କହିଲା—ତା ନୁହେଁ ସାବିତ୍ରୀ ! ମୋର ଚେଷ୍ଟା କୌଣସିମତେ ମିଥ୍ୟା ହେବ ନାହିଁ । ସତ କହୁଚି, ତୁ ଯେତେ କହି ପକେଇ, ମୁଁ କୌଣସି ମତେ ଏଠି କିଛିହେଲେ ଖାଇବି ନାହିଁ ।

ସନ୍ତୋଷର ଜିଦ୍ ଦେଖି ସାବିତ୍ରୀ ନୀରବରେ ହସିବାକୁ ଲାଗିଲା । କିଛି ସମୟ ପରେ ଆସ୍ତେ ଆସ୍ତେ କହିଲା—ମୁଁ ଭାବୁଚି, ଆଜ ଆପଣ ଆସିଲେ କାହିଁକି ? ଆଜ ମୋର ଜନ୍ମଦିନ । ତେଣୁ ନିଜେ ଆସି ଉପଯୋ-ବେଳେ ଆପଣ ମୋଘରେ ପାଦ ପକାଇଛନ୍ତି, ତେବେ ଖାଲି ଖାଲି ଛାଡ଼ି-ଦେଇ ପାରିବିନି । "ପାରିବିନି" କହୁ କହୁ ସାବିତ୍ରୀ ଅଟକି ଗଲା ସତ, କିନ୍ତୁ ତାର ଅନ୍ତରର ଗୋପନ କଥାଟା ତା'ର କଣ୍ଠ ସ୍ୱରର ମୁକ୍ତପଥ ଦେଇ ଏଭଳି ସନ୍ତୋଷ ଆଗରେ ଆସି ଠିଆହେଲା ଯେ କିଛିକ୍ଷଣ ଲାଗି ସନ୍ତୋଷର ସମସ୍ତ ବୋଧଶକ୍ତି ଏକବାରେ ଜଡ଼ ପାଲଟିଗଲା । ବୁଦ୍ଧିମତୀ ସାବିତ୍ରୀ ଚକ୍ଷୁ ନିମିଷରେ ଏକଥା ଅନୁଭବ କରି ତାର ସମସ୍ତ କଥାକୁ ସହଜ ପରିହାସରେ ପରିଣତ କରି କହିଲା—ଭଗବାନ ଆଜ ଆପଣଙ୍କୁ ମୋର ଅତିଥି କରି ପଠେଇଛନ୍ତି; ତେଣୁ ଖାଇବାକୁ ପଡ଼ିବ, ଦକ୍ଷିଣା ନେବାକୁ ବି ପଡ଼ିବ ।

ଏତେ ସମୟ ପରେ ଯାଇ ସନ୍ତୋଷର ଶକ୍ତି ଫେରିଆସିଲା, ପଚାରିଲା—ସତେ ଆଜ ତୋର ଜନ୍ମଦିନ ?

ସାବିତ୍ରୀ କହିଲା—ସତ କହୁଚି ।

ସନ୍ତୋଷ କହିଲା—ଯଦି ଏମିତି ଗୋଟାଏ ଦିନରେ ଆସିଯାଇଚି ତ ଦୋକାନରେ କେତେଗୁଡ଼ାଏ ବାସୀ ମିଠେଇ ମଣ୍ଡା ଖାଇ ପେଟ ଭରିବିନି । ତା ଛଡ଼ା ମୁଁ ତ ଏସବୁ କେବେ ଖାଏନା ।

ସାବିତ୍ରୀ ତାହା ଜାଣେ । ମନେ ମନେ ଲଜ୍ଜିତ ହୋଇ କହିଲା—ଆଜ ଯେ ରାତି ହୋଇଯାଉଚି !

ସନ୍ତୋଷ କହିଲା—ରାତି ହେଉ ! ଆଜ ଆଉ ବସାକୁ ଫେରିଯାଇ ବକା ତ ଖାଇବାକୁ ପଡ଼ିବନି । ସେଥିପାଇଁ ଯେତେ ରାତି ହେଉ ଭୟ କାହିଁକି ? ଯାହା କହ ତୁ, କୌଣସିମତେ ମୁଁ ଏସବୁ ଖାଇବିନି ।

—ତୁମ ସାଙ୍ଗରେ ଲଢ଼େଇ ଯୁକ୍ତିତର୍କ କରିବାର କ୍ଷମତା ମୋର ନାହିଁ, କହି ସାବିତ୍ରୀ ହସିଉଠିଲା ।

ସନ୍ତୋଷ ବସିଥିଲା, ଶୋଇପଡ଼ିଲା । ଏହି କ୍ଷୁଦ୍ର କୁଟୀର, ଏଇ ଶୁଭ୍ର ନିର୍ମଳ ଶଯ୍ୟା ଛାଡ଼ିଯିବା ପାଇଁ ତା'ର କୌଣସିମତେ ଇଚ୍ଛା ହେଉ ନ ଥିଲା,

ଅଥଚ ଆତ୍ମସମ୍ଭ୍ରମ ଅକ୍ଷୁଣ୍ଣ ରଖି ବସିରହିବାର ମଧ୍ୟ କୌଣସି ସଦୁପାୟ ନ ଥିଲା । ଏଥର ଏଇ ଜଲଖିଆ ପ୍ରସ୍ତୁତ କରିବା ଛଳମଧ୍ୟର ସମ୍ଭାବନା, ତାକୁ ଯେଉଁଳି ଗୋଟାଏ ଆସନ୍ନ କର୍ତ୍ତବ୍ୟର କଠିନ ଦାୟିତ୍ୱରୁ ଅବ୍ୟାହତି ଦେଲା । ସେପାଖରେ ଥିବା ତକିଆଟାକୁ ଜୋରରେ ଜଡ଼େଇ ଧରି, କାନ୍ଥ ଆଡ଼କୁ ମୁହଁକରି ଚୂପ୍‌କରି ପଡ଼ିଗଲା । ଚାଲିଯିବାବେଳେ ସାବିତ୍ରୀ ବାହାର ଶିକୁଳିଟାକୁ ଯେ ଲଗେଇଦେଇ ଯାଇଥିଲା, ସେ କଥା ଯେମିତି ସେ ଜାଣିପାରିଥିଲା, ତା'ର "ତୁମେ" ସମ୍ବୋଧନ ମଧ୍ୟ ସେ ସେଇଭଳି ଲକ୍ଷ୍ୟ କରି-ଥିଲା । ନିର୍ଜନ ଘର ଭିତରେ ଏହି ନବଲବ୍ଧ ତଥ୍ୟ ଦୁଇଟି ଯାଦୁକର ଓ ତାର କାଉଁରି କାଠି ଭଳି ତା ମନ ଭିତରେ ଅପୂର୍ବ ଇନ୍ଦ୍ରଜାଲ ସୃଷ୍ଟି କରି ଚାଲିଲା । ଆଜି ଦି'ପହରେ ଯେ ତା'ର ସମସ୍ତ ଆସକ୍ତିର ଆବର୍ଜନା ତା ମନ ଭିତରୁ ଭଙ୍ଗା ଭଳି ବାହାରକୁ ଖସି ଯାଇଥିଲା, ଜୁଆରର ଓଲଟା ସ୍ରୋତରେ ପୁଣି ସେଗୁଡ଼ାକ ଗୋଟିକ ପରେ ଗୋଟିଏ ଫେରି ଆସିବାକୁ ଲାଗିଲା । ଆଜି ଦି'ପହରେ ଆତ୍ମାଭିମାନର ଆଘାତର ସତୀବ୍ର ଜ୍ୱାଳା ନିଜ ମନର ନୀଚ ପ୍ରବୃତ୍ତି ଆଡ଼କୁ, ତା'ର ଆଖି ଫିଟେଇଦେଇଥିଲା । ଜ୍ୱାଳା ଉପଶମ ହେବା ସଙ୍ଗେ ସଙ୍ଗେ ସେ ଆଖି ଆପେ ଆପେ ବୁଜି ହୋଇଗଲା । ଏଭଳି ଭାବେ ନିଜକୁ ନେଇ ଖେଳ ଖେଳୁ ଖେଳୁ ବୋଧହୁଏ କିଛି ସମୟ ପାଇଁ ସେ ଶୋଇପଡ଼ିଥିଲା । ହଠାତ୍ ଦ୍ୱାର ଖୋଲିବାର ଶବ୍ଦ ହେବାମାତ୍ରେ ତାର ନିଦ ଭାଙ୍ଗିଗଲା । ଦେଖିଲା ସାବିତ୍ରୀ ମୋକ୍ଷଦାକୁ ଧରି ଘର ଭିତରେ ହାଜର ।

ମୋକ୍ଷଦା ଚିଠି ଖଣ୍ଡିକ ସତ୍ୟଶଙ୍କ ହାତରେ ଦେଇ କହିଲା—ଦେଖିଲ ବାବୁ, ବୋହୂ କ'ଣ ଲେଖିଚନ୍ତି ?

ସତ୍ୟଶ ଗୋଟାକଯାକ ଚିଠି ପଢ଼ିସାରି କହିଲା—ଲେଖିଚନ୍ତି, ତାଙ୍କର ଫେରିବାକୁ ଆଉ ମାସେଖଣ୍ଡେ ଡେରି ଅଛି ।

ମୋକ୍ଷଦା ପଚାରିଲା—ଖାଲି ଏତିକି, ଆଉ କିଛି ଲେଖା ହୋଇନି ?

ସତ୍ୟଶ ଚିଠି ଖଣ୍ଡିକ ଫେରେଇଦେଇ କହିଲା—ଆଉ ବେଶୀ କିଛି ନାହିଁ ।

—ମୋର ପାଉଣାଟିକ ବାବୁ ?

—ନା, ସେ କଥା କିଛି ନାହିଁ ।

ଟଙ୍କା କଥା ନାହିଁ ଶୁଣି ମୋକ୍ଷଦା ଖୁବ୍ ବିରକ୍ତ ହୋଇଉଠିଲା । ଶଠିଟି ଆଣିବା ଲାଗି ହାତ ବଢ଼େଇ କହିଲା—ତା ରହିବ କାହିଁକି, ଥିବ ଗୋଟେ ବାଜେ କଥା ! ଆଚ୍ଛା ଦିଅ ତ ସେ ଶଠିଟା । ସାବିତ୍ରୀ, କାଲି ଏ ଶଠିର ଗୋଟାଏ ଜବାବ ଲେଖି ଦେ ତ । ଆଲୋ ଏ, ହଁ—ବାବୁଙ୍କ ଜଳଖିଆ କଥା ଭୁଲିଯାଇଚୁ ! ରାତି କ'ଣ ହେଇନି ?

ସାବିତ୍ରୀ କହିଲା—ବ୍ରାହ୍ମଣ ପିଲାଟି, ସନ୍ଧ୍ୟାବନ୍ଧ ନ କରି ସେମିତି ଖାଇବେ ?

ମୋକ୍ଷଦା ତ ଆଗରୁ ବିରକ୍ତ ହୋଇ ଉଠିଥିଲା, ଆହୁରି ବିରକ୍ତ ହୋଇ କହିଲା—ଶୁଣିଲୁ, ଇଏ କ'ଣ ତୋର ପୁରୋହିତ ବ୍ରାହ୍ମଣ ନା ଭଟ୍ଟାଚାର୍ଯ୍ୟ ବ୍ରାହ୍ମଣ ଯେ ପୂଜାବନ୍ଧ କରି ଯାଇ ଖାଇବେ ?

ସଖୀଣି ହସି ହସି କହିଲା—କିଲୋ ତୁ କ'ଣ ସବୁ ଭୁଲିଗଲୁ ? ମୁଁ ପରା ସବୁବେଳେ ସନ୍ଧ୍ୟା କରେ । ନ କଲେ କ'ଣ କିଛି ଖାଏ ?

ମୋକ୍ଷଦାର ହଠାତ୍ ମନେ ପଡ଼ିଗଲା । ଅପ୍ରସ୍ତୁତ ହୋଇ କହିଲା—ଆଲୋ, ଏ ହଁ, ଭୁଲିଯାଇଥିଲି । ସାନବାବୁଟିକି, ପୂଜା ନ କଲେ············

ସାବିତ୍ରୀ ଆଡ଼କୁ ଲକ୍ଷ୍ୟ କରି କହିଲା—ଦେ ମା, ଶୀଘ୍ର ଜାଗା କରିଦେ । କହୁ କହୁ ମୋକ୍ଷଦା ଅନ୍ୟ ଆଡ଼କୁ ଚାଲିଗଲା ।

ଘଣ୍ଟାକ ପରେ, ସଖୀଣିର ଖାଇବା ଘରେ କେହି ହେଲେ ନାହାନ୍ତି, ଅନ୍ଧାର ବାରଣ୍ଡାରୁ ମୋକ୍ଷଦା ଏକଥା ଲକ୍ଷ୍ୟକରି ଏକାବେଳକେ ଜଳି ଉଠିଲା । ବେଗେଇ ଘରେ ଆସି ଦେଖିଲା, ସାବିତ୍ରୀ ଚୁପ୍‌ଚାପ୍ ବସିରହିଛି । ରୁଷ୍ଟ ସ୍ୱରରେ କହିଲା—ଇଏ କି କଥା କିଲୋ ସାବିତ୍ରୀ ! ଇଏ କ'ଣ କାଙ୍ଗାଳି ଭୋଜନ ହେଉଛି ଯେ ଦିଅଟା କ'ଣ ଖଲିରେ ଫୋପାଡ଼ିଦେଇ ଆସି ନିଶ୍ଚିନ୍ତରେ ବସିପଡ଼ିଲୁ !

ସାବିତ୍ରୀ କ'ଣ ଯେ ଭାବୁଥିଲା, ଚମକିପଡ଼ି କହିଲା—ଦରକାର ହେଲେ ସେ ମାଗିନେବେନି ।

—ଏଭଳି ବୁଦ୍ଧି ନ ହେଲେ କ'ଣ କିଏ ଦାସୀବୃତ୍ତି କରେ ? ନିଜେ ଦାସୀ ବୃତ୍ତି କରି ରଖିଲା ଭଳି କଥା କହୁଚୁ ତ !

ସାବିତ୍ରୀ ହସି ହସି କହିଲା—ନିଜେ ତ ଦାସୀ ହୋଇ ରହିଛି ! ସେଥିରେ ଦୋଷ ବା କ'ଣ ମାଉସୀ ! ଝାଟି ଖାଇବାରେ ତ କୌଣସି ଲଜ୍ଜା ନ ଥାଏ ।

ମୋକ୍ଷଦା ରାଗିଉଠିଲା । କହିଲା—କିଏ କହୁଛି ନାହିଁ ? ମୋର ଭଲ ବୟସରେ ନ ଥାଇପାରେ, କିନ୍ତୁ ତୋ ବୟସରେ ନିଶ୍ଚୟ ଅଛି । ତା ଥାଉ ବା ନ ଥାଉ, ବାବୁଙ୍କୁ ଯେତେବେଳେ ଖାଇବାକୁ କହିଲୁ, ସେତେବେଳେ[redacted]ଖଟରେ ବସି ତ ଶୁଣିଥିବା କଥା ! ମଣିଷର କପାଳ ଫେରିଆସିବାରେ ବେଶୀ ଡେରି ଲାଗେନା ।

ସାବିତ୍ରୀ ଯିବାକୁ ଉଦ୍ୟତ ହେଉ ହେଉ ଅଟକିଯାଇ କହିଲା—କ'ଣସବୁ ବକୁଚୁ ମାଉସୀ ? ସେ ଶୁଣିବାକୁ ପାଇବେ ଯେ !

ମୋକ୍ଷଦା ତତ୍‌କ୍ଷଣାତ୍ ସ୍ୱରକୁ କମେଇଦେଇ କହିଲା—ନା ନା, ଶୁଣିବାକୁ ପାଇବେ କାହିଁକି ? ଆଉ ଗୋଟିଏ କଥା ଚେତେ କହିରଖୁଛି ଝିଅ ! ଭଗବାନ କପାଳ ମଝିରେ ଯେଉଁ ଦୁଇଟା ଆଖି ଦେଇଛନ୍ତି, ତାକୁ ଟିକିଏ ଖୋଲି ରଖ । ଘଡ଼ିର ଚେନ, ହାତର ମୁଦି ନ ଥିଲେ ମଧ୍ୟ ମଣିଷକୁ ଗରିବ ମନେ କରନା ।

'ଆଚ୍ଛା', କହି ସାବିତ୍ରୀ ହସି ହସି ଚାଲି ଯାଉଥିଲା, ମୋକ୍ଷଦା ପୁଣି ପଛରୁ ଡାକି କହିଲା—ଶୁଣ୍ ସାବିତ୍ରୀ !

ସାବିତ୍ରୀ ଫେରିଆସି କହିଲା—କ'ଣ ?

—ଆ କହୁଚି ଆମ ଘରକୁ । ଗୋଟାଏ ଶାଢ଼ୀ ବାହାର କରି-ଦେବି, ପିନ୍ଧି ଯିବୁ ?

ସାବିତ୍ରୀ ହସକୁ ଚାପି କହିଲା—ତୁ ଆଗ ବାହାର କର ମାଉସୀ, ମୁଁ ଏହିକ୍ଷଣି ଆସୁଛି ।

ସତୀଶର ଖାଇବା ପିଇବା ପ୍ରାୟ ଶେଷ ହୋଇ ଆସିଥିଲା, ସାବିତ୍ରୀ ଘର ଭିତରେ ପଶି କହିଲା—ଆଖି ବୁଜି ଖାଉଚ ନା କ'ଣ ?

ସତୀଶ ମୁହଁକୁ ଉଠେଇ କହିଲା—ନା ତ !

—କିନ୍ତୁ ଆଖି ଦୁଇଟା ନିଦରେ ଢୋଳେଇ ଯାଉଚି, ଦେଖୁଛି ।

ପ୍ରକୃତରେ ବଡ଼ ନିଦ ଆସୁଥିଲା ତାକୁ । ଗତ ରାତିର ଉଚ୍ଛୃଙ୍ଖଳ ଅତ୍ୟାଚାର ଆଜି ଅସମୟରେ ତାର ଆଖିର ପତା ଦୁଇଟିକି ଭାରି କରି

ଢୋଳିଥିଲା । ସେ ସଲ୍ଲଜ ହସରେ ଛଳନା କରି କହିଲା—ହଁ, ଘରେ ନିଦ ଲାଗୁଛି ।

ସାବିତ୍ରୀ କହିଲା—ଆଜି କ'ଣ କିଛି ଦରକାର ?

ସତୀଶ ସଙ୍ଗେ ସଙ୍ଗେ କହିଉଠିଲା—ନା ଆଉ କିଛି ଦରକାର ନାହିଁ, ମୁଁ ତ ବେଶ୍ ଆରାମରେ ସବୁ ଖାଉଛି ।

ବାହାରେ ପାଦଶବ୍ଦ ଜଣାପଡ଼ିଲା, ମୋକ୍ଷଦା ଆସି [redacted]ଆହ୍ୱୋଇଛି । ଠିକ୍ ଏହି ସମୟରେ ସାବିତ୍ରୀ କହିଲା—ବାବୁ, ମୋ ପାଇଁ ଖଣ୍ଡିଏ ଶାଢ଼ୀ ଆଣିଦେବ ?

ସାବିତ୍ରୀ ତ କୌଣସି ଦିନ କୌଣସି କଥା ଚାହେଁନା । ତେଣୁ ଏ କଥାର ତାତ୍ପର୍ଯ୍ୟ ବୁଝି ନ ପାରି ଆଶ୍ଚର୍ଯ୍ୟ ହୋଇପଡ଼ିଲା । ସେ ମୋକ୍ଷଦା ଆସିବାର ଜାଣେନା । ମୁହଁକୁ ଉଠେଇ ବିସ୍ମୟ ସହକାରେ କହିଲା—ସତେ ଚାହୁଁ ?

—ସତ ନୁହେଁ ଆଉ ମିଛ ?

—କେବେ ପିନ୍ଧିବୁ ?

—ଆଜି ପିନ୍ଧିବାର ସମୟ ନାହିଁ ବୋଲି ଆଉ କେବେ କ'ଣ ସମୟ ହେବନି ? ତା ଛଡ଼ା ଆଉ ଗୋଟିଏ କଥା, ମୁଁ ଖଟି ଖାଏ ବୋଲି ମାଉସୀ ମନରେ ବଡ଼ ଦୁଃଖ; ତେଣୁ ଭାବୁଛି, ଆଉ ଖଟି ଖଟି ଖାଇବନି । ଏଥର ବସି ବସି ଖାଇବ ।

ସତୀଶ ହସି ହସି କହିଲା—ବେଶ୍ ତ ।

—ଖାଲି ବେଶ ହେଲେ ତ ହେବନି, ତା ସଙ୍ଗେ ସଙ୍ଗେ ଗୋଟାଏ ଦାସୀ ନ ହେଲେ ମାନ ଇଜ୍ଜତ ରହିବନି । ସେଭଳି ଦାସୀ ମଧ୍ୟ ଗୋଟିଏ ମୋ ପାଇଁ ରଖିଦେବ । କଥାଟାକୁ ଶେଷ ଆଉ କରିପାରିଲା ନାହିଁ, ବଡ଼ ହସ ମାଡ଼ିଲା ତାକୁ । ମୁହଁରେ ଲୁଗାକାନି ଦେଇ ଗୋଟାଏ ଉତ୍କଟ ହସକୁ ଚୁପିରଖିଲା ।

ମୋକ୍ଷଦା ସେଭଳି ମୂର୍ଖଲୋକ ନୁହେଁ, ସବୁ ବୁଝେ । ମୁହୂର୍ତ୍ତକ ଭିତରେ ସବୁକଥା ବୁଝିନେଇ ଘର ଭିତରେ ପଶିଯାଇ କହିଲା—ବାବୁ, ତାହାହେଲେ ସାବିତ୍ରୀକି ଆଗରୁ ଜାଣନ୍ତି !

ସାବିତ୍ରୀକୁ କହିଲା—ମାଉସୀଙ୍କ ପାଖରେ ଏତେବେଳଯାଏଁ ଦେଖୁଚ ତାମସା ହେଉଥିଲା । ଘର ଭଲକଥା, ସୁଖର କଥା । ଆଗରୁ

କହିଦେଇଥିଲେ ତ ଶାନ୍ତି ପାଇଥାଆନ୍ତା ! କହି କହି ମୋକ୍ଷଦା ବାହାରକୁ ଚାଲିଗଲା ।

ଖିଆପିଆ ସାରି ସତୀଶ ପୁଣି ଆସି ଶେଯ ଉପରେ ବସିଲା । ସାବିତ୍ରୀ ତବା ଭର୍ତ୍ତିକରି ପାନ ଆଣିଦେଲା ଏବଂ ହୁକାରେ ତମାଖୁ ଭର୍ତ୍ତିକରି ଆଣି ସତୀଶ ହାତରେ ଦେଇ ପାଦ ପାଖରେ ତଳେ ବସିଲା ଏବଂ ଟିକିଏ ହସି ଦେଇ ମୁହଁ[illegible] ତଳକୁ କରିନେଲା । ସତୀଶର ବୁକୁତଳେ ଗୋଟାଏ ଝଡ଼ ବହିଗଲା । କିନ୍ତୁ ସମସ୍ତ ଭିତରେ ତାର ହୁକା ଟାଣିବାର ଶକ୍ତି ଟିକିଏ ମଧ୍ୟ ରହିଲା ନାହିଁ । ମିନିଟିଏ ଦୁଇ ମିନିଟ୍ କାଳ ଇମିତି ନୀରବରେ କାଟିବା ପରେ ସହସା ମୁହଁକୁ ଉଠେଇ କହିଲା—ରାତି ଯେ ହେଲା, ବସାକୁ ଯିବନି ?

ସତୀଶ ଶୁଖିଲା ଗଳାରେ କହିଲା—ନ ଗଲେ ରହିବି କେଉଁଠି ?

—ଏଇଠି ରହିବେ । ମାଉସୀ ଏବେ ବି ଚେଇଁଛି, ମୁଁ ତା ବିଛଣାରେ ଶୋଇପଡ଼ିବି—ଏତିକି କହିଦେଇ ସାବିତ୍ରୀ ସତୀଶ ମୁହଁକୁ ଚାହିଁରହିଲା । ମୁହୂର୍ତ୍ତକ ଲାଗି ସତୀଶ ନିର୍ବାକ ନିସ୍ପନ୍ଦ ! କିନ୍ତୁ ପରକ୍ଷଣରେ ପ୍ରବଳ ଚେଷ୍ଟାରେ ନିଜକୁ ସମ୍ବରଣ କରିନେଇ ଥରେ ଠିଆହୋଇପଡ଼ି କହିଲା—ନାଃ, ଏଥର ଚାଲିଲି ।

ଆଚ୍ଛା, ଆଉ ଟିକିଏ ବସ—କହି ସାବିତ୍ରୀ ଉଠିପଡ଼ି ବାହାରୁ ସତୀଶର ଯୋତା ହଳକ ଉଠେଇ ଆଣିଲା ଏବଂ କାନରେ ପାଦ ପୋଛିଦେଇ ଯୋତାର ଫିତା ବାନ୍ଧୁ ବାନ୍ଧୁ ଆସ୍ତେ ଆସ୍ତେ କହିଲା—ବସାର ଲୋକେ ଯଦି ଜାଣିବାକୁ ପାଆନ୍ତି ?

—କିମିତି ଜାଣିବେ ?

—ମୁଁ ଯଦି କହିଦିଏ ?

—କ'ଣ ବା ତୁ କହିବୁ, କହିବାର ତ କିଛି ନାହିଁ ।

ସାବିତ୍ରୀ ଏଥର ଟିକିଏ ହସିଦେଇ କହିଲା—କିଛିହେଲେ ନାହିଁ, ସତ କହୁଚ ?

ସତୀଶ ଚୁପ୍‌ଚାପ ।

ସାବିତ୍ରୀ କଅଁଳେଇ କହିଲା—କହିବାର କଥା ନ ଥିଲେ କେଜାଣି ଆଜି ତମକୁ ଛାଡ଼ିଦେଇ ପାରନ୍ତି କିନା ! କହି, ହଠାତ୍ ତୁନି ହୋଇଗଲା; କିନ୍ତୁ ପର ମୁହୂର୍ତ୍ତରେ ପ୍ରବଳ ଭାବରେ ମୁଣ୍ଡକୁ ହଲେଇ

କହିଲା—ନା, ତୁମେ ବସାଇ ଚାଲିଯାଅ; କିନ୍ତୁ ଏ ଦୁଷ୍ଟ ବୁଦ୍ଧି ଯଦି ନ ଛାଡ଼ ତ ଧନେ ସବୁକଥା ବାହାରେ ପ୍ରକାଶ କରିଦେବ।

ଏ କି ରହସ୍ୟ ! ଏହା ଭିତର କଥାଟା ଠିକମତେ ଧରି ନ ପାରି ସନ୍ତୋଷ କିଛି ସମୟ ସ୍ତବ୍ଧ ଭାବରେ ଠିଆହୋଇ ରହି କହିଲା—କହ କ'ଣ ହୋଇପିବ ? ମେସ୍‌ର ଲୋକେ ତ ମୋର ଗାର୍ଜନ୍ (ଗାର୍ଡ଼ିୟାନ) ନୁହନ୍ତି ।

ସାବର୍ଣୀ କହିଲା—ମୁଁ ଜାଣେ; କିନ୍ତୁ ମାଉସୀ ସେ ଭାର ଅନାୟାସରେ ନେଇପାରିବେ ଯେ । ତାର ଭୟକୁ ତ ରୋକିପାରିବନି ।

ମୋକ୍ଷଦାର ଇଙ୍ଗିତରେ ସନ୍ତୋଷ ମନେ ମନେ ଭୟ ପାଇଲେ ମଧ୍ୟ ମୁହଁରେ କହିଲା—କାହିଁକି ଟଙ୍କା ଦେଇ ?

ସାବର୍ଣୀ କହିଲା—ସେଥିରେ ଖାଲି ଟଙ୍କାର ଅପବ୍ୟୟ ହେବ, କୌଣସି କାମ ହେବନି । ତା ଛଡ଼ା ମାଉସୀକି ସିନା ଟଙ୍କା ଦେଇ ବଶ କରିନେବ; କିନ୍ତୁ ମତେ କ'ଣ ଦେଇ ?

ସନ୍ତୋଷ ଚଟ୍‌କିନି କହିପକେଇଲା—କାହିଁକି ଭଲ ପାଇବା ଦେଇ ?

ସାବର୍ଣୀ ଓଷ୍ଠାଧରରେ କଠିନ ଚାପା ହସର ଆଭାସ ଦେଖାଗଲା—ଏଇକଥା ଚାରି ଥର ହେଲାଣି ।

ଅର୍ଥାତ୍ ?

ଅର୍ଥାତ୍ ଏହା ପୂର୍ବରୁ ଆଉରି ତିନି ଜଣ ଏଇ ଜିନିଷଟିକି ଦେବାକୁ ଚାହିଁଥିଲେ ।

--କିନ୍ତୁ ତୁ ନେଲୁନି ?

---ନା, ଜଞ୍ଜାଳ ଜଡ଼ କରି ରଖିବା ଭଳି ଜାଗା ନାହିଁ ମୋର ।

ସନ୍ତୋଷ ସ୍ଥିରଚିତ୍ତରେ ବସିରହିଲା । ସାବର୍ଣୀର ଅଦ୍ଭୁତ ହସ ଓ କଣ୍ଠସ୍ୱରସବୁକୁ ସେ ଲକ୍ଷ୍ୟକରିଛି । ତେଣୁ ଦୁ'ପହର କଥାଗୁଡ଼ାକ ତାର ଠିକେ ଠିକେ ମନେ ପଡ଼ିଗଲା । ମନେପଡ଼ିବା ମତେ ପ୍ରେମ-ବନ୍ଧରେ ଜୁଆରର ସୋଷଭଙ୍ଗା ପଡ଼ିଗଲା । ସାବର୍ଣୀର କଥାଗୁଡ଼ାକୁ ସେ ତାମସା ବୋଲି ଭୁଲକରି ପକାଇଲାନି । ହଠାତ୍ ଖୁବ୍ କଠିନ ହୋଇ କହିଲା—ସେମାନେ ନବୋଧ ! ସେମାନେ ଏଭଳି ଜିନିଷ ଦେବାର ପ୍ରସ୍ତାବ କରିବା

ଉଚିତ ଥିଲା, ଯେଉଁ ଜିନିଷ କି ବାକ୍ସରେ ତୋଳାରଖି ଜାହାର ଜଞ୍ଜାଳି ବୋଲି ମନେ ହୁଅନ୍ତାନି ! ମୁଁ ମଧ୍ୟ କମ୍ ନିର୍ବୋଧ ନୁହେଁ । କାହିଁକି ନା ମୁଁ ମଧ୍ୟ ଭୁଲିଯାଇଥିଲି ଏ ଜିନିଷଟା ତୋ ପାଖରେ କେତେ ଅବହେଳାର ସାମଗ୍ରୀ । ଏତେ ବୟସରେ ଏଭଳି ଭୁଲ୍ ହେବା ମୋ ପକ୍ଷରେ ଉଚିତ ହୋଇନି । ଆଚ୍ଛା ଯାଉଛି ।

କଥାଟା ସାବିତ୍ରୀ ହୃଦୟରେ ଶୂଳଭଳି ବେଧିଗଲା । 'ତୁମମାନଙ୍କର' କହି ସନ୍ତୋଷ ତାକୁ ଯାହା ସମ୍ଭବତ ଅନନ୍ୟ କରି ଦେଇଥିଲା, ତାହା ସାବିତ୍ରୀର ନ ବୁଝିବାରେ କୌଣସି ବାଧା ରହିଲାନି । କିନ୍ତୁ ଚଣ୍ଡିଦାସ ଦୋଷରେ କଳହରେ ପରିଣତ ହୋଇ ହାତାହାତିର ଉପକ୍ରମ ହେବାର ଦେଖି ସେ ଚୁପ୍ ରହିଗଲା । ସନ୍ତୋଷ କିନ୍ତୁ ଚୁପ୍ ରହିପାରିଲାନି । କହିଲା— ଶିକାରି ବନ୍ଶୀରେ ମାଛ ଗୁନ୍ଥି ଯେଉଁଭଳି ଖେଳେଇ ଖେଳେଇ ଆମୋଦ କରେ, ଏବେ ଦିନ ହେଲା ବୋଧହୁଏ ତୁ ମତେ ସେଇ ତାମସା କରୁଥିଲୁ ନା ?

ସାବିତ୍ରୀ ଆଉ ସହିପାରିଲାନି । ଉଦ୍ଭ୍ରାନ୍ତବେଗରେ ଉଠି ଠିଆ ହୋଇ କହିଲା—ବନ୍ଶୀରେ ଗୁନ୍ଥି ତୁମକୁ ଟାଣିଓଟାରି ଉଠାଯାଏ, ଖେଳେଇ ଉଠେଇବାର ମାଛ ତୁମେ ନୁହଁ ।

ସନ୍ତୋଷ ନିର୍ମମ ଭାବରେ ବିଦ୍ରୂପ କରି କହିଲା—ମୁଁ ନୁହେଁ ?

ସାବିତ୍ରୀ କହିଲା—ନା, ତୁମେ ନୁହଁ । ତାର ଓଷ୍ଠାଧର କମ୍ପିତ ହୋଇଆସିଲା । ସନ୍ତୋଷ ମୁହଁ ପ୍ରତି ତୀବ୍ର ଦୃଷ୍ଟିପାତ କରି କହିବାକୁ ଲାଗିଲା, ଅସଚ୍ଚରିତ୍ର ! ମୋ ଭଳି ଗୋଟିଏ ସ୍ତ୍ରୀଲୋକଙ୍କୁ ଭଲ ପାଇ ବଡ଼େଇ କରୁଚ, ଲାଜ ମାଡୁନି ? ଯାଅ କହୁଚି, ମୋ ଘରେ ଠିଆହୋଇ ମୋତେ ଅପମାନିତ କରନି କହୁଚି ।

ଏଇ ଅପମାନରେ ସନ୍ତୋଷ ଆଉରି ବେଶୀ ନିର୍ଦ୍ଦୟ ହୋଇଉଠିଲା । ପୁଣି ଅମାର୍ଜନୀୟ କୁତ୍ସିତ ବିଦ୍ରୂପ କରି କହିଲା—ମୁଁ ଅସଚ୍ଚରିତ୍ର ! କିନ୍ତୁ ସେ ଯାହାହେଉ, ଦେଖୁଚି ସାବିତ୍ରୀ, ତୋ ବାପା ମା ତୋ ନାଁଟି ଯାହା ଦେଇଥିଲେ ନା ତାକୁ ତୁ ସାର୍ଥକ କରିଚୁ ।

ସାବିତ୍ରୀ ଟିକିଏ ଆଡ଼େଇ ହୋଇଯାଇ ଦୁଆରବନ୍ଧକୁ ଧରି କିନ୍ତୁ ସମସ୍ତ ଠିଆହୋଇ ରହି କହିଲା—ଯାଅ କହୁଚି । ତାର ମୁହଁ ଲାଲ ପାଲଟିଯାଇ ବଡ଼ ବିବର୍ଣ୍ଣ ଦେଖାଯାଉଥିଲା ।

ସତ୍ୟଶ ଅପମାନ ଓ ଅସହ୍ୟ ଜ୍ୱାଳାରେ ସେ ଆଡ଼କୁ ଭ୍ରୂକ୍ଷେପ ନ କରି କହିଲା—କିନ୍ତୁ ଯିବା ଆଗରୁ କାନ ଦେଇ ପାଦ ପୋଛି ଦେବୁନି, ଆଉ କୌଣସି ଖେଳ କୌତୁକ···ଆଉ କିଛି···

ହଠାତ୍ ଦୁଇ ଜଣଙ୍କର ଆଖି ସାମନାସାମନି ହୋଇଉଠିଲା । ସାବିତ୍ରୀ ପାଦେ ପଛକୁ ଚାଲିଆସି କହିଲା—ତୁମେ ଚାଲିଯାଅ, ତୁମ ଗୋଡ଼ତଳେ ପଡ଼ୁଛି, ଶୀଘ୍ର ଚାଲିଯାଅ । ନ ଗଲେ ମୁଣ୍ଡ ବାଡ଼େଇ ମରିଯିବି । ଏକମାତ୍ର ମିନତି, ତୁମେ ଚାଲିଯାଅ ।

ତାର କଣ୍ଠସ୍ୱରର ଉତ୍ତରୋତ୍ତର ଏବଂ ଅସ୍ୱାଭାବିକ ତୀବ୍ରତାରେ ଅକସ୍ମାତ୍ ସତ୍ୟଶ ସ୍ତମ୍ଭିତ ହୋଇଉଠିଲା ଏବଂ ଆଉ କୌଣସି କଥା ନ କହି ବାହାର ହୋଇଗଲା । ବାରଣ୍ଡା ଗୋଟାକଯାକ ଅନ୍ଧାର । ତାର ଉପରେ ଆସୁ ଆସୁ ସେ ଅଟକିଗଲା । ସିଡ଼ିଟା କୁଆଡ଼େ, ବାଟ କୁଆଡ଼େ, ଅନ୍ଧାରରେ କିଛି ହେଲେ ଦେଖାଗଲାନି । ପକେଟରେ ହାତ ମାରି ଦେଖିଲା ଦିଆସିଲି ନାହିଁ । ଏହି ନିରୁପାୟ ଅବସ୍ଥାରେ ମଝିରେ ପାଞ୍ଚ ମିନିଟ କାଳ ଚୁପ୍‌ଚାପ ଠିଆହୋଇ ରହି ପୁଣି ସାବିତ୍ରୀ ଘରକୁ ଫେରି ଆସିବାକୁ ହେଲା । ବାହାରୁ ସେ ଦେଖିଲା, ସାବିତ୍ରୀ ଟେବୁଲ ଉପରେ ଉବୁଡ଼େଇ ହୋଇ ପଡ଼ିରହିଛି । ଆସ୍ତେ ଆସ୍ତେ ଡାକିଲା, ସାବିତ୍ରୀ ! ସାବିତ୍ରୀର କୌଣସି ସୋର ଶବ୍ଦ ନାହିଁ । ପୁଣି ଥରେ ଡାକି କୌଣସି ଉତ୍ତର ନ ପାଇ ଘର ଭିତରକୁ ଆସି ସାବିତ୍ରୀ ମୁଣ୍ଡରେ ହାତ ଦେଲା । ଝୁଙ୍କି ପଡ଼ି ଦେଖିଲା, ଆଖି ବୁଜିହୋଇ ରହିଛି । ମୁହଁରେ ଆଙ୍ଗୁଠି ମାରିନେଇ ଦେଖିଲା, ସାବିତ୍ରୀ ମୂର୍ଚ୍ଛିତା ହୋଇ ପଡ଼ିଛି । ମୁହୂର୍ତ୍ତକ ପାଇଁ ତା ମନ ଭିତରେ ଭୟ ଓ ସଂକୋଚ ଉଭୟ ଭାବ ଦେଖାଦେଲା; କିନ୍ତୁ ପର ମୁହୂର୍ତ୍ତରେ ସାବିତ୍ରୀର ଅଚେତନ ଦେହଟାକୁ ଟେକି ନେଇ ଶେଯ ଉପରେ ଶୁଆଇଦେଲା ଏବଂ ଗୃହରର ଗୋଟିଏ ଅଂଶ କଳସୀ ଦେହରେ ଭିଜେଇ ମୁହଁ ଓ ଆଖି ଉପରେ ଛିଟା ଦେଲା । ପଙ୍ଖା ଆଣି ବିଞ୍ଚିଦେଲା । ଦୁ' ମିନିଟ ପରେ ସାବିତ୍ରୀ ଆଖି ଖୋଲି ମୁଣ୍ଡ ଉପରକୁ ଲୁଗା ଟାଣିଆଣି ପୁଣି କଡ଼ ଲେଉଟାଇ ଶୋଇପଡ଼ି କହିଲା—ତୁମେ ଯାଇନା ?

ସତ୍ୟଶ ଚୁପ୍‌ଚାପ୍ ପଙ୍ଖା କରି ଚାଲିଯାଏ ।

ସାବିତ୍ରୀ ଶେଯରୁ ଉଠିଆସି ତରକି ହାତରେ ଧରି ବାହାରେ ଆସି

ଠିଆ ହେଲା । କହିଲା—ଶୁଣ, ତୁମକୁ ବାଟ ଦେଖେଇଦେଇ ଆସେ ।

ତା ପରେ ନିଃଶବ୍ଦରେ ବାଟ ଦେଖେଇଦେଇ ତଳକୁ ନାଇଁ ଆସିଲା । ସେ ଦ୍ୱାର ଖୋଲି ଟିକିଏ ଦୂରେଇ ଠିଆହେଲା ।

ମୂର୍ଚ୍ଛିତା ସାବିତ୍ରୀକୁ ଶେଯରେ ଶୁଆଇଦେଇ ସେ ଯେଉଁ ମୁହୂର୍ତ୍ତକ ଲାଗି ତାର ଅଚେତନ ଦେହଟିକ ବୁକୁ ଉପରକୁ ଟାଣିନେବାକୁ ହୋଇ-ଥିଲା, ସେ ପର୍ଯ୍ୟନ୍ତ ସତ୍ୟଶ ଯେଭଳି ଅନ୍ୟମନସ୍କ ହୋଇ ଉଠିଥିଲା । ଏଥର ଦୁଆର ବାହାରକୁ ଆସି ତାର ଚମକ ଭାଙ୍ଗିଗଲା ଏବଂ କ'ଣ ଗୋଟାଏ କଥା କହିବାକୁ ଉଦ୍ୟମ କରୁଥିବା ବେଳକୁ ସାବିତ୍ରୀ କହିଲା—ଆଜ କିଛି କହନି, ତୁମର ଦେହଟାକୁ ତୁମେ ପୂର୍ବରୁ ନଷ୍ଟ କରିଦେଇଚ । ସେ ହୁଏତ କୌଣସି ଦିନ ପୋଡ଼ି ପାଉଁଶ ହୋଇଯିବ, କିନ୍ତୁ ଗୋଟାଏ ଅସ୍ପୃଶ୍ୟା କୁଳଟାକୁ ଭଲପାଇ ଭଗବାନ ଦତ୍ତ ଏହି ମନର ଗାଲରେ ଆଉ କାଳି ବୋଳନା । ହୁଏତ ତୁମେ କାଲି ସେ ବସା ଖୁଡ଼ି ଖୁଲିଯିବ ତ ଯାଅ, ନଚେତ୍ ମୁଁ ଆଉ ଯିବନି । ଏତିକି କହିଦେଇ ସାବିତ୍ରୀ ଉତ୍ତର ଲାଗି ପ୍ରତୀକ୍ଷା ନ କରି ସଶବ୍ଦରେ ଦରଜା ବନ୍ଦ କରିଦେଲା ।

ନଅ

ସତ୍ୟଶ ହତବୁଦ୍ଧି ହୋଇ ପଡ଼ିଥିଲା । କାହିଁକି ଯେ ସାବିତ୍ରୀ ଅବିଶ୍ରାମ ଭାବରେ ତାକୁ ଆକୃଷ୍ଟ କରେ, କାହିଁକି ଯେ ପାଖକୁ ଆସିଲା-ମାତ୍ରେ ଏଭଳି ନିଷ୍ଠୁର ଆଘାତ ଦେଇ ଦୂରକୁ ଠେଲିଦିଏ, ସେଦିନ ସାରା ରାତି ଧରି ଭାବି ତାର କୌଣସି ଅସ୍ପଷ୍ଟ କାରଣ ସୁଦ୍ଧା ସେ ଖୋଜି ପାଇଲାନି । ଗଲା ରାତିର ଗୋଟିଏ ଗୋଟିଏ କଥା ଏପର୍ଯ୍ୟନ୍ତ ତା କାନରେ କ୍ଷଣ କ୍ଷଣ ବାଜି ଉଠୁଥିଲା । ତେଣୁ ସେ ସକାଳୁ ସକାଳୁ ବାହାରି ହୋଇଗଲା ଏବଂ ଗୋଟାଏ ବସା ଠିକ୍ କରିଦେଇ କୁଲିକି ଡାକି ଜିନିଷପତ୍ର ବୋହିଲେ

କରିଦେଲା । ଏ ବ୍ୟାପାର ଦେଖି ବସାର ସମସ୍ତେ ଆଶ୍ଚର୍ଯ୍ୟ । ବେଶୀ ହେଲା ବେହାରା । ସେ ପାଖକୁ ଆସି ଆସ୍ତେ ଆସ୍ତେ ପଚାରିଲା—ବାବୁ, କ'ଣ ଘରକୁ ଯାଉଛନ୍ତି ?

ସତୀଶ ତା ହାତରେ ପାଞ୍ଚଟଙ୍କିଆ ନୋଟଟିଏ ଗୁଞ୍ଜିଦେଇ କହିଲ—ନା ବେହାରା, ଘରକୁ ଯାଉନି, ସ୍କୁଲ ପାଖରେ ଗୋଟାଏ ବସା ପାଇଛି, ସେଇଠିକି ଯାଉଛି ।

ବେହାରା କିଛି ସମୟ ଚୁପ୍‌ରହି କହିଲ—କିନ୍ତୁ ସେ ତ ଏପର୍ଯ୍ୟନ୍ତ ଆସିନି ବାବୁ !

ସତୀଶ ମୁହଁକୁ ନ ଉଠେଇ କହିଲ— ଆସିନି ? ଆଚ୍ଛା, ତୁ ମୋର ବିଛଣାଗୁଡ଼ାକ ବାନ୍ଧିଦେ, ମୁଁ ରାଖାଲବାବୁଙ୍କ ଘରୁ ଆସୁଛି କହି ଦେଣାପାଉଣା ମେଣ୍ଟେଇଦେବା ଲାଗି ରାଖାଲବାବୁଙ୍କ ଘରକୁ ଚାଲିଗଲା । ରାଖାଲବାବୁଙ୍କ ଘରେ ବହୁତ ଲୋକ ଉପସ୍ଥିତ ଥିଲେ । ବୋଧହୁଏ ଏଇ ଆଲୋଚନା ହିଁ ଚାଲିଥିଲା । ତାକୁ ଦେଖି ସମସ୍ତେ ନିସ୍ତବ୍ଧ । ରାଖାଲବାବୁ ଟିକଏ ହସର ଛଳନା କରି କହିଲେ—ସତୀଶବାବୁ, ହଠାତ୍ ଏ ଘରେ ?

ସତୀଶ ହାତର ଟଙ୍କାଗୁଡ଼ାକ ଟେବୁଲର ଗୋଟିଏ ପାଖରେ ରଖିଦେଇ କହିଲା—ହଠାତ୍ ଇଚ୍ଛା ହେଲେ ଆସିଥିଲି, ହଠାତ୍ ହେଲେ ଚାଲିଯାଉଛି । ଏତକ ଟଙ୍କାରେ ବୋଧହୁଏ ସବୁ ମେଣ୍ଟିଯିବ । ଯଦି ନ ହୁଏ, ହିସାବ କରି ମତେ ଜଣେଇଲେ ପଠେଇଦେବି ।

ରାଖାଲବାବୁ କହିଲେ—ଜଣାଇବି କେଉଁ ଠିକଣାରେ ?

—ଆମ ସ୍କୁଲ ଠିକଣାରେ ଖଣ୍ଡିଏ କାର୍ଡ଼ ଲେଖି ପଠାଇଦେଲେ ପାଇବି । ଏତିକ କହି ସତୀଶ ଆଉ କୌଣସି ଜବାବ ସୁଆଲ ଲାଗି ଅପେକ୍ଷା ନ କରି ବାହାର ହୋଇଗଲା । ଘର ଭିତରୁ ଗୋଟାଏ ବଦ୍ରୂପ ହସର ରୋଳ ସତୀଶ କାନରେ ପଡ଼ିଲା । ବେହାରାଟି କିଏ ଦୂରରେ ଠିଆହୋଇ ରହିଥିଲା; ଘର ଭିତରେ ପଶି ଟ୍ରଙ୍କ ପୁଟୁଳିକୁ କବାଟ ଆଉଜେଇ ରଖି-ଦେଇ ରାଖାଲକୁ ଲକ୍ଷ୍ୟକରି କହିଲା—ମୋର ସତର ଦିନର ଦରମାଟା ହିସାବ କରିଦିଅନ୍ତୁ, ମତେ ବି ବାବୁଙ୍କ ସାଥିରେ ଯିବାକୁ ହେବ ।

ରାଖାଲ ବିସ୍ମିତ ଓ ନିରୁଦ୍ଧ ହୋଇ କହିଲା—ତୁ ଚାଲିଗଲେ, ଏଠା କାମ କରିବ କିଏ ? ଯିବ କହିଲେ ତ ଯିବା ହୁଏନା ।

ବେହାରୀ କହିଲା—କାହିଁକି ହେବନି ବାବୁ ? ମତେ ଯେ ଯିବାକୁ ହିଁ ହେବ ।

ରାଖାଲ ନିଆଁ ଭଳି ଜଳଉଠି କହିଲା—ହବ ବୋଇଲେ କ'ଣ ହୋଇଯିବ ! ଏକମାସ ନୋଟିସ ଦେବାକୁ ପଡ଼ିବ, ଜାଣୁ ?

ରାଖାଲ ଆଉ କୌଣସି ଜବାବ ନ ଦେଇ ଦ୍ରୁତବେଗରେ ବାହାର ହୋଇ ସତୀଶ ଘର ଭିତରେ ପଶି କହିଉଠିଲା--ସତୀଶବାବୁ, ଏସବୁ କ'ଣ ହେଉଛି ?

ସତୀଶ ବିଛଣା ବାନ୍ଧୁଥିଲା, ମୁହଁ ଟେକି ପଚାରିଲା—କି ସବୁ ?

ରାଖାଲ ଉଦ୍ଧତ ଭାବେ ଉତ୍ତେଜିତ ହୋଇ କହିଲା—ଏକଶରୀ ଆସିନି ! ସେ ତ ଆଗରୁ ଚାଲିଯାଇଛି ଜଣାପଡ଼ୁଛି, ଆଉ ଏ ବେହାରୀକୁ ନେଇଯିବାକୁ ବସିଛ କାହିଁକି ? ଦୋଷ କଲେ ଆପଣ, ଆଉ ଶାସ୍ତି ପାଇବୁ ଆମେ ?

ସତୀଶ ବିସ୍ମିତ ହୋଇ ପଚାରିଲା—ଆପଣଙ୍କ କଥା କିଛି ବୁଝି-ପାରୁନି ।

ରାଖାଲ ଚଡ଼ାଗଳାରେ କହିଲା—ବୁଝିବେ କାହିଁକି, ନ ବୁଝିଲେ ସୁବିଧା ! ନିଜେ ଲୁଚି ଗଲେ ମଧ୍ୟ ତୁମକୁ ତ ବାହାର କରିବାକୁ ପଡ଼ି-ଥାଆନ୍ତା; କିନ୍ତୁ ସେ ଯାହା ହେଉ, ଗୋଟାଏ ସହଜ ଜ୍ଞାନ କ'ଣ ମଣିଷର ନାହିଁ ?

ସତୀଶର ଆଖି ଦୁଇଟା ଜଳିଉଠିଲା । ପାଖକୁ ଲାଗିଆସି କହିଲା—ଆପଣ ଏସବୁ କ'ଣ କହୁଛନ୍ତି ?

ରାଖାଲ ଈର୍ଷା ବହ୍ନିରେ ଦଗ୍ଧ ହୋଇ ଉଠିଥିଲା, କହିଲା—ମୁଁ ଠିକ କହୁଛି, ତୁମେ ମଧ୍ୟ ଠିକ୍ ବୁଝୁଛ । ସତୀଶବାବୁ, କୌଣସି କଥା ଆମକୁ ଅଜଣା ନାହିଁ । ଆଚ୍ଛା, ଯାଆନ୍ତୁ ଆପଣ—କି ଗୋଟାଏ କାଳସର୍ପ ଘରେ ଆସି ପଶିଥିଲା, ମେସ୍‌ଟାକୁ ଏକାବେଳକେ ଲଣ୍ଡଭଣ୍ଡ କରିପକାଇଲା ।

ସତୀଶ ରାଖାଲର ଗୋଟାଏ ହାତ ଚିପିଧରି କହିଲା—କ'ଣସବୁ କହୁଛ ରାଖାଲବାବୁ ?

ରାଖାଲ ଜୋରକରି ହାତକୁ ଛଡ଼େଇନେଇ ଗର୍ଜିଉଠି କହିଲା— ଯାଆନ୍ତୁ ଆପଣ, ଅପଦସ୍ଥ ତ ହେଲେଣି, ଆଉ ଅଧିକ କାହିଁକି ? ଦୂର ହୁଅ ଏଠାରୁ ।

ବେହାରୀ ଘରେ ପଶି କହିଲା—ସନ୍ତୋଷବାବୁ, ଯିବାକୁ ଦିଅ ତାଙ୍କୁ ! କୋଉଠିଯିବାଙ୍କ ଦରଜ କୋଉଠି ଜ୍ୱାଳା, ହେନେ ଆପଣଙ୍କୁ କହିବି । ମୁଁ ସବୁ ଜାଣେ । ଆସନ୍ତୁ ନା ଜିନିଷପତ୍ର ବାନ୍ଧିଦେବା । ରାଖାଲ ଲମ୍ବା ଲମ୍ବା ପାଦ ଜୋରସୋରରେ ପକେଇ ଘରୁ ବାହାରି ହୋଇଗଲା । ସନ୍ତୋଷ ଚୌକି ଉପରେ ବସିପଡ଼ି କହିଲା—ଏସବୁ କଣ ହେଉଛି ବେହାରୀ !

ବେହାରୀ କହିଲା – ମୁଁ ଆପଣଙ୍କ ସାଥିରେ ଯିବି ବାବୁ ! ଏଠି ରହି ପାରିବିନି !

ସନ୍ତୋଷ ଆଶ୍ଚର୍ଯ୍ୟ ହୋଇ କହିଲା---ମୋ ସାଥିରେ ? ଏଠି କାମ କରିବ କିଏ ?

ବେହାରୀ ଅବିଚଳିତ ଭାବେ ଦୃଢ଼ତା ସହକାରେ କହିଲା – ଯାହା ଇଚ୍ଛା କରନ୍ତୁ ପଛେ, ମୁଁ ଆପଣଙ୍କ ସାଥିରେ ଯିବି । ଜଣେ ଚାକର ନ ରହିଲେ ତ ଆପଣଙ୍କର ଚଳିବନି ।

ଏତେ ସମୟ ପରେ ଘଟଣାଟା ବୁଝିପାରି ସନ୍ତୋଷ କିଛି ସମୟ ଚୁପ୍ ରହି କହିଲା—ଏ କଥା ତ ଆଗରୁ କହିପାରି ଥାଆନ୍ତୁ ବେହାରୀ !

ବେହାରୀ କୌଣସି ଉତ୍ତର ଦେଲାନି । ନିଃଶବ୍ଦରେ ଜିନିଷ ପତ୍ର ଏକାଠି କରି କୁଲି ମୁଣ୍ଡକୁ ଉଠେଇଦେଲା ସେ ଯେ ଯିବ, ଏଥିରେ କୌଣସି ସନ୍ଦେହ ନ ଥିଲା ତାର ।

ନୂଆ ବସାକୁ ଆସି ସନ୍ତୋଷ ଭାବୁଥିଲା ସେ ଏଭଳି ହେଲା କପରି ? ଯିଏ ସିଏ ତାକୁ ଖାଲି ଯେ ଅପମାନ କରିବାକୁ ସାହସ କରନ୍ତି ତାହା ନୁହେଁ, ସ୍ୱଚ୍ଛନ୍ଦରେ ପରିତ୍ରାଣ ପାଆନ୍ତି କାହିଁକି ? ତାର ଅସାଧାରଣ ଦୈହିକ ଶକ୍ତି ଥିଲେ ବି କମି ନାହିଁ । ଅଥଚ ସେ ମୁହଁ ଉଠେଇ ଜୋର୍ କରି କଥା କହିପାରେ ନା । କାହିଁକି ସେ ନତ ମୁଖରେ ସବୁ ସହ୍ୟ କରିଯାଏ ? ନିଜ ମନର ଏହି ଶୋଚନୀୟ ଦୁର୍ବଳତା ତାକୁ ଆଜି ସବୁଠୁ ବେଶୀ ବାଧିଲା ଏବଂ ତା ଅପେକ୍ଷା ବାଧିଲା ଏହି ଦୁଃଖଟା ଯେ ପ୍ରତିକାର କରିବାର ସାଧ ମଧ୍ୟ ତାର ହାତଛଡ଼ା

ହୋଇଯାଇଛି । ରାଖାଲ ଯୁଦ୍ଧ ଭାଷାରେ ଯେ ସେଇ ରାତିର ଘଟଣାକୁ ଇଙ୍ଗିତ କରିଛି, ସେଥିରେ କୌଣସି ସନ୍ଦେହ ନାହିଁ । ଏଇ କଥା ମନେ ମନେ ଚନ୍ତାକରି ସତୀଶ ଲଜ୍ଜାରେ ଯେଉଁଭଳି ମନେହେଲା ଧୂଳି ଧୂସରିତ ହୋଇପଡ଼ିଲା । ବିପିନ ଦଳର ଲୋକେ କିଭଳି ତାକୁ ଧରିଥିଲେ, ଅନ୍ଧକାର ଘର ଭିତରେ ସେ କପଟ ମଡ଼କ ଭଳି ପଡ଼ି ରହିଥିଲା, ବୁଦ୍ଧିମାନ୍ ସେ ଲୋକଗୁଡ଼ାକ କିଭଳି ସବୁ ଶୃଙ୍ଖଳାକ ବୁଝିପାରି ଆଚ୍ଛାଦନ ଭିତରୁ ତାକୁ ଟାଣି ନେଇଥିଲେ ଇତ୍ୟାଦି ଚିତ୍ତଗ୍ରାହୀ ଦୁର୍ଲ୍ଲଭ ବିବରଣୀ ସତ୍ୟ ମିଥ୍ୟା, ଅଳଙ୍କାର-ଆଡ଼ମ୍ବରକୁ ଜଡ଼େଇ ବର୍ଣ୍ଣନା ହେବା ସମୟରେ ଉପସ୍ଥିତ ସମସ୍ତେ କିଭଳି ଉତ୍କଟ ଆନନ୍ଦ, ଆଗ୍ରହ ଓ ଅଟ୍ଟହାସ୍ୟ ସହିତ ଉପଭୋଗ କରିଚନ୍ତି, ଆଗରୁ ଆଗପଛ ଘଟଣାଗୁଡ଼ାକର କଳ୍ପନା ଏତେ ମର୍ମାନ୍ତିକ ଓ ବିଭତ୍ସ ହୋଇ ଦେଖାଦେଲା ଯେ ଏକାକୀ ଘର ଭିତରେ ସତୀଶର ମୁହଁ ଗୋଟାକଯାକ ବିବର୍ଣ୍ଣ ହୋଇଉଠିଲା । ପୁଣି ଏଇମାନଙ୍କ ସମ୍ମୁଖରେ ରାଖାଲ ତାକୁ ଅପମାନ କରି ବିଦାୟ କରିଦେଇଚି, ଅଥଚ ସେ କୌଣସି କଥା ସୁଦ୍ଧା କହିପାରିନ । ଏଇ କଥା ସାବିତ୍ରୀ ଶୁଣି କ'ଣ ମନେକରିବ ?

କିନ୍ତୁ କୌଣସି କଥା ସେ କହିବନି । ସ୍ତବ୍ଧ ନୀରବ ଅବସ୍ଥାରେ ସେ ସମସ୍ତ ଲାଞ୍ଛନା ସହ୍ୟ କରିବ, କିଛି ଜବାବ ବି ଦେବନି । ତାର ଆତ୍ମସମ୍ମାନବୋଧ ଯେ କେତେ ବୃହତ୍,ଏକଥା ସେ ଯେପରି ନିଃସନ୍ଦେହ ଭାବରେ ବୁଝିଥିଲା, ତାର ବ୍ୟଥିତ ମୁହଁରେ ସେଇ ଛବି ସୁସ୍ପଷ୍ଟ ଭାବରେ ଫୁଟି ଜଣାପଡ଼ୁଥିଲା । ସତୀଶ ମନେ ମନେ କହିଲା — ଯେ ତାର ମୂର୍ଖତା ହେତୁହିଁ ଏସବୁ ଅନାସୃଷ୍ଟି, ତାରି ଭିତରେ ସାବିତ୍ରୀ କ ଫୋପାଡ଼ି ଦେଇ ଆସିବା ଉଚିତ ହେଲା ନାହିଁ, କିନ୍ତୁ କ'ଣ କରିବା ଉଚିତ ଥିଲା, ସେ କଥା ସେ ଭାବିପାରିଲା ନାହିଁ । କିନ୍ତୁ ସାବିତ୍ରୀ ତାକୁ ଭୁଲିଯିବାକୁ ବାରମ୍ବାର କହିଲା ।

ବେହାରା ଆସି କହିଲା — ବାବୁ ଗାଧୋଇବା ସମୟ ହୋଇ-ଗଲାଣି । ତାର ଏଇ କଣ୍ଠସ୍ୱରରୁ ମନେ ହେଲା ଯେଉଁଭଳି ଗୋଟିଏ ବିଶେଷ ଅର୍ଥ ଅଛି ।

ସତୀଶର ମନ ବିଲକୁଲ୍ ଭାଙ୍ଗି ପଡ଼ିଛି, ତଥାପି ନିତ୍ୟମିତ କୌଣସି କାମରେ ଅବହେଳା କରିବାର କୌଣସି ବାଟ ନ ଥିଲା ।

ସ୍କୁଲକୁ ଗଲା, କିନ୍ତୁ କ୍ଲାସ ବାହାରେ ବୁଲି ବୁଲି ଘର ଭିତରକୁ ଆସିବା ମାତ୍ରେ ସେ ଅନୁଭବ କଲା କୌଣସି ଏକ ନୈରାଶ୍ୟରେ ଯେପରିକି ତାର ହୃଦୟ ପରିପୂର୍ଣ୍ଣ ହୋଇଉଠିଛି । ଏହି ଘରଟିକୁ ସଜାସଜି କରିଦେବାରେ ବେହାରୀ ଯଥାସାଧ୍ୟ ପରିଶ୍ରମ କରିଛି । ବେହାରୀ ସରବତ୍ ତିଆରି କରି ଆଣିଲା, ହୁକା ସଜେଇଦେଲା, ଦୋକାନକୁ ଯାଇ ପାନଖିଲ ଭାଙ୍ଗି ଆଣି ଦେଲା । ତାହାର ଅନନ୍ୟସ୍ତ ଏହିସବୁ ସେବା ଲାଗି ଉଦ୍ୟମ ଦେଖି ସତୀଶ ମନେ ମନେ ହସି ଉଠୁଥିଲା, କିନ୍ତୁ ଆଖିରୁ ଲୁହ ଝରି ଆସୁଥିଲା । ରାତିରେ ଶେଯରେ ଶୋଇ ସତୀଶ ଭାବିବାକୁ ଲାଗିଲା ଯାହା ହେବାର ହୋଇଛି, ସେ ଏକଥା ମନରେ କେବେ ହେଲେ ଆଣିବ ନାହିଁ । ପଢ଼ାପଢ଼ି କରିବା ଲାଗି କଲିକତା ଆସିଥିଲା । ହୁଏତ ପାଠ ପଢ଼ିବ, ନଚେତ୍ ଘରକୁ ଫେରିଯିବ । କିନ୍ତୁ ସେଦିନ ସେଇ ଯେ ମୂର୍ଚ୍ଛିତା ନାରୀର ତପ୍ତ ସ୍ପର୍ଶଟିକକ ନେଇ ସେ ସେ ବସାକୁ ଫେରି ଆସିଥିଲା, ସେଇ ଉତ୍ତାପ ତାର ସମସ୍ତ ସଂଯମର ଉଦ୍ୟମକୁ ଗୋଳେଇ ମୋଳେଇ ଶେଷ କରିଦେଲା । ବେହାରୀ ମନେ ମନେ ସବୁକଥା ବୁଝୁଥିଲା; କିନ୍ତୁ ସାନ୍ତ୍ୱନା ଦେବାର ସାହସ, ତାର ନ ଥିଲା । ତେଣୁ ସେ ବିଷଣ୍ଣ ମୁହଁରେ ଚୁପ୍ କରି ଦ୍ୱାର ବାହାରେ ବସି ରହିଥିଲା । ସେତେବେଳକୁ ରାତି ଦଶ । ସେ ଆସ୍ତେ ଆସ୍ତେ ମୁହଁ ବଢ଼େଇ କହିଲା— ବାବୁ, ଆଲୁଅଟା ଲିଭାଇଦେବି ?

ସତୀଶ କହିଲା—ଦେ, କିନ୍ତୁ ତୁ ଶୋଇବୁ କେଉଁଠି ?

--ମୁଁ ଏଇଠି ଅଛି ବାବୁ ! ମସିଣାଟା ଏଇଠି ପକେଇ ଶୋଇ-ପଡ଼ିବି ।

ସତୀଶ ପଚାରିଲା--ଏ ବସାରେ କଣ ଚାକର ଶୋଇବା ଭଳି ଜାଗା ନାହିଁ ?

ବେହାରୀ କହିଲା-- ତଳେ ଗୋଟାଏ ଖାଲି ଘର ଅଛି, କିନ୍ତୁ ଆପଣଙ୍କର ରାତିରେ କିଛି ଦରକାର ହେବ, ସେଇଥିପାଇଁ ଏଇଠି ରହୁଛି ।

ସତୀଶ ବ୍ୟସ୍ତ ହୋଇ କହିଲା--ଇଏ କଣ କଥା ରେ ? ଯା ଶୋଇବୁ ଯା । ବୁଢ଼ାଲୋକ, ଏ ଖୋଲାଟାରେ ?

ଖୋଲା ନୁହେଁ ତ କହି ବେହାଗ ଦେହରେ ଲୁଗାଟାକୁ ଗୁଡ଼େଇ ଦେଇ ସେଇଠି ଶୋଇପଡ଼ିଲା ।

କିଛି ସମୟ ଚୁପ୍ ରହି ସନ୍ତୋଷ ପଚାରିଲା--ରାତି କେତେ ହେଲାଣି କରେ ?

--ବେଶୀ ହୋଇନି ବାବୁ, ଦଶଟା ବାଜିଥିବ ।

ସନ୍ତୋଷ ପୁଣି ମୌନ ରହିଲା । କିଛି ସମୟ ପରେ ଧୀରେ ଧୀରେ ପଚାରିଲା--ଆଚ୍ଛା, ତୁ ପାର୍ବତୀର ଘର ଚିହ୍ନି ଚୁ ପରା ବେହାଗ ?

ବେହାଗ କହିଲା--ହଁ ଚିହ୍ନିଚି ବାବୁ ! କେତେଥର ତାକୁ ଛାଡ଼ି ଦେଇ ଆସିଚି ।

ସନ୍ତୋଷ କିନ୍ତୁ ଆଉ କିଛି କହିପାରିଲା ନାହିଁ; କିନ୍ତୁ ବେହାଗ କହିଲା— ଥରେ ଯାଇ ଦେଖିଆସିବି କି ?

ଏଥର ସନ୍ତୋଷ ବ୍ୟସ୍ତ ହୋଇ କହିଉଠିଲା— ନା ନା, ତୁ ଯିବୁ କୁଆଡ଼େ ? ସେ ଯେ ବହୁତ ଦୂର ?

ବେହାଗ କହିଲା—ଦୂର କିଛି ନୁହେଁ ବାବୁ !

ସନ୍ତୋଷ ଭାବିବାକୁ ଲାଗିଲା, କିନ୍ତୁ କିଛି ହେଲେ କହିଲାନି ।

ବେହାଗ ଆସ୍ତେ ଆସ୍ତେ କହିଲା ବାବୁ, ଘଣ୍ଟାଏ ଖଣ୍ଡେ ଯଦି ଛୁଟି ଦଅନ୍ତେ, ଯିବି ଦେଖି ଆସିବି । ସକାଳେ ତ ଆସିନି, ହୁଏତ ଦେହ ଭଲ ନ ଥିବ ।

ତଥାପି ସନ୍ତୋଷ ମୁହଁରୁ କୌଣସି କଥା ବାହାରିଲା ନାହିଁ ।

ବେହାଗ ମନେ ମନେ ଅସ୍ଥିର ହୋଇଉଠିଲା । ଆଜି ଦିନଯାକ ସେ ପୂର୍ବଭଳି କାହାରିକି ପଦେହେଲେ କଥା କହିପାରିନି, କହିବାଭଳି ବିଷୟ ଇତିମଧ୍ୟରେ ବହୁତ ସଞ୍ଚିତ ହୋଇ ରହିଗଲାଣି । ତେଣୁ ଆଉଥରେ କହିଲା—ନୂଆ ଜାଗାଟା ନା, ନିଦ ଲାଗୁ ନ ଥିବ, ହୁକା ଲଗେଇ ଆଣିବି ?

ସନ୍ତୋଷ ଅନ୍ୟମନସ୍କ ହୋଇ ଉଠିଥିଲା, କୌଣସି ଉତ୍ତର ଦେଲାନି । ତଥାପି ବେହାଗ କିଛି ସମୟ ଉଦ୍‌ଗ୍ରୀବ ଅବସ୍ଥାରେ ଅପେକ୍ଷା କରି ରହିଲା । ଶେଷରେ ହତାଶ ହୋଇ ଦେହରେ ଲୁଗାଟାକୁ ଗୁଡ଼େଇ ସେଇଠି ଘୁମେଇପଡ଼ିଲା ।

ତା ଆରମ୍ଭିନ ଠିକ୍ ସମୟରେ ସନ୍ତୋଷ ସ୍କୁଲକୁ ଚାଲିଗଲା । ଅପରାହ୍ନରେ ବେହାରୀ ହାତକାମ ସବୁ ସାରି ସଦ୍ୟନୂଆ ପୂଜାରୀଙ୍କ ଉପରେ ବସାର ଦାୟିତ୍ୱ ଦେଇ ବାହାରି ହୋଇପଡ଼ିଲା ଏବଂ ସତର ଦିନର ଦରମା ଅସୁଲ କରିବା ଛଳନାରେ ପୁରୁଣା ବସାରେ ଆସି ଉପସ୍ଥିତ ହେଲା । କିନ୍ତୁ ତାର ଆଶଙ୍କା ହେଉଥିଲା, ହୁଏତ ସୀତାଲବାବୁ ବସାରେ ନ ଥିବେ । ଅଫିସ ଚାଲି ଯାଇଥିବେ । ତେଣୁ ଘର ଭିତରେ ପଶୁ ପଶୁ ନୂଆ ଚାକରଠାରୁ ଖବରାଖବର ନେଇ ସିଧା ଗୋସେଇଘର ଆଗକୁ ଆସି ଡାକ ପକେଇଲା--ଗୋସେଇଁ, ଦଣ୍ଡବତ୍ ।

ପୂଜାରୀ ଗଞ୍ଜେଇ ଖାଇ କାନ୍ଥକୁ ଆଉଜି ଆଖିବୁଜି ଧ୍ୟାନମଗ୍ନ, ଡାକ ଶୁଣି ଚମକିଉଠି କହିଲା--କଲ୍ୟାଣ ହେଉ । ତାପରେ ମୁଣ୍ଡକୁ ସିଧାକରି ଆଖି ଖୋଲି ଚାହିଁ କହିଲା-ଆରେ ତୁ ଯେ ବେହାରୀ ! ଆ ବାବା,ବସ ବସ

ବେହାରୀ ପାଖକୁ ଆସି ପଦଧୂଳି ନେଇ ବସିଲା । ଚକ୍ରବର୍ତ୍ତୀ ଗାମୁଛାର ଗଣ୍ଠି ଫିଟାଇ କିଛିଟା ଗଞ୍ଜେଇ ବାହାର କରି ବେହାରୀ ହାତରେ ଦେଇ କହିଲା—ସେ ବସାରେ ତାହାହେଲେ ରାନ୍ଧୁଚି କିଏ ?

ବେହାରୀ ଉଠି ହାତରେ ପାଣିନେଇ ଆସି କହିଲା--ଗୋଟାଏ ଶ୍ରେଷ୍ଠ ବ୍ରାହ୍ମଣ---ଏକାବେଳକେ ଜାନୁଆର ।

ଚକ୍ରବର୍ତ୍ତୀ ଖୁସି ହୋଇ ମୁଣ୍ଡ ହଲାଇ କହିଲା--ଭଗବାନ ଗୋଟାଏ ଲାଞ୍ଜ ଦେବାକୁ ଭୁଲି ଯାଇଛନ୍ତି, ସେତିକି । ତାପରେ ବସାର ହିନ୍ଦୁସ୍ଥାନୀ ଚାକରଟାକୁ ଲକ୍ଷ୍ୟକରି କହିଲା--ଆମ ଏଠାକୁ କାଲି ଗୋଟାଏ ଭୂତ-ଟୋକାକୁ ଧରି ହୋଇ ଅଣାହୋଇଚି । ଯାହା ବିଦ୍ୟାବୁଦ୍ଧି ନା ତାର । ତୁ ନିଜେ ଦେଖନା ବିହାରୀ, ଆଜି ସକାଳେ ହୁକାର ଚିଲିଟାକୁ ବାହାର କରି କହିଲି କାହିଁ ଡିଆରି କଲୁ ଦେଖି । ବୁଦ୍ଧି କେତେଅଛି ଥରେ ଦେଖିନିଏ । କହିଲେ ବିଶ୍ୱାସ କରିବୁନି ବେହାରୀ, ପିଲାଟା ଜିନିଷଟାକୁ ଏକାବେଳକେ ମାଟି କରିଦେଲା । କିନ୍ତୁ ତୋର ସେଠି କିଛି କଷ୍ଟ ହେବନି । ସାବିତ୍ରୀ ବଡ଼ ଚାଲାକ୍ ଝିଅ । ଦୁଇଦିନ ଭିତରେ ଶିଖେଇ ପଢ଼େଇ ଏକା-ବେଳକେ ତାଲିମ କରିଦେବ ଯେ ।

ତାର ନିଜର ପନ୍ଦରଶ୍ରୀ ବିଦ୍ୟା ଯେ ଏଇ ଗୁରୁ ପାଖରୁ ଶିକ୍ଷା ହେ କଥାଟାକୁ ଚାପିଦେଇ ସଙ୍ଗେ ସଙ୍ଗେ କହିଲା- କିନ୍ତୁ କହୁଚି ବେହାରୀ, ଖାଲି

ହାଣ୍ଡି ଧରିଦେଲେ ହୁଏନା, ବାବୁଭାଇମାନଙ୍କୁ ଖୁସି କରିବା, ସେମାନଙ୍କ ପତ୍ରରେ ଭାତ ପରଷିଦେବା ସାମାନ୍ୟ କଥାନୁହେଁ ବାବା ! କିନ୍ତୁ ଏଇଠି ମତେ କାମ କଲେ ପୋଷେଇବ ନାହିଁ, ସେ କଥା ତତେ ଆଗରୁ କହି ରଖୁଚି । ତୁ ହଠେ ମୋ ନାଁ କହିଲୁ ସାବର୍ଣ୍ଣୀକି । ସେ ସାଙ୍ଗେ ସାଙ୍ଗେ, କହିବ, ଯା ବେହାଶ୍ରୀ, ଚକ୍ରବର୍ତ୍ତୀକୁ ଡାକିଆଣ । ହୁଏତ ଦି ପାଞ୍ଚ ଟଙ୍କା ଦରମା ବେଶୀ ନେବ । ସନ୍ତୋଷବାବୁ କିନ୍ତୁ କେବେହେଲେ ନା କରିବେନି । ମୁଁ ଜାଣେ ତାଙ୍କ ମିଜାଜ । ବଶେଧ ବ୍ରାହ୍ମଣେସ୍ୟ ବ୍ରାହ୍ମଣ ଗଚ୍ଛଂ । ମୁଁ ବେଶୀ ୨।୪ ଟଙ୍କା ପାଇଗଲେ ତ ଅପାଡରେ ପଡ଼ିଯିବନି । ଚକ୍ରବର୍ତ୍ତୀ କହୁଥାଏ, ହସୁଥାଏ ।

ବେହାଶ୍ରୀ ଅବାକ୍ ହୋଇ ବସିରହିଲା । କିଛି ସମୟ ପରେ କହିଲା— ବ୍ରାହ୍ମଣ ଗୋସେଇଁ, ସାବର୍ଣ୍ଣୀ ସେଠି ନାହିଁ ।

ଚକ୍ରବର୍ତ୍ତୀ ଅବିଶ୍ୱାସ କରି ହସି ହସି କହିଲା—ଆଚ୍ଛା ନାହିଁ ନାହିଁ । ତୁ ଯାଇ ଖାଲି କହନା, ତାପରେ ଯାହା ହେବ ମୁଁ ଦେଖିବିନି ?

ବେହାଶ୍ରୀ ମୁହଁକୁ ଭୁଷୁଣ୍ଡେଇ ବାଁ ହାତର କନିଷ୍ଠାକୁ ଡାହାଣ ହାତକୁ ନେଇ କହିଲା—ଦେହ ଛୁଇଁ କହୁଛି ଗୋସେଇଁ, ସେ ସେଠିକି ଯାଇନି ।

ଚକ୍ରବର୍ତ୍ତୀ ଏତେ ବଡ଼ ଶପଥ ପରେ ଆଉ ଅବିଶ୍ୱାସ କରି ପାରିଲାନି । ରୀତିମତ ଆଶ୍ଚର୍ଯ୍ୟ ହୋଇ କହିଲା, ତୁ କ'ଣ କହୁଚୁ ବେହାଶ୍ରୀ ! ସେ ତ ଏଠିକି ବି ଆସିନି । ତେବେ ଚବିଶ ଘଣ୍ଟା ରଖାଲ ବାବୁ, ସନ୍ତୋଷ ବାବୁ ବସ୍ତିରକୁ........ଆଚ୍ଛା ତୁ ଯା, ଥରେ ମୁଁ ଯାଇ ଦେଖିଆସେ, ପରେ ମୁଁ ଅଛି, କି ରଖାଲ ବାବୁ ଅଛନ୍ତି, ଦେଖାଯିବ । ମତେ ସେମିତି ବ୍ରାହ୍ମଣ ଗୋସେଇଁ ଭାବନା ବେହାଶ୍ରୀ ! ଭାରି ଅଖାଡ଼ୁଆ ।

ତାର ବ୍ରାହ୍ମଣତ୍ୱ ଉପରେ ବେହାଶ୍ରୀର ପ୍ରଗାଢ଼ ଶ୍ରଦ୍ଧା । ଗଞ୍ଜେଇ ଦଳି ଚକ୍ରବର୍ତ୍ତୀ ହାତକୁ ବଢ଼େଇ ଦେଇ କହିଲା—ଆଚ୍ଛା; ସନ୍ତୋଷ ବାବୁ ଚାଲିଗଲେ କାହିଁକି ? ସ୍କୁଲ୍ ଟିକିଏ ଦୂର ବୋଲି ? କିନ୍ତୁ ସେଇଟା ତ ସେମିତି ଗୋଟାଏ ବଡ଼ କାରଣ ନୁହେଁ ।

ଚକ୍ରବର୍ତ୍ତୀ ଚିଲମ ଦେହରେ ନିଆଁ ଭର୍ତ୍ତି କରୁ କରୁ କହିଲା—ନା, ଭିତରେ କିଛି ରହସ୍ୟ ଅଛି । ଦୁଇ ଜଣଯାକ ମିଶି ଚିଲମ ଫୁଙ୍କି ସାରିବା

ପରେ ବେହାରୀ ଉଠି ଉଦ୍‌ବିଗ୍ନ ମୁଖରେ ସାବିତ୍ରୀ ଘର ଆଡ଼କୁ ଗଲା। ତାର ଧାରଣା ହେଲା, ସାବିତ୍ରୀ ନିଶ୍ଚୟ ଅସୁସ୍ଥ ହୋଇପଡ଼ିଛି।

ସାବିତ୍ରୀ ଯେଉଁ ଖଞ୍ଜାରେ ରହେ, ତାର ଦୁଆର ଖୋଲାଥିଲା। ବେହାରୀ ଧୀରେ ଧୀରେ ପ୍ରବେଶ କଲା।

ପ୍ରାୟ ସବୁ ଦରଜା ବନ୍ଦ। ଭଡ଼ାଟିଆମାନେ ଦିବା ନିଦ୍ରାରେ ନିଝୁମ। ବେହାରୀ ଧୀରେ ଧୀରେ ସାବିତ୍ରୀ ଘର ଆଗକୁ ଆସି ବଜ୍ରାହତ ଭଳି ସ୍ତବ୍ଧ ଚକିତ ଭାବରେ ଠିଆହୋଇ ରହିଲା। ଗୋଟାଏ କବାଟ ବନ୍ଦ ଥିଲା। ତା ଆଡ଼ୁଆଳରେ ସାବିତ୍ରୀ ମାଟି ଉପରେ ଚୁପ୍ ହୋଇ ବସି ରହିଛି ଏବଂ କିଛି ଦୂରରେ ତକ୍ତପୋଷ ବିଛଣା ଉପରେ ବିପିନ ମଦ ଖାଇ ମାତାଲ ଅବସ୍ଥାରେ ଘୁମାଉଛି। ପାଦଶବ୍ଦରେ ବିସ୍ମିତ ହୋଇ ସାବିତ୍ରୀ ମୁହଁ ବଢ଼େଇ ଅକସ୍ମାତ୍ ବେହାରୀକି ଦେଖି ମୁହୂର୍ତ୍ତକ ଭିତରେ ଯେମିତି ବିବର୍ଣ୍ଣ ହୋଇଉଠିଲା। କିନ୍ତୁ ପରମୁହୂର୍ତ୍ତରେ ଆତ୍ମସମ୍ବରଣ କରି ବାହାରକୁ ଆସି ଜୋରରେ ହସି କହିଲା--ଆ ବେହାରୀ, ଆ ବସ। ତାକୁ ସାଙ୍ଗରେ ଆଣି ରୋଷେଇଘର ବାରଣ୍ଡାରେ ସପଟ ପକେଇଦେଲା ଏବଂ ଖୁବ୍ ଆଦର ଅଭ୍ୟର୍ଥନା କରି ବସେଇଦେଇ ନିଜେ ଚୌକି ଉପରେ ବସି ପଚାରିଲା—ଖବର ସବୁ କ'ଣ ଭଲ ବେହାରୀ? ବେହାରୀ ମୁଣ୍ଡ ହଲେଇ କହିଲା—ହଁ ଭଲ! ତା ପରେ ସାବିତ୍ରୀ ମୁହଁରେ ଆଉ କୌଣସି କଥା ଶୁଣାଗଲାନି। ଉଭୟେ ଚୁପ୍‌ଚାପ। କିନ୍ତୁ ସମୟ ପରେ ବେହାରୀ ହଠାତ୍ ଉଠିବାର ଉପକ୍ରମ କରି କହିଲା—ଯାଉଛି, ବହୁତ କାମ ପଡ଼ିଛି।

ସାବିତ୍ରୀ ବିପର୍ଯ୍ୟସ୍ତ ମୁଖରେ କହିଲା—ଚାଲିଯିବୁ? ଟିକିଏ ବସ ନା।

ବେହାରୀ ଉଠି କହିଲା—ନା, ଯାଉଛି।

ସାବିତ୍ରୀ ସାଙ୍ଗେ ସାଙ୍ଗେ ସଦର ଦରଜା ପର୍ଯ୍ୟନ୍ତ ଆସି ଧୀରେ ଧୀରେ କହିଲା---ବାବୁମାନେ ଖୁବ୍ ରାଗ କରିଛନ୍ତି ନା?

ବେହାରୀ ଯାଉ ଯାଉ କହିଲା—ମୁଁ ଜାଣେନା, ମୁଁ ତ ଆଉ ସେ ବସାରେ ନାହିଁ।

ସାବିତ୍ରୀ ବ୍ୟଗ୍ରତା ପ୍ରକାଶ କରି କହିଲା—ନାହିଁ, ବସା ଭାଙ୍ଗିଗଲା ନା କ'ଣ?

ବେହାରୀ କହିଲା—ଗର୍ଭିଣୀ ନା, କେବଳ ସତୀଶବାବୁ ଓ ମୁଁ ଚାଲି-ଯାଇଛୁ ।

—କାହିଁକି ଚାଲିଗଲ ?

'ସେ ବହୁତ କଥା' କହିଦେଇ ବେହାରୀ ଚାଲି ଯାଉ ଯାଉ ସାବିତ୍ରୀ ତାର ହାତକୁ ଧରି ନିବେଦନ ସ୍ୱରରେ କହିଲା—ଆଉ ଥରେ ତୁ ଘରକୁ ଆ, ବସି ମତେ ସବୁକଥା କହିବାକୁ [redacted] .

ବେହାରୀ ଅଟଳ ଭାବରେ ମୁଣ୍ଡକୁ ହଲେଇ କହିଲା—ମୋର ଆଉ ସମୟ ନାହିଁ ।

—ତେବେ କାଲି କେତେବେଳେ ଆସିବୁ କହିଯା ।

ବେହାରୀ ସେଇଭଳି ଦୃଢ଼କଣ୍ଠରେ କହିଲା—ନା ଝିଅ, ମୋର ଆଦୌ ସମୟ ହେବନି ।

ଏକ ବେଦନାବିଦଗ୍ଧ ଆଖି ଦିଇଟାରେ ଗୋଟିଏ ମାତ୍ର ପଲକ ତାଳି ସେ ବେହାରୀକି ଚାହିଁରହିଲା । ଅନ୍ତମାନରେ ସମସ୍ତ ବକ୍ଷ ଚୂର୍ଣ୍ଣ କରି ଶାନ୍ତ ଭାବରେ କହିଲା—ଆଚ୍ଛା ତେବେ ଯା, ଏଇ କଥା ତାଙ୍କୁ ଯାଇ କହିଦେବୁ ।

କଥାଟା ବେହାରୀକୁ ଖୁବ୍ ଆଘାତ ଦେଲା । ସେ ମୁହଁ ଉଠେଇଁ କହିଲା—ସେ ତୋ କଥା ଜାଣିବାକୁ ଚାହାନ୍ତି ନାହିଁ ।

—ଚାହାନ୍ତି ନାହିଁ ?

—ନା ।

ସାବିତ୍ରୀ ସ୍ଥିରହୋଇ ପ୍ରତିଘାତ ସହ୍ୟ କରିନେଇ ଶୁଖିଲା ଶୁଖିଲା ଗଳାରେ କହିଲା—ଯେଉଁଦିନ ଚାହିଁବେ କହିବୁ ।

ବେହାରୀ କହିଲା—ନା, ମୁଁ ତ ମାଇପି ନୁହେଁ, ମୋ ଦେହରେ ଦୟାମାୟା ଅଛି । କହିଦେଇ ଆଉ କୌଣସି ପ୍ରଶ୍ନର ଅପେକ୍ଷା ସୁଦ୍ଧା ନ କରି ଦ୍ରୁତ ପାଦରେ କ୍ଷୁଦ୍ରଗଳି ପାର ହୋଇ ଚାଲିଗଲା ।

ସାବିତ୍ରୀ ସେଇଠି ଏରୁଣ୍ଡି ଉପରେ ସ୍ତବ୍ଧ ଭାବରେ ବସିରହିଲା । ତା'ର ଭିତରେ ବାହାରେ ଯେମିତି ଆଉ ଗୋଟାଏ ନିଆଁର ଧୂନି ଜଳି ଉଠିଲା ।

ଆଜି ସକାଳେ ସେ ଘରେ ନ ଥିଲା, କାଳୀ ଦର୍ଶନ କରିବାକୁ କାଳୀଘାଟକୁ ଯାଇଥିଲା ।

ସେଇ ଅବକାଶରେ ବିପିନ କୋଉଠୁ କେଜାଣି ମଦଗୁଡ଼ାଏ ଖାଇ ମାତାଲ ଅବସ୍ଥାରେ ମୋକ୍ଷଦା ହାତରେ ଦିନା ଟଙ୍କା ଗୁଞ୍ଜି ଦେଇଛି । ଫଳରେ ମୋକ୍ଷଦା ସାବିତ୍ରୀଘର ଫିଙ୍ଗି ଦେଇଛି । ଆଜିର ମଦ ଆଣି ଘରର ସମସ୍ତେ ସେ ମଦ ଖାଇ ମାତାଲ ହୋଇ ଉଠିଛନ୍ତି, ଏସବୁ କୌଣସି କଥା ସାବିତ୍ରୀ ଜାଣେନା ! ବେଳ ଆସି ବାରଟା ବାଜିଲାବେଳକୁ ସେ ଘରକୁ ପଶି ଦେଖିଲା, ଦିଜଣ ଭଡ଼ାଟିଆ ମାତାଲ ହୋଇ କ'ଣ ଗୁଡ଼ାଏ ବକାବକ ହେଉଚନ୍ତି ଏବଂ ମାଉସୀ ମୋକ୍ଷଦା ଭଙ୍ଗା ଭଙ୍ଗା ଗଳାରେ ବିଦ୍ୟା ସୁନ୍ଦରଙ୍କ ଗୀତ ଆବୃତ୍ତି କରି ଗ୍ଭଲଚି । ଘର ସାରା ମୁଡ଼ି, ମାଛଭଜା, ହଂସ ଅଣ୍ଡାର ଖୋଲପା, ଚିଙ୍ଗୁଡ଼ିମାଛର ଖୋଲପା ବିଛିହୋଇ ପଡ଼ିଚି । ପାଦ ପକେଇବାକୁ ବି ଜାଗା ନାହିଁ । ମୋକ୍ଷଦା ସାବିତ୍ରୀକି ଦେଖିବାମାତ୍ରେ ଶିଥିଳବସ୍ତ୍ର ଅଞ୍ଚଳରେ ଭଉଡ଼ୁ ଭଉଡ଼ୁ କହିଲା—ମା, ଏତିକି ସାର ବାବୁ, ତାର ଆଉ କଷ୍ଟ କ'ଣ ? ଗ୍ଭକିରି ବା କରିବା କି ଦରକାର ? ମୁଁ କିନ୍ତୁ ତୋର ଗରିବ ମାଉସୀ ସାବିତ୍ରୀ !···ମୁହଁରେ ତାର ଉଗ୍ର ମଦର ଗନ୍ଧ, ଗାଲ, କପାଳ, ଲୁଗାପଟା, ସର୍ବାଙ୍ଗରେ ହଳଦୀ ଦାଗ, ନିଶ୍ୱାସରେ କଞ୍ଚା ପିଆଜର କୁତ୍ସିତ ତୀବ୍ର ଗନ୍ଧ ! ଅସହ୍ୟଘୃଣାରେ ସାବିତ୍ରୀ ତାକୁ ଜୋରରେ ଧକ୍କାଏ ମାରି କହିଉଠିଲା – ମାଉସୀ ! ତୁମେ ବି ମଦ ଖାଅ ? ତୁମେ ବି ମାତାଲ !

ମୋକ୍ଷଦା ଧକ୍କା ଖାଇ ଆଖି ଦିଇଟାକୁ ଲାଲଲାଲ କରି ପାଟିକରି ଉଠିଲା—କ'ଣ କହିଲୁ ? ମୁଁ ମାତାଲ ! ଅଲବତ୍ ମାତାଲ । ସାହିର ଲୋକଙ୍କୁ ଯାଇ ପଚ୍ଚାରିଲୁ ସେମାନେ କହିବେ ମୋକ୍ଷଦା ମାତାଲ ! ମୋର ଦିନ ଥିଲା ଲୋ, ଦିନ ଥିଲା ! ମୁଁ ବି ଦିନେ ଚବିଶ ଘଣ୍ଟା ମଦରେ ବୁଡ଼ି ରହିଥିଲି । ତୁ କୁଆଡ଼ୁ ଜାଣିବୁ, କାଲିକାର ପିଲା ।

ତାର ଗର୍ଜନ ତର୍ଜନରେ କୁଣ୍ଠିତ ହୋଇ ସାବିତ୍ରୀ ତାକୁ ଶାନ୍ତ କରିବା ଅଭିପ୍ରାୟରେ କହିଲା—କିନ୍ତୁ ତୁମେ ତ ଆଗେ ଖାଉ ନ ଥିଲ ଆଜି ଖାଇଲ କାହିଁକି ?

ମୋକ୍ଷଦା ଆହୁରି ରାଗିଉଠି କହିଲା—ହଠାତ୍ କ'ଣ କିଲେ ? ମୁଁ ହଠାତ୍ ଖାଇବାଭଳି ଝିଅ ନୁହେଁ । ପଚ୍ଛରିଯାଇ ତୋ ବାବୁଙ୍କୁ, ସିଏ କି ଗୋଟାଏ ଗିଲାସ ପିଇ ଏକାବେଳକେ ଭଲକାର୍, ଯାଲୋ ଯା, ଆମେ ଖାଇ ଖାଇ ମରୁ, କିନ୍ତୁ ମର୍ଯ୍ୟାଦା ହରାଉନୁ । କାନରେ ଧଇଟା ନୋଟ ବନ୍ଧାଗଲା, ତା ପରେ ଯାଇ ଖାଇଲ ! କହୁ କହୁ ଲଗା କାନଟାକୁ ଦେଖେଇଦେଇ ପୁଣି କହିଲା—ଖାଲି କହିଦେଲେ ପିଇପିବ, ସେମିତି ମୋକ୍ଷଦା ମୁଁ ନୁହେଁ ।

ସାବିତ୍ରୀ ଅବାକ୍ ହୋଇ କହିଲା—ବାବୁ ଆସିଚନ୍ତି ନା କ'ଣ ?

ମୋକ୍ଷଦା କହିଲା—ନହେଲେ ଏତେ କାଣ୍ଡ କରନା କିଏ ? କେବଳ କହିରଖୁଚି, ଖା କହିଲେ ଖାଇ ପିବନି, ମାନ୍ ମର୍ଯ୍ୟାଦା ତ ପୁଣି ଅଛି !

ଇତିମଧ୍ୟରେ ବାରଣ୍ଡାରେ ଯେଉଁମାନେ ବଚସା କରୁଥିଲେ, ଉଚ୍ଚ କଣ୍ଠସ୍ୱରର କଳରବ ଶୁଣି ସେମାନେ ଆସି ପାଖରେ ଠିଆହେଲେ । ବଧୂ କହିଲା—ଆଲୋ, ମାନମର୍ଯ୍ୟାଦା ଆମର ବି ଅଛି, ଅଣ୍ଟାଟାପରି ଆମେ ମଧ୍ୟ ବୁଝୁ ! ସାବିତ୍ରୀ ଭଳି ତାର ବାବୁ ଯେତେ ଖାଅ ଖାଅ ବୋଲି ଆଦର ଅଭ୍ୟର୍ଥନା କରି ଖୁଆଇ ବସିଲେ ନ ଖାଆନ୍ତୁ କପରି ?

ତାର କଥା ଶେଷ ନ ହେଉଣୁ ମୋକ୍ଷଦା କହିଉଠିଲା—ହେଉ ପଛେ ସାବିତ୍ରୀର ବର, ଜୁଆଇଁ କୁହ, ସେ ଯେ ହେଉ ପଛକେ, କୋଡ଼ିଏ ଟଙ୍କା କାନରେ ବନ୍ଧାଗଲା, ତେବେ ଯାଇ ଗିଲାସ ଛୁଇଁଲି ।

ଏକଥା ଶୁଣି ସାବିତ୍ରୀର ମୁଣ୍ଡ ଲଜ୍ଜାରେ ତଳକୁ ନଇଁ ଆସୁଥିଲା । କହିଲା—ସେତିକି ହେଉ, ଠିକ୍ଏ ଚୁପ୍ ରୁହ ମାଉସୀ !

ମୋକ୍ଷଦା କହିଲା—ଆଲୋ ଏ, ଚୁପ୍ ରହିବ କାହିଁକି ? ଯାହା କହିବା କଥା, ସାମନାରେ କହିବି । ସମସ୍ତେ ଶୁଣନ୍ତୁ, ସମସ୍ତେ ଜାଣନ୍ତୁ, ମୋକ୍ଷଦା ମଦ ଖାଏ, ଗଳା ଘସିଗଲା !

ମୋକ୍ଷଦା ଆଉ କ'ଣ ଗୁଡ଼ାଏ ବକିବାକୁ ଯାଉଥିଲା, ସାବିତ୍ରୀ ମୁହଁକୁ ବନ୍ଦ କରିଦେଇ ତାକୁ ଟାଣି ନେଇ ତା ଘର ଭିତରେ ଶିକୁଳି ବନ୍ଦ କରିଦେଲା । ଘର ଭିତରେ ପଶି ମଧ୍ୟ ମୋକ୍ଷଦା ନାନା ଅଶ୍ରାବ୍ୟ,

ଅକଥ୍ୟ ଭାଷା ପ୍ରୟୋଗ କରିବାକୁ ଲାଗିଲା । ଫେରିଆସି ସାବର୍ଣ୍ଣୀ ବଧୂର ବାଇଶ୍ଚାଯାକ ହାତକୁ ଧରି କହିଲା—ମାଉସୀ । ମତେ କ୍ଷମା କର, ସବୁ ଦୋଷ ମୋର !

ତାର କାଁ କାଁଆ କଥାରେ ବଧୂ ଶାନ୍ତ ହୋଇ କହିଲା—ତୋର ଦୋଷ କ'ଣ ସାର ? ମୁଖି (ମୋକ୍ଷଦା)କୁ ସବୁଦିନ ଜାଣେ ଏମିତି ! ଟିକିଏ ଖାଇଦେଲେ ଏକାବେଳକେ ଅଣାୟତ୍ତ, ଏକାବେଳକେ ଝଗଡ଼ା ! ଏଇତ ତାର ସ୍ୱଭାବ । ଯା, ତୁ ନିଜ ଘରକୁ ଯା । କହିଦେଇ ବଧୂ ତାର ସଙ୍ଗିନୀ ହାତ ଧରି ଚାଲିଗଲା ।

ସାବର୍ଣ୍ଣୀ କାଠଭଳି ଠିଆ ହୋଇ ରହିଲା । ରୋଷ ଓ କ୍ଷୋଭରେ ଇଚ୍ଛା ହେଲା ଏହିକ୍ଷଣି ଯାଇ ଆତ୍ମହତ୍ୟା କରି ପକାଇବ ! ସଞ୍ଜିଶ ଯେ ଏତେ ନିର୍ଲଜ ହୋଇପାରେ, ପ୍ରକାଶ୍ୟରେ ଦିନବେଳଟାରେ ଏଭଳି ଉନ୍ମତ୍ତ ଆଚରଣ କରିପାରେ, ଏକଥା ତ ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା ! ତେଣୁ କାଲ୍ପନିକ ନୁହେଁ, ଗୋଟାଏ ବାସ୍ତବ ବ୍ୟଥା ତା ବୁକୁ ଭିତରେ ଗୋଟାଏ ବିରାଟ ତରଙ୍ଗ ଭଳି ଘୁଡ଼େଇହୋଇ ଚାଲିଲା । ତାର ମନେହେଲା, ସେ ଯାହାକୁ ପ୍ରିୟତମ ବୋଲି ଭାବିଥିଲା ତାର ଆଖି ଆଗରେ ମରିଗଲା । ଯାହାକୁ ଯେ ଦି'ଦିନ ତଳେ କଟୁକ୍ତି କରି ଅପମାନିତ କରି ବିଦାୟ ଦେବାକୁ ବାଧ୍ୟ ହୋଇଥିଲା, ସେ ଯେତେବେଳେ ଏତେ ଶୀଘ୍ର ଏତେ ସହଜରେ ତାର ସମସ୍ତ ଆତ୍ମସଂଭ୍ରମ ବିସର୍ଜନ ଦେଇ ଏଭଳି ହୀନ, ଏଭଳି କଦାକାର ହୋଇ ଫେରିଆସିଲା, ସେତେବେଳେ ଭରସା ଓ ବିଶ୍ୱାସ କରିବାର କୌଣସି କଥା ସୁଦ୍ଧା ରହିଲା ନାହିଁ । ତାର ଦୁଇଆଖି ଯେମିତି ପୋଡ଼ିଉଠିଲା, କିନ୍ତୁ ବିନ୍ଦୁଏ ହେଲେ ପାଣି ନଗଡ଼ିଲା ନାହିଁ । ତାର ସର୍ବସ୍ୱ, ତାର ଦେବତା, କଳ୍ପନାର ସ୍ୱର୍ଗ, ତାର ଭ୍ରଷ୍ଟ ଜୀବନର ଧ୍ରୁବତାରା, ତାର ଇହକାଳ, ପରକାଳ ସବୁ ଯେମିତି ଏକ ମୁହୂର୍ତ୍ତରେ ଇତସ୍ତତଃ ବିକ୍ଷିପ୍ତ ଉତ୍କ୍ଷିପ୍ତ ହୋଇ ମାଟିରେ ଲୋଟିପଡ଼ିଲା । ସାବର୍ଣ୍ଣୀ ସ୍ଥିର ଶରୀରରେ ଠିଆହୋଇ ରହିଲା । ଘର ଭିତରକୁ ଯିବା ପାଇଁ ତାର ପାଦ ବି ଚଳିଲା ନାହିଁ । ତାର ମନେ ପଡ଼ିଲା, ଏଇ ସେଦିନ ରାତିରେ ତାର ଦେହ ଛୁଇଁ ସଞ୍ଜିଶକୁ ଶପଥ କରେଇଥିଲା । ଆଜି ଯଦି ସେ ସବୁ ଭୁଲିଯାଇ, ମାତାଲ ଅବସ୍ଥାରେ ତାର

ଶେଯରେ ଆସି ପଡ଼ିଲା, ସେତେବେଳେ ତାର ମୁହଁକୁ କୋଉ ମୁହଁରେ ସେ ଯାଇ ଗୁହାଁବ ?

ଠିକ୍ ଏଇ ସମୟରେ ତଳେ ଘରବାଲୀର ପାଟି ଶୁଭିଲା । ସେ ମଧ୍ୟ ଘରେ ନ ଥିଲା । ଆସିବାମାତ୍ରେ ମୋକ୍ଷଦା ଓ ବଧୂର ଏସବୁ କାଣ୍ଡ କଥା ଶୁଣି ଉପରକୁ ଉଠି ଆସୁଥିଲା, ଅଳିଆ ମଇଳା ସବୁ ଦେଖି ସେ କିଛିକ୍ଷଣ ଠିଆହୋଇ ରହିଲା । ସାବିତ୍ରୀକୁ ତଟସ୍ଥ ରହିବାର ଦେଖି ତାକୁ କହିଲା—ସାବି ତତେ ଭଲ ଝିଅଟିଏ ବୋଲି ଜାଣିଥିଲି; ଏସବୁ କ'ଣ ଘଟିଚି କହ ତ ?

ସାବିତ୍ରୀ ସଂକ୍ଷେପରେ କହିଲା—ମୁଁ ଘରେ ନ ଥିଲି ।

ଘରବାଲୀ କହିଲା—ଏବେ ତ ଆସିଲୁଣି, ଏ ସବୁ ଓଳିଆ ଓଳି କରିବ କିଏ ? ନା ମା, ଆମ ଘରେ ଏସବୁ ଅନାଗୁର ଆଦୌ ଚଳିବନି । ଯିଏ ଯାହା ଘର ଭିତରେ ଯାହା ତାହା କର, କିଛି ଯାଏ ଆସେନା । କିନ୍ତୁ ଘର ବାହାରେ ଏସବୁ କାଣ୍ଡ, ମୁଁ ସହିପାରିବନି । ଏ ସବୁ ପାଇଁରେ ମୁଁ ମାଡ଼ ମାଡ଼ ଦିବି, ଛୁଆଁ ଛୁଇଁ କରିବ, ଏସବୁ ମୋଠୁଇ ହେବନି । କହିଦେଇ ପାଦକୁ ଚପି ଚପି ସେ ତା ଘର ଭିତରକୁ ଚାଲିଗଲା । ସାବିତ୍ରୀ ଆଉ ଠିଆ-ହୋଇ ରହିଲାନି । ସବୁ ଜଞ୍ଜାଳ ପରିଷ୍କାର କରିଦେଇ ସବୁ ସ୍ଥାନକୁ ଧୂଆ-ଧୋଉ କରିଦେଇ ପୁଣି ଥରେ ଗାଧୋଇବାକୁ ଗଲା । ଓଦା ଲୁଗା ପାଲଟିବା ପାଇଁ ଘର ଭିତରକୁ ପଶିପାଇ ଶେଯ ଆଡ଼କୁ ଗୁହାଁ ପାଟିକରି ଉଠିଲା— ଆରେ ବାପରେ, ଇଏତ ନବୀନ ବାବୁ !

ମଦ୍ୟପ ନିଦୋଉ ନିଦରେ ମଗ୍ନ । ଉଠିଲାନି । ବାହାରେ କେହି ଏ ଶବ୍ଦ ଶୁଣିବାକୁ ପାଇଲେନି । ସାବିତ୍ରୀ ଦ୍ରୁତପାଦ ପକେଇ ଆସିଲା, ତାର ସର୍ବାଙ୍ଗ କମ୍ପି ଉଠୁଥାଏ, ମୁଣ୍ଡରେ ମୂର୍ଚ୍ଛାର ଲକ୍ଷଣ ଅନୁଭବ କରି, କାନ୍ଥ ଦେହରେ ଦେହଟାକୁ ଲଗେଇ ଧୀରେ ଧୀରେ ତଳେ ବସି ପଡ଼ିଲା ।

କିଛି ସମୟ ପରେ ସେ ଦୁର୍ବଳତା କଟିଗଲା ସତ, ତଥାପି ସେ ମୁଣ୍ଡ ଉଠେଇ ପାରିଲା ନି । ଇତି ପୂର୍ବରୁ ଯେଉଁ କ୍ଷୋଭ, ଦୁଃଖରେ ତାର ହୃଦୟ ଭିତରଟା ଖଣ୍ଡ ଖଣ୍ଡ ହୋଇପଡ଼ୁଥିଲା, ତାର ନିର୍ଲଜ୍ଜ ଘୋଟରେଇର ଲଜ୍ଜାରେ ଇଚ୍ଛା ହେଉଥିଲା, ମରିଯାଆନ୍ତି ହେଲେ । ସେ ଲଜ୍ଜା ସତ୍ୟ ନୁହେଁ, ଏଇ ସଙ୍କଟ ମୁହୂର୍ତ୍ତରେ ଆଉଜଣରେ, ତାହା ଆଖିରେ ଦେଖିଲେ ମଧ୍ୟ ସେ ବୋଲି, ସେ

ସେ ଦୁଃଖ ବନ୍ଦ ଏ ସୁଦ୍ଧା କମିଲ ନାହିଁ । ବରଂ ବୁକୁଟା ଯେମିତି ଆହୁରି ଘଣ୍ଟ, ଅନ୍ଧକାର ହୋଇଉଠିଲା । ଶେଷ ଆଡ଼କୁ ଆଜି ସେ ଗୁହଁ ସୁଦ୍ଧା ପାରିଲା ନାହିଁ । ଏଥର ତାର ଦୁଆଖି ଭର୍ତ୍ତି ହୋଇ ଲୁହ ଝର୍ ଝର୍ ବହି ଆସିଲା ।

ହାୟରେ ରମଣୀର ପ୍ରେମ ! ଏଇ ଦୁଃଖ, ଏଦ୍ୱାର ଭିତରେ କେତେବେଳେ ଯେ ସେ ଗୋପନରେ, ନିଃଶଙ୍କରେ ସଞ୍ଜୀବର ସମସ୍ତ ଅପରାଧକୁ କ୍ଷମା କରି ତାକୁ ସେବା କରିବା, ସୁସ୍ଥ କରିବାର ପିପାସା ଆର୍ତ୍ତ ହୋଇଉଠିଲା, କେତେବେଳେ ଯେ ତାକୁ ଦେଖିବାର, କଥା କହିବାର ସର୍ବଗ୍ରାସୀ କ୍ଷୁଧା ଜାଗ୍ରତ ହୋଇଉଠିଲା, ଏ ଖବର ବୋଧହୁଏ ତାର ଅନ୍ତର୍ଯ୍ୟାମୀ ପକ୍ଷରେ ମଧ୍ୟ ଅଜ୍ଞାତ । ଏଥର ସେଇ ଆଡ଼ର ସମସ୍ତ ଆଶା ଏକ ମୁହୂର୍ତ୍ତରେ ମିଥ୍ୟାରେ ମିଳେଇଯିବା ମାତ୍ରେ ତାର ସମଗ୍ର ଅସ୍ତିତ୍ୱଟା ଯେମିତି ଏକ ଦିଗବିହୀନ ଶୂନ୍ୟତା ଭିତରେ ଡୁବିଗଲା । ଠିକ୍ ଏଇ ସମୟରେ ତାର ଦ୍ୱାର ବାହାରେ ବେହାଗ ଆସି ଠିଆ ହୋଇଥିଲା ।

## ଦଶ

ସଞ୍ଜୀବ ହୃଦୟ ଭିତରେ ଗୋଟାଏ ନିଆଁ ହୁଳା ଅନବରତ ଯେ ଜଳିଉଠୁଛି, ସେ ଏକଥା ଅସ୍ୱୀକାର କରିପାରିଲା ନାହିଁ । ଏଇ ନିଆଁରେ ଜଳି ପୋଡ଼ି ତା ସାରା ଦେହଟା ଯେ ନିସ୍ତେଜ ହୋଇଆସୁଛି, ଏକଥା ମଧ୍ୟ ସେ ସ୍ପଷ୍ଟ ଅନୁଭବ କରିପାରି ଉଦ୍‌ବିଗ୍ନ ହୋଇଉଠିଲା । ବେହାଗକୁ ଡାକି କହିଲା—ଆଉ ଥରେ ବୁଜୁଳି ବାନ୍ଧିବାକୁ ପଡ଼ିବ ରେ ! ଆଜି ଆମେ ସନ୍ଧ୍ୟା ଗାଡ଼ିରେ ଘରକୁ ଯିବାକୁ ପଡ଼ିବ ।

ବେହାଗ ପଚାରିଲା— ଗାଁକୁ ନା ପଶ୍ଚିମ ଘରକୁ ?

ପଶ୍ଚିମର ଘରକୁ କହିଦେଇ ସଞ୍ଜୀବ ଦରକାରୀ ଜିନିଷପତ୍ର କିଣିବାକୁ ଟଙ୍କା ଦେଇ ସ୍କୁଲକୁ ବାହାରିଗଲା ।

ବେହାଗର ଆନନ୍ଦ କହିଲେ ନ ସରେ । ତା ଘର ମେଦିନୀପୁର ଜିଲ୍ଲାରେ । ପଶ୍ଚିମମୁହାଁ ସେ କେବେହେଲେ ହୋଇନି । ସେଇ ପଶ୍ଚିମକୁ ଆଜି ଯିବାକୁ ପଡ଼ିବ । ସଙ୍ଗେ ସଙ୍ଗେ କ'ଣ ଗୁଡ଼ାଏ ଗୁଣୁ ଗୁଣୁ ହୋଇ

ପୁଟୁଳା ପୁଟୁଳି ବାନ୍ଧିବାରେ ଲାଗିଗଲା । ପଣ୍ଡା ଗୋସେଇଁ ଆସି ଡାକିଲେ ଖାଇବାକୁ । ବେଦାଙ୍ଗ ହସ ହସ ମୁହଁରେ କହିଲା—ଗୋସେଇଁ, ତୁମେ ଖାଇପକାଅ । ମୋର ଭାତ ଘୋଡ଼େଇ ରଖିଦିଅ, ସମୟ ପାଇଲେ ଖାଇବି । ଏବେ ଖାଇବାକୁ ଟିକିଏ ହେଲେ ଫୁରୁସତ ନାହିଁ । ପଣ୍ଡା ଗୋସେଇଁ ଦ୍ୱିତୀୟ କଥାଟା ଶୁଣିପାରିଲେନି, ସେଇ ପ୍ରଥମ କଥା ଟିକକ ବୁଝିଦେଇ ଚାଲିଗଲା । ହାତର କାମ ଶେଷକରି ବେଦାଙ୍ଗ ବାହାରକୁ ଚାଲିଗଲା । ବଜାରକୁ ଯିବାକୁ ପଡ଼ିବ । ତା ଛଡ଼ା ସେ ମେସ୍‌ର ଚନ୍ଦ୍ରବର୍ତ୍ତୀ ଗୋସେଇଁଙ୍କୁ ଖବର ଦେବା ଦରକାର । ସାବିତ୍ରୀର ଚଳଣିକୁ ସେ ସେଦିନ ଘୃଣାର ସହିତ ବର୍ଜନ କରିଥିଲା; ତେଣୁ ତା ପାଖକୁ ଯିବାକୁ ତା ମନରେ କୌଣସି ପ୍ରଶ୍ନ ଜୁଟା ଉଠିଲାନି ।

ଆଜି ସକାଳୁ ସତ୍ୟଶର ମୁଣ୍ଡବ୍ୟଥା । ଦିନ ବାରଟା ବେଳକୁ ଜର ଜର ଦେହରେ ସେ ଘରକୁ ଫେରିଲା । ବେଦାଙ୍ଗ ଘରେ ନ ଥିଲା । ସେ ପ୍ରାୟ ତିନିଟା ବେଳକୁ ଗୁଡ଼ାଏ କ'ଣ ଜିନିଷ ମୁଣ୍ଡେଇ ମୁଣ୍ଡେଇ ଆସି ଘରେ ପହଞ୍ଚିଲା । ସେ ସମୟରେ ଗୁରୁଆଡ଼େ ଇନ୍‌ଫ୍ଲୁଏଞ୍ଜା ହୋଇଥାଏ । ସେ କଥା ଭାବି ଭାବି ସତ୍ୟଶ ମନରେ ଘୋର କଷ୍ଟ ହେଲା । ତା ଆରଦିନ ଜ୍ୱର ଓ ଯନ୍ତ୍ରଣା ଉଭୟ ବୃଦ୍ଧି ପାଇଲା । ସନ୍ଧ୍ୟାବେଳକୁ ସତ୍ୟଶ ଚିନ୍ତିତ ମୁହଁରେ ବେଦାଙ୍ଗକୁ କହିଲା—ଜ୍ୱର ଯଦି ଶୀଘ୍ର ନ ଛାଡ଼େ, ତାହାହେଲେ ତୁ ତ ଏକଲା ପାରିବୁନି ।

ବେଦାଙ୍ଗ ଛଳ ଛଳ ଆଖିରେ ସାହସ ଦେଇ କହିଲା—ଭୟ କ'ଣ ବାବୁ ?

ସତ୍ୟଶ ଅଳ୍ପ ସମୟ ଚିନ୍ତିତ ହୋଇ କହିଲା—ସାବିତ୍ରୀକି ଖବର ଦେଲେ ହୁଅନ୍ତା ନ ? ହୁଏତ ଡାକ୍ତର ଡାକିବାକୁ ପଡ଼ିବ ।

କୌଣସିମତେ ସାବିତ୍ରୀକୁ ଡାକିଆଣିବାର ଇଚ୍ଛା ବେଦାଙ୍ଗର ନ ଥିଲା; କିନ୍ତୁ ସେ ମନର ଭାବ ଦମନ କରି ମୃଦୁସ୍ୱରରେ କହିଲା—ଆଚ୍ଛା ଯାଉଛି ।

ସେ ପର୍ଯ୍ୟନ୍ତ ସତ୍ୟଶ ଉନ୍ମୁଖ ହୋଇ ରହିଥାଏ । ତାର ଜ୍ୱରର ଯନ୍ତ୍ରଣା ଯେପରି ଆପେ ଆପେ କମିଆସିଲା । ଘଣ୍ଟେ ଦୁଇ ଘଣ୍ଟା ପରେ ବେଦାଙ୍ଗ ଏକଲା ଫେରି ଆସିବାର ଦେଖି ସତ୍ୟଶ ମନରେ ଧକ୍କା ଆସିଥିଲା ।

ବେହାରୀ କହିଲା—ସେ ଘରେ ନାହାଁନ୍ତି ବାବୁ !

—ଘରେ ନାହାଁନ୍ତି ! ଆଉ ମେସକୁ ଯାଇ ବୁଝିଲୁନି !

ବେହାରୀ କହିଲା—ସେ ମେସକୁ ଆଉ ସେ ଯାଉନି । ତିନି ଦିନ ହେଲା ଘରକୁ ବି ଯାଇନି । କୁଆଡ଼େ ଯାଇଛି କେଜାଣି ?

—ତା ମାଉସୀ ବି ଜାଣେନା ?

—ନା, ତାଙ୍କୁ ବି କହିଯାଇନି ।

ସତୀଶ ନିର୍ବାକ୍ । ବେହାରୀ ଆଖିର ଜଳ କୌଣସିମତେ ପୋଛି ପୋଛି ବାହାରେ ଆସି ଠିଆହେଲା । ସାବିତ୍ରୀର ଯେଉଁ ଇତିହାସ ସେ ତାର ମାଉସୀ ପାଖରୁ ଶୁଣିଆସିଲା ଏବଂ ଯେଉଁ କଥା ସେ ନିଜ ଆଖିରେ ଦେଖି-ଆସି ବିଶ୍ୱାସ କରିନେଇଛି, କୌଣସିମତେ ସେ ସମ୍ବାଦ ଏଇ ରୁଗ୍ଣ ଲୋକଟି ଆଗରେ ଉଚାରଣ କରିପାରିଲାନି ସେ ।

ତା ଆରଦିନ ଡାକ୍ତର ଆସି ତାକୁ ଔଷଧ ଦେଇଗଲେ । ସତୀଶ ଔଷଧ ଶିଶି ହାତରେ ଧରି ଝରକା ଆରପଟେ ଫୋପାଡ଼ିଦେଲା । ଏ କଥା ଦେଖି ବେହାରୀ ଆଉ ଥରେ ଲୁହ ପୋଛି ପୋଛି ସାବିତ୍ରୀର ସନ୍ଧାନରେ ବାହାରିପଡ଼ିଲା । ମୋକ୍ଷଦା ରାନ୍ଧୁଥିଲା, ବେହାରୀ ପଚାରିଲା—ଆଜି ବି ଆସିନି ?

ମୋକ୍ଷଦା ହାତର ଫୁଙ୍କିନଳାଟା ଉଠେଇ ଆଖି ମୁହଁ ଲାଲ ଲାଲ କରି କହିଲା—ନା ବାବା, ନା । କେତେ ଥର ତତେ କହିବି, ସେ ଆଉ ଆସିବନି । ଅସମୟରେ ହିଁ ନାଁ ମୁଁ ଥିଲି ତାର ମାଉସୀ, ଏବେ ତ ତାର ସୁସମୟ ।

ବସାକୁ ଫେରିଆସି ବେହାରୀ ଧୀରେ ଧୀରେ କହିଲା—ଆଜି ବି ସାବିତ୍ରୀ ଫେରିଆସିନି ।

ଦୁଇ ତିନି ଦିନ ପରେ ଔଷଧ ନ ଖାଇ ମଧ୍ୟ ସତୀଶର ଜର ଛାଡ଼ିଗଲା । ସେ ଭାତ ଖାଇ ବେଶ୍ ସୁସ୍ଥ ହୋଇଉଠିଲା । ବେହାରୀକୁ ଡାକି କହିଲା— ଆଉ ରହିହେବନି, ଆଜି ସେ କୌଣସିମତେ ଯିବାକୁ ପଡ଼ିବ ।

ସେଇଦିନ ହିଁ ସତୀଶ କଲିକତା ଛାଡ଼ି ଚାଲିଗଲା ।

## ଏଗାର

ଉପେନ୍ଦ୍ର ସତ୍ୟଶର ମଳିନ ଶୁଷ୍କ ମୁଖକୁ ଚାହିଁ କହିଲେ—ଭାଇର କ'ଣ ଇଏ ଗୋଟାଏ ଡାକ୍ତରୀ ଶିକ୍ଷାର ନମୁନା ?

ସତ୍ୟଶ ହସି ହସି କହିଲା—ହେଲାନି ଉପୀନ୍ଦା ।

ଉପେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ କହିଲେ—ହେଲାନି କଣ ରେ ?

ସତ୍ୟଶ ଲଜ୍ଜିତ ହୋଇ କହିଲା—ଡାକ୍ତରୀ ମତେ ପୋଷାଇଲାନି, ହେଲାନି ଉପୀନ୍ଦା !

ଉପେନ୍ଦ୍ର ସ୍ନିଗ୍ଧଦୃଷ୍ଟିରେ କିଛି ସମୟ ସତ୍ୟଶର ଉନ୍ନତ ଦେହଟାକୁ ଚାହିଁ କହିଲେ—ଭଲ ହୋଇଚି । ଗାଁକୁ ଯାଇ ବୃଥାରେ ଗୁଡ଼ାଏ ଜୀବହତ୍ୟା କରିଥାଆନ୍ତୁ, ସେଇ ପାପରୁ ଭଗବାନ ତତେ ରକ୍ଷା କରିଚନ୍ତି ।

କେତେ ମାସ ପରେ ଆଉ ଥରେ ଉପେନ୍ଦ୍ର ସତ୍ୟଶକୁ ଡାକି କହିଲେ—ମୋ ସାଥିରେ ଥରେ କଲିକତା ଯିବାକୁ ପଡ଼ିବ ସତ୍ୟଶ !

ସତ୍ୟଶ ହାତ ଯୋଡ଼ି କହିଲା—ଏ ଆଦେଶ କରନି ଉପୀନ୍ଦା ! କଲିକତା ଚମତ୍କାର ସହର, ସବୁ ଭଲ; କିନ୍ତୁ ମତେ ଯିବାକୁ କୁହନା ।

କଥାଟାକୁ ତାମସା କରି ଭଳି ସତ୍ୟଶ କହୁ କହୁ କହିଦେଲା ସତ, କିନ୍ତୁ ସେ ଛଳନା ତାର ଗୁପ୍ତ ବ୍ୟଥାଟାକୁ ଗୁପ୍ତିରଖି ପାରିଲାନି । ତାର ମୃଦୁହାସ ବେଦନାର ବିକୃତିରେ ରୂପାନ୍ତରିତ ହୋଇ ଦେଖାଦେଲା ତାର ଗୋଟିକିଯାକ ମୁହଁରେ । ଉପେନ୍ଦ୍ର ସେଇ ଛବିକୁ ଅପଲକ ନେତ୍ରରେ ଲକ୍ଷ୍ୟ କରୁଥିଲେ । ସେ ବେଶ୍ ବୁଝିପାରିଲେ, ସତ୍ୟଶ କଲିକତାରେ କ'ଣ ନା କ'ଣ କରିଦେଇ ଆସିଚି; କିନ୍ତୁ ତାଙ୍କ ପାଖରେ ଗୋପନ ରଖିଚି । କ୍ଷଣକ ପରେ କହିଲେ—ଆଚ୍ଛା, ତୁ ନଯାଆ ସତ୍ୟଶ, ତୋର ଇଚ୍ଛା ଦେଖି ଦେଖୁଚି ଭଲ ନାହିଁ, ମୁଁ ଏକା ଏକା ଯାଉଚି ।

ଉପେନ୍ଦ୍ରର ମନୋଭାବ ବୁଝିପାରି ସତୀଶ କୁଣ୍ଠିତ ହୋଇ ପଚାରିଲା—କେବେ ଯିବ ଉପେନ୍ଦ୍ରା !

—ଆଜି ।

—ଆଜି ? ଆଚ୍ଛା ଚାଲ, ମୁଁ ମଧ୍ୟ ଯିବି । କହିଦେଇ ହଠାତ୍ ସମ୍ମତ ହୋଇ ସତୀଶ ଘରୁ ଫେରିଆସିଲା ଏବଂ ମୁହୂର୍ତ୍ତକ ଭିତରେ କଲିକତା ଯିବା ପାଇଁ ବ୍ୟାକୁଳ ହୋଇଉଠିଲା । ବେହାରୀକୁ ଡାକି କହିଲା— ଆଉ ଥରେ ବେଡ଼ିଂ ବାନ୍ଧ ବେହାରୀ, କଲିକତା ଯିବାକୁ ହେବ ।

ବେହାରୀ ଚକିତ ମୁଖରେ ପଚାରିଲା—କେବେ ବାବୁ ?

ସତୀଶ ହସି ହସି କହିଲା—କେବେ କ'ଣ କିରେ, ଆଜି ରାତି ଗାଡ଼ିରେ ।

'ଆଚ୍ଛା', କହି ବେହାରୀ ମୁହଁ ଭୁଣ୍ଡୁରା କରି ଚାଲିଗଲା ।

ସତୀଶ ତାର ଅପ୍ରସନ୍ନ ମୁହଁକୁ ଲକ୍ଷ୍ୟକରି ମନେ ମନେ କହିଲା— ବେହାରୀର ତ ଆଜିକାଲି କୌଣସି କାମଦାମ ନାହିଁ; ତେଣୁ ଖଟଣି ପଡ଼ିବ ବୋଲି ସେଠିକି ଯିବାକୁ ଚାହୁଁନି । କିନ୍ତୁ ଅନ୍ତର୍ଯାମୀ ହିଁ ଜାଣନ୍ତି, ବୁଢ଼ାର ମନ କଥା । ସତୀଶ ବୁଝିପାରେନା ।

ଇତିପୂର୍ବରୁ ସତୀଶ ବେହାରୀକୁ କଥା କଥାରେ ପଚାରିଥିଲା—ଆଚ୍ଛା ବେହାରୀ, ଏତେ ଦିନେ ସାବିତ୍ରୀ ତ ନିଶ୍ଚୟ ଫେରି ଆସିଥିବ; କିନ୍ତୁ ସେତେବେଳେ ଏତେଦିନ ଧରି କୁଆଡ଼େ ଯାଇଥିବ କହିପାରିବୁ ?

ବେହାରୀ ସଂକ୍ଷେପରେ କହିଥିଲା—ନା ବାବୁ ! କହିଲେ ତ ସେ ବହୁତ କଥା କହିପାରିଥାଆନ୍ତା; କିନ୍ତୁ ଦିନେ ସେ ସାବିତ୍ରୀର ମୁହଁ ଉପରେ ତାର ପୁରୁତଙ୍କର ଅହଙ୍କାର କରି ଚାଲି ଆସିଥିଲା । କୌଣସି ଉପଲକ୍ଷରେ ତାର ସେଇ ଠିକିକ ଗର୍ବକୁ ସେ କ୍ଷୁଣ୍ଣ କରିପାରିଲାନି !

ଯେଉଁଦିନ କଲିକତାରୁ ଘରକୁ ଫେରିଆସି ଘର ଭିତରେ ପଶି ଯୋଡ଼ହାତରେ ଓଦା ଓଦା ଗଳାରେ କହିଥିଲା – ଭଗବାନ୍, ତୁମେ ଯାହା କର, ଭଲ ପାଇଁକି କର । ସେଦିନ ସୃଷ୍ଟିକର୍ତ୍ତାର କେଉଁ ବିଶେଷ କାର୍ଯ୍ୟକୁ ସ୍ମରଣ କରି ଯେ ଏହି ଧନ୍ୟବାଦ ଜ୍ଞାପନ କରିଥିଲା, ପଚାରିଲେ ବୋଧହୁଏ ସେ କିଛିହେଲେ କହିପାରନ୍ତାନି । କିନ୍ତୁ କେତେ-ବଡ଼ ବିପଦ ମୁହଁରୁ ସିଏ ସେ ନିରାପଦରେ ଫେରି ଆସିପାରିଛି, କେତେ ବଡ଼

ଦୁଃଚ୍ଛେଦ୍ୟ ଜାଲର ଫାଶ କେତେ ସହଜରେ ଛିଣ୍ଡେଇ ବାହାର ଆସି ପାରଚ, ସେ କଥା ସେ ନିଶ୍ଚୟ ଜାଣେ ଏବଂ ଏହି ସୌଭାଗ୍ୟକୁ ସେ କୃତଜ୍ଞତା ସହକାରେ ଗ୍ରହଣ କରିବାକୁ ଚାହୁଁଥିଲା, କିନ୍ତୁ ଅବୋଧ ମନ ତାର ସେ ଆଡ଼କୁ ଦୃଷ୍ଟିପାତ ସୁଦ୍ଧା ନ କରି ଖାଲି ମୁହଁମାଡ଼ି ଅନ୍ତର୍ଦ୍ୱନ୍ଦ୍ୱରେ କାନ୍ଦୁଥିଲା । ତେବେ ଚେଷ୍ଟା କରି ସେ ପୂର୍ବଭଳି ତାର ପିଲାଦିନ ସାଙ୍ଗସାଥି, ଗାଉଣା ବାଜଣାର ଆଖଡ଼ାରେ ମିଶୁଥିଲା ସତ; କିନ୍ତୁ ପୂର୍ବଭଳି ମନରେ ପ୍ରଫୁଲ୍ଲତା ନ ଥିଲା । ଖାଲି ବିରସ । ଯେଉଁ ଲୋକ ଘର ଗୃହିଣୀ ସାଥିରେ କଳହ କରି ବାହାରର କର୍ତ୍ତବ୍ୟ ସମ୍ପନ୍ନ କରିବାକୁ ଆସେ, ସେହିଭଳି ସେ ଅସନ୍ତୁଷ୍ଟ, ଛିଦ୍ରାନ୍ୱେଷୀ ହୋଇ ନିର୍ବିଘ୍ନରେ ସବୁକୁ ଦଂଶନ କରି ଫେରୁଥିଲା । ଏହିଭଳି ଦିନଯାପନ ଭିତରେ ହଠାତ୍ ଆଜି କଲିକତା ଯିବା ଲାଗି ଡାକରା ପାଇବା ମାତ୍ରେ ତାର ବିଦ୍ରୋହୀ ଗୃହଲକ୍ଷ୍ମୀ ଧୂଳିଶଯ୍ୟା ଛାଡ଼ି ଉଠିବସିଲା ଏବଂ ଭବିଷ୍ୟତରେ ଭଲମନ୍ଦ ପ୍ରତି ଭ୍ରୂକ୍ଷେପ ନ କରି ଯାତ୍ରା ଆରମ୍ଭ କରିବାକୁ ଗୋଡ଼ ବଢ଼େଇଦେଲା ।

ସେଇ ରାତିରେ ହିଁ କଲିକତା ଯିବା ଉଦ୍ଦେଶ୍ୟରେ ଉପେନ୍ଦ୍ର ଓ ସତୀଶ ମେଲଗାଡ଼ିରେ ଗୋଟିଏ ସେକେଣ୍ଡ କ୍ଲାସ ବଖରାରେ ଯାଇ ବସିଲେ ।

ହୁଇସିଲ ମାରି ଗାଡ଼ି ଛାଡ଼ିଦେବା ମାତ୍ରେ ଉପେନ୍ଦ୍ର ଝରକା ଆଡ଼କୁ ମୁହଁ ଆଡ଼େଇ ନେଇ ଦି ଗୋଡ଼ ଲମ୍ବେଇ ଶୋଇପଡ଼ିଲା; କିନ୍ତୁ ସତୀଶ ଝରକା ବାହାରକୁ ଚାହିଁରହିଲା ।

ମେଲଗାଡ଼ି ସବୁ ଷ୍ଟେସନରେ ରହେନା । ପ୍ରାନ୍ତର, ନଦୀନାଳ, ଗ୍ରାମ, ପଥ ଅତିକ୍ରମ କରି ହୁହୁ କରି ଛୁଟିଚାଲିଚି । ସେଇ ଦ୍ରୁତଧାବନ ସଙ୍ଗେ ସଙ୍ଗେ କଦାଚିତ୍ ନିଃସଙ୍ଗ ଅଦୂରବର୍ତ୍ତୀ ବନସ୍ପତି ନିମିଷକରେ ଅଦୃଶ୍ୟ ହୋଇପଡ଼ୁଛି । ନାନାରକମ ଗଛ ଲଟା, ବାଉଁଶବଣରେ ଦୁର୍ଭିଦ୍ୟ ଅନ୍ଧକାର । ତାରି ଭିତରେ ନଦୀର ବକ୍ରାଂଶେ ଶୁଭ୍ର ଜଳରେଖା ଝରକାର ସିଲକାଚ ଭିତରେ ଦେଖାଯାଉଚି । ବାହାରେ ବୃକ୍ଷ, ଗୁଳ୍ମ, ପଡ଼ିଆ, ଲାଇନ ପାଖରେ ଉଲୁବନ ଓ ଶୁଷ୍କ ଗଡ଼ିଆ । ସର୍ବତ୍ର ମ୍ଳାନ ଜ୍ୟୋତ୍ସ୍ନା ବିକୀର୍ଣ୍ଣ ହୋଇ ପଡ଼ିରହିଚି । ସତୀଶ ଏସବୁକୁ ଦେଖି ଦେଖି ତା ଆଖିରୁ ଜଳ ବହିଆସିଲା । ଏ ବାଟରେ ସେ କେତେ ଥର ଆସିଚି, ଯାଇଚି । ଏଇ

ନିସ୍ତବ୍ଧ ଶାନ୍ତ ପ୍ରକୃତିକୁ କେତେ ଥର ଏଭଳି ମ୍ଳାନ ଜ୍ୟୋତ୍ସ୍ନାଲୋକରେ ଦେଖିଛି; କିନ୍ତୁ କୌଣସିଦିନ ସେ ଏଭଳି ଭାବରେ ଏଗୁଡ଼ାକୁ ଦେଖିବାକୁ ପାଇ ନ ଥିଲା । ତାର ମନେହେଲା, ସବୁ ବିଚ୍ଛିନ୍ନ, ନିର୍ଲିପ୍ତ, ମୃତ । କେହି କାହାଲାଗି ବ୍ୟାକୁଳ ନୁହେଁ, କେହି କାହାର ମୁହଁକୁ ଚାହିଁ ଅପେକ୍ଷା କରି ରହି ନାହିଁ ! ସମସ୍ତେ ସ୍ଥିର, ସମସ୍ତେ ଉଦ୍‌ବେଗଶୂନ୍ୟ, ସମସ୍ତେ ନିଜ ଭିତରେ ନିଜେ ସମ୍ପୂର୍ଣ୍ଣ ! ଏଇ ନିର୍ବିକାର ଉଦାସୀନ ଧରଣୀ ଆଡ଼କୁ ଚାହିଁ ସେ ବଡ଼ କଷ୍ଟବୋଧ କଲା । ସେ ଆଖିକି ପୋଛିସାରି ବେଞ୍ଚଉପରେ ଚିତ୍ ହୋଇ ଶୋଇପଡ଼ିଲା । କିନ୍ତୁ କିଛି ସମୟ ପରେ ଉଠିପଡ଼ି ବାକ୍ସ ଖୋଲି ବାହାର କଲା ଗୋଟାଏ ସାହାନାଇ । ଉପେନ୍ଦ୍ରକୁ ଲକ୍ଷ୍ୟକରି କହିଲା—ଗାଡ଼ି ଶବ୍ଦରେ ତୁମର ଯଦି ନିଦରେ କୌଣସି ବ୍ୟାଘାତ ହେଉନି, ବଂଶୀ ଶବ୍ଦରେ ତ ହେବନି । ମୁଁ ତ ଶୋଇପାରୁନି, ସେଇଥିପାଇଁ ଏଇଟା ବାହାର କଲି । ସତୀଶ ଏଥର ଝରକା ଆଡ଼କୁ ଘୁଞ୍ଚି-ଆସି ବଂଶୀଟାକୁ ବାହାରକୁ ଲମ୍ବେଇ ଦେଇ ବଜେଇବାରେ ଲାଗିଲା ।

ଉପେନ୍ଦ୍ରର ନିଦର କିଛି ନାହିଁ । ଭଗବାନ ସତୀଶକୁ ଗାଇବାକୁ ଯେମିତି ଗଳା ଦେଇଛନ୍ତି, ସେମିତି ବଜେଇବା ଲାଗି ହାତ ଦେଇଛନ୍ତି । ଏ ଦିଗରେ ଭଗବାନଙ୍କର କୌଣସି କୃପଣତା ନାହିଁ । ପିଲାଦିନୁ ଆରମ୍ଭକରି ସେ ଏ ବିଦ୍ୟାଟିକି ଶିଖିଥିଲା । ଶିକ୍ଷା ବୋଇଲେ ଯାହା ବୁଝାଏ, ଠିକ୍ ସେହିଭଳି ଶିଖିଥିଲା ସେ । ସତୀଶ ବଂଶୀ ବଜାଇ ଚାଲିଲା । ସେଇ ଶୁଦ୍ଧସୁନ୍ଦର ଅନିର୍ବଚନୀୟ ସଙ୍ଗୀତ-ସୃଷ୍ଟି ବୁଝିବା ଭଳି ଲୋକ କେହି ନ ଥିଲେ । କେବଳ ବାହାରେ ଆକାଶର ଖଣ୍ଡଚନ୍ଦ୍ର ତାକୁ ଅନୁସରଣ କରି ଛୁଟିଚାଲିଲା । ମାଟି ଉପରେ ସୁପ୍ତ ଜ୍ୟୋତ୍ସ୍ନାର ନିଦ ଭାଙ୍ଗିଗଲା । କ୍ରମେ ଗାଡ଼ିର ଗତି ଶିଥିଳ ହୋଇଆସିଲା । ଷ୍ଟେସନ ନିକଟେଇ ଆସିଲା ଭଳି ମନେହେଲା । ବଂଶୀ ବଜା ବନ୍ଦ ହେଲା ।

ଉପେନ୍ଦ୍ର ହାଇମାରି କହିଲା—ନା, ଯଦି ଶିଖିବ ତ ସାହାନାଇ ବଜେଇବା ଶିଖିବ । ସେଦିନ ତୋର ସେତାର ଶୁଣି ମିଛଟାରେ ଗୋଟାଏ ସେତାର କିଣି ପକେଇଲି; କିନ୍ତୁ ଟଙ୍କାଗୁଡ଼ାକ ମାଟି ହୋଇଗଲା ।

ହସି ହସି ସତ୍ୟଶ କହିଲା—ଉପୀନଦା, କହ୍‌ରେ ତା ବୋଲି ଗୋଟାଏ ସହନାଇ କିଣିବସନା । ଘରେ ବସି ଏ ଯନ୍ତ୍ରଟା ଶିଖିବା ଆରମ୍ଭ କରିଦେଲେ ସାହିର ଲୋକେ ବସା ବାନ୍ଧି ରହିପାରିବେନ ।

ଉପେନ୍ଦ୍ର ତଥାପି କୁଣ୍ଠିତ ନ ହୋଇ କହିଲା—ନା, ଯଦି ଏଥର ଶିଖେ ତ ତୋର ଘରେ ବସି ଶିଖିବ । କାନ୍ଦିବାମାନେ ଦୁଇଜଣଯାକ ହସିଉଠିଲେ ।

ତା ଆରଦିନ ବାରଟା ବେଳେ ଯାଇ ଗାଡ଼ି ହାବଡ଼ାରେ ପହଞ୍ଚିଲା । ଉପେନ୍ଦ୍ର ପଚାରିଲା—ସତ୍ୟଶ, ତୁ କୋଉଠିକି ଯିବୁ କିରେ ?

ସତ୍ୟଶ ଆଶ୍ଚର୍ଯ୍ୟ ହୋଇ କହିଲା—ସେ ପୁଣି କ'ଣ ଉପୀନଦା ! ତୁମର ସାଙ୍ଗରେ ।

—ତୋର କ'ଣ ଯିବା ଭଳି ଜାଗା ନାହିଁ ?

—ନାହିଁ କାହିଁକି; ଅଛି; କିନ୍ତୁ ମୁଁ ଯେ ତୁମର ସାଙ୍ଗରେ ଆସିଚି, ତୁମର ସାଥିରେ ରହିବ, ଗଲାବେଳେ ତୁମର ସାଥିରେ ଯିବ ।

ଏ ସମ୍ପର୍କରେ ଆଉ କୌଣସି କଥାବାର୍ତ୍ତା ସୁଦ୍ଧା ହେଲାନି ।

ଷ୍ଟେସନରେ ଓହ୍ଲାଇବାମାନେ ଜଣେ ବଳିଷ୍ଠ ପୋଷାକପିନ୍ଧା ବଙ୍ଗାଳୀ ସାହେବ ଉପେନ୍ଦ୍ରର ହାତ ଆସି ଧରିଲେ । ସେ ହେଉଚନ୍ତି ଉପେନ୍ଦ୍ରର ବାଲ୍ୟବନ୍ଧୁ—ଜ୍ୟୋତିଷ ଘୋଷ ବାରିଷ୍ଟର । ବାହାରେ ତାଙ୍କର ଘୋଡ଼ାଗାଡ଼ି ଠିଆହୋଇ ରହିଚି । ଯାହା କିଛିପତ୍ର ଥିଲା, କୁଲି ଗାଡ଼ି ଉପରେ ନେଇ ରଖିଦେବା ପରେ ତିନିହେଁ ଗାଡ଼ି ଭିତରେ ଯାଇ ବସିଲେ । ବେହାରୀ ଘୋଡ଼ାଗାଡ଼ି ଉପରେ କୋଚମାନ୍ ପାଖରେ ଯାଇ ବସିଲା । ଅନେକ ସମୟ ପରେ, ଅନେକ ରାସ୍ତା, ଗଳି କନ୍ଦି ପାରହୋଇ ଯିବା ପରେ ଗୋଟାଏ ମସ୍ତବଡ଼ ଘର ଆଗରେ ଆସି ଗାଡ଼ି ଠିଆହେଲା । ତିନିଜଣଯାକ ଓହ୍ଲାଇ ଆସିଲେ ।

## ବାଁର

ସନ୍ଧ୍ୟା ପ୍ରାପ୍ତ ହୋଇ ଆସିଥାଏ ! ଉପେନ୍ଦ୍ର ଓ ସନ୍ତୋଷ ପାଥ୍‌ରେ ଘାଟର ଗୋଟାଏ ଅତି ପୁରାତନ ଗଳା ପାଖରେ ଆସି ଠିଆହେଲେ ।

ଉପେନ୍ଦ୍ର କହିଲେ—ମନେ ହେଉଛି ଏଇ ଗଳାଟା ।

ସନ୍ତୋଷ ସନ୍ଦେହ ପ୍ରକାଶ କରି କହିଲା—ଯୁଁ। ଭିତରେ କେହି ରହି ନ ପାରନ୍ତି । ଏଇ ଗଳାଟା କେବେ ହୋଇ ନ ଥିବ ।

ଭଙ୍ଗା କାନ୍ଥ ବନ୍ଧୁହରେ ଗୋଟାଏ ଟିଣ ମରିହୋଇଥାଏ । ମନେ ହେଉଛି ଦିନେ ଏହା ଦେହରେ ଗଳାର ନାଁଟା ଲେଖା ହୋଇଥିଲା । ଏକବାରେ ଲିଭି ଆସିଲାଣି । ପଢ଼ିବା କଷ୍ଟକର । ସନ୍ତୋଷ କହିଲା—ଏ ସେଇ ଗଳାଟା କି ନା, ଭଲ କରି ନ ଜାଣି ପଶିବା ଉଚିତ ନୁହେଁ । ଏଇଟା ପାତାଳ ପ୍ରବେଶର ସୁଡ଼ଙ୍ଗ ହୋଇଥାଇପାରେ ।

ଉପେନ୍ଦ୍ର କହିଲେ—ତାହା ହେଲେ ତୁ ପ୍ରହରୀ ହୋଇ ଏଇଠି ଥାଆ କି ମୁଁ ଭିତରକୁ ଯାଇ ଦେଖିଆସିବି ।

ସନ୍ତୋଷ ପ୍ରଥମେ ବାଧାଦେବା ଲାଗି ଚେଷ୍ଟା କଲା, ପରେ ଉପେନ୍ଦ୍ରର ପଛେ ପଛେ ଯାଉ ଯାଉ କହିଲା—ଉପୀନଦା, ଆମ ଭଳି ଫକଡ଼ରାମ ଗିରିଧାରି ଯାହାକୁ କହନ୍ତି, ସେ ଲୋକ ବି ଏଠିକି ଆସିବାକୁ ସାହସ କରିବନି । ଦେଖୁଚି ତୁମର ତ ବଡ଼ ସାହସ !

ଉପେନ୍ଦ୍ର ଦପି ହସି କହିଲେ—ଫକଡ଼ରାମ ଗିରିଧାରୀଙ୍କ ସାହସ କ'ଣ ଭଦ୍ରଲୋକଙ୍କଠୁ ବେଶୀ ସନ୍ତୋଷ ? ଦୁଷ୍କର୍ମ କରିପାରିବାଟାକୁ କ'ଣ ସାହସ କୁହାଯାଏ ?

ସତୀଶ ସେ କଥାର କୌଣସି ପ୍ରତିବାଦ ନ କରି ଖୁବ୍ ସତର୍କରେ ବାଟ ଦେଖି ଦେଖି ଆଗକୁ ଆଗକୁ ଚାଲିଲା । ପାଦତଳେ ଦୁର୍ଗନ୍ଧ ପଙ୍କିଲ ଖୋଲା ନର୍ଦ୍ଦମା, ପଡ଼ିଯିବ ବୋଲି ସତୀଶର ବଡ଼ ଭୟ । ସ୍ଥାନେ ସ୍ଥାନେ କ୍ଷୁଦ୍ର ଗଳି ଅତି ସଂକୀର୍ଣ୍ଣ । ଅନ୍ଧକାର ଏହି ସଂକୀର୍ଣ୍ଣତାରେ ଅଧିକ ଗାଢ଼ ହୋଇ ଆସିଲା । ସତୀଶ ପଛରୁ ଉପେନ୍ଦ୍ରର ସାର୍ଟକୁ ଟାଣିଧରି କହିଲା—ଉପୀନଦା, ଯାଉଚ କୁଆଡ଼େ ? କ'ଣ ମରିବା ଲାଗି ?

ଉପେନ୍ଦ୍ର ହସି ହସି କହିଲା—ଏବେ ମୋର ଠିକ୍ ମନେପଡ଼ୁଚି । ଆଉ ଗୋଟିଏ ଘର ପରେ ୧୩ ନମ୍ବର ଘର । ପ୍ରାୟ ଆଠ ବର୍ଷ ତଳେ ଥରେ ଏ ଜାଗାକୁ ଆସିଥିଲି । ସେଥିକରି ପ୍ରଥମେ ଚିହ୍ନିପାରୁ ନ ଥିଲି, ଏବେ ଠିକ୍ ଠିକ୍ ଜାଣିପାରୁଚି ।

ସତୀଶର ଆଦୌ ବିଶ୍ୱାସ ହେଲାନି । କହିଲା—ବାଟ ତ ଅଛି ନିଶ୍ଚୟ; କିନ୍ତୁ ତୁମ ଆମ ଭଳି ଲୋକଙ୍କ ପାଇଁ ନୁହେଁ । ଯେଉଁମାନଙ୍କ ଲାଗି ଏ ବାଟ, ସେମାନଙ୍କ ଦେହରେ ଦେହ ବାଜିଗଲେ ଗାଡ଼ିରେ ଗାଧୋଇବାକୁ ପଡ଼ିବ । ଏଥର ଫେରିଯିବା ଚାଲ ।

ଉପେନ୍ଦ୍ର କୌଣସି ଉତ୍ତର ନ ଦେଇ ସତୀଶର ହାତକୁ ଧରି ଟାଣି ନେଇ ଚାଲିଲେ । ଟିକିଏ ଆଗକୁ ଆସି ଗୋଟିଏ ଘର ଦୁଆର ମୁହଁକୁ ଆସି କହିଲେ, ତୁ ତ ସିଗାରେଟ ଖାଉ, ପକେଟରେ ଦିଆସିଲି ଥିବ ନିଶ୍ଚୟ, ଗୋଟିଏ କାଠି ଜାଳି ଦେଖିଲୁ, ଏଇଟା କେତେ ନମ୍ବର ଘର !

ସତୀଶ ଆଲୁଅ ଜାଳି ଭଲ କରି ଘର ନମ୍ବର ପରୀକ୍ଷା କରି କହିଲା—ଭଲ ପଢ଼ାଯାଉନି, କିନ୍ତୁ କବାଟ ଦେହରେ ଖଡ଼ିରେ ଲେଖା ହୋଇଚି ତେର ନମ୍ବର । ବୋଧହୁଏ ତୁମରି କଥା ଠିକ୍ । କିନ୍ତୁ ମୁଁ ପଚାରିବାକୁ ଚାହେଁ, ଘର ନମ୍ବର ତେର ହେଉ ବା ତେପନ ହେଉ, ଏଠି ତୁମର ଦରକାର କ'ଣ ହୋଇପାରେ ?

ଉପେନ୍ଦ୍ର କୌଣସି ଉତ୍ତର ନ ଦେଇ ଡାକିବାରେ ଲାଗିଲେ, ହାରାନଦା, ଓ ହାରାନଦା ! ଉପର, ତଳ, ଆଖପାଖ ସବୁଠି ଅନ୍ଧକାର । ନୀରବ, ନିଶ୍ଚୁପ୍ ! ସତୀଶ ଭୟବିହ୍ୱଳ ହୋଇପଡ଼ିଲା । ଉପେନ୍ଦ୍ର ପୁଣି ଡାକି ଚାଲିଲା ।

ବହୁ ସମୟ ପରେ ଉପରର ଝରକା କ୍ଷଣକ ଖୋଲାଯିବା ପରେ ଗୋଟିଏ ସ୍ତ୍ରୀ କଣ୍ଠର ସ୍ୱର ଶୁଣାଗଲା—କିଏ ?

ଉପେନ୍ଦ୍ର କହିଲେ—କବାଟ ଖୋଲିବାକୁ କୁହନ୍ତୁ । ହାରନ୍‌ଦା କୋଉଠି ?

—ଯାଉଛି ଟିକିଏ ଅପେକ୍ଷା କରନ୍ତୁ ।

କିଛି ସମୟ ପରେ ଦ୍ୱାର ଖୋଲା ଶବ୍ଦ ଶୁଭିଲା । କିଏ ଜଣେ କ୍ଷୀଣ ଲୋକ ଘ୍ରପଟିଏ ଧରି ଆସି ଦୁଆରେ ଠିଆହେଲା । ଉପେନ୍ଦ୍ର ଦୁଆର ଖୋଲି ଏକ୍ରାଣ୍ଟି ଉପରେ ଠିଆ ହୋଇ ସ୍ତମ୍ଭୀଭୂତ ହୋଇ ପଡ଼ିଲା । ସ୍ତ୍ରୀ ଲୋକଟି କେରୋସିନ୍ ଡିବଟି ଧରି ଗୋଟିଏ ପାଖରେ ଠିଆ ହୋଇ ରହିଛି । ମୁଣ୍ଡ ଉପରେ ଟିକିଏ ପଣତର ଫାଙ୍କ ଦେଇ ସଯତ୍ନରଚିତ କବରୀର ଗୋଟିଏ ଅଂଶ ଦେଖାଯାଉଛି । ଦେଖାଗଲା, ତାର ଗୋଟିଏ ହେଲେ କେଶ ସ୍ଥାନଭ୍ରଷ୍ଟ ହୋଇନି । ନିଖୁଣ ସୁନ୍ଦର ଗୋଟିଏ ମୁହଁ । ହାତର ଆଲୋକ ସଂପାତରେ ଯୁଗଳଭ୍ରୂ ମଧ୍ୟରେ ସନ୍ନିବିଷ୍ଟ ସିନ୍ଦୂର ବିନ୍ଦୁ ଚକ୍ ଚକ୍ କରି ଉଠୁଛି । କ୍ଷଣକ ଆନତ ଆଖି ଦୁଇଟିରେ ବିଦ୍ୟୁତ୍ ଖେଳେଇ ଦେଇ ଗଲା ସେ । ଚତୁର୍ଦ୍ଦିଗର ନିବିଡ଼ ଅନ୍ଧକାରରେ ତାର ଅପୂର୍ବ ଜ୍ୟୋତି କିଛି ସମୟ ଧରି ଉପେନ୍ଦ୍ର ଓ ସୁକ୍ଷ୍ମଣ ଉଭୟଙ୍କୁ ବିଭ୍ରାନ୍ତ କରି ପକାଇଲା । ସୁକ୍ଷ୍ମଣ ସ୍ପଷ୍ଟ ଦେଖିବାକୁ ପାଇଲା, ତାର ଓଷ୍ଠାଧରରେ ମୃଦୁ ରେଖା ବାଧା ପାଇ ଫେରି ଫେରି ଯାଉଛି । ସେ ଉପେନ୍ଦ୍ରକୁ ଟିକିଏ ହଲେଇଦେଲା । ଉପେନ୍ଦ୍ର ସଚକିତ ଓ ବ୍ୟସ୍ତ ଭାବରେ କହି ଉଠିଲେ, ହାରନ୍‌ଦା କେଉଁଠି ?

ସ୍ତ୍ରୀ ଲୋକଟି କହିଲା—ସେ ଉପରେ ଅଛନ୍ତି । ଉଠି ଚଳବୁଲ କରିବା ପାଇଁ ଅକ୍ଷମ । ମା ମଧ୍ୟ ସାତ ଆଠ ଦିନ ହେଲା, ଶଯ୍ୟାଗତା । ଘର ଭିତରେ ମୁଁ କେବଳ ଭଲ ଅଛି । ଆପଣ ଉପେନ୍ଦ୍ରବାବୁଟି କି ? ଆମେ ଆଶା କରିଥିଲୁ, ଆପଣ କାଲି ଆସିବେ; ତେଣୁ ପ୍ରସ୍ତୁତ ନ ଥିଲି । ସେତେବେଳେ ଘରେ ରହିଲେ ଇଆଡ଼ର କୌଣସି ପାଟିଗୁଣ୍ଡ ଶୁଭେନା । ଉପରକୁ ଆସନ୍ତୁ, ଏଠି ବଡ଼ ଥଣ୍ଡା—କହିବା ପରେ ଉପରକୁ ଯିବା ପାଇଁ ସିଢ଼ି ଉପରକୁ ଉଠିବାକୁ ଲାଗିଲା । ଦୁଇ ତିନି ପାହାଚ ଉଠିଛି କି ନାହିଁ ପଛକୁ ଅନେଇ ଘ୍ରପଟାକୁ ଟିକିଏ ଡଳୁଆ କରି କହିଲା—ଟିକିଏ ସାବଧାନରେ ଉଠିବେ, ସିଢ଼ିର ଇଟା ଅନେକ ଖସିଯାଇଛି ।

ଏ ଆଶଙ୍କା ଯେ ଅମୂଳକ ନୁହେଁ, ଗୃହସ୍ୱାମୀମାନେ ଉଭୟେ ଜାଣିପାରିଲେ । ସତର୍କ ହୋଇ ଉଠିବାକୁ ଲାଗିଲେ । କୋଠାଘର । ଆଗେ ଉପର ମହଲରେ ୪।୫ଟି ଘର ଥିଲା । ସେଥିରୁ ଗୋଟେ ଦୁଇଟା ଘର ଭାଙ୍ଗିଯାଇଛି । ଆଉ ଗୋଟିଏ ଆଗାମୀ ବର୍ଷା ଋତୁରେ ପଡ଼ିବା ଲାଗି ମୁଣ୍ଡ ଟେକିକୁ କରି ରହିଛି । ବାକି ତିନୋଟା ଘର ଭିତରୁ ଆଗ ଘରଟା ଭିତରେ ତିନି ଜଣଯାକ ପଶିଲେ । ପ୍ରବେଶ କରିବା ମାତ୍ରେ ବୋଧ କଲେ, କିହାତି ଅନଧିକାର ଭାବରେ ଯେମିତି ସେମାନେ ପ୍ରବେଶ କରୁଛନ୍ତି । ମୂଷା-ଗୁଡ଼ାକ ସେ-ଡବେଲକୁ ଶୀର୍ଣ୍ଣ ପୁରାତନ ଅବ୍ୟବହାର୍ଯ୍ୟ ଶେଯ ଓ ତକିଆରୁ ତୂଳା ବାହାର କରି ମନଇଚ୍ଛା ବିଚରଣ କରି ଫେରୁଛନ୍ତି । ଅସମୟରେ ଆଲୁଅ ଓ ଜନସମାଗମ ଦେଖି ସେମାନେ ଚେଁ ଚାଁ କରି ଉଠିଲେ । ଘର ଗୋଟାକଯାକ ଭଙ୍ଗା ଟେବୁଲ ଚୌକିରେ ପୂର୍ଣ୍ଣ । ଭଙ୍ଗା କାଠର ସିନ୍ଦୁକ, ଭଙ୍ଗା ଟିଣ; ଖାଲି ଶିଶି ବୋତଲ । ପୁରାତନ କାଳର ଗୃହସଜ୍ଜାର ଭଗ୍ନାଂଶ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଛି । ଗୋଟିଏ ପାଖରେ ଗୋଟିଏ ଭଙ୍ଗା ତକ୍ତପୋଷ । ଛିଣ୍ଡା ଗଦି, ଛିଣ୍ଡା ତକିଆ ପ୍ରଭୃତି ଗଦା କରି ତାରି ଉପରେ ଗୋଟାଏ ମଇଳା ଘୋଡ଼ଣୀ ହୋଇ ରହିଛି । ଏଇଟା ଅଭ୍ୟାଗତମାନଙ୍କ ପାଇଁ ।

ସ୍ତ୍ରୀଲୋକଟି ମେଜ ଉପରେ କିରୋସିନି ଡିବିଟି ରଖି କହିଲା—ଟିକିଏ ଅପେକ୍ଷା କରନ୍ତୁ, ମୁଁ ଖବର ଦେଉଛି । କହିଦେଇ ସେ ବାହାରିଯିବା ମାତ୍ରେ ସଖାଣ ପାଦର ଯୋଡ଼ା ସହିତ ଅଭ୍ୟାଗତର ଆସନ ଉପରକୁ ଉଠିଯାଇ ଠିଆ ହେଲା ।

ଉପେନ୍ଦ୍ର ଭୟରେ କହିଲା—ଏଇ କ'ଣ କିଲେ ?

ସଖାଣ ଫୁସ୍ ଫୁସ୍ କରି କହିଲା—ଆଗେ ପ୍ରାଣ ରକ୍ଷା, ତାପରେ ଯାଇ ଭଦ୍ରତା ରକ୍ଷା । ପାଦତଳେ ଆଲୁଅ ଦେଖି ଭୟ ହେଉଛି । ସାପଗୁଡ଼ାକ ବସା ଛାଡ଼ି ଆମରି ଆଡ଼କୁ ଆସିବେ ।

ସଖାଣ ଯେମିତି ଭୟ ଦେଖାଇଲା ନା ସେଥିରେ ତର୍କ ବିତର୍କର କୌଣସି ଅବକାଶ ନ ଥିଲା । ଉପେନ୍ଦ୍ର କେବଳ ହସିଉଠିଲା ।

ତକ୍ତପୋଷର ସେଇ ସଂକୀର୍ଣ୍ଣ ଜାଗାଟାରେ ସ୍ଥାନାଭାବରେ ଉଭୟେ ଯେତେବେଳେ ଠେଲାଠେଲି କରିବାକୁ ଲାଗିଲେ, ସ୍ତ୍ରୀଲୋକଟି

ଫେର ଆସି ସେଇ ସମୟରେ କବାଟ ସମ୍ମୁଖରେ ଠିଆହୋଇ ଖିଲ୍ ଖିଲ୍ କରି ହସିଉଠିଲା । ସେମାନେ ଯେ ଭୟ ପାଇଚନ୍ତି, ତାହା ସେମାନେ ବୁଝିପାରିଥିଲେ । କହିଲା—ଏଇଟି ଆମ ଶ୍ୱଶୁରଙ୍କ ଭିଟାମାଟି, ଆପଣମାନେ ଅସମ୍ମାନ କରୁଚନ୍ତି !

ଉପେନ୍ଦ୍ର ଅପ୍ରତିଭ ହୋଇ ହଠାତ୍ ସଙ୍ଗେ ତଳକୁ ଖସିଆସିଲା ସତୀଶ ଉପରେ ଖୁବ୍ ବିରକ୍ତ ହୋଇ ବକର ବକର ହେବାକୁ ଲାଗିଲା ତୁ ସତୀଶଙ୍କୁ ଇମିତି ଦମ୍ଭ ଦେଖେଇଦେଲୁ, ଯାହା ଫଳରେ ଏସବୁ କଥା ଶୁଣିବାକୁ ହେଲା ।

ସତୀଶ କିନ୍ତୁ ଉପରୁ ଖସିଲାନି । ବିନମ୍ରସ୍ୱରରେ କହିଲା— ଭଦ୍ରେ କ'ଣ ଉପାଦିଦା ! ଗୃଣକ୍ୟ ଶ୍ଲୋକରୁ ବେଶୀ ନ ଜାଣିଲେ ମଧ୍ୟ ଟିକିଏ ଜାଣେ, ଆତ୍ମରକ୍ଷା ଏକ ଶ୍ରେଷ୍ଠ ଧର୍ମ । ସ୍ତ୍ରୀଲୋକଟି ଆଡ଼କୁ ଚାହିଁ କହିଲା— ଆଚ୍ଛା, ଆପଣ ନିଜେ ବିଚାରକରି ଦେଖି, ଆତ୍ମରକ୍ଷା ଲାଗି ଗୋଟିଏ ନିରାପଦ ସ୍ଥାନ ବାଛିନେବା କ'ଣ ଅନ୍ୟାୟ ? ଆପଣଙ୍କ ଶ୍ୱଶୁରଙ୍କ ଭିଟାମାଟି ପ୍ରତି ଅସମ୍ମାନ ପ୍ରଦର୍ଶନ କରିବା ଆମର ସାଧ୍ୟ ନୁହେଁ, ବରଂ ଯଥେଷ୍ଟ ସମ୍ମାନ ସହକାରେ ଆପଣମାନଙ୍କ ଆଶ୍ରିତ ପ୍ରଜାପୁଞ୍ଜଙ୍କ ଲାଗି ବାଟ ଛାଡ଼ିଦେଇ ଟିକିଏ ଚୋଖା ଜାଗାରେ ଦୁଇଜଣଯାକ ଆଶ୍ରୟ ନେଇଚୁ ।

ତିନିହେଁ ହସିଉଠିଲେ । ଏମାନଙ୍କ ପରିହାସ ଯେ ଏହି ଦରିଦ୍ର ଗୃହଲକ୍ଷ୍ମୀଟିକୁ ବ୍ୟଥିତ କରିନି, ବରଂ ତା ଭିତରେ ଯେଉଁ ସରଳତା ଓ ସମବେଦନା ପ୍ରଚ୍ଛନ୍ନ ଥିଲା ଏହି ତରୁଣୀ ଅତି ସହଜରେ ତାହା ଗ୍ରହଣ କରିପାରିଛନ୍ତି, ତାଙ୍କର ହାସ୍ୟୋଜ୍ଜ୍ୱଳ ମୁଖ ଉପରେ ଏହି ଭାବର ସୁସ୍ପଷ୍ଟ ପ୍ରକାଶ ଦେଖିବାକୁ ପାଇ ଉପେନ୍ଦ୍ର ମନେ ମନେ ଅତ୍ୟନ୍ତ ଆରାମ ବୋଧ କଲା । ତାର ମୁହଁ ଟିକି ଚାହିଁ ମୁରୁକି ହସି କହିଲେ— ପ୍ରଜା-ପୁଞ୍ଜ ଆପଣଙ୍କ ସମ୍ମୁଖରେ କେବେହେଲେ ସ୍ତ୍ରୀ ଉପରେ ଅତ୍ୟାଚାର କରିବାକୁ ସାହସ କରିବେନି । ଏହିକ୍ଷଣି ବୋଧହୁଏ ସେ ଲୋକଟି ତଳକୁ ନଇଁ ଆସିପାରେ ।

'ନମସ୍କାର' କହି କରେସିନ ଡବିଟା ହାତକୁ ଉଠେଇ ବୋହୂଟି ସତୀଶ ଆଡ଼କୁ ଚାହିଁ ଭୁବନମୋହନ ହସ ହସି କହିଲା—ଏଥର ଭାରି ସୁଖରେ ରାଜଦର୍ଶନକୁ ଚାଲନ୍ତୁ ।

ଏହି ଟିକିକ ହାସ୍ୟ ପରିହାସରେ ହିଁ ଅପରିଚିତର ଦୁରତ୍ୱଟା ଯେମିତି ଏକାବେଳକେ କମିଆସିଲା ଏବଂ ତିନିଜଣଯାକ ପ୍ରଫୁଲ୍ଲମୁଖରେ ରୁ ବାହାରିଗଲେ ।

ଶ୍ୟାମଦର୍ଶିନୀଙ୍କୁ ଉପେନ୍ଦ୍ର ଓ ସରୋଜ ହସହସ ମୁହଁରେ ଆଜି ମାଟିଏ ଘରେ ପ୍ରବେଶ କରିବା ମାତ୍ରେ ଶିହରି ଉଠିଲେ । ସ୍ତବ୍ଧ ଚକିତ ବରେ ନବୀନଙ୍କ ନିସ୍ପନ୍ଦ ଭାବରେ ସେମିତି ଚାହିଁରହିଲେ । ନିଷ୍ଠୁର ବଧାନଙ୍କ ମୃତ୍ୟୁଭୀମାତ୍ର ପରେ ହାସ୍ୟରତ ଶିଶୁଗଣମାନଙ୍କ ମୁହଁର ଭାବ ଯେପରି ନିମିଷକରେ ବଦଳିଯାଏ, ଏହି ଦୁଇଜଣଙ୍କର ମୁହଁ ସେହିଭଳି ଆନନ୍ଦ ଉଭେଇଯାଇ ଏକାବେଳକେ କାଳି ପଡ଼ିଗଲା ।

କ୍ଷଣକ ପରେ ଲଜ୍ଜିତ ଭାବ ଉଭେଇଗଲା । ଉପେନ୍ଦ୍ର ଅଗ୍ରବର୍ତ୍ତୀ ଯ୍ୟା ନିକଟକୁ ଯାଇ ଡାକିଲା—ହାରନ୍‌ଦା !

ହାରନ ନିର୍ଜୀବ ଭଳି ପଡ଼ି ରହିଥିଲା । ଅସ୍ଫୁଟସ୍ୱରରେ କହିଲା— ଆସ ଭାଇ, ଆସ । ଆଉ ଭାଇ ଉଠି ବସି ପାରୁନି । ତୁମକୁ ବି ବହୁତ କଷ୍ଟ ଦେଲିଣି । ଏତିକ କହୁ କହୁ ସେ ହାଲିଫାଲି ହୋଇଉଠିଲା ।

ଉପେନ୍ଦ୍ର ସଙ୍ଗେ ସଙ୍ଗେ ଶେଯର ଗୋଟିଏ ପାଖରେ ବସିପଡ଼ିଲା । ଆଖି ଦିଇଟା ତାର ଲୁହରେ ଭରିଉଠିଲା । ସମସ୍ତ ବକ୍ଷପିଞ୍ଜର ଦୋହଲା ଇ ଗୋଟାଏ ଅଦମ୍ୟ ବାଷ୍ପୋଚ୍ଛ୍ୱାସ ତାର କଣ୍ଠର ପ୍ରାନ୍ତ ସୀମା ପର୍ଯ୍ୟନ୍ତ ମାଡ଼ି ହୋଇଉଠିଲା । କଥା କହିବାକୁ ସାହସ ହେଉନି—ହାତ ଉପରେ ତାକୁ ଚାପି ବସିରହିଲା ସେ । ଇଆଡ଼େ ସତୀଶଚନ୍ଦ୍ର ମଧ୍ୟ ଗୋଟାଏ କାଠ ସିନ୍ଦୁକ ଉପରେ ବସି ରହିଥାଏ । ମୁହଁଟି ତାର ଏକା- ବେଳକେ ଶୁଖିଯାଇଛି ।

ମଳିନ ଓ ଶତଛିନ୍ନ ଶଯ୍ୟାର ଟିକିଏ ପାଖକୁ ଗୋଟାଏ ମାଟିର ପ୍ରଦୀପ ଜି ମିଞ୍ଜି ହୋଇ ଜଳୁଥାଏ । ଘରେ ଏହି ଦୀପଟି ଛଡ଼ା ଅନ୍ୟ କୌଣସି ପ୍ରକାର ଆଲୁଅ ନାହିଁ । ଏହି ଟିକିକ ଆଲୋକ ରକ୍ତଶୂନ୍ୟ ବିବର୍ଣ୍ଣ ଶୀତଳ ମୁହଁରୁ ଆରମ୍ଭ କରି ହାରନର ଅନାବୃତ ଦେହଟା ଉପରେ ବିଛୁ- ହୋଇ ପଡ଼ିଥାଏ । ସୂର୍ଯ୍ୟର ଉତ୍ତପ୍ତ ଆକାଶର ବାୟୁରୁ ତାରନ୍ଦନ ଲାଗି ଛିନ୍ନ ଏହି ଗୃହର ଅସ୍ଥିମଜ୍ଜାର ଯେଉଁ ଶୀତଳତା ଓ ଅନ୍ଧକାର ଲାଗିଛି ପୁଷ୍ଟ ଫୁଟିଉଠିଆସିଛି, ଏହି ହାଡ଼କମ୍ପା ଶୀତ ରାତିର ଅତ୍ୟଳ୍ପ ଆଲୋକରେ କୁଷ୍ଠରୋଗ ଭଳି ତାହା ସମଗ୍ର ପ୍ରାଚୀର ଦେହରେ ବିଛୁ-

ହୋଇ ପଡ଼ିବ । ଏହି ଦବାନଳି ଅବରୁଦ୍ଧ ଗୃହର ରୁଦ୍ଧ ଦ୍ଦୂଷ୍ଟ ବାୟୁ ଆତ୍ମ-ଘାତୀର ମୁଖୋଦ୍‌ଗତ ବିଷାକ୍ତ ଫେଣା ଭଳି ଫୁଲି ଫୁଲି ଗୃହବାସୀଙ୍କ କଣ୍ଠନଳୀ ଯେଉଁଭଳି ପ୍ରତିମୁହୂର୍ତ୍ତରେ ରୁଦ୍ଧ କରିପକାଉଛି । ଦ୍ୱାରଦେଶରେ ମୃତ୍ୟୁଦୂତ ଯେପରି ଆସି ପ୍ରହରୀ କାମ କରୁଛି । ସବୁ ଆଡ଼କୁ ଚୃହିଁ ସଙ୍କେତ ବାରମ୍ବାର ଶିହରିଉଠେ । ତାର ମନେହେଲା ଯେ ରଡ଼ି ଛାଡ଼ି ବାହାରକୁ ପଳେଇ ଆସିଲେ ଯାଇ ରକ୍ଷା ! ଏଠି ମଣିଷ ବୋଲି ଗୋଟାଏ ଜୀବ ରହେ କିପରି ? ଟିକିଏ ଦୂରରେ ସେହି ଗୃହବଧୂଟି ଦଣ୍ଡାୟମାନା । ଗୃହିଁବା ପରେ ସେ ବି ଭୟଗ୍ରସ୍ତ ହୋଇପଡ଼ିଛି ଯେମିତି ! କୁଆଡ଼େ ଲୁଚିଗଲା ତାର ସେଇ ରୂପ, ଏଇ ଟିକିକ ତଳର ହସ । ତାର ଦୃଷ୍ଟି ଆଗକୁ ଯେମିତି ମନେ ହେଲା, ଗୋଟାଏ ପ୍ରେତ ଲୋକ ଆସି ଠିଆହୋଇଗଲା ! ସେ ଭାବିବାକୁ ଲାଗିଲା ସ୍ୱାମୀ ଯାହାର ଏହିଭଳି ସେ ପୁଣି ହସେ, ପରିହାସରେ ଯୋଗ ଦିଏ, ମୁଣ୍ଡରେ କବିରୀ ବାନ୍ଧେ, ସିନ୍ଦୂର ଲଗାଏ ! ମୁହୂର୍ତ୍ତକ ଭିତରେ ତାର ସମଗ୍ର ନାରୀ ଜାତିଟା ପ୍ରତି ଗୋଟାଏ ଭୀଷଣ ଘୃଣାଭାବ ଜାତହେଲା ।

ଠିକ୍ ଇମିତି ସମୟରେ ହାରାନ ଡାକିଲା—କିରଣ, ଉପୀନ ଆସିଛି, ମା ଜାଣେ !

ବୋହୂଟି ପାଖକୁ ଲାଗି ଆସି ଆସ୍ତେ ଆସ୍ତେ କହିଲା—ମା ଘୁମେଇ ପଡ଼ିଛନ୍ତି । ଡ଼ାକ୍ତର କହିଛନ୍ତି, ଶୋଇଥିଲେ ତାଙ୍କୁ କେହି ଉଠାଇବ ନାହିଁ ।

ହାରାନ ମୁହଁକୁ ବିକୃତ କରି ପାଟି କରିଉଠିଲା— ଚୁଲିକି ଯାଉ ତୋର ଡାକ୍ତର । ତୁ ଯାଇ ତାଙ୍କୁ ଉଠାଅ ନା !

ଉପେନ୍ଦ୍ର ନିକଟରେ ବସି ସବୁ ଶୁଣୁଥିଲା । ବ୍ୟସ୍ତହୋଇ କହିଲା—ଆଜି ରାତିରେ, ଆଜି ରାତିରେ ଜଣେଇବା କୌଣସି ଦରକାର ନାହିଁ । ହାରନ୍ କାଲି ସକାଳେ ଜଣାଇଲେ କ'ଣ ଚଳିବନି ?

ଉପେନ୍ଦ୍ର ବୁଝି ପାରିଲା, ନମାଗତ ରୋଗ ଭୋଗି ହାରାନ ଖୁବ୍ ଖିଟ୍‌ଖିଟ୍ ହୋଇଉଠିଛି । ସେଇଥିପାଇଁକି ଏଇ ନିରପରାଧିନୀ ସେବା-ପରାୟଣା ବୋହୂଟିର ଅକାରଣ ତିରସ୍କାରରେ ବେଦନା ଅନୁଭବ କ... ସାନ୍ତ୍ୱନାର ଇଙ୍ଗିତ ଦେଇ କେବଳ ଗୃହିଁ ରହିଲା । କିନ୍ତୁ ହେଲେ ଦେ... ଗଲାନି । କିରଣମୟୀର ଆନନ୍ଦ ମୁଖରେ ଆପର ଅଳ୍ପ ପଡ଼୍ନ ଥିଲ...

ମୁହୂର୍ତ୍ତେ ମାତ୍ର ସମୟ ପରେ ଦ୍ରୁତ ପଦରେ ନନ୍ଦ ବଧୂ ଘରୁ ।ହାରକୁ ଚାଲିଗଲା । ଉପେନ୍ଦ୍ର ବାମପାର୍ଶ୍ୱରେ ବସିରହିଲା । ହାରାନ ଚଞ୍ଚଳ ଧଇଁସଇଁ ହେବାକୁ ଲାଗିଲା । ନସ୍ତବଧ କକ୍ଷ ସଙ୍କୀର୍ଣ୍ଣ ପକ୍ଷରେ ଆନ୍ଦୋଳ ଷିଣ ହୋଇଉଠିଲା ।

କିଛି ସମୟ ପରେ ହାରାନ୍ ଉପେନ୍ଦ୍ରକୁ ସ୍ପର୍ଶ କରି ଠାର ହିଲା—ସାତ ଆଠ ବର୍ଷ ପରେ ଦେଖା । ଏହା ମଧ୍ୟରେ ତୁ କ'ଣ କାଆଡ଼େ ।ଦୌ ଆସିନୁ ?

ହଁ, ଇତି ମଧ୍ୟରେ ଉପେନ୍ଦ୍ର ଅନେକ ଥର କଲିକତା ଆସିଛି; କିନ୍ତୁ ।ସିଚି ବୋଲି ହାରାନ୍‌ଙ୍କୁ କହିପାରିଲାନି । ପଚାରିଲା—କ'ଣ ତୁମର ହୋଇଚି କହିଲ ହାରାନ୍ ଦା ?

ହାରାନ୍ କହିଲା—ଆଉ କ'ଣ ହୋଇଥାଆନ୍ତା ? ଏଇ ଜର, କାଶ । ।ଉ ସେ କଥା ପକେଇ କିଛି ଲାଭ ନାହିଁ । ଯାହା ହେବାର ତ ହୋଇ-ଲଣି ! ଇଆଡ଼େ ମିନ୍ଦୁକ ଉପରେ ସମ୍ପାଣ ବସିଥାଏ । ସେ ଖାଲି କଥା ଥାରେ ମୁଣ୍ଡ ହଲଉଥାଏ ।

ହାରାନ୍ ପୁଣି କହିଲେ—ମୋର ମଧ୍ୟ ତୋ କଥା ମନେ ପଡ଼ୁଲାନି । ଯେତେବେଳେ ମନେ ପଡ଼ୁଥିଲେ ବହୁତ କିଛି କାମ ହୋଇଥାଆନ୍ତା । ରାଗଟା ଏତେ ବାଟ ଆଗେଇ ଯାଇ ନ ଥାଆନ୍ତା ତ ।

ପୁଣି କ'ଣ କେଜାଣି ଭାବି କହିଲା ହାରାନ୍—ହଁ, କାମ ବା ଆଉ 'ଣ ହୋଇଥାଆନ୍ତା ? ଥାଉ ସେସବୁ କଥା । ଗୋଟିଏ କାମ କରି-।ରିବ ଭାଇ ? ମୋର ହଜାରେ ଦି ହଜାର ଟଙ୍କା ଲାଇଫ୍ ଇନ୍‌ସୁରାନ ସ ମ୍ପାନିରେ ଅଛି, ଆଉ ଅଛି ଏଇ ଭଙ୍ଗା ଘରଟା । ତୁ ତ ଓକିଲ । ।ଇକିବେଳୁ ଗୋଟାଏ କିଛି ଲେଖାପଢ଼ା କରିଦେଲେ ଭଲ ହୁଅନ୍ତା । ସବୁ ଜିନିଷ ଉପରେ, ତୋର ଯେମିତି ସମ୍ପୂର୍ଣ୍ଣ ହାତ ରହିବ । ଏସବୁର ।ାଯ୍ୟ ତୋର । ମୋର ବୋଲି ତ ଆଉ କେହି ନାହିଁ—ଏଇ ବୁଢ଼ୀ ଆଟା ।

ଉପେନ୍ଦ୍ର କହିଲା—ଆଉ ତୁମର ସ୍ତ୍ରୀ ?

—ଓଃ ମୋ ସ୍ତ୍ରୀ କଥା ! ହଁ ସେ ତ ଅଛି । ଭାଇ, ତାର ବାପ ମା ।ଉ କେହି ହେଲେ ବଞ୍ଚି ରହି ନାହାନ୍ତି । ତାକୁ ବି ନିଜଏ ଦେଖୁଥିବୁ ।

ଉପେନ୍ଦ୍ର ନିର୍ନିମେଷ ଚକ୍ଷୁରେ ମୁମୂର୍ଷୁ ନାଗନ୍ ମୁହଁକୁ ଚାହିଁ ରହିଲା, ତା ପରେ କିଛିକ୍ଷଣ ଭାବିବାକୁ ଲାଗିଲା ।

ସଖାଣ ପକେଟରୁ ନାଡ଼ ତାହାର ହାତ ଠିଆହୋଇ କହିଲା— ଜଣାଇଦେବା, ସାତ ଦଶଟା । ବାହାରିଗଲାଣି, ଠିଆହୋ ସେମାନେ ବ୍ୟସ୍ତ ହେବେଣି ।

ନାଗନ୍ ତା ଆଡ଼କୁ ଚାହିଁ କହିଲା—କେମିତି କାମ କରେ ଉପୀନ୍ ?

ମୋର ବନ୍ଧୁ, ତୁମେ ମଧ୍ୟ କଲିକତା ଆସିଛ । ତେବେ ଆଜି ଯାଉଛି ନାଗନ୍ଦା । କାଲି ସକାଳେ ଆସିବ ।

—ନା, କାଲିକି କାହିଁକି, ଏକାବେଳକେ ଦଳିଲପତ୍ର ଉଠାଇ କରି ପଅରଦିନ ଆସ । ମୋର ଯାହା କିଛି କହିବାର ଥିବ ଏବଂ ମୋର ବୋଝ ଯେଉଁଠି ଯାହା ଥିବ, ସେଇଦିନ କହିଦେବି । କୋଉଠି ରହୁଛ ?

—ସହରର ସେପଟେ, ଜଣେ ବନ୍ଧୁଙ୍କ ଘରେ ।

ସେମାନେ ଯିବାକୁ ବାହାରିବା ମାତ୍ରେ ନାଗନ୍ ଡାକିଲେ— କାରଣ !

ଉପେନ୍ଦ୍ର ସଙ୍ଗେ ସଙ୍ଗେ ବାଧା ଦେଇ କହିଲା—ଆଜି ନାଗନ୍ଦା ସମସ୍ତ ପକେଟରେ ନଆସିଲେ ଅଛି, ସ୍ୱଚ୍ଛନ୍ଦରେ ଚଳକୁ ଯାଇପାରେ ମୁଁ ମନ ବୋଧହୁଏ କାମରେ ବ୍ୟସ୍ତ ଅଛନ୍ତି ।

ଉତ୍ତର ଦେଲେ ନାଗନନ୍ଦା; କିନ୍ତୁ କ'ଣ କହିଲେ କିଛି ବୁଝାପଡ଼ିଲା ନାହିଁ । ସଖାଣ କବାଟ ଖୋଲିଲା ମାତ୍ରେ ଜଣାଗଲା, କିଏ ଜଣେ କବାଟ ପାଖରେ ଠିଆହୋଇଥିଲା । ଏଣ୍ଣୁଖଣି ଗଲିଗଲା । ମନ ପଛକୁ ହଟି ଆସିଲା ।

ଉପେନ୍ଦ୍ର ପଚାରିଲା—କ'ଣ କରେ ସଖାଣ ?

—ନା, କିଛି ନୁହେଁ, କୁ ଆସିଲା । ସେ ଉପେନ୍ଦ୍ରର ହାତକୁ ଟାଣି-ଆଣି ତାହାରକୁ ବାହାର ଆସିଲା । ନିବିଡ଼ ଅନ୍ଧକାର । କେବଳ କୃଷ୍ଣପକ୍ଷ ମେଘ ଢାଙ୍କିରହିଛି ଆକାଶକୁ । ତା ତଳେ ଉପରେ ଚଉଡ଼ା ଓ ଉଚ୍ଚ ଘରଗୁଡ଼ାକ ସେଇ ଅନ୍ଧକାରକୁ ଯେମିତି ଠେଲି ଠେଲି ନେଇଆସି ଏହି ଅପ୍ରଶସ୍ତ ପ୍ରାଙ୍ଗଣଟି ଉପରେ ଏବଂ ଭଙ୍ଗା ଖୋଲା ବାରଣ୍ଡାର ଉପରେ

ଏତେବେଳକେ ଜମାଟ ବାନ୍ଧିଯାଇଛି । ବୃକ୍ଷଲତାଗୁଳ୍ମ ଭିତରେ ଦଗାଳି ଦିଶୁଛି ମିଞ୍ଜି ପାଖରେ ଆସି ପହଞ୍ଚନ୍ତି । ଦେଖିଲେ କନଗ୍ରାମିନ ଦଣ୍ଡା ରଖି କିରଣମୟୀ ସ୍ଥିରଚିତ୍ତରେ ବସିରହିଛି । ସଙ୍ଗେ ସଙ୍ଗେ କହିଉଠିଲା—ଆଲୁଅ ଦେଖାଉଛି, ସାବଧାନରେ ତଳକୁ ଖସିଆସନ୍ତୁ । ଆପଣମାନଙ୍କୁ ଅପେକ୍ଷା କରି ବସିରହିଛନ୍ତି ।

ଏହି ଅନ୍ଧକାର ଶୀତଳ ରାତିରେ ଭିଜା ମାଟି ଉପରେ, ଏକାକିନୀ ନେଇ ସ୍ତ୍ରୀଲୋକଟିକୁ ସେମାନଙ୍କୁ ଅପେକ୍ଷା ବସି ରହିଥିବାର ଦେଖି ଏବଂ ତାର ଆସନ୍ନବୈଧବ୍ୟ କଥା ଭାବି ଉପେନ୍ଦ୍ର ଆଖିରେ ଲୁହ ଭରି ଆସିଲା ।

ସଦରର କବାଟ ସେତେବେଳକୁ ବନ୍ଦ ହୋଇ ନ ଥାଏ । ତଳକୁ ନଇଁଆସି ସନ୍ତୋଷ ସିଧାସଳଖ ଠିଆହେଲା ଗଳି ଦାଣ୍ଡରେ । କିନ୍ତୁ ଉପେନ୍ଦ୍ର ପଛରୁ ବାଧା ପାଇ ଫେରି ଗୁଞ୍ଜିଲା ।

କିରଣମୟୀର ଦୁଇଟି ସକରୁଣ ଆଖି ରହିଛି ତାର ମୁହଁ ଉପରେ ଧାଇଁ ଆସି ପଡ଼ୁଛି । ସେ କି ବିକଶିତ ଭଙ୍ଗୀରେ ସେ ଠିଆ ହୋଇଛି । କିନ୍ତୁ ସମସ୍ତ ହତବୁଦ୍ଧି ହୋଇ ନିର୍ବାକ ନିଷ୍ପନ୍ଦ ଭାବରେ ଠିଆହୋଇ ରହିଲା ।

କିରଣ ପଚାରିଲା—ଉପେନ୍ଦ୍ରବାବୁ, ଆପଣ ଆମର କିଏ ହୁଅନ୍ତି ?

ଏହା ଏକ ଅଦ୍ଭୁତ ପ୍ରଶ୍ନ । ଏହାର ଉତ୍ତର କ'ଣ ହେବ, ଉପେନ୍ଦ୍ର ଭାବିପାରିଲେନି ।

କିରଣ ପୁଣି ପଚାରିଲା—ଆଚ୍ଛା, ଆପଣ ମୋ ସ୍ୱାମୀଙ୍କର କିଏ କୌଣସି ଆତ୍ମୀୟ ? ଏତେଦିନ ହେଲା ଏ ଘରକୁ ଆସିଲିଣି, କାହିଁ କୌଣସି ଦିନ ତ ତାଙ୍କଠାରୁ କିମ୍ବା ମାଙ୍କ ପାଖରୁ ଆପଣଙ୍କ ନାଁ ଶୁଣିବାକୁ ପାଇନି ! ଖାଲି ଯେଉଁଦିନ ଆପଣଙ୍କ ପାଖକୁ ଚିଠି ଲେଖାହେଲା ସେହିଦିନ ଶୁଣିଲି······ସେଇଥିପାଇଁ ପଚାରୁଛି ।

ବାହାରୁ ସନ୍ତୋଷ ଡାକିଲା—ଆସନା ଉପୀନ୍‌ଦା !

ଉପେନ୍ଦ୍ର କହିଲା—ନା, ସେମିତି କିଛି ଆତ୍ମୀୟ ନୁହେଁ—ତେବେ ବନ୍ଧୁ । ବାପା ଯେତେବେଳେ ନୂଆଖାଳିରେ ଥିଲେ, ଆଉ ତାର ବାପା ସରକାରୀ ସ୍କୁଲରେ ମାଷ୍ଟରୀ ଚାକିରୀ କରୁଥିଲେ । ସେତେ ମଧ୍ୟ ଘରେ

ଟିଉସନ୍ କରୁଥିଲେ । ହାରାନଦା ଓ ମୁଁ ଏକା ସାଙ୍ଗରେ ବନ୍ଧୁତ୍ୱକୁ ଧରି ପଡ଼ୁଥିଲୁ ।

କିରଣମୟୀ ଟିକିଏ ହସିଦେଇ କହିଲେ—ଓ ଏଇ ! ସେଇଥି-ଲାଗି ଲେଖାପଢ଼ା କରିବା କଥା ହୋଇଛି ନା ? ଆଚ୍ଛା ଉପୀନ୍‌ବାବୁ, ତାଙ୍କର କହିବାନୁଯାୟୀ ଆପଣ କ'ଣସବୁ ଆପଣଙ୍କ ନାଁ ଲେଖିଦେବେ ?

ବିଳମ୍ବ ହେବାର ଦେଖି ସତୀଶ ପାଖକୁ ଲାଗି ଆସିଥାଏ । ଚଟକିନା ସେ ଉତ୍ତର ଦେଲା—ହଁ ସେହିଭଳି ତ ସ୍ଥିର ହୋଇଛି ।

କିରଣମୟୀ ସତୀଶଙ୍କୁ ଚାହିଁ କହିଲା—ଓଃ, ଆପଣ ବି ଅଛନ୍ତି ! ବେଶ ଭଲ କଥା । ଏତେଦିନ କଷ୍ଟେ ମଷ୍ଟେ ଯାହା ଗଣ୍ଡେ ଖାଇବାକୁ ମିଳୁଥିଲା, ଏଥର ସେତକ ବି ଜୁଟିବନି । ଝୁଲି ଧରି ଦାଣ୍ଡରେ ଠିଆ-ହେବାକୁ ପଡ଼ିବ । ହେଉ, ତାହା ହିଁ ହେଉ । ଯାହାହେଲେ ଭାଗ ବଣ୍ଟାବଣ୍ଟି କରିଯିବା ଦରକାର ।

ଉପେନ୍ଦ୍ର ଏକାବେଳକେ ସ୍ତମ୍ଭୀଭୂତ ।

ସତୀଶ କହିଲା—ଯାହାର ଜିନିଷ ସେ ଯଦି ଦେଇଯାଏ, କାହାର କିଛି କହିବାର ନାହିଁ ।

କିରଣମୟୀର ଆଖି ଦୁଇଟା ନିଆଁ ଭଳି ଦପ୍ ଦପ୍ ଜଳିଉଠିଲା । କହିଲା—ଜିନିଷ ତ ଖାଲି ତାଙ୍କର ନୁହେଁ । ମରଣକାଳେ ମତିଭ୍ରଷ୍ଟ ହୁଏ, ତାହା ହିଁ ତାଙ୍କର ହୋଇଛି । କିନ୍ତୁ ଆପଣମାନେ ଧନସମ୍ପତ୍ତିକୁ ନିଜ ନାଁରେ ଲେଖିନେବାକୁ କିଏ ?

ସତୀଶ ଅକୁଣ୍ଠିତ ଭାବରେ ଜବାବ ଦେଲା—ସେକଥା ଆମେ ଜାଣୁନା । ହାରାନବାବୁଙ୍କର ଏବେ ଯେଉଁ ଠିକକ ବୁଦ୍ଧି ଅଛି, ସେହି ବୁଦ୍ଧି ପ୍ରତି ଆମର ସମର୍ଥନ ରହିଛି ।

କିରଣମୟୀ ବିଦ୍ରୂପ ସ୍ୱରରେ ଜବାବ ଦେଲା—ଚମତ୍କାର ଯୁକ୍ତି ତ ! ଲୋକେ କଥାରେ କହନ୍ତି—ଏଗୁଡ଼ାକ ଲୋକଙ୍କ କଥା । ଉପେନ୍ଦ୍ରକୁ ଲକ୍ଷ୍ୟକରି କହିଲା—ମୁଁ ପଚାରିବାକୁ ଚାହେଁ, ସିଏ ମତେ ବାହାର ଭିକାରୁଣୀ କରିଦେଇ ଯେ ଯିବେନି, ଏକଥା କିଏ କହିବ ? ସେ ମତେ ଯେ ଫାଙ୍କିଦେବେନି, ଏକଥା ବି କମିତ ବା ବିଶ୍ୱାସ କରିବ ?

ଏତେ ବଡ଼ ଗୋଟାଏ ଆଘାତ ଉପେନ୍ଦ୍ର ପକ୍ଷରେ ବଡ଼ ଅସହ୍ୟ

ବୋଧ ହେଲା । କ'ଣ ଗୋଟାଏ କହିବାକୁ ଯାଉଥିଲା, କହିବା ଉଚିତ ହେବ ନାହିଁ ବୋଲି ଭାବି ନିଜକୁ ସମ୍ଭାଳିନେଲା ।

ସତୀଶ ଧୀରେ ଧୀରେ କହିଲା—ବୁଝିଲି ଉପେନ, ତୁମର କିଛି ଜାଣିବାର ଆବଶ୍ୟକତା ନାହିଁ ।

କିରଣମୟୀ ସଙ୍ଗେ ସଙ୍ଗେ କୌଣସି ଉତ୍ତର ଦେଇପାରିଲା ନାହିଁ । ବନ୍ଧୁ ପ୍ରାଣ୍ତିକ ଆତ୍ମୀୟ ସମ୍ବୋଧନର ସ୍ପର୍ଦ୍ଧାରେ ସେ ଅବାକ୍ ହୋଇ ପଡ଼ିଥିଲା । କିନ୍ତୁ ସମସ୍ତ ଷ୍ଟୁହିଁରହି କହିଲା—ଉପେନ ବୋଲି ଡାକିବାର କୌଣସି ଆବଶ୍ୟକତା ନାହିଁ ।

ସତୀଶ କହିଲା—ଆପଣ ଯଦି ନିଜ ଅଧିକାର ନିଜେ ନଷ୍ଟ କରି ନ ଥାଆନ୍ତେ, ତାହା ହେଲେ ହାରାନବାବୁଙ୍କର ଏ ସତର୍କତା ଅବଲମ୍ବନ କରିବାର କୌଣସି ଆବଶ୍ୟକତା ପଡ଼ି ନ ଥାନ୍ତା । ରାତି କେତେ ହେଲାଣି ଦେଖୁଚ ତ—ରଗାରଗିର ପରିଣାମ କ'ଣ ହେବ, ବୁଝିପାରୁଛନ୍ତି ତ ?

ଖାଲି କାଦୁଅରେ ଏପରି ଗର୍ତ୍ତରେ ସାପ ଯେମିତି ତାର ଉଦ୍ୟତ ଫଣା ମୁହୂର୍ତ୍ତକରେ ସମ୍ବରଣ କରି ଆଘାତ କରିବା ପରିବର୍ତ୍ତେ ଆତ୍ମରକ୍ଷା ଲାଗି ବାଟ ଖୋଜେ, ସେହିପରି ଏହି ନିରୁପମା ଲୀଳା କୌଶଳମୟୀ ତେଜସ୍ୱିନୀ ଯୁବତୀର ଦୁଇଟି ଆଖି କ୍ରମଶଃ ସଂକୁଚିତ ହୋଇଆସିଲା । ପଚାରିଲା—ମୋ ବିଷୟରେ ସେ କ'ଣ କହୁଚନ୍ତି, ଶୁଣେ ।

ଉପେନ୍ଦ୍ର ଆଉ ଚୁପ୍ ରହିପାରିଲା ନାହିଁ । ଏହି ଗର୍ବିତା ନାରୀର ସଂଦିଗ୍ଧ ଉରସ୍କାର ତାକ୍ ଚମ୍ପ୍ରୀର ଭଳି ବନ୍ଧିଲେ ମଧ ତା ଉଚ୍ଚ-ଶିକ୍ଷିତ ଭଦ୍ର ଅନ୍ତଃକରଣ ସତୀଶର ଏହି ଗୋଇନ୍ଦାଗିରି ବିରୁଦ୍ଧରେ ବିଦ୍ରୋହ କରିଉଠିଲା । ସେ ବି ଅନ୍ୟାୟ ଉତ୍ତେଜନାଦ୍ୱାରା ଗୋଟିଏ କିଛି ଗୋପନ ରହସ୍ୟ ଟାଣି ବାହାର କରିବା ଲାଗି ଚେଷ୍ଟା କରୁଥିଲା । ତେଣୁ ସେ ସତୀଶକୁ ବାଧାଦେଇ କିରଣମୟୀକୁ କହିଲେ—ଆପଣ ବୃଥାଟାରେ ସତୀଶ କଥାରେ କାନ ଦେଇ ନିଜକୁ ଉଦ୍‌ବିଗ୍ନ କରୁଚନ୍ତି । ସ୍ୱାମୀଙ୍କର ଧନସମ୍ପତ୍ତିରୁ ବଞ୍ଚିତ କରିବା ଭଳି ଅଧିକାର କାହାର ନାହିଁ । ନିଶ୍ଚିନ୍ତ ରହନ୍ତୁ । କିନ୍ତୁ ମୁଁ ଯାହା ଭାବୁଚି, ତୁମର ସୁବିଧା ଦୃଷ୍ଟିରୁ ହିଁ ହାରାନଦା ଗୋଟାଏ କିଛି ଲେଖାପଢ଼ା କରିଦେବାକୁ ଚାହୁଁଚି । କିନ୍ତୁ ଆପଣ ମତ ନ ଦେଲେ ତ କୌଣସି ଲେଖାଲେଖି ହୋଇପାରିବନି । ରାତି ବହୁତ

ହୋଇଗଲାଣି, କବାଟ ବନ୍ଦ କରିଦିଅନ୍ତୁ । ଶୁଣିଲ ସେ   ଆଉ ଡେରି କରନା । କିରଣଙ୍କୁ ଶୁଣି ଉପେନ୍ଦ୍ର କହିଲା—ତେବେ କାଲି କିମ୍ବା ପଅରଦିନ ଦେଖାହେବ । ନମସ୍କାର ।

## ତେର

ସେଇ ଜନଶୂନ୍ୟ ଗଳି ଭିତରୁ ବାହାରି ଦୁହେଁ ଗୋଟାଏ ଟାକ୍ସି ଛରି ବସିଲେ ଏବଂ ଟାକ୍ସିର ଝରକା ବାଟ ଦେଇ ମନ୍ଦୀଭୂତ ଜନସ୍ରୋତକୁ ନୀରବରେ ଚାହିଁରହିଲେ । ମନେ ହେଲେ କଥାବାର୍ତ୍ତା କରିବା ଭଳି ଶକ୍ତି କାହାରି ନ ଥିଲା । ଉପେନ୍ଦ୍ର ବ୍ୟଥିତ ଚିତ୍ତରେ ମନେ ମନେ ଭାବିଲା, କାଲି ସେ କୌଣସିମତେ ଘରକୁ ବାହାରିଯିବାକୁ ପଡ଼ିବ । ଭଲ ହେଉ ବା ମନ୍ଦ ହେଉ, କାହାରି ବ୍ୟକ୍ତିଗତ ବ୍ୟାପାରରେ ହସ୍ତକ୍ଷେପ କରିବା ତାଙ୍କ ପକ୍ଷରେ ଅନୁଚିତ । କେବଳ ଫେରିବାବେଳେ ସେ ଦେଖି ଆସିବାକୁ ଚାହେଁ ହାରାନ୍‌ଦାର ଚିକିତ୍ସା ଠିକ୍ ମତେ ହେଉଛି କି କଣ ? ତା ପରେ ? ତା ପରେ କ'ଣ ହେବ, ଆଠ ବର୍ଷ ଧରି ଯେଉଁ ମଣିଷ ନିଜ ମନ ବାହାରେ ପଡ଼ି ରହିଥିଲା, ସେ ସେଇମିତି ପଡ଼ିରହିବ । ଏ କଥା ଭାବି ଖାଲି ବିଦେଶରେ ବସିଥିବା ଜ୍ୟୋତିଷଙ୍କୁ ଝାଡ଼ିଦେବା ଭଳି ମନରୁ ବିରକ୍ତିକର ଚିନ୍ତାକୁ ଝାଡ଼ିଦେଇ ଉପେନ୍ଦ୍ର ଗାଡ଼ି ଭିତରେ ନିଜକୁ ଭଲ ଭାବରେ ସଜାଡ଼ି ବସିଲା । ସତୀଶକୁ ଡାକି କହିଲା—ଭାଇ ! ଗୋଟାଏ ଚୁରୁଟ୍ ଦେଲ, ଭାରି ଥଣ୍ଡା ।

ସଞ୍ଜୀବ ଉପେନ୍ଦ୍ର ଆଡ଼କୁ ଚାହିଁ ନିରୁତ୍ତର ରହିଲା । ଉପେନ୍ଦ୍ର ପୁଣି ପଚାରିଲା—ସଞ୍ଜୀବ, ଭିତରର ଅନ୍ଧକାର ଭିତରୁ ଧୂଆଁ ଭଳି ବାହାରକୁ ଆସୁଥିବା ଏଇ ଧୂଆଁକୁ ତୁ ଦେଖିପାରୁନୁ କି !

ସଞ୍ଜୀବ କୌଣସି ଉତ୍ତର ଦେଲାନି ।

ମିଟ୍ ମିଟ୍ କରି ଟାଙ୍ଗିଥିବା ଲଣ୍ଠନର ଆଲୋକରେ ରାସ୍ତା, ଘର ଆଦି ଦେଖା ଯାଉଥାଏ । ଚାରିଆଡ଼େ ଘୋଟି ରହିଥିବା ଧୂଆଁ କୁଆଡ଼େ ଅନ୍ଧାରରେ ମିଳେଇଗଲା । ଦୁଇଜଣଯାକ ନିଜ ନିଜ ଚିନ୍ତାରେ ବାହାରକୁ ଚାହିଁ ରହିଥାନ୍ତି । ଉପେନ୍ଦ୍ର ମନେ ମନେ ଭାବି ଚାଲିଥାଏ, ସଞ୍ଜୀବ ଯୋଗୁଁ ଏତେବଡ଼ ଆନ୍ଦୋଳନ । ଯାହାହେଉ ଇତିମଧ୍ୟରେ ସଞ୍ଜୀବ ମନେ ମନେ କିଛି ଗୋଟାଏ ସ୍ଥିର କରିନେଇଛି, ନଚେତ୍ ଏଭଳି ନୀରବରେ ବସିରହିବା ଲୋକ ନୁହେଁ ସେ । ସଞ୍ଜୀବ କ'ଣ ଭାବୁଥିବ, ମନେ ମନେ ଉପେନ୍ଦ୍ର ଅନୁମାନ କରି ଚାଲିଥାଏ । ଭିତରେ ଭିତରେ ଶିହରଉଠି ମନେ ମନେ କହିଉଠିଲା, ଗୋଟାଏ କାଣ୍ଡ ହୋଇଗଲା, ନା ! ସଞ୍ଜୀବ ସେ କାହାଁକି ନିଜ ଅଫିସର ସହିତ ଏମିତି କଳି ଲଗେଇବାକୁ ବାହାରିଲା, ସେ ବୁଝିପାରୁନାହିଁ । କରୁଣାମୟୀ ଭବିଷ୍ୟତ ବିପଦ ଆଶଙ୍କାରେ ବିପଦ ରୂଢ଼ ଭାବରେ କହିବା ସ୍ୱାଭାବିକ, କିନ୍ତୁ ସଞ୍ଜୀବ ଏଭଳି ଜବାବ ଦେବା କ'ଣ ଠିକ୍ ହୋଇଛି ? ସଞ୍ଜୀବ ସୁଶିକ୍ଷିତ ହେଉ ବା ନ ହେଉ ନିର୍ବୋଧ ତ ନୁହେଁ ।

ମୁମୂର୍ଷୁ ହାଗନ୍‌ଦାର ଉଇଲ୍ ମୂଳରେ ଗୋଟାଏ ବଡ଼ଶତ୍ରୁ ଥିବ ବୋଲି ସିଏଁ ଉପେନ୍ଦ୍ର ଏତେ କଥା ଭାବୁଥିଲା । ବାଲ୍ୟସଖୀ ଲକ୍ଷ୍ମୀଙ୍କ ପିତା ହାଗନଦାର ଦେହାନ୍ତ ପାଖରେ ସେ ଯେତେବେଳେ ବସିଥିଲା, ସେତେବେଳେ ସେ ଭାବୁଥିଲା ସେଇ ଅନାଥା ମା ଓ ଝିଅଙ୍କ ଭବିଷ୍ୟତର ଭରଣ-ପୋଷଣ ଓ ରକ୍ଷଣାବେକ୍ଷଣ କଥା । ସେ ଭାବୁଥିଲା, ଏକ ସ୍ୱାସ୍ଥ୍ୟକର ସ୍ଥାନରେ ସେମାନଙ୍କ ପାଇଁ ରହିବା ଭଳି ଗୋଟିଏ ଘର କିଣିଦେବ । ଘରଟିର ଚାରିପଟେ ଗ୍ରେଟକାଠର ଗୋଟିଏ ବଗିଚା ରହିବ, ଭଦ୍ରଲୋକେ ପଡ଼ୋଶୀ ହୋଇ ରହିଥିବେ । ଗୃହପାଳିତ ଗାଈଗୋରୁଙ୍କ ସେବା କରି, ଅତିଥି ବ୍ରାହ୍ମଣଙ୍କ ପୂଜାକରି ଏବଂ ବାରବ୍ରତ ଆଚରଣ କରି ଏହି ଦୁଇଟି ନାରୀଙ୍କ ଦିନଗୁଡ଼ିକ ସୁଖଶାନ୍ତିରେ ଅତିବାହିତ ହେବ । ଏହାଭଳି ହେବ ବୋଲି ସେ କଳ୍ପନା କରି ନ ଥିଲା ।

ସେମାନଙ୍କୁ ବ୍ୟବସ୍ଥିତ କରି ରଖିବା ସ୍ଥାନଟିକୁ ମନେ ମନେ ବାଛୁ ବାଛୁ ଠିକ୍ ସେଇ ମୁହୂର୍ତ୍ତରେ କରଣମସ୍ଥିର କଦର୍ଯ୍ୟ ଅଭିଯୋଗରେ ସଶସ୍ତ୍ରକ୍ଷୁବ୍ଧ କ୍ରୁଦ୍ଧ ତପ୍ତଶ୍ୱାସ ଘୂର୍ଣ୍ଣିବାୟୁ ଭଳି ସେ ପରିକଳ୍ପନାର ସୁନ୍ଦର ଉଜ୍ଜ୍ୱଳ ଶହଟି କୁଆଡ଼େ ଲୋପପାଇଗଲା । ଉପେନ୍ଦ୍ର ଆଉ କୌଣସିମତେ ଚୁପ୍ ରହିପାରିଲାନି । ସତୀଶକୁ ଡାକି କହିଲା—କଣ ପଢୁଚୁ କରେ ?

ସତୀଶ ବାହାରୁ ଦୃଷ୍ଟିକୁ ଆଡ଼େଇ ନେଇ ଉପେନ୍ଦ୍ର ଆଡ଼କୁ ଚାହିଁ କହିଲା—ଆଉ କ'ଣ ବା ପଢ଼ିବି ଉପୀନ୍‌ଦା, ପିଲାଦିନେ ଗୋଟିଏ ବଙ୍ଗଳା ନଭେଲ ପଢ଼ିଥିଲି, ସେଇ କଥାହିଁ ଭାବୁଚି ।

—କି ନଭେଲ ରେ ?

—ନାଁ ମନେ ନାହିଁ । ଲେଖକଙ୍କ ନାଁଟା ମଧ୍ୟ ପାସୋରି ଦେଇଚି, ତେବେ ଲେଖକ ଜଣେ ଭାରି ବଡ଼ଲୋକ । କିନ୍ତୁ ଗଳ୍ପଟା ସ୍ପଷ୍ଟ ମନେଅଛି—ଏହିଭଳି ଭାରି ସୁନ୍ଦର !

ଉପେନ୍ଦ୍ର କୌତୂହଳୀ ହୋଇ ଖାଲି ସତୀଶ ଆଡ଼କୁ ଚାହିଁରହିଲା ।

ସତୀଶ ଅନୁଯୋଗ ସ୍ୱରରେ କହିଲା—କି ପାଠ ପଢ଼ିଲି ଉପୀନଦା, ଖାଲି ସେଇ ଇଂରେଜୀ ବହିପଢ଼ାରେ ତୁମ ଜୀବନ ଗଲା । ଦିନେହେଲେ ଖଣ୍ଡିଏ ବଙ୍ଗଳା ବହି ପଢ଼ିବାର ଦେଖିଲିନି । କିନ୍ତୁ ଆମ ଦେଶରେ ଇମିତି ସବୁ ବହି ଅଛି, ପଢ଼ିଲେ ସହଜେ ବହୁଜ୍ଞାନ ଲାଭ ହୋଇଥାଏ । ଏତିକି କହି ସତୀଶ ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ନୀରବ ରହିଲା ।

ଉପେନ୍ଦ୍ର ବିରକ୍ତ ହୋଇ କହିଲା—ଆଗେ ଗଳ୍ପଟା କହି ଶୁଣେ, ତା ପରେ ଦେଖାଯିବ ଜ୍ଞାନ ଜନ୍ମୁଚି କି ନା ।

ସତୀଶ କହିଲା— ଆଗ କୁହ, ରାଗିବନି ତ ?

—ନା, କହିଲୁ ଆଗ !

ସତୀଶ କହିଲା—ଅତି ସୁନ୍ଦର ଗଳ୍ପ । ବହିରେ ଲେଖାଅଛି, ଜଣେ ବଡ଼ ଜମିଦାର ନୌକାରେ ଯାଉଥିଲେ । ହଠାତ୍ ସନ୍ଧ୍ୟାବେଳକୁ ଆକାଶରେ ମେଘ ଦେଖାଦେଇ ଝଡ଼ ବତାସ ସୃଷ୍ଟି ହେଲା । ଉପୂରେ ସେ ଡଙ୍ଗାରୁ ଉଠିଆସିଲେ । ସମ୍ମୁଖରେ ଗୋଟାଏ ମସ୍ତ ଭଙ୍ଗାଘର । ବର୍ଷାରୁ ରକ୍ଷା ପାଇବାପାଇଁ ତାରି ଭିତରେ ପଶିଗଲେ । ଘରଟା ଭିତରେ ଘୋରଘଣ ଅନ୍ଧକାର—ଜନଶୂନ୍ୟ । ଘର ଭିତରେ ଗୋଟାକଯାକ ବୁଲି ବୁଲି ଉପରକୁ ଚାହିଁ ଦେଖିଲେ, ଉପର ଘରେ ଗୋଟାଏ ଦୀପ ଜଳୁଚି । ଛୁଣ୍ଡା ମସିଣା

ଉପରେ ଗୋଟାଏ ମଣିଷ ମୁମୂର୍ଷୁ ଅବସ୍ଥାରେ ପଡ଼ିରହିଛି । ପାଖରେ ପଦ୍ମପଲାଶନୟନା ସୁନ୍ଦରୀ ସ୍ତ୍ରୀ ଲୋଟିପଡ଼ି କାନ୍ଦୁଛି । ସେଦିନ ରାତିରେ ସେ କୁଆଡ଼େ ଗୋଟାଏ ଭୟଙ୍କର ସ୍ୱପ୍ନ ଦେଖିଥିଲା । ଆଚ୍ଛା ଉପୀନ୍ଦା, ତୁମେ ସ୍ୱପ୍ନ ବିଶ୍ୱାସ କର ?

—ନା, ତାପରେ କ'ଣ ହେଲା ?

—ତା ପରେ ? ତାପରେ ସେ ରାତି ଭିତରେ ସେ ମୁମୂର୍ଷୁ ଲୋକଟା ମରିଗଲା । ଜମିଦାର ବାବୁ ସେହି ପଦ୍ମପଲାଶାକ୍ଷୀ ବିଧବାଟିକୁ ଘରକୁ ଆଣି ଜୋର ଜବରଦସ୍ତି ବିବାହ କରି ପକାଇଲେ । ସମସ୍ତେ ଛି ଛି କଲେ । ଜମିଦାର ବାବୁଙ୍କ ପ୍ରଥମ ସ୍ତ୍ରୀ ବିଷ ଖାଇ ମଲେ ।

ଥରକୁ ଥର ସେହି ପଦ୍ମପଲାଶାକ୍ଷୀ ଶବ୍ଦଟାକୁ କହିବାରେ ସନ୍ତୋଷର ଉଦ୍ଦେଶ୍ୟକୁ ଉପେନ୍ଦ୍ର ଭଲଭାବରେ ବୁଝି ପାରୁଥିଲେ । ଗଳ୍ପକୁ ଶୁଣି ଶୁଣି ମଝିରେ ମଝିରେ ତାଙ୍କୁ ଭାରି ହସମାଡ଼ୁଥିଲା; କିନ୍ତୁ ହସକୁ ଚାପି ସେ ସନ୍ତୋଷକୁ ଗପ କହିବାକୁ ଉତ୍ସାହିତ କରିବାଲାଗି ଖାଲିତାପରେ···ତାପରେ କହୁଥିଲେ । ସନ୍ତୋଷର ଅଗମୂଳହୀନ ଗଳ୍ପଟା ଶେଷରେ ଏତେ ତୀବ୍ର ହୋଇଉଠିବ ବୋଲି ସେ ଭାବି ନ ଥିଲେ । ଗଳ୍ପ ଶେଷରୁ ସେ ଗୋଟାଏ ତୀବ୍ର ଇଙ୍ଗିତର ପରିଚୟ ପାଇଲେ ଏବଂ ସେଇ ଇଙ୍ଗିତ ଯେ ତାଙ୍କପ୍ରତି ଉଦ୍ଦିଷ୍ଟ, ସେ କଥା ବୁଝିପାରି ସେ ବିଚଳିତ ହୋଇପଡ଼ିଲେ । ବଡ଼ ଲଜ୍ଜା ବୋଧକଲେ ମଧ୍ୟ ।

ଉପେନ୍ଦ୍ରଙ୍କ ମୁହଁଟା ଫିକା ପଡ଼ି ଆସିଲାଣି । ସନ୍ତୋଷ ଅନ୍ଧାରରେ ଦେଖି ପାରୁ ନ ଥିଲା । କଣ୍ଠ ସ୍ୱରରେ ଚୂନ ବୋଳିଲା ଭଳି ସନ୍ତୋଷ କହିଲା— ପୋଖରୀ ଖୋଳି କୁମ୍ଭୀର ଆଣିବାକୁ ଚେଷ୍ଟାକରନା ଉପୀନ୍ଦା ।

ଉପେନ୍ଦ୍ର କୌଣସି ଉତ୍ତର ଦେଇପାରିଲେନି । ଅନେକ ସମୟ ଧରି ଚୁପ୍ ରହିବା ପରେ ଧୀରେ ଧୀରେ କହିଲେ – ବଙ୍ଗଳା ନଭେଲ୍ କଥା ରଖ । ଆଚ୍ଛା, ତୁ କ'ଣ ମତେ ଉପଦେଶ ଦେବାକୁ ଗୁହ୍ମ'ରୁ କହିଲୁ ?

ସନ୍ତୋଷ ଟିକିଏ ହସିଦେଇ କହିଲା—ଦେଖିବ ଉପୀନ୍ଦା, ତୁମେ ଗୁରୁତ । ତୁମକୁ ମୁଁ ଉପଦେଶ ଦେଇପାରିବନି; କିନ୍ତୁ ତୁମର ପାଦ ଧରି ଏତିକି ଅନୁରୋଧ କରିପାରେ ଯେ ତୁମେ ଆଉ ସେ ଘରକୁ କେବେ ଯାଅନି, ସେଗୁଡ଼ାକ ଭଲ ଲୋକ ନୁହନ୍ତି ।

—ସେଗୁଡ଼ାକ କିଏ ଶୁଣେ ?

—ଭଲ ହେଉ ବା ମନ୍ଦ ହେଉ ଏକଥା କହିବାରେ ତୋର ଅଧିକାର ?

—ଅଧିକାର ଗୋଟାଏ କ'ଣ ମ ? ସେସବୁ ଇଂରେଜି କଥା. ବଙ୍ଗଳା ଭାଷାରେ ତାର ଗୋଟାଏ ହେଲେ ଅର୍ଥ ନାହିଁ । ଆମ ସମାଜରେ ଏହା ଶୁଣି ବାହାର କେଳେନା । ଜେଲଖାନାର କଏଦୀଙ୍କୁ ଘରୁ କଣବାରେ ଅନେକଙ୍କ ଅଧିକାର ଥାଆନ୍ତି, କିନ୍ତୁ ସେ କଥାକୁ ତ ସାଧାରଣ ଲୋକେ ମାନି ନେଇ ନ ଥାନ୍ତି ।

—ସେଇଟା ଅଲଗା କଥା । ଦୋଷର ପ୍ରମାଣ ହେବା ପରେ ତାଙ୍କ ଘରୁ ଲୁହାଯାଏ, ଘରୁ ଜେଲ ଯାଏ । କିନ୍ତୁ ଏ ସମ୍ବନ୍ଧରେ ତୁ କ'ଣ ପ୍ରମାଣ ପାଇଛୁ ?

—ପ୍ରମାଣ ନ ହେଲେ ମଧ୍ୟ ଅନେକେ ଜେଲ ଯାଇଥାଆନ୍ତି । ସେଇଟା ଜଜ୍‌ସାହେବଙ୍କ ହାତରେ । ଆମେ ଯେଉଁ କଥାଟାକୁ ବୁଝିପାରୁନା, ସେ ସେ କଥାକୁ ବୁଝନ୍ତି । ତୁମେ ଆମେ ଯେଉଁ କଥାଟିକୁ ଯାଣି ଭଲ ସହଜ ମନେକରୁ, ଏତେ ବଡ଼ ଜଜ୍‌ସାହେବ ଆଖିରେ ହୁଏତ ସେଇଟା ପାହାଡ଼ ପର୍ବତ । ଆଜି ତୁମ ସମ୍ବନ୍ଧରେ ମଧ୍ୟ ସେ କଥା ଖାଟେ । ମୁଁ ଭୁଲ୍ ବକୁଛି ବୋଲି ମନେକରନା ଉପୀନ୍‌ଦା ! ଏତେ ବଡ଼ ଦୁନିଆଁଟାକୁ ଆଖି ଆଗରେ ରଖି ମଧ୍ୟ ଅନେକ ଈଶ୍ୱରଙ୍କ ପ୍ରମାଣ ଖୋଜି ପାଇ ନ ଥାନ୍ତି । ମୁଁ ଜାଣେ ତୁମେ ରାଗିବ; କାରଣ ତୁମେ ସବୁବେଳେ ଭଲ ସାଙ୍ଗରେ ମିଶି, ଭଲ ଦେଖି, ଭଲ ହୋଇ ରହିଚ; କିନ୍ତୁ ଆମେ ଭଲ ଭଲ ମନ୍ଦ ଦେଖି ଏଠି ପକ୍‌କା ହୋଇଥାଆନ୍ତି, ତାହାହେଲେ ମୁଁ ତ ଏତେ କଥା କହିବାକୁ ପଡ଼ନ୍ତାନି, ନିଜ ଆଖିରେ ବହୁତ କଥା ଧରିପାରନ୍ତ ।

ଉପେନ୍ଦ୍ର କିଛି ସମୟ ଚୁପ୍ ରହି କହିଲେ— ସବୁ ଜିନିଷ ତୋ ଆଖିରେ ପଡ଼ିବାର କୌଣସି ଆବଶ୍ୟକତା ନାହିଁ କିମ୍ବା ପକ୍‌କା ହେବା ଲାଗି ତୋ ଭଳି ଲୋକର ମଧ୍ୟ ହୋଇପାରିବନି । ଏ ପ୍ରସଙ୍ଗ ବନ୍ଦ କର, ଟାକ୍‌ସି ଦୁଆର ମୁହଁରେ ଆସି ହାଜର ହେଲାଣି । କିନ୍ତୁ ଗୋଟାଏ କଥା ମନେରଖ ସତୀଶ, କାହାର ଦାମ୍ ସେତେବେଳେ ଯାଇ ଜାଣିହୁଏ ଯେତେବେଳେ ପାଗଳ ହୋଇପଡ଼ନ୍ତୁ ।

ତା ଆରଦିନ ଉପେନ୍ଦ୍ର ଉଠୁ ଉଠୁ ବେଳ ହୋଇଗଲା । ଝରକା ବାଟ ଦେଇ ଦେଖିଲେ, ସୂର୍ଯ୍ୟ ବହୁତ ଉପରକୁ ଉଠିଗଲେଣି । ଭାରି ବ୍ୟସ୍ତ ହୋଇ ଉଠିପଡ଼ିଲେ ସେ । ଘରେ ସତୀଶ ନ ଥିଲା, ସେ କୁଆଡ଼େ ଯାଇଛନ୍ତି । ବାହାରେ ବେହାରୀ ଠିଆହୋଇ ରହିଥିଲା, ଆସି ଖବର ଦେଲା—ସତୀଶ ବାବୁ ସାମନା ବଗିଚାରେ କସରତ କରୁଚନ୍ତି । ତଳେ ଚା ଦିଆହୋଇଥାଏ, ସେଇଠି ସାହେବ ପ୍ରଭୃତି ଅପେକ୍ଷା କରି ରହିଥାଆନ୍ତି ।

ଉପେନ୍ଦ୍ର ଅବିଳମ୍ବେ ପ୍ରସ୍ତୁତ ହୋଇ ତଳକୁ ଯାଉ ଯାଉ ଜ୍ୟୋତିଷ ହାତକୁ ଧରି ଚା ରଖାଯାଇଥିବା ଟେବୁଲ ପାଖକୁ ଟାଣିଆଣିଲେ । ସେଠାରେ ତାଙ୍କ ଭଉଣୀ ଅପେକ୍ଷା କରି ରହିଥିଲେ । ସେ ଖବରକାଗଜଟାକୁ ମୁହଁ ଆଗରୁ କାଢ଼ିନେଇ କହିଲେ— କାଲି ରାତି ଦଶଟା ଯାଏଁ, ଆମେ ଅପଣଙ୍କ ବାଟ ଚାହିଁ ବସିରହିଥିଲୁ । ଶେଷରେ ନେମନ୍ତନ୍ନା ମଠିଆ ଖାଇ କହିଲେ— ନିଶ୍ଚୟ ବାଟରୁ କୌଣସି ଜାର୍ଦ୍ଦସ୍ତ ବନ୍ଧୁ ଗିରଫ କରିନେଇଚ, ହୁଏତ ଆଉ ରାତିରେ ଫେରିବାର କୌଣସି ଆଶା ନାହିଁ । ଆଚ୍ଛା, କାଲି ରାତିରେ ଫେରିଲାବେଳକୁ କେତେ ରାତି ହୋଇଥିଲା ଉପୀନ୍‌ବାବୁ ?

ଉପେନ୍ଦ୍ର ହସି ହସି କହିଲା—ବାରଟା । ଏକ ବନ୍ଧୁର କାମରେ ରହିଗଲି । ବହୁତ ବ୍ୟସ୍ତ ହୋଇଥିବେ ଆପଣମାନେ ।

ଜ୍ୟୋତିଷ କହିଲେ—ନା, ବ୍ୟସ୍ତ କିଛି ନୁହେଁ । ବୃଥାରେ ଯେ ଆପଣମାନେ ବୁଲୁଥିବେ, ଏଭଳି ଧାରଣା କେବେ କରି ନ ଥିଲୁ । ସତୀଶ ବାବୁ ଗଲେ କୁଆଡ଼େ ?

ବେହାରୀ ଠିକ୍ ଏହି ସମୟରେ ଆସି କହିଲା—ସତୀଶ ବାବୁ କୁସ୍ତି କରୁଛନ୍ତି; କିନ୍ତୁ ତାଙ୍କୁ ଆସିବାକୁ କହି ପଠେଇଚି ।

ବେହାରୀ ଚାଲିଯିବା ପରେ ଜ୍ୟୋତିଷ ପଚାରିଲେ—କୁସ୍ତି ? କାହା ସାଥିରେ ?

ଉପେନ୍ଦ୍ର କହିଲେ—ମୁଁ ତ ଜାଣେନା । କୁସ୍ତି କରୁ ନ ଥିବ ଯେ, ପିଲାଦିନୁ ବ୍ୟାୟାମ କରିବାର ଅଭ୍ୟାସ ଅଛି । ସେମିତି କ'ଣ କିଛି କରୁଥିବ ।

ସରୋଜିନୀ କାଲି ଥିଏଟରରେ ମିଉଜିୟମ ଦେଖିବାକୁ ଯାଇଥିଲେ । ସଂଧ୍ୟା ପରେ ଘରକୁ ଫେରି ଶୁଣିବାକୁ ପାଇଲେ ଯେ ଉପେନ୍ଦ୍ର ବାବୁ ଓ ତାଙ୍କର ବନ୍ଧୁ ଆସିଛନ୍ତି । ସେତେବେଳେ କିନ୍ତୁ ସେ 'ପାଥୁରେଘାଟ' ଆଡ଼କୁ

ବାହାରିଥିଲେ । ପଚାରିଲେ—ସନ୍ତୋଷ ବାବୁ, କଏ ଉର୍ପାନ୍ ବାବୁ, ମୁଁ ତ ଚେହ୍ନିନ ।

କାଲି ଆମେ ସେହି ସମୟରେ ଯାଇଥିଲୁ, ଆପଣ ନ ଥିଲେ । ସନ୍ତୋଷ ମୋର ପିଲାଦିନର ସାଙ୍ଗ, ବୟସରେ ବନ୍ଧୁତ ଶ୍ରେଷ୍ଠ—ଏଇ ତ ସନ୍ତୋଷ !

ସନ୍ତୋଷ ଘର ଭିତରକୁ ପଶିଆସିଲା । କି ସୁନ୍ଦର ବଳିଷ୍ଠ ଉନ୍ନତ ଦେହ, କପାଳରେ ବିନ୍ଦୁ ବିନ୍ଦୁ ସ୍ୱେଦ । ସୁଶ୍ରୀ ଗୌରବର୍ଣ୍ଣ ମୁହଁରେ ରକ୍ତାଭ । ଆଉରି ଚମତ୍କାର ଦେଖାଯାଉଥାଏ ସନ୍ତୋଷ ।

ସରୋଜିନୀ ଚାହିଁବା ମୁହୂର୍ତ୍ତରେ ତାଙ୍କ ମୁହଁ ତଳକୁ ନଇଁଆସିଲା ।

ଜ୍ୟୋତିଷ ପଚାରିଲେ—ବେହ୍ଲାସ କହୁଥିଲା—ଆପଣ କୁସ୍ତି କରୁଥିଲେ ! କୁସ୍ତି କରନ୍ତୁ ବା ଯାହା କରନ୍ତୁ, ଆପଣଙ୍କ ଦେହଟାକୁ ଚାହିଁଲେ କାହାଁକି କେଜାଣି ଭାରି ଈର୍ଷା ହୁଏ । ଆମ ଭଳି ସରୁଆ ପତଳା ଚାରି ପାଞ୍ଚ ଜଣ ଏକାଠି ହେଲେ ଏ ଦେହଟାକୁ ସରିହେବୁନି ।

ସନ୍ତୋଷ ହସି କହିଲା—ବିନା ପରୀକ୍ଷାରେ ଏତେବଡ଼ ସାର୍ଟିଫିକେଟ ! ଖାଲି ଦେହର ଜୋର ନେଇ ବା କ'ଣ ହେବ, ଏହି ଜୋର ଛଡ଼ା ମୋର ଆଉ କୌଣସି ଜୋର ନାହିଁ ।

କଥା ଶେଷରେ ଥିଲା କଷ୍ଟଟା ଦୁଃଖର ଆଭାସ । ସରୋଜିନୀ ଚାହା ଦେଉ ଦେଉ ମନେ ମନେ ଅନ୍ଦାଜ କରି ନେଉଥିଲେ, ବୋଧହୁଏ ସନ୍ତୋଷ ବାବୁଙ୍କର ସାଂସାରିକ ଅବସ୍ଥା ଭଲ ନୁହେଁ । ଜ୍ୟୋତିଷ ଆଗରୁ ଉପେନ୍ଦ୍ରଙ୍କ-ଠାରୁ ସବୁକଥା ଶୁଣିଥିଲେ; ତେଣୁ ସେ ଚୁପ୍ ରହିଲେ । ଇତିମଧ୍ୟରେ ଚାହାକପ୍‌ଗୁଡ଼ାକ ଭର୍ତ୍ତି ହୋଇଯାଉଥାଏ । ସନ୍ତୋଷ କିନ୍ତୁ ସେ ଦିଗକୁ ଭ୍ରୂକ୍ଷେପ ନ କରି କାନ୍ଥରେ ଟଙ୍ଗା ହୋଇଥିବା ଗୋଟାଏ ଛବି ଆଡ଼କୁ ଚାହିଁ ରହିଥାଏ ।

ଜ୍ୟୋତିଷ କହିଲେ—ଆସନ୍ତୁ ସନ୍ତୋଷ ବାବୁ, ସବୁ ପ୍ରସ୍ତୁତ ।

ସନ୍ତୋଷ ଉତ୍ତର ଦେଲା—ଆପଣମାନେ ସୁରୁ କରନ୍ତୁ, ମୁଁ ନ ଗାଧୋଇଲେ କୌଣସି ଖାଦ୍ୟ ଖାଏନା ।

—ଆରେ, ମୁଁ ତ ଏ କଥା ଜାଣେନା । ତାହାହେଲେ ଆସନ୍ତୁ, ଶୀଘ୍ର ଗାଧୁଆ ପାଧୁଆ ସାରି ଆସନ୍ତୁ—ବେୟାରା !

--ନା, ବ୍ୟସ୍ତ ହୁଅନ୍ତୁ ନା । ମୁଁ ଠିକ୍ ସମୟରେ ଗାଧୋଇନେବି ଯେ । ତା ଛଡ଼ା ସକାଳବେଳା ଖାଇବାର ଅଭ୍ୟାସ ମୋର ନାହିଁ । ମଧ୍ୟାହ୍ନ ଭୋଜନଟା ମୋର ସାଧାରଣ ପାଞ୍ଚ ଜଣଙ୍କଠାରୁ କିଛିଟା ଅଧିକ । ମେସିନଙ୍କୁ ଅସମୟରେ ବୃଥା ଆଉ ଅଧିକ ଖାଇ ନଷ୍ଟ କରିଦେବାକୁ ଚାହେଁନା । ମୁଁ ଏଇ ହା ମୋଟା ଧନ୍ୟ ଭୋଜନ ବୋଲି ଭାବିଲି କି, ଆପଣଙ୍କ ଜଳଖିଆ ଖିଆ ଆରମ୍ଭ ହେଉ ! ଆରାମ ଲାଗିବ ।

ଗୀତ ଗାଇବା ପ୍ରସ୍ତାବରେ ସତ୍ୟେନ୍ଦ୍ରନାଥ ଏକବାରେ ଉତ୍ଫୁଲ୍ଲ । ସଙ୍ଗେ ସଙ୍ଗେ ସେ କହିଉଠିଲେ—ବେଶ୍ ଭଲ କଥା ! କିନ୍ତୁ ତା ପର-କ୍ଷଣରେ ଅପ୍ରସ୍ତୁତ ହୋଇପଡ଼ି ମୁହଁ ତଳକୁ କରିନେଲେ । ସେ ଯାହା କହିଲେ, ସେଇ କଥାଟା ତାଙ୍କ କାନକୁ କମିତି କମିତି ବୋଧହେଲା । ଜ୍ୟୋତିଷ କହିଉଠିଲେ---ଭାଉଣୀ ଆମର ଗୀତ ନାଁ ଶୁଣିଲେ ଆଉ କିଛି ଖାଆନ୍ତିନି । ନା, ନା ସତ୍ୟେଣ ବାବୁ ! ଆପଣ· · · · · · · ·

ଉପେନ୍ଦ୍ର ଏତେବେଳଯାଏ ଚୁପ୍ ହୋଇ ରହିଥିଲେ । କହିଲେ—ନା, ନା ହେବ କ'ଣ ? ସେ ସ୍ନାନ ନ କଲେ କିଛି ଖାଏନା, ସକାଳବେଳା ମଧ୍ୟ କିଛି ଖାଏନା । ତାଙ୍କୁ ମୁହଁବସିଲେ ଆମର ବୃଥା ଇଆଡ଼େ ଥିଆ ହୋଇଥିବ । ଏ ସତ୍ୟେଣ, ତୋର କାହିଁ ଭଜନ ପୂଜନ ଅଛି, ସାରେ, ବଧୁକି କାମ ଜାଣି ଅଛି । ଏଣିକି କହି ସେ ମୁଁ କାପକୁ ମୁହଁ ଆଡ଼କୁ ଟେକିନେଲେ ।

ଜ୍ୟୋତିଷ ମନେ ମନେ ଅତି ଆରାମବୋଧ କରି ଟିକିଏ ଟିକିଏ ହସିଲେ ।

ସତ୍ୟେଣ ଦୂରରେ ଗୋଟାଏ ଚେୟାରରେ ବସିଲା । ଆଉ ଗୀତ ଗାଇବାର ଉତ୍ସାହ ତାର ନ ଥିଲା । ସତ୍ୟେନ୍ଦ୍ର ବିମର୍ଷ ହୋଇପଡ଼ି ମୁହଁ ନୁଆଁଇ କପ ଦେହରେ ଚାମଚ ଗୋଳାଇବାକୁ ଆରମ୍ଭ କଲେ ।

ଉପେନ୍ଦ୍ର ବୃଥା ଖୋଜି ଖୋଜି କହିଲେ—ଆଚ୍ଛା ଏଣିକୁ ଏଠି ଆସିଲାଃ ଇମିତି ଧାର ଦେଖିବ, ସତ୍ୟେଣି ଅପଦସ୍ତ ! ସକାଳେ ଗୀତ ଗାଇବା ବଦଳରେ ସାହାନାଇ ବଜେଇବାର ପ୍ରସ୍ତାବ ଯାହାହେଉ କରିନ ରହ !

କଥାଟାରେ ଯେ କିଛି ସତ୍ୟତା ଅଛି, ସେ କଥା କେହି ଅନୁମାନ ନ କରିପାରି ପରିହାସ ଛଳରେ ସମସ୍ତେ ହସିବାକୁ ଆରମ୍ଭ କଲେ ।

ଗୃହ ଛିଆ ହୃଇଲା । ଇଆନ୍ତେ ସଙ୍ଖଣ ଆଉ ଚୁପ୍ ରହି ନ ପାରି ଘରେ ଟଙ୍ଗା ହୋଇଥିବା ଛବିଗୁଡ଼ିକ ଦେଖିବାକୁ ଲାଗିଲା ।

ସନ୍ଧ୍ୟା ପରେ ପରେ ସରୋଜିନୀ ଉପେନ୍ଦ୍ରଙ୍କୁ କହିଲା—ଆପଣଙ୍କର ବଡ଼ ଅନ୍ୟାୟ ହୋଇଛି, ଆପଣ ଗୀତ ଶୁଣିବାକୁ ସୁଯୋଗ ଦେଲେ ନାହିଁ ।

ଉପେନ୍ଦ୍ର କହିଲେ—ଏଇ କଥା ତ । ମୁଁ ତାର ବ୍ୟବସ୍ଥା କରି-ଦେଉଛି, ସଙ୍ଖଣ ଆସୁ ।

ଜ୍ୟୋତିଷ କହିଲେ—ସତେ ଉପେନ୍ଦ୍ର, ବାହାରେ ଯେପରି ଥଣ୍ଡା ନା, ବାହାରକୁ ବାହାରିବା ଲାଗି ଇଚ୍ଛା ହେଉନି । ଟିକିଏ ଗାନ-ବାଜଣାର ବ୍ୟବସ୍ଥା ହେଲେ ମନ୍ଦ ହୁଅନ୍ତାନି । କିନ୍ତୁ ସଙ୍ଖଣ ବାବୁଙ୍କର ତ ଦେଖାସାକ୍ଷାତ ନାହିଁ, କେଉଁଠିକି ଡାକ୍ତରୀ କରିବାକୁ ଯାଇନାହାନ୍ତି ତ ?

ଉପେନ୍ଦ୍ର କହିଲେ—ହୋଇପାରେ । କୌଣସି ବନ୍ଧୁଙ୍କ ସହିତ ଦେଖା କରିବାକୁ ଯାଇଥାଇପାରେ ।

ସରୋଜିନୀ ଆଶ୍ଚର୍ଯ୍ୟ ହୋଇ କହିଉଠିଲେ—ସଙ୍ଖଣ ବାବୁ ତାହାହେଲେ ଜଣେ ଡାକ୍ତର !

ଉପେନ୍ଦ୍ର ହସି ହସି କହିଲେ—ହଁ, ସେ ଜଣେ ଡାକ୍ତର !

ଜ୍ୟୋତିଷ କହିଲେ—ଖାଲି ସ୍କୁଲ ବା କଲେଜରେ ପାଠ ପଢ଼ିଲେ ହେବ ନାହିଁ, କୌଣସି ଜଣେ ବଡ଼ ଡାକ୍ତରଙ୍କ ସହିତ ବୁଲାବୁଲି କଲେ ବେଶ୍ କିଛି ଶିଖିପାରନ୍ତେ । ନଇଲେ କଥାରେ ଯାହାକୁ କହନ୍ତି, ଖାଲି ମଣିଷ ମାରିବା କାମ ଛଡ଼ା କିଛି ହେବ ନାହିଁ । ମୁଁ ଜଣେ ଭଲ ଡାକ୍ତରଙ୍କ ସହିତ ସଙ୍ଖଣ ବାବୁଙ୍କୁ ଜୁଟେଇ ଦେଇପାରେ; କିନ୍ତୁ ତୁମେ ଯାହା ତାଙ୍କର ମତିଗତି କଥା କହୁଛ ନା !

ଉପେନ୍ଦ୍ର କହିଲେ—ହଁ, ଲୋକ ଭଲ ହେଲେ ପଢ଼ିବ ସିନା, ନଇଲେ ହାତାହାତି ହେବା ଛଡ଼ା କିଛି ହେବ ନାହିଁ ।

ସରୋଜିନୀ ଖାଲି ବକ୍ ବକ୍ କରି ଚାହିଁ ରହିଲେ । ଜ୍ୟୋତିଷ କହିଲେ—ହାତାହାତି ହେଲେ ତ ଆଉରି ଭଲ ।

ଉପେନ୍ଦ୍ର କହିଲେ—ପିଲାଦିନୁ ତାକୁ ଜାଣିଛି, ଭାରି ମୁହଁଖୋଲା ସେ । ବାହାରେ ଯାହା, ଭିତରେ ସେଯା । ସେଥିପାଇଁ ତାକୁ ମୁଁ ଭଲ ପାଇଆସିଛି ।

ଜ୍ୟୋତିଷ ହସି ହସି କହିଲେ—ଓଃ ଏଇଥିପାଇଁ ତୁ ସଞ୍ଜଣ ବାବୁଙ୍କୁ ଧରି ଏଠିସେଠିକି ଯିବା ବଡ଼ କଷ୍ଟକର ବ୍ୟାପାର ବୋଲି କହୁଥିଲୁ ନା !

ଜ୍ୟୋତିଷ କଥା ପ୍ରତି ଉପେନ୍ଦ୍ରର ସେତେବେଳେ ମନ ନ ଥିଲା । ତେଣୁ କଥାଗୁଡ଼ାକ କାନରେ ପଶିଲେ ମଧ୍ୟ ଅନ୍ତର ଭିତରକୁ ପଶି ପାରିଲା ନାହିଁ । ବାଲ୍ୟବନ୍ଧୁ ବିରୁଦ୍ଧରେ କାଲି ଷ୍ଟେସନରେ ସଞ୍ଜଣର ବ୍ୟବହାର ଓ ରୂଢ଼ଭାଷା ତାଙ୍କ ମନରେ ଭିତରେ ଭିତରେ କଷ୍ଟ ଦେଉଥିଲା । ତେଣୁ ସଞ୍ଜଣ କଥା ପଡ଼ିଲାମାତ୍ରେ ସେ କିମିତି କିମିତି ମନେ କରୁଥିଲେ । କିଶୋର ବୟସରୁ ଶ୍ରେଷ୍ଠବଡ଼ ସମସ୍ତଙ୍କ ସହିତ କଳି କରିବା, ବଡ଼ିଲା ସାହିରେ ଅସମ ଓ ସମବୟସ୍କ ଲୋକଙ୍କ ସହିତ ହାତାହାତି, ପିଟାପିଟି, ବାଦବିସମ୍ବାଦ ଓ ଆଉରି ଅନେକ ଆପଦ ବିପଦରେ ସବୁଠି ସଞ୍ଜଣରେ ଦେଖା । କୁଡ଼େ କୁଡ଼େ କଳଙ୍କଜିଆ ଧରି ସେ ଉପେନ୍ଦ୍ରଙ୍କ ପାଖରେ ଆସି ପହଞ୍ଚେ । ସେସବୁ ସ୍ମୃତି ଆସି ତାଙ୍କ ମନ ଭିତରେ ଉଙ୍କି ମାରିବାରେ ସେ ଅନୁତପ୍ତ ବୋଧ କରୁଥାଆନ୍ତି । ତେଣୁ ଜ୍ୟୋତିଷ ଯେତେବେଳେ କହିଲେ, ଉପେନ୍ଦ୍ର ଉତ୍ତର ଦେଲେ—ହଁ, ସେଇଥି ଯୋଗୁଁ । ଠିକ୍ ସେଇଥିଲାଗି ମୁଁ ତାକୁ ସବୁବେଳେ ଭଲ ପାଇଆସିଛି । ଜ୍ୟୋତିଷ ଓ ସରୋଜିନୀ ଉଭୟେ ଉପେନ୍ଦ୍ର ମୁହଁକୁ ବଲ ବଲ ଚାହିଁ ରହି ଥାଆନ୍ତି । ଉପେନ୍ଦ୍ର ଯେ କ'ଣ କହୁଛନ୍ତି, ସେମାନେ ଆଦୌ ତାର କୂଳକିନାରା ପାଇପାରିଲେ ନାହିଁ ।

କିନ୍ତୁ ବିସ୍ମୟ ପ୍ରଶ୍ନ ପଚାରିବା ଲଗି ବେଳ ନ ଥିଲା—ଧୀରେ ଧୀରେ ପରଦା ଆଡ଼େଇ ସଞ୍ଜଣ ଘର ଭିତରେ ପ୍ରବେଶ କଲା । ପ୍ରଥମେ ତାକୁ ଦେଖିବାକୁ ପାଇଲେ ସରୋଜିନୀ । ସରୋଜିନୀ ଆନନ୍ଦରେ ଏକାବେଳକେ ବାହୁଡ଼ିଲା । କହିଉଠିଲେ—ବେଶ ହେଲା, ହେଇ ତ ସଞ୍ଜଣ ବାବୁ ।

ସଞ୍ଜଣ ସମସ୍ତଙ୍କ ମୁହଁର ଗମ୍ଭୀରତାକୁ ଦେଖି ଠଉରେଇ ନେଇ କହିଲା—ମୋରି କଥା ପଡ଼ିଥିଲା ନା ? ଉପୀନ୍ଦା ଇଆଡ଼ୁ ସିଆଡ଼ୁ ଗୁଡ଼େ କହିଥିବ; ମାତ୍ର ମୁହଁ ଦେଖାଇବାକୁ ଦେବେନି । ଏତିକ କହି ସେ କୋଚ ଉପରେ ବସିପଡ଼ିଲା । ଉପେନ୍ଦ୍ର ହାରମୋନିୟମଟାକୁ ହାତ ଠାରି ଦେଖାଇଦେଇ କହିଲେ—ସେଠି କ'ଣ ବସୁଚୁ, ଯା ସେଇ ଯନ୍ତ୍ରଟା ପାଖରେ ବସ । ସରୋଜିନୀର ମୋ ଉପରେ ବଡ଼ ଅଭିଯୋଗ । କୁଆଡ଼େ ମୋରି ଯୋଗୁଁ ସେ ତୋଠୁ ଗୀତ ଶୁଣିପାରିଲେ ନାହିଁ ।

ସନ୍ତୋଷ ନିର୍ଦ୍ଦିଷ୍ଟ ଆସନରେ ଯାଇ ବସି କହିଲା—ବର୍ତ୍ତମାନ ତ ଗୀତ ଗାଇବାର ବେଳ ନୁହେଁ, ସାହାନାଇ ବଜାଇବା ବେଳ ।

ସେଦିନ ବୈଠକ ଭାଙ୍ଗୁ ଭାଙ୍ଗୁ ରାତି ବହୁତ ହୋଇଯାଇଥାଏ । ସର୍ବେଶ୍ୱର ନିଜ ବିଛଣାକୁ ଯାଇ ଶୋଇରହି ଖାଲି ଭାବିବାକୁ ଲାଗିଲେ, ସନ୍ତୋଷବାବୁ ଯଦି ମୋର କୌଣସି ଆତ୍ମୀୟ ହୋଇଥାଆନ୍ତେ, ତାହାହେଲେ ତାଙ୍କଠାରୁ ଶିଖନ୍ତି । ସଙ୍ଗୀତଶିକ୍ଷା ଲାଗି ତାଙ୍କର ଜଣେ ହିନ୍ଦୁସ୍ଥାନୀ ଶିକ୍ଷକ ନିଯୁକ୍ତ ହୋଇଥାଆନ୍ତି ।

ସେଇ ଓସ୍ତାଦ୍ ସ୍ଥାନରେ ଓସ୍ତାଦ୍ ସନ୍ତୋଷଙ୍କୁ ଆଣି ବସେଇବା ପରିକଳ୍ପନା କରୁ କରୁ ତାଙ୍କୁ ନିଦ ମାଡ଼ିଆସିଲା ।

## ଚଉଦ

ଉପେନ୍ଦ୍ର ଓ ସନ୍ତୋଷ ଚାଲିଯିବା ପରେ କବାଟ ବନ୍ଦ କରିଦେଇ କରୁଣାମୟୀ ସେଇଠାରେ ଠିଆହୋଇ ରହିଲେ । ଅନ୍ଧାର ଭିତରେ ତାଙ୍କର ଆଖି ଦିଓଟା ହିଂସ୍ରଜନ୍ତୁର ଆଖି ଭଳି ଜଳିଉଠିଲା । ତାର ଇଚ୍ଛା ହେଉଥାଏ, ଧାଇଁଯାଇ କାହାର ବୁକୁକୁ ବିଦାରିଦେଲେ ଯାଇ ମନରେ ଶାନ୍ତି ! ହାତର ଫାପଟାକୁ ଉପରକୁ ଟେକିଧରି ଉନ୍ମାଦ ଭାବରେ କହି ଚାଲିଲେ, ନିଆଁ ଲଗେଇ ଦେବାର ଯଦି ଉପାୟ ଥାଆନ୍ତା, ତାହାହେଲେ ତାହା କରିବାକୁ ସେ ତିଳେହେଲେ କୁଣ୍ଠାବୋଧ କରନ୍ତେ ନାହିଁ । ସେତିକି କରେଇଦେଇ ସେ କୁଆଡ଼େ ହେଲେ ଚାଲିଯାଆନ୍ତେ । ପାଟିତୁଣ୍ଡ କରି ତିଳେ ତିଳେ କରି ଘରର ସମସ୍ତେ ମରନ୍ତେ । ଇମିତି ଗୁଡ଼ାଏ ଭାବି ଚାଲିଯାଏ କରୁଣାମୟୀ । ଶୀତଦିନ ରାତିରେ ମଧ୍ୟ ତା ମୁହଁରେ ଝାଳ ଦେଖା ଯାଉଥାଏ । ଝାଳଗୁଡ଼ାକ ପୋଛି ପୋଛି ସେ ଭାବି ଚାଲିଥାଏ—ଆଉ କିଏ ନୁହେଁ, ଏହା ସେଇ ବୁଢ଼ୀର କାମ । ପୁଅ ସହିତ ସଲାସୁତୁରା କରି ସେ ଏସବୁ କାମ କରୁଛି । ତା' ଛଡ଼ା ଆଉ କିଏ ନୁହେଁ ।

ସମ୍ପାଶର କଥାଗୁଡ଼ାକ ତା ମନ ଭିତରେ କଙ୍କଡ଼ା ବିଛା ଜାମୁଡ଼ି ଘୂରିଲା ଭଳି ସେ ମନେ କରୁଥାଏ । ସେଇ ଦୁଇଟା ଲୋକ ନିଶ୍ଚୟ ତା ବିଷୟରେ ବହୁତ କଥା ଶୁଣିଛନ୍ତି । ନହେଲେ ତା ମୁହଁ ଆଗରେ ଏପରି ଚେକଠୋକ ଭାବରେ ଏତେ କଡ଼ା କଡ଼ା କଥାଗୁଡ଼ାକ କହିପାରନ୍ତେ ! କିନ୍ତୁ କଣ ସେମାନେ ଶୁଣିଚନ୍ତି, ସେ କଥା ଜାଣିବା ଲାଗି ତା ମନ ଛଟପଟ ହେଉଥାଏ । ତାକୁ ସ୍ୱାମୀ ଓ ଶାଶୁ କେତେ ବୁଝାଇ ନ ଥିଲେ--ଉପୀନବାବୁ ଭଳି ଲୋକ ଜଗତରେ ନାହିଁ, ସେ ଆସିଲେ ସବୁ ଦୁଃଖ ମେଣ୍ଟିଯିବ । ସେମାନଙ୍କ କଥାରେ ବିଶ୍ୱାସ କରି ସେ କାହିଁକି ଯେ ଭିଠି ଲେଖିଲା ଆସିବା ପାଇଁ ! ସେଇ ଅନ୍ଧାର ଭିତରେ ଠିଆହୋଇ ଶାଶୁ ଓ ସ୍ୱାମୀ ଉଭୟଙ୍କୁ ମନେ ମନେ ସଇତାନ, କୁଚକ୍ରୀ ଆଦି ନାନା କଦର୍ଯ୍ୟ ଭାଷାରେ ଗାଳି ଦେବାକୁ ଲାଗିଲା ସେ । କ୍ରୋଧ ଓ ହିଂସାରେ ତା ହୃଦୟଟା ଜର୍ଜରିତ ହୋଇ ଉଠିଥାଏ; କିନ୍ତୁ ଭାଷା ପାଇଲା ନାହିଁ ସେସବୁକୁ ପ୍ରକାଶ କରିବା ପାଇଁ । ସେ ଖାଲି ପ୍ରାର୍ଥନା କରୁଥାଏ—ସେଇ ଅର୍ଦ୍ଧମୃତ ସ୍ୱାମୀଟିର ଆଉ ବଞ୍ଚି ଯେପରି ନ ପାରୁ !

ଦୁଇ ଦିନ ପରେ କିରଣମୟୀ ରୋଷେଇଘରେ ତରକାରୀ ଲାଗି ପରିବା କାଟୁଥିଲା, ଚାକରାଣୀ ଆସି ଖବର ଦେଲା—ମା, ଡାକ୍ତରବାବୁ ଆସିଛନ୍ତି ।

କିରଣ ସଙ୍ଗେ ସଙ୍ଗେ ଉତ୍ତର ଦେଲା—ଯା କହିବୁ, ମା'ଙ୍କର ଦେହ ଭଲ ଅଛି, ଆଉ ଦେଖିବା ଦରକାର ନାହିଁ ।

ଚାକରାଣୀ ଆଶ୍ଚର୍ଯ୍ୟ ହୋଇପଡ଼ିଲା । କିଛି ସମୟ ଚୁପ୍ ରହିବା ପରେ କହିଲା—ସିଏ ତ ସେଇ ଘରେ ବସି ରହିଛନ୍ତି ।

ତା କଥାକୁ ଭଲେ ମନ ନ ଦେଇ କିରଣ କହିଲା—ତାଙ୍କ ଔଷଧ ତ କେହି ଖାଉନାହାନ୍ତି, କାହିଁକି ସେ ଥରକୁ ଥର ଆସୁଚନ୍ତି କେଜାଣି ! ତୁ ତୋ କାମ କର, ସେ ତାଙ୍କ ମନକୁ ଚାଲିଯିବେ ଯେ ।

ଏହି ଡାକ୍ତରଙ୍କ ଔଷଧ ଯେ ବ୍ୟବହାର ହୁଏନା, ଏ କଥାଟା ଚାକରାଣୀ ପାଖରେ ନୂଆ ନୁହେଁ । କିନ୍ତୁ ଡାକ୍ତର ଯେ କାହିଁକି ଏ ଘରକୁ ବାରମ୍ବାର ଆସନ୍ତି, ଏ ପ୍ରଶ୍ନ ସଂପୂର୍ଣ୍ଣ ନୂତନ । ସେ ଆଶ୍ଚର୍ଯ୍ୟ ହୋଇ ଭାବିବାକୁ ଲାଗିଲା, ସେ ତ ସବୁବେଳେ ଘରେ ରହିଆସିଚି, କାଲି ସଂଧ୍ୟା-ବେଳେ ମାତ୍ର ଟିକିଏ ସେ ତାର ଘର ଆଡ଼କୁ ଯାଇଥିଲା । ଯା ଭିତରେ

ଇମିତ୍ତ କ'ଣ ଘଟିଗଲା ଯେ ଡାକ୍ତର ଏ ଘରକୁ ଆସିବା ଅନାବଶ୍ୟକ ହୋଇଉଠିଲା ! ତଥାପି ସାହସ କରି ସେ ପୁଣି ଥରେ କହିଲା—ମୁଁ ଘରିବା କାଟି ଦେଉଛି, ତୁମେ ଥରେ ଯାଅ ଦେଖିଆସିବ ।

କରୁଣାମୟୀ ଖୁବ୍ ରାଗିଉଠି କହିଉଠିଲେ—ତୁ ଗଲୁ, ତୋର ଯାହା ଯାହା କାମ ଅଛି, ଆଗ କର ।

ଏହି ଆକସ୍ମିକ ଓ ନିତାନ୍ତ ଅନାବଶ୍ୟକ ଉଗ୍ରତାରେ ରୁକ୍ମିଣୀ ମନରେ ବଡ଼ ଆଘାତ ଲାଗିଲା । ସେ ଏ ଘରେ ଅତି ପୁରାତନ ନ ହେଲେ ମଧ୍ୟ ଏକାବେଳକେ ନୂତନ ନୁହେଁ । ଯୁଁ ଆଗରୁ ଏହିଭଳି ଅକାରଣ ଖିଟ୍‌ଖିଟିଆ ପରିଚୟ ସେ ପାଇଥିଲା, କିନ୍ତୁ ଏଭଳି ଖିଟ୍‌ଖିଟା ନୁହେଁ । ସେ ଏଥର ରାଗି ନ ଯାଇ ଅଭିଭୂତ ହୋଇପଡ଼ିଲା । ତେଣୁ ସେ କିଛି ସମୟ ଚୁପ୍ ରହିବା ପରେ ଏ ଘରକୁ ଆସି ଡାକ୍ତରବାବୁଙ୍କୁ କହିଦେଇଗଲା—ମା କାମରେ ବ୍ୟସ୍ତ ଅଛନ୍ତି, ଆପଣ ଯାଆନ୍ତୁ ।

ଡାକ୍ତରବାବୁ ଗୋଡ଼ ପାଖରେ ବ୍ୟାଗଟାକୁ ରଖିଦେଇ ସେଇ ଖଟଟା ଉପରେ ଉତ୍କଣ୍ଠିତ ଅବସ୍ଥାରେ ବସି ରହିଥିଲେ । କହିଲେ— ଆଲୋ ଯା ଟିକିଏ କହିଦେବୁ, ମୋ ନିଜର କାମ ଅଛି ।

ରୁକ୍ମିଣୀ କହିଲା—ତେବେ ଯାଉନା ତାଙ୍କ ପାଖକୁ ।

ଡାକ୍ତର ବାବୁ ଅବାକ୍ ହୋଇ କହିଲେ—ତୁ ଯାଆନା, କହିଦେବୁ, ମୋର ବିଶେଷ କାମ ଅଛି ।

—ବାବୁ, ମୁଁ ବହୁତ କହିଛି; ଭାବୁଥିବେ ମୁଁ କହିନି ବୋଲି ! ତୁମେ ନିଜେ ଯାଅ, ମୁଁ ଆଉ କହିପାରିବି ନାହିଁ ।

ଏ ଅବହେଳା ଓ ଲାଞ୍ଛନା ଡାକ୍ତରଙ୍କୁ ଖୁବ୍ ବାଧିଲା; କିନ୍ତୁ ପରକ୍ଷଣରେ ଏକ ଲଜ୍ଜାକର ଦୁର୍ଘଟଣାର ସମ୍ଭାବନା ତାଙ୍କ ମନରେ ଉଦୟ ହେବାମାତ୍ରେ ଘଟଣା କଣ ଜାଣିବା ପାଇଁ ତାଙ୍କ ମନ ବ୍ୟାକୁଳ ହୋଇ-ଉଠିଲା । ଅପେକ୍ଷା କରି ରହିବାରେ କୌଣସି ଆପତ୍ତି ନ ଥିଲା ଏବଂ ସେ ଅପେକ୍ଷା କରି ରହିଲେ; କିନ୍ତୁ କେହି ଆସିଲେ ନାହିଁ । ଠିଆ ହୋଇ ହୋଇ ଶେଷକୁ ଚାଲିଯିବା ଲାଗି ହାତବ୍ୟାଗଟା ଉଠେଇ ମୁହଁ ଉଠେଇ ଉଠେଇ ଦେଖିଲେ, ସାମନାରେ କରୁଣାମୟୀ । ଡାକ୍ତର ଉଦ୍ୟତ ଅଶ୍ରୁମାନଙ୍କୁ ଦମନ କରି କହିଲେ—ଟିକିଏ ଆଡ଼େଇଦିଅ, ମୁଁ ଯାଏ, ବହୁତ ଡେରି ହୋଇ-ଗଲାଣି, ଆହୁରି ବହୁତ ରୋଗୀ ବାଟ ଚାହିଁ ବସିଥିବେ । ମା ଭଲ ଅଛନ୍ତି ତ ?

—ଭଲ ଅନ୍ତନ୍ତ କହ ଗୋଟିଏ ପାଖକୁ ଆଡ଼େଇ ହୋଇ କିରଣମୟୀ ଠିଆହେଲା ।

ଡାକ୍ତରଙ୍କର କିନ୍ତୁ ଟାଦ ଉଠିଲା ନାହିଁ, ଅଥଚ ସେ ପ୍ରଥମେ କହୁଥିଲେ ଟିକିଏ ଆଡ଼େଇହୁଅ, ମୁଁ ଯାଏ ବୋଲି ।

କିରଣମୟୀ ହସି ହସି କହିଲା--ଯାଉନା !

ଡାକ୍ତରବାବୁ ମୁହଁକୁ ଉଠେଇ ଭ୍ରୂକୁଞ୍ଚିତ କରି କହିଲେ— ତୁମେ କ'ଣ ଭାବଚ ମୁଁ ଯାଇପାରିବିନି ?

—ମୁଁ କ'ଣ ପାଗଳ ହୋଇଚି ତୁମେ ଯିବାକୁ ଜାଣେନା ବୋଲି ମନେକରିବି ।

ଏ କଥାରେ ଡାକ୍ତରଙ୍କର ମନେହେଲା, ଗୋଟାଏ ବିଧୁଡ଼ା ମାରି ମୁହଁକୁ ବନ୍ଦ କରିଦିଅନ୍ତେ; କିନ୍ତୁ ସେତକ ତ ସମ୍ଭବ ନୁହେଁ । ଖାଲି କହିଲେ—ତୁମେ ଯାଉନା !

—ମୁଁ ଯିବି କୁଆଡ଼େ ? ଘର ଆମର । ଯିବାକୁ ହେଲେ ତୁମକୁ ହିଁ ଯିବାକୁ ପଡ଼ିବ ।

—ହଉ ଯାଉଚି କହି ଡାକ୍ତରବାବୁ ଉଦ୍ୟତ ହେଲାମାତ୍ରେ କିରଣମୟୀ ଦି ହାତକୁ ଦୁଆର ମୁହଁରେ ପସାରିଦେଇ ବାଟ ଓଗାଳି କହିଲା—ଯାଉଚ ତ କିନ୍ତୁ ମନେ ରଖିଯାଅ, ଇଏ ତୁମର ଶେଷ ଯିବା ।

ତାର କଣ୍ଠସ୍ୱର ଓ ମୁହଁର ବିସ୍ମୟକର ପରିବର୍ତ୍ତନରେ ଡାକ୍ତର ଶଙ୍କିତ ହୋଇପଡ଼ିଲେ । କହିଲେ—ହେଉ ତେବେ ।

କିରଣମୟୀ କହିଲା —ହଁ, ସତ କହୁଚି, ଇଏ ତୁମର ଶେଷ ଯିବା । ଯେବେ ଆସିଛ, ସବୁକଥା ଶୁଣିଯାଅ । ଆଚ୍ଛା, ଏଇଠି ବସ, ମୁଁ ସବୁ କଥା ଖୋଲି କହୁଚି । କହୁ କହୁ ସେ ଡାକ୍ତରବାବୁଙ୍କ ହାତବ୍ୟାଗଟା ନେଇ ଟେବୁଲ ଉପରେ ରଖିଦେଲା । ହାତରେ ଚୌକିକୁ ଦେଖେଇଦେଇ କହିଲା— ରାନ୍ଧିବାକୁ ପଡ଼ିବ, ବେଶୀ ସମୟ ନାହିଁ, ସଂକ୍ଷେପରେ କହୁଚି ଶୁଣ ।

ଠିକ୍ ଏଇ ସମୟରେ ଚାକରାଣୀ ଆସି ଖବର ଦେଲା—ଦି'ଜଣ ବାବୁ ଆସିଛନ୍ତି । ସଙ୍ଗେ ସଙ୍ଗେ ତଳେ ଜୋତା ଶବ୍ଦ ଶୁଣି ବ୍ୟାଧ ଭୟରେ ଭୀତତ୍ରସ୍ତା ହରିଣୀ ଭଳି ଚାକରାଣୀକୁ ଠେଲିଦେଇ ସେ ଘର ଭିତରୁ ଧାଇଁ

ପଳାଇଲା । ଡାକ୍ତର ଓ ଗୃହିଣୀ ଆଶ୍ଚର୍ଯ୍ୟ ହୋଇ ପରସ୍ପରକୁ ଚାହିଁ ରହିଲେ ।

କିଛିକ୍ଷଣ ପରେ ଜୋତା ଶବ୍ଦ ବନ୍ଦ ହୋଇଆସିଲା । ଡାକ୍ତର ଦେଖିଲେ, ଦୁଇ ଜଣ ଅପରିଚିତ ଭଦ୍ରଲୋକ । ଭଦ୍ରଲୋକ ଦୁ'ଜଣ ଦେଖିଲେ, ଆଗରେ ଡାକ୍ତର । ପକେଟରେ ଷ୍ଟେଥସ୍କୋପ । ଉପେନ୍ଦ୍ର ଓ ସତୀଶ ଦେଖିଲେ, ଡାକ୍ତରଙ୍କ ମୁହଁଟା ଶୁଖିଯାଇଚି । ଦୁର୍ଘଟଣାର ଆଶଙ୍କା କରି ପଚାରିଲେ--କିମିତି ଦେଖିଲେ ଡାକ୍ତର ବାବୁ ?

ଡାକ୍ତର ନୀରବ । ମୁହଁଟା ତାଙ୍କର ଆହୁରି କଳା ପଡ଼ିଗଲା ।

ଉପେନ୍ଦ୍ର ଅଧିକ ଶଙ୍କିତ ହୋଇ ପଚାରିଲେ, କିମିତି ଅଛି ହାରାଣ୍‌ଦା ?

ତଥାପି ଡାକ୍ତର ନୀରବ । ବିହ୍ୱଳିତ ଦୃଷ୍ଟିରେ ସେ ଖାଲି ଚାହିଁ ରହିଲେ ।

ଗୃହିଣୀ କହିଲା—ତୁମେ ଯାଅନା ଡାକ୍ତରବାବୁ, ଏଠି ଇମିତି ଠିଆହୋଇ ରହିଲ କାହିଁକି ?

ଡାକ୍ତର ବ୍ୟସ୍ତ ହୋଇ କହିଲେ—ହଁ ଯାଉଚି, ବହୁତ କାମ ପଡ଼ିଚି । ଏତିକି କହି ସେ ତରତର ହୋଇ ଉପେନ୍ଦ୍ର ଓ ସତୀଶ ମଝି ଦେଇ ଚାଲିକୁ ନଇଁ ଆସିଲେ । ସେଇ ମହାଜନଙ୍କ ପଦାଙ୍କ ଅନୁସରଣ କରି ଗୃହିଣୀଟି କୁଆଡ଼େ ଯେ ମିଳେଇଗଲା, ତାହା ଜଣାଗଲା ନାହିଁ ।

କିଛି ସମୟ ପରେ ସତୀଶ କହିଲା— ଉପୀନଦା, ହାରାଣ୍‌ବାବୁଙ୍କ ମା କ'ଣ ପାଗଳ ?

ଉପେନ୍ଦ୍ର କହିଲେ—ସେ ହାରାଣ୍‌ଦାର ମା ନୁହେଁ, ଆଉ କିଏ— ବୋଧହୁଏ ଘରର ଗୃହିଣୀ ! କିନ୍ତୁ ମୁଁ ଭାବୁଚି, ଡାକ୍ତର ଏଭଳି ଭାବରେ ଚାଲିଗଲେ କାହିଁକି ?

ସତୀଶ କହିଲା—ଠିକ୍ ଚୋର ଭଳି ଧରାପଡ଼ିବା ଭୟରେ ଡାକ୍ତରଟା ପଳେଇଗଲା !

ଉପେନ୍ଦ୍ର ଅନ୍ୟମନସ୍କ ଭାବରେ କହିଲେ— ପ୍ରାୟ ! କାହାରି ତ ଦେଖା ନାହିଁ । ଘରଟା ହାରାଣ୍‌ଦାରଟିକି ?

ସତୀଶ କହିଲା—ହଁ, ଚାଲ ଯିବା !

--କିନ୍ତୁ ହଠାତ୍ ଭିତରକୁ ଯିବା ଲାଗି ସାହସ ହେଉନି । କ'ଣ ଗୋଟାଏ କିଛି ଘଟିଛି ନିଶ୍ଚୟ ।

—ତା'ହେଲେ ତ କାନ୍ଦ ରଡ଼ି ଶୁଣାଯାଆନ୍ତା !

ଏହି ସମୟରେ ଏ ପାଖରେ କରୁଣାମୟୀ ଆସୁଥିବାର ଦେଖାଗଲା । ମନେହେଲା, ଏଇକ୍ଷଣି ସେ କାନ୍ଦୁଥିଲା, ଆଖିକୁ ପୋଛି ଆସିଛି । କାଲି ଦୀପ ଆଲୁଅରେ ଯେଉଁ ମୁହଁଟି ସୁନ୍ଦର ଦେଖାଯାଉଥିଲା, ଆଜି ଦିନବେଳେ ସୂର୍ଯ୍ୟାଲୋକରେ ସ୍ପଷ୍ଟ ବୁଝାଗଲା, ଏଭଳି ସୌନ୍ଦର୍ଯ୍ୟ ଆଉ କୌଣସି ଦିନ ଆଖିରେ ପଡ଼ି ନାହିଁ । ଜୀବନରେ ନୁହେଁ କି ଛବିରେ ନୁହେଁ ।

କରୁଣାମୟୀ କହିଲା—ଆଜି ଆପଣମାନେ ଆସିବେ ବୋଲି ପ୍ରସ୍ତୁତ ନ ଥିଲୁ । ଭାବିଥିଲି, ଆସିବୁ ବୋଲି କହିଗଲେ ଯେ ସତେ ସମସ୍ତେ ଆସିଯାଆନ୍ତି ତାହା ନୁହେଁ । ସନ୍ତୋଷ ମୁହଁକୁ ଚାହିଁ କହିଲା—ସନ୍ତୋଷ ତୁମେ !

ଏଥର ସନ୍ତୋଷ ମୁହଁକୁ ଉଠେଇଲା ।

ଉପେନ୍ଦ୍ର ପଚାରିଲା—ହାରାନ୍‌ଦା କେମିତି ଅଛନ୍ତି ?

—ସେମିତି, ଆସନ୍ତୁ ଦେଖିଆସିବେ ।

ହାରାନଙ୍କ ଘରେ ତାଙ୍କ ମା ଅଘୋରମୟୀ ଶେଯ ପାଖରେ ବସି ରହିଥିଲେ । ଉପେନ୍ଦ୍ର ନମସ୍କାର କରିବାମାତ୍ରେ ସେ ବଡ଼ ପାଟିରେ କାନ୍ଦି ଉଠିଲେ ।

ଉପେନ୍ଦ୍ର ଆଶ୍ୱାସନା ଦେଇ କହିଲେ—ତୁନି ହୁଅ ମା !

ଉପେନ୍ଦ୍ର ଲଜ୍ଜା ଓ ଦୁଃଖରେ ଖଟର ଗୋଟିଏ ପାଖରେ ବସି ରହିଲେ ।

ସନ୍ତୋଷ ମୁହଁକୁ ଯଥାସାଧ୍ୟ ଭାରି କରି ସେଇ କାଠ ସିନ୍ଦୁକଟା ଉପରେ ଯାଇ ବସିଲା ।

କରୁଣାମୟୀ ଗଲାବେଳେ ସନ୍ତୋଷ ପ୍ରତି ଏଭଳି ଏକ କଟାକ୍ଷ କରିଗଲା, ଯାହାର ଅର୍ଥ ହେଉଛି, ତୁମେ ଯାହା କରୁଛ ତାହା ଠିକ୍ ନୁହେଁ ।

## ପନ୍ଦର

ସନ୍ତୋଷ ସ୍ଥିର କଲା, ନା ସେ ଡାକ୍ତରଖାନା ଛାଡ଼ିବ । ତେଣୁ ତା ଆରଦିନ ସନ୍ଧ୍ୟାବେଳକୁ କାହାକୁ କିଛି ନ କହି ବେହାରୀକୁ ସାଙ୍ଗରେ ଧରି ସେ ବସାରେ ଆସି ପହଞ୍ଚିଲା । ଘରଟା ସେତେବେଳେ ଖାଲି ପଡ଼ିଥିଲା । ଘରବାଲା ସହିତ ଛଅ ମାସ ଲାଗି ଚୁକ୍ତି ହେଲା ସେଠାରେ ରହିବାକୁ । ତା ପରେ ହିନ୍ଦୁ ଆଶ୍ରମକୁ ଯାଇ ଗୋଟିଏ ପୂଜାରୀ ଯୋଗାଡ଼ କଲା ସେ । ସନ୍ତୋଷ କହିଲା—କଣ ରେ ବେହାରୀ, କାଲିଠୁ ତ ଚାଲିଆସିବା ଆଉ କ'ଣ ?

ବେହାରୀ କହିଲା – ବେଶ୍ ଭଲ ହେବ ।

ବାଟ ଚାଲୁ ଚାଲୁ ସନ୍ତୋଷ କହିଲା— ସବୁ କଲେ ସିନା, କାମଟା ଭଲ ହେଲା ନାହିଁ । ସେ ଯାହାହେଉ, ସେ ଆମର ଠିକଣା ପାଇବ । ତା ଛଡ଼ା ଏକରକମ କହିବାକୁ ଗଲେ ଆମରି ଲାଗି ହିଁ ତାର ସେ ବସାର କାମଟି ଗଲା ସିନା !

ବେହାରୀ କିନ୍ତୁ କିଛି ବୁଝିପାରିଲା ନାହିଁ । ସେ ଭାବିଲା, ବାବୁ କାହା କଥା କହୁଥିବେ, ସେ କାହିଁକି ମଝିରେ ବାଧା ଦେବ ? ତେଣୁ ସେ ଚୁପ୍ ରହିଲା ।

ସନ୍ତୋଷ କିନ୍ତୁ ସେମିତି କହି ଚାଲିଥାଏ—ଯିଏ କିଏ ହେଉନା କାହିଁକି, ପଥର ଭିକାରୀ ହେଲେ ମଧ୍ୟ ଦୁଃଖରେ ପଡ଼ିଥିଲେ ତାକୁ ଆଖିରେ ଟିକିଏ ଦେଖିବା କଥା, ନଚେତ୍ ମଣିଷ ଜନ୍ମ ବୃଥା । କିନ୍ତୁ ମୁଁ, ମୁଁ ତା ଘରକୁ କେବେ ଯିବିନି । ଏଭଳି କି ତା ସାହି ଗଳି ସୁଦ୍ଧା ମାଡ଼ିବିନି । କିନ୍ତୁ

ବେହାରୀ, ଥରେ ମାତ୍ର ଯାଇ ଦେଖିଆସିବୁ କି ସେ କଷ୍ଟରେ ଚଳୁଚି କି ନା ! କଷ୍ଟରେ ତ ନିଶ୍ଚୟ ପଡ଼ିଛି, ସେ କଥା ମୁଁ ବେଶ୍ ଭାବିପାରୁଚି; ତେଣୁ କୌଣସିମତେ କିଛି ଦେଲେ ଦେଇଆସିବା ଉଚିତ ମନେକରୁଚି ।

ବେହାରୀ ସେମିତି ଚୂପ୍‌ଚାପ୍ ପଚେ ପଛେ ଚାଲିଥାଏ ।

ସତୀଶ ସେମିତି କହିଚାଲିଚି--ଦୁଃଖ କଷ୍ଟରେ ପଡ଼ିଲେ ବି ସେ ଯେମିତିକା ଲୋକ, କେବେହେଲେ ଆସି କିଛି କହିବନି । କିନ୍ତୁ ତୋ ପାଖରେ କିଛିହେଲେ ସେ ଲୁଚେଇବନି ବୋଲି ମୋର ଦୃଢ଼ ଧାରଣା । ବେହାରୀ, ତୋ ମତ କଣ ?

ବେହାରୀ କିନ୍ତୁ ପୂର୍ବପରି ଚୂପ୍ ।

ସାବିତ୍ରୀର ଘର ଗଳି ପାଖରେ ଆସି ସତୀଶ ସେତେବେଳକୁ ପହଞ୍ଚି ଯାଇଥାଏ । କହିଲା—ବେହାରୀ, ତୁ ଯା କ, ବେଶୀ କିନ୍ତୁ ଡେରି କରିବୁନି ।

ବେହାରୀ ଗଳି ଭିତରକୁ ଗଲା । ସତୀଶ ସେଇଠି ଠିଆହୋଇ ଟହଲ ମାରିବାକୁ ଲାଗିଲା । ପାଦେ ହେଲେ ଆଗେଇବାକୁ ସେ ସାହସ କରିପାରିଲାନି ।

ପ୍ରାୟ ଦଶ ମିନିଟ ବାଦ ବେହାରୀ ଫେରିଆସି କହିଲା—ନାହିଁ ତ ।

ସତୀଶ ବ୍ୟଗ୍ର ହୋଇ ପଚାରିଲା — କେତେବେଳେ ଫେରିବ ?

ବେହାରୀ କହିଲା—ନା, ସେ ଆଉ ଆସିବନି । ଦି'ମାସ ହେବ ଗଲାଣି, ଦିନେହେଲେ ଘରକୁ ଆସିନି ।

ସତୀଶ ଲାଇଟଖମ୍ବଟା ଦିହରେ ଭରାଦେଇ ଖିଷଣ କଣ୍ଠରେ କହିଲା—ମିଛକଥା । ତତେ କିଏ ଠକି ଦେଇଚି ।

ବେହାରୀ ଦୃଢ଼ଭାବରେ ମୁଣ୍ଡକୁ ହଲେଇ କହିଲା-- ନାଁ ବାବୁ, କେହି ଠକିନି । ସତେ ସେ ଆଉ ଆସିନି । ପ୍ରକୃତରେ ସେ ନିଜ ଗାଁକୁ ଚାଲିଯାଇଚି ।

--ତା ଘରର ଜିନିଷ ?

---ସେମିତି ପଡ଼ିରହିଚି । ସେ ତ ସେମିତି ଜିନିଷ ନୁହେଁ, ମାଯ୍ନା ହେବ ।

ସତ୍ତାଶ ରାଗ ରାଗ ସ୍ୱରରେ କହିଲା—ଇମିତ ଚାଲିଗଲେ କ'ଣ ସେ ବଡ଼ଲୋକ ହୋଇଯିବ ନା କ'ଣ ? ତୁ ନହାତ ବୋକାଟାଏ । ବୁଝିକରି ଏକାବେଳକେ ଚାଲିଆସିଲା, କଣ ନା ସେ ଆଉ ଆସିବନି । ଏ କଥା କ'ଣ କେବେ ହୋଇପାରେ ? ଗୋଟେ ଲୋକ ଘରୁ ଏକାବେଳକେ ଚାଲିଗଲା । କେହି ତାର ଖୋଜଖବର ରଖି ନାହାନ୍ତି ! ମୁଁ ପୁଲିସକୁ ଜଣାଇବ ।

ବେହାରୀ ମୌନଭାବରେ ନତମୁଖରେ ଛିଡ଼ାହୋଇ ରହିଥାଏ ।

ସତ୍ତାଶ କହିଲା—ତୁ ମୋକ୍ଷଦାକୁ ପଚାରିଚୁ ? ସେ କ'ଣ କହିଲା ଯେ ସେ କିଛି ଜାଣିନି ବୋଲି ! ମୋର ତ କାହିଁକି କେଜାଣି ତଳେ ହେଲେ ବିଶ୍ୱାସ ହେଉନି । ସେ ନିଶ୍ଚୟ ଜାଣେ । ମୁଁ ନିଜେ ଯାଉଚି ।

ବେହାରୀ ବ୍ୟସ୍ତହୋଇ କହିଲା— ଆପଣ ଯାଆନ୍ତୁନି ବାବୁ ! ମୋ ସାନକୁହା ରଖନ୍ତୁ ।

—କାହିଁକି, କାହିଁକି ଯିବିନି ? ସେମାନେ କାହିଁକି ଲୁଚଉଚନ୍ତି ? ମୁଁ କ'ଣ ତାର ସର୍ବନାଶ କରିବାକୁ ଆସିଚି ! ମୁଁ ତତେ କହିରଖୁଚି ବେହାରୀ, ମୁଁ ମୋକ୍ଷଦା ପାଖକୁ ଯିବ, ଆଉ ତାଠୁ ଜାଣିଆସିବ ସେ କୁଆଡ଼େ ଯାଇଚି ।

ବେହାରୀ କହିଲା—ତା ମାଉସୀର କିଛି ହେଲେ ଦୋଷ ନାହିଁ ବାବୁ ! ସାବିତ୍ରୀ ନିଜ ଇଚ୍ଛାରେ ଯାଇଚି ।

ବେହାରୀ ମୁଣ୍ଡକୁ ହଲାଇ କହିଲା—ନା, କିନ୍ତୁ ସେ ଏଇ ସହରରେ ହିଁ ଅଛି ।

—କିନ୍ତୁ, କେଉଁଠି ? ଗଧଙ୍କ ଭଳି ହାଁ ଭରି ରହନା ବେହାରୀ ! ପ୍ରକୃତ ଘଟଣା କ'ଣ କହ ।

ବେହାରୀ କିଛି ସମୟ ସ୍ଥିର ରହି କହିଲା— ଆପଣଙ୍କ ମନରେ କଷ୍ଟ ହେବ, ସେଇଥିପାଇଁ···ନ ହେଲେ ମୁଁ ଖାଲି ନୁହେଁ, ସମସ୍ତେ ଜାଣନ୍ତି ।

ସତ୍ତାଶ ଅଧୀର ହୋଇଉଠିଲା । କହିଲା--କ'ଣ ଜାଣିଚୁ କହନା !

ବେହାରୀ ପୁଣି ଚୁପ୍ ରହିଲା ।

ସତ୍ତାଶ ପାଟିକରି କହିଲା—ତୋ ଗୋଡ଼ତଳେ ପଡ଼ୁଚି ବେହାରୀ, ଅଭେ ଭଲା କହ !

ବେହାରା ସଙ୍ଗେ ସଙ୍ଗେ ସତୀଶ ଗୋଡ଼ତଳେ ଲମ୍ବଦଣ୍ଡା ହୋଇ ଶୋଇପଡ଼ି ଯୋଡ଼ା ତଳ ଧୂଳିକୁ ମୁଣ୍ଡରେ ଲଗେଇ କାନ୍ଦି କାନ୍ଦି କହିଲା— ବାବୁ, ମତେ ନରକରେ ଘାଣ୍ଟିଲ ପିନା ! ଟିକିଏ ସିଆଡ଼କୁ ଚାଲନ୍ତୁ, କହୁଚି ।

ସତୀଶ ସାମନାରେ ଠିଆହୋଇ କହିଲା— ସାବିତ୍ରୀ ମାଉସୀର ଧାରଣା, ସାବିତ୍ରୀ ଆପଣଙ୍କ ପାଖରେ ଅଛି । କିନ୍ତୁ ମୁଁ ଜାଣେ, ତାହା ନୁହେଁ ।

ସତୀଶ ଅସ୍ଥିର ହୋଇ କହିଲା—ତୁ ତ ଭାରି ପଣ୍ଡିତ ! ସେ କଥା ମଧ୍ୟ ମୁଁ ଜାଣେ । ଆଉ କ'ଣ ଜାଣିଚୁ କହ ।

—ଟିକିଏ ଅପେକ୍ଷା କରନ୍ତୁ କହୁଚି । ଟିକିଏ ଢୋକ ଗିଳି କହିଲା— ମୋର କିନ୍ତୁ ଆଶା ହେଉଚି······ ।

—କି ଆଶା ?

ବେହାରା ମୁମୂର୍ଷୁ କଣ୍ଠରେ କହିଲା— ସେ ଏଇଠି ଅଛି, ଏଇ ବିପିନ ବାବୁଙ୍କ ପାଖରେ ।

—କୋଉ ବାବୁ ? ଆମର ବିପିନ ?

—ହଁ ବାବୁ, ସେଇଠି । ସେଠିକି କେବେ ଯିବନି, ପୁଣି ଗାଧୋଇ-ବାକୁ ପଡ଼ିବ । ରାଇଜଯାକର ଲୋକ ସେଇଠି ।

ସତୀଶ ସେ କଥା କାନକୁ ନେଲାନି । ଏପଟେ ଭଙ୍ଗା ପାଚେରୀ ଉପରେ ପିଠିକୁ ଭରା ଦେଇ ବସିପଡ଼ିଲା । ତାପରେ କହିଲା--ତେବେ ତାର ମାଉସୀ ସାବିତ୍ରୀ ମୋ ପାଖରେ ଅଛି ବୋଲି କିମିତି ବା ମନେକରୁଚି ?

ବେହାରା କହିଲା--ସାବିତ୍ରୀ ଯୋଉ ଦିନ ବିପିନ ବାବୁଙ୍କୁ ଅପମାନ ଦେଇ ବିଦାୟ କରିଦେଲା, ସେଦିନ ସେ ସ୍ପଷ୍ଟ କରି କହିଥିଲା ଯେ ସେ ସତୀଶ ବାବୁଙ୍କ ଛଡ଼ା କାହାରି ପାଖକୁ ଯିବନି । ପଡ଼ଶା ଅଡ଼ଶା ଲୋକେ ଠିଆହୋଇ ସେଇ ଝଗଡ଼ା ଶୁଣୁଥିଲେ ।

ସତୀଶ ଠିଆ ହୋଇପଡ଼ିଲା । ନିଜକୁ ଜବରଦସ୍ତି ପ୍ରକୃତିସ୍ଥ କରି ପଚାରିଲା--ତେବେ ତୁ କେମିତି ଜାଣିଲୁ ସେ ବିପିନ ବାବୁଙ୍କ ପାଖକୁ ହିଁ ଯାଇଚି ବୋଲି ?

ବେହାରା ନୀରବ ।

ସତୀଶ କହିଲା--କହନା !

ବେହାରା କିଛି ନ କହି ପୁଣି ଚୁପ୍ ରହିଲା । ତା ମନରେ ସେଇ-କଥା ଉଙ୍କିମାରିଲା, ସାବିତ୍ରୀ ପାଖରେ ସେ ଶପଥ କରିଚି କାହାରିକି କହିବନି ବୋଲି । ଶେଷରେ କିନ୍ତୁ କିନ୍ତୁ କରି ପକେଇଲା—ମୁଁ ନିଜେ ଆଖିରେ ଦେଖିଚି ।

ସତୀଶ ନୀରବରେ ପୁଣି ଚାଲିଥାଏ ।

ବେହାରା କହିଲା--ଆମେ ଯେଉଁଦିନ ବସା ବଦଳ କଲେ, ତାର ପରଦିନ ଦିପହରେ ମୁଁ ଏଠିକି ଆସିଥିଲି । ସେତେବେଳେ ବିପିନ ବାବୁ ସାବିତ୍ରୀର ବିଛଣାରେ ଘୁମଉଥିଲେ ।

ସତୀଶ ରାଗି ଏକାବେଳକେ ତମ । କହିଲା--ବେହାରା, ତୁ ମିଛାମିଛି ମିଛ କହୁଚୁ ।

ବେହାରା ଭାଙ୍ଗି ନ ପଡ଼ି କହିଲା--ନା ବାବୁ, ଆପଣ ବିଶ୍ୱାସ କରନ୍ତୁ ବା ନ କରନ୍ତୁ, ମୁଁ ଯାହା କହୁଚି, ସେଥିରେ ବିନ୍ଦୁଏ ହେଲେ ମିଛ ନାହିଁ ।

--ସାବିତ୍ରୀ ସେତେବେଳେ କେଉଁଠି ଥିଲା ?

--ସାବିତ୍ରୀ ସେଇ ଘର ଭିତରେ ଥିଲା । ବାହାରକୁ ଆସି ମତେ ପିଢ଼ି ଦେଲା ବସିବାକୁ । ମତେ ପଚାରିଥିଲା, ବାବୁ ମୋ ଉପରେ ରାଗିଚନ୍ତି କି; ଆମେ ବସା ବଦଳାଇଲୁ କାହିଁକି ଇତ୍ୟାଦି ।

--ତା ପରେ ?

--ମୁଁ ରାଗି ଚାଲିଆସିଲି । ସେଇଦିନଠୁ ସେ ବିପିନବାବୁଙ୍କ ସହିତ ଚାଲିଯାଇଚି ।

—ଏତେ ଦିନ ଧରି ତୁ ମତେ ନ କହିଲୁ କମିତି ?

ବେହାରା ଚୁପ୍ ।

—ତୁ ନିଜ ଆଖିରେ ଦେଖିଚୁ ନା କାହାଠୁ ଶୁଣିଚୁ ?

—ନାଁ ବାବୁ, ନିଜ ଆଖିରେ ଦେଖିଚି । ନିରେଖି କରି ଦେଖିଚି ।

—ତୁ ମୋର ପାଦ ଛୁଇଁ କହିଲୁ, ସତେ ତୁ ଦେଖିଚୁ ? ବ୍ରାହ୍ମଣ ପାଦରେ ହାତ ଦେଉଚୁ ମନେରଖ !

ବେହାରା ସଙ୍ଗେ ସଙ୍ଗେ ସତୀଶର ପାଦ ଛୁଇଁ କହିଲା—ସେ କଥା ମୋର ଦିନରାତି ମନେରହିଚି ବାବୁ !

—ଆଚ୍ଛା ତୁ ବସାକୁ ଯା, ଉର୍ମୀନଦାକୁ କହିଦେବୁ, ମୁଁ ଭବାନୀପୁର ଗଲି, ଆଉ ଫେରିବିନି ।

ବେହାରୀ କାନ୍ଦି ପକେଇଲା ।

ସତୀଶ କହିଲା—ଇଏ କଣ କରେ ବିହାରୀ, ତୁ କାନ୍ଦୁଚୁ !

ବେହାରୀ ଆଖି ପୋଛୁ ପୋଛୁ କହିଲା—ବାବୁ, ମୁଁ ଆପଣଙ୍କ ପୁଅ ଭଳି । ମୁଁ ମଧ୍ୟ ଆପଣଙ୍କ ସାଙ୍ଗରେ ଯିବି ।

—କାହିଁକି ?

ବେହାରୀ କହିଲା—ବୁଢ଼ା ହୋଇଯାଇଚି ସତ; କିନ୍ତୁ ଜାତିରେ ଗଉଡ଼ । ଖଣ୍ଡିଏ ପଘାରେ ଶହ ଶହ ଗାଈ ଗୋରୁଙ୍କୁ ବାନ୍ଧି ରଖିବା ଭଳି ଶକ୍ତି ଅଛି ମୋର । ଆମେ ଦଙ୍ଗା କରି ଜାଣୁ, ଦରକାର ପଡ଼ିଲେ ମରି ମଧ୍ୟ ଜାଣୁ ।

ସତୀଶ କହିଲା—ମୁଁ କ'ଣ କଳି ଲଗେଇବାକୁ ଯାଉଚି ? ମୂର୍ଖ··· କହି କହି ସେ ଚାଲିଗଲା ।

ବେହାରୀ ବୁଝିଲା, ଯାହା ହେଉ ବାବୁ ତା କଥାଟା ଯେ ମିଛ ନୁହେଁ ବୋଲି ବିଶ୍ୱାସ କରିଛନ୍ତି । ସେତିକି ତାର ଦୁଃଖ ଥିଲା, ସେତିକି ତୁଟିଲା । ଆଖିକି ପୋଛି ପୋଛି ସେ ଚାଲିଲା ।

ସତୀଶ ଇଆଡ଼େ ଦ୍ରୁତ ପାଦରେ ମଇଦାନ ଆଡ଼କୁ ଚାଲିଲା । କୁଆଡ଼େ ଯିବ ପ୍ରଥମେ ସ୍ଥିର କରିପାରିଲାନି; କିନ୍ତୁ କେଉଁଠିକି ଯେ ତାକୁ ଶୀଘ୍ର ଯିବାକୁ ପଡ଼ିବ, ଏକଥା ମନରେ ଥାଏ ।

ମଇଦାନର ଗୋଟିଏ ନିଭୃତ ଅଂଶରେ ଗଛତଳେ ଗୋଟିଏ ବେଞ୍ଚ୍ ପଡ଼ିଥାଏ । ସତୀଶ ତାରି ଉପରେ ଯାଇ ବସିଲା । ବେଶ୍ ନିର୍ଜନ ଜାଗା—ବଡ଼ ସ୍ୱସ୍ତିବୋଧ କଲା ସେ । ଚାରିଆଡ଼ ଅନ୍ଧାର, ତାରି ଭିତରେ ସତୀଶ ଭାବି ଚାଲିଥାଏ, ତାହା ହେଲେ କ'ଣ କରାଯାଇପାରେ ? ଏହି ପ୍ରଶ୍ନଟା ତା କାନ୍ ପାଖରେ ଯେମିତି ମନେହେଲା ନିରର୍ଥକ ପ୍ରଳାପ ଭଳି ଘୂରି ଚାଲିଚି । ଶେଷରେ ଉତ୍ତର ମିଳିଲା—ନା, କିଛି କରିବାକୁ ପଡ଼ିବ ।

ପୁଣି ମନରେ ସେଇ ପ୍ରଶ୍ନ—ସାବିତ୍ରୀ ଇମିତି କଲା କିମିତି ? କାହିଁକି ?

ଉତ୍ତର ମିଳିଲା—ଇମିତି କଷ୍ଟ କର ନାହିଁ, ଯେଉଁଥିରେ ତାକୁ ନୂଆ କରି ଦୋଷ ଦେଇହେବ ।

ପୁଣି ପ୍ରଶ୍ନ—ଏତେ ବଡ଼ ଅବିଶ୍ୱାସ କଲା ଭଳି ଏଡ଼େ ଖରାପ କାମ ସେ କମିତି ବା କଲା ?

ଉତ୍ତର—ଆଗେ କେଉଁ ବିଶ୍ୱାସ ବା ତୁମକୁ ସେ ଦେଇଥିଲା, ସେ କଥା ଆଗେ କୁହ ।

ସପ୍ତର୍ଷି କଷ୍ଟ ହେଲେ କହିଲାନି । ପ୍ରକୃତରେ ସେ ତ କୌଣସି ମିଥ୍ୟା ଆଶା ଦେଇ ନାହିଁ, ଧନେ ହେଲେ ତ ଛଳନା କରି ନାହିଁ; ବରଂ ଥରକୁ ଥର ସତର୍କ କରେଇ ଦେଇଛି । ଶୁଭ କାମନା କରିଛି, ଭଉଣୀଠୁ ବଳି ସେ ଅଧିକ ସ୍ନେହ କରିଛି । ସେ ଦିନର ସବୁ କଥା ସ୍ମରଣ କଲା ସେ । ସେଦିନ କେଡ଼େ ନିଷ୍ଠୁର ହୋଇ ସେ ତାକୁ ଘରୁ ବାହାର କରିଦେଇ ନ ଥିଲା ! କିଏ ଏଭଳି କରିପାରନ୍ତା ? କିଏ ବା ନିଜର ଲାଗି କଣ୍ଟା ପୋତି ତାକୁ ଅକ୍ଷତ ରଖିପାରିଥାଆନ୍ତା ? ସପ୍ତର୍ଷିର ଆଖିପତା ଓଦା ହୋଇ-ଆସିଲା; କିନ୍ତୁ ଏ ସଂଶୟ ତାର ମନରୁ କୌଣସିମତେ ଘୁଞ୍ଚିଲା ନାହିଁ । ସେ ମନେ ମନେ ଭାବିଲା, କେଉଁଠି ନିଶ୍ଚୟ କିଛି ଭୁଲ ରହିଯାଇଛି ।

ପୁଣି ପ୍ରଶ୍ନ—କିନ୍ତୁ ତାକୁ ସେ ଭଲ ପାଇଥିଲା ?

ଉତ୍ତର—କାହିଁକି ? ଜାଣି ଶୁଣି ସେ ପଙ୍କ ଭିତରକୁ ପଶିଲା କାହିଁକି ?

ପ୍ରଶ୍ନ—ସେକଥା ସେ ଜାଣେନା । ପଦ୍ମ ତୋଳିବାକୁ ଗଲେ ମଧ ଦେହରେ ପଙ୍କ ଲାଗେ ।

ଉତ୍ତର—ଏଇଟା ପୁରାତନ ଉପମା, ତାର କିଛି ଅର୍ଥ ନାହିଁ । ମଣିଷ ଘରକୁ ଆସିବା ବେଳେ ଗୋଡ଼ରୁ ପଙ୍କ ଧୋଇ ସଜ ଫୁଟିଲା ପଦ୍ମକୁ କେବଳ ଧରି ଆସିଥାଏ ।

ତାପରେ ? ତାପରେ କିଛି ସମୟ ପର୍ଯ୍ୟନ୍ତ ସେ ସ୍ତବ୍ଧ ହୋଇ ନକ୍ଷତ୍ରଖଚିତ କଳା ଆକାଶ ଆଡ଼କୁ ଚାହିଁ ହଠାତ୍ କହିଉଠିଲା—ମୁଁ ବି ତାର ଆଶା ବିଲକୁଲ ଛାଡ଼ି ଦେଇଥିଲି । ମୁଁ ତାକୁ ପାଇବାକୁ ଚାହେଁନା; କିନ୍ତୁ ଏଭଳି ସେ ମତେ ଅପମାନିତ କଲା କାହିଁକି ? ତାର ଅହଂକାର ଲୋଭ ଆଦୌ ନ ଥିଲା । ବପିନ ଭଳି ଜଣେ ଅନାଗ୍ରହୀକୁ ମଦ୍ୟପ ସେ ମନେ

ମନେ ଯେ ଭଲ ପାଉଥିଲା, ଏକଥା କାହିଁକି ଆଦୌ ବିଶ୍ୱାସ ହେଉନି । ତେବେ ?

ଗଙ୍ଗାର ଶୀତଳ ପବନ । ଦେହ ଶୀତେଇ ଆସିଲା । ସେ କ୍ରମଶଃ ଶୋଉ ଶୋଉ ଶୋଇପଡ଼ିଲା । ଆଖି ଆଗରେ ନାଚଉଠିଲା ସେଇ ସାବିତ୍ରୀର ଉଜ୍ଜ୍ୱଳ ମୁଖ । ପତିତାର କୌଣସି କାଳିମା ସେ ମୁହଁରେ ନାହିଁ । ଗର୍ବଦୀପ୍ତ ସ୍ଥିରବୁଦ୍ଧି, ସ୍ନେହସ୍ନିଗ୍ଧ ପରିଣତ ଯୌବନର ଭାରରେ ଗମ୍ଭୀର ଅଥଚ ରସରେ, ଲୀଳାରେ ଚଞ୍ଚଳ—ସେଇ ମୁହଁ, ସେଇ ହସ, ସେଇ ଦୃଷ୍ଟି, ସେଇ ସଂଯତ ପରିହାସ, ସର୍ବୋପରି ତାର ସେଇ ଅକୃତ୍ରିମ ସେବା । ଭସ୍ମାଚ୍ଛାଦିତ ବହ୍ନି ଭଳି ତାର ଆବରଣଟାକୁ ନେଇ ଖେଳ ଖେଳିବାକୁ ଗଲାବେଳେ ଯେଉଁ ଅଗ୍ନି ବାହାରିପଡ଼ିଚି, ତାର ଦାହରୁ କିଭଳି ଏବଂ କେଉଁ ଉପାୟରେ ଖସିଯାଇ ସେ ନିଷ୍କୃତି ଲାଭ କରିବ ? ଏ ଅଶ୍ରୁ ସେ ଦମନ କରିବାକୁ ଚାହିଁଲାନି କି ସେ ଅଶ୍ରୁକୁ ସେ ପୋଛିଦେବାକୁ ଚାହିଁଲାନି । ଅଶ୍ରୁ ଯେ ଏତେ ମଧୁର, ଆଖିରେ ଯେ ଏତେ ରସ, ଆଜି ସେ ତାର ପରମ ଦୁଃଖ ମଧ୍ୟରେ ଏଇ ପ୍ରଥମ ଉପଲବ୍ଧି କରି ସୁଖୀ ହେଲା ଏବଂ ଯାହାକୁ ସ୍ମରଣ କରି ସେ ତା ଜୀବନରେ ସୁଖର ପ୍ରଥମ ଆସ୍ୱାଦ ଲାଭ କଲା, ତାରି ଉଦ୍ଦେଶ୍ୟରେ ଦୁଇ ହାତ ମୁକ୍ତ କରି ନମସ୍କାର ଜଣାଇଲା ।

ସମ୍ପ୍ରତି ଯାହା ହେଉ ପଛେ, ଭଗବାନ ତ ଅଛନ୍ତି, ତାଙ୍କୁ ଫାଙ୍କି ଦେବା ସହଜ ନୁହେଁ; ଛୋଟ ବଡ଼ ସମସ୍ତଙ୍କୁ ତାଙ୍କରି ପାଖରେ ଦିନେ ନା ଦିନେ ଜବାବ ଦେବାକୁ ହିଁ ପଡ଼ିବ । ହାତ ଯୋଡ଼ି କହିଲା—ଭଗବାନ, କାହା ହାତ ଦେଇ କାହାକୁ ଯେ ତୁମେ କେତେବେଳେ ପଠେଇଦିଅ, ସେକଥା କେହି କହିପାରିବେନି । ଆଜି ତୁମରି ହୁକୁମରେ ସାବିତ୍ରୀ ଦାତା, ମୁଁ ଭିକ୍ଷୁକ । ସେ ଯାହା ହେଉ, ଭଲ ହେଉ ବା ମନ୍ଦ ହେଉ, ସେ ବିଚାର ଆଉ ସିଏ କରୁ ପଛେ, ମୁଁ ଯେମିତି ନ କରେ । ମୋର ବୁକୁ ଭିତରର ସମସ୍ତ ଜ୍ୱାଳା, ସବୁ ବିଦ୍ୱେଷ ପୋଛିପକାଅ—ତା ବିରୁଦ୍ଧରେ ମୁଁ ଯେମିତି କୃତଘ୍ନ ନ ହୁଏ ।

ଇଆଡ଼େ ଜ୍ୟୋତିଷବାବୁଙ୍କ ଘରେ ଠିକ ସନ୍ଧ୍ୟା ପରେ ପରେ ବସିଥାନ୍ତି ସରୋଜିନୀ, ଜ୍ୟୋତିଷ, ଉପେନ୍ଦ୍ର, ଆଉ ଜଣେ ଦାଢ଼ୀଓ୍ୱାଲା

ଲୋକ ଶଶାଙ୍କମୋହନ । ସଦ୍ୟ ବିଲାତଫେରନ୍ତା ବାବୁ—ସାହେବ । ଆସୁ ଆସୁ ମନେ ହେଉଥିଲା, ସେ ନିମିତ୍ତ ସରୋଜନୀ ପ୍ରତି ଏକାବେଳକେ ଆକୃଷ୍ଟ । ଏକଥା ସେ ପ୍ରାଣପଣେ ବ୍ୟକ୍ତ କରିବାକୁ ବି ଉଦ୍ୟମ କରୁଛନ୍ତି, ଏକଥା ସମସ୍ତେ ଜାଣି ପାରୁଥିଲେ । କିନ୍ତୁ ସେ ଉଦ୍ୟମ କେତେଦୂର ସଫଳ ହେଉଚି, ସେକଥା କେବଳ ସେ ବିଧାତା ପୁରୁଷଙ୍କୁ ଜଣା । ଆଜି ସତୀଶ କଥା ଉଠିଥିଲା । ଉପେନ୍ଦ୍ର ତାର ଅସାଧାରଣ ଦେହର ବଳ, ଅଦ୍ଭୁତ ସାହସର ଇତିହାସ ଶେଷ କରି, ଆଶ୍ଚର୍ଯ୍ୟ କଣ୍ଠସ୍ୱର ଓ ଶିକ୍ଷାଦୀକ୍ଷା କଥା ଚର୍ଚ୍ଚା କରୁଥିଲେ । ଟିକିଏ ଦୂରରେ ସରୋଜନୀ ଶିରୁକ ଦେହରେ ହାତକୁ ରଖି ନିବିଷ୍ଟ ଚିତ୍ତରେ ଶୁଣୁଥିଲା । ଠିକ୍ ଏଇ ସମୟରେ ବେହାରୀ ଭଗ୍ନଦୂତ ଭଳି ଘରେ ପଶି ସତୀଶର ଭବାନୀପୁର ଯିବା କଥା ଜଣାଇଲା ।

ଉପେନ୍ଦ୍ର ବିସ୍ମିତ ହୋଇ ପ୍ରଶ୍ନ କଲା—ସେଠି କିଏ ଅଛି ତାର ?

ବେହାରୀ କହିଲା—ମୁଁ ଜାଣେନା ।

ସତୀଶ ପାଇଁ ସମସ୍ତେ ଅପେକ୍ଷା କରି ବସି ରହିଥିଲେ, ବେହାରୀ ମୁହଁରୁ ଏକଥା ଶୁଣି ନିରାଶ ହୋଇପଡ଼ିଲେ ।

ସରୋଜନୀ ସିଧାସଳଖ ବସି କହିଲା—ତେବେ ଆଜି କ'ଣ ହେବ ?

ଜ୍ୟୋତିଷ ତା ମୁଖ ଆଡ଼କୁ ଚାହିଁ ସସ୍ନେହରେ ଟିକିଏ ହସି-ଉଠିଲେ; କିନ୍ତୁ ଶଶାଙ୍କମୋହନଙ୍କ ମନରେ କୌଣସି ପ୍ରକାର ପ୍ରତିକ୍ରିୟା ଦେଖିବାକୁ ମିଳିଲା ନାହିଁ । ବରଂ ଖୁସି ହୋଇ ପ୍ରସ୍ତାବ କଲେ—ଏଥର ସରୋଜନୀ କର୍ଣ୍ଣଧାର ହୁଅନ୍ତୁ । ସଙ୍ଗୀତରୁ କେତେ ପରିମାଣରେ ଆନନ୍ଦ ଆହରଣର କ୍ଷମତା ତାଙ୍କର ଥିଲା, କେବଳ ସରୋଜନୀ ଜାଣନ୍ତି; କିନ୍ତୁ ଶଶାଙ୍କ ଦୃଢ଼ ପ୍ରତିବାଦ ଜଣାଇ କହିଲା—ପୁରୁଷ ଲୋକେ ଗୀତ ଗାଇବାଟା ନିହାତି ଭୁଲ । ସେମାନଙ୍କର ସ୍ୱଭାବତଃ ଗଳା ମୋଟା; ତେଣୁ ଶିକ୍ଷା ଯେତେ ଉଚ୍ଚ ହେଉ ବା ଭଲ କରି ଗାଇବାର ଚେଷ୍ଟା କରନ୍ତୁନା କାହିଁକି, କୌଣସିମତେ ଶ୍ରାବ୍ୟ ନୁହେଁ ।

ଏ କଥାକୁ ଆଉ କେହି ପ୍ରତିବାଦ ନ କଲେ ମଧ୍ୟ ସରୋଜନୀ କଲା । ସେ କହିଲା—ହୁଏତ ଆପଣଙ୍କ ପାଖରେ ଯୋଗ୍ୟ ହୋଇ ନ ପାରେ । ହାରମୋନିୟମ, ପିଆନୋର ମୋଟା ଓ ଭାରୀ ପର୍ଦ୍ଦା ଗୁଡ଼ିକୁ ତିଆରି କରିବା ହୁଏତ ଭୁଲ ହୋଇପାରେ; କିନ୍ତୁ ସେଗୁଡ଼ିକ ତିଆରି ହେଉଚି ଏବଂ ଲୋକେ ମଧ୍ୟ କିଣୁଛନ୍ତି ।

ଶଶାଙ୍କମୋହନ ଏ କଥାର ଉତ୍ତର ବା ଦେବ କ'ଣ ? ତଥାପି ସେ ତାଙ୍କର ଗୌରବର୍ଣ୍ଣ ମୁହଁଟାକୁ ରକ୍ତାଭ କରିଦେଇ କ'ଣ କିଛି କହିବାକୁ ଯାଉଥିଲେ, ମଝିରେ ସରୋଜିନୀ ଉଠିପଡ଼ି କହିଲା— ମାଆଙ୍କୁ ଖବର ଦେଇଆସେ, ସେ ଖାଇବା ସଜାଡ଼ି ବସି ରହିଥିବ ।

ଉପେନ୍ଦ୍ର କହିଲା—ତାହାହେଲେ ଖାଦ୍ୟପେୟର ବ୍ୟବସ୍ଥା ଭଲଭାବରେ ହେଉଛି ।

ଉପେନ୍ଦ୍ରର ଏ କହିବା ଭିତରେ ଯେ ଆନ୍ତରିକ ସ୍ନେହ ଛଡ଼ା କିଛି ନ ଥିଲା ଏବଂ ସତୀଶ ତାର ନିତାନ୍ତ ସ୍ନେହାସ୍ପଦ ନ ହେଲେ ସେ ଏ ଭାଷା ତା ମୁହଁରେ ଆଦୌ ଆସନ୍ତାନି, ଏ କଥା ସରୋଜିନୀ ବୁଝିପାରି ହସି ହସି କହିଲା—ଏଇଟା କିନ୍ତୁ ଆପଣଙ୍କର ବଡ଼ ଅନ୍ୟାୟ । ତାଙ୍କର ରୁଚି ଯଦି ଆପଣଙ୍କ କୁରୁଚି ସହିତ ନ ମିଳେ, ତାହାହେଲେ ଦୋଷ ଆପଣଙ୍କର, ତାଙ୍କର ନୁହେଁ । ଆଚ୍ଛା, ମାଙ୍କୁ କହିଦେଇ ଆସୁଚି । କହି ସରୋଜିନୀ ଦ୍ରୁତ-ପାଦରେ ବାହାରିଗଲା ।

ସେ ଚାଲିଯିବା ପରେ ଶଶାଙ୍କମୋହନ ଉପେନ୍ଦ୍ର ଆଡ଼କୁ ଚାହିଁ କହିଲେ—ଆପଣଙ୍କ ବନ୍ଧୁ ବୋଧହୁଏ ଟିକିଏ ମଦହାରୀ ।

ଉପେନ୍ଦ୍ର କହିଲା—ହଁ ଟିକିଏ ମଦହାରୀ ନୁହେ କ'ଣ, ପୂଜାପୂଜି କରେ ।

ସତୀଶ ଯେ ମଝି ମଝିରେ ଲୁଚିଛପି ମଦ ଖାଏ, ଏ କଥା ସେ ଜାଣେନା, ସ୍ୱପ୍ନରେ ସୁଦ୍ଧା ସେ ଭାବିପାରେନା ।

ଶଶାଙ୍କ କହିଲେ—କ'ଣ କରନ୍ତି ସେ ?

ଉପେନ୍ଦ୍ର କହିଲା—ନା; କିଛି ନୁହେଁ । କେଉଁ ଦିନ ଯେ କିଛି କରିବ, ଏ ଭରସା ମଧ୍ୟ କାହାର ନାହିଁ ।

ଏ ସମ୍ବାଦରେ ଶଶାଙ୍କ ମନ ଉପରୁ ମନେହେଲା ଯେମିତି ଗୋଟିଏ ପଥର ଖସିଗଲା । ସେ ଖୁସି ହୋଇ କହିଲେ—ହଁ, ସେଥିପା ।

ଜ୍ୟୋତିଷ ଏ ପର୍ଯ୍ୟନ୍ତ ଚୁପ୍‌ଚାପ୍ ବସି ରହିଥାନ୍ତି । ଏଥର ଉପେନ୍ଦ୍ରକୁ ଲକ୍ଷ୍ୟକରି କହିଲେ—କଥାଟା କିନ୍ତୁ ଠିକ୍ ହେଲାନି ଉପେନ୍ ! ଶାରୀରିକ ଉତ୍କର୍ଷଟାକୁ ଇମିତି ଖାଲି ଖାଲି ଉଡ଼େଇ ଦିଆଯାଇ ନ ପାରେ । ତା ଛଡ଼ା ମୁଁ ତାର ଗୀତରେ ଏକାବେଳକେ ମୁଗ୍ଧ । ସେ ଯାହା କିଛି କରୁଛନ୍ତି,

ଆମ ଏ ଦେଶରେ ଯଦି ତାର ଯଥୋଚିତ ସମ୍ମାନ ନ ମିଳେ, ତାହାହେଲେ ସେ ବଡ଼ ଦୁଃଖର ବିଷୟ ହେବ, ଏଥିରେ କୌଣସି ସନ୍ଦେହ ନାହିଁ; କିନ୍ତୁ ସେ ଦୋଷ ଆମମାନଙ୍କର, ତାର ନୁହେଁ । ମକଦ୍ଦମାର ନଥିପତ୍ର ନ ଘାଣ୍ଟି ଏବଂ ଶ୍ରୀ ସହିତ ଧସ୍ତାଧସ୍ତି ନ କରି, ହାକମର ଚେଡ଼ା ନ ଖାଇ ଯାହାର ଦୋଳଅଣ୍ଡା ଆଦାୟ ହୋଇପାରିବ, ସେ ଯଦି ଏଆଡ଼କୁ ଟିକିଏ ନ ଅନାଏ, ତାହା-ହେଲେ ସ୍ପାରଟା ମାରଓ୍ୱାଡ଼ିଙ୍କ ଲୁଗାଦୋକାନ ହୋଇ ଦେଖାଦେବ । ମୋର ତ ତୋର ବୁଦ୍ଧି ଟିକି ଦେଖି ସତରେ ଭାରି ଈର୍ଷା ହୁଏ । ଭଲ କଥା, ବୁଢ଼ାର ଆୟୁ ବା କେତେ ?

ଏହି ସମୟରେ ସରୋଜିନୀ ଚୁପ୍‌ଚୁପ୍ ଘରେ ପଶି ତା ଭାଇଙ୍କ ଚୌକି ପିଠିରେ ଭରାଦେଇ ଠିଆହୋଇ ପଚାରିଲା—କାହାର ଦାଦା ?

—ସେଇ ସତୀଶ ବାବୁଙ୍କ ବାପାଙ୍କର ।

ଉପେନ୍ଦ୍ର କହିଲା—ଠିକ୍ ଭାବରେ ଜାଣେନା, ବୋଧହୁଏ ପ୍ରାୟ ଦ'ଲକ୍ଷ ।

ଜ୍ୟୋତିଷ ଆଖି ତରାଟି କହିଲା— ତାହାହେଲେ ମହାରାଜା । ଉପେନ୍ଦ୍ର କହିଲା—ନା, ରାଜା ନୁହେଁ; କିନ୍ତୁ ବଡ଼ ଜମିଦାର । ଯାହା ବା ଥିଲା, ବୁଢ଼ା ତାକୁ ବହୁତ ବୃଦ୍ଧି କରିଛନ୍ତି ।

ଜ୍ୟୋତିଷ ଦୀର୍ଘନିଶ୍ୱାସ ପକାଇ କହିଲା— ଏକାବେଳକେ ସୌଭାଗ୍ୟର ପ୍ରିୟତମ ବରପୁତ୍ର । ସ୍ୱାସ୍ଥ୍ୟ, ଶକ୍ତି, ରୂପ, ଶୌର୍ଯ୍ୟ ମଣିଷ ଯାହା କିଛି କାମନା କରେ, ସବୁ କିଛି ।

ଉପେନ୍ଦ୍ର ନ ହସି ରହିପାରିଲା ନାହିଁ । ସଙ୍ଗେ ସଙ୍ଗେ କହିଲା—କିନ୍ତୁ ଗୋଟାଏ ମାରାତ୍ମକ ଦୋଷ ରହିଛି । ପରର ବୋଝ ନେଇ ଅପଘାତରେ ଯଦି ମରି ନ ଯାଏ, ତାହାହେଲେ ପିନା ଏହି ଭାଗ୍ୟର ଅଧିକାରୀ ହେବ ସତୀଶ !

—ଅପଘାତ ? ସେଥିରେ ମରିବ କାହିଁକି ?

—ଅସମ୍ଭବ ନୁହେଁ, ପୂର୍ବରୁ ହୋଇଛି ବୋଲି କହିଲି ।

—ରାଗ ଜିନିଷଟି ତା ଦେହରେ ଯେପରି ପ୍ରବଳ ଭାବରେ ଅଧିକ, ପ୍ରାଣର ମାୟାଟା ସେହିଭଳି ବହୁତ କମ୍ । ଏହି କଳିଯୁଗରେ ଘର କରି ମଧ୍ୟ ଯେଉଁମାନଙ୍କର ଅନ୍ୟାୟ ଅତ୍ୟାଚାରର ଧାରଣା ସତ୍ୟଯୁଗ ଭଳି

ରହିଥାଏ ଏବଂ ଘଟିଉଠିଲେ ଯେଉଁମାନଙ୍କର ହିତାହିତ ଜ୍ଞାନ ରହେନା, ସେମାନଙ୍କର ବଞ୍ଚିରହିବା ନ ରହିବା ଉପରେ ମୋର ଆସ୍ଥା ନ ଥାଏ । ସହ୍ୟ କରିପାରିବାଟା ଯେ ଗୋଟାଏ ବଡ଼ କ୍ଷମତା ଅନାହୂତ ସାଧାରଣ କରିବାର ଲୋଭ ସମ୍ବରଣ କରିପାରିବା ଯେ ଅବସ୍ଥା ବିଶେଷରେ ପ୍ରୟୋଜନ, ସେ କଥା ସେ ବୁଝେନା । ସେ ଯେମିତି ସେକାଳ ୟୁରୋପର ନାଇଟ, ଏ କାଳରେ ବଙ୍ଗଳା ଦେଶରେ ଆସି ଜନ୍ମିଛି ।

ଜ୍ୟୋତିଷ ହସି ହସି କହିଲା – ଯାହା କହ ପଛେ, ଶୁଣି ଶ୍ରଦ୍ଧା ହୁଏ ।

ଉପେନ୍ଦ୍ର କହିଲା – ହେବା କଥା । ସଂସାରରେ ବାସ କଲେ ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ମନ୍ଦ ଜନିଷକୁ ଅଗ୍ରାହ୍ୟ କରିବାକୁ ପଡ଼ିଥାଏ, ଏ ଶିକ୍ଷା ତାର ଏଯାଏଁ ହୋଇନ । କୌଣସି ଦିନ ହେବ କି ନା ମଧ୍ୟ ଜାଣେନି; କିନ୍ତୁ ଯଦି ନ ହୁଏ, ଶେଷକାଳର ଫଳ ମଧୁର ହେବନି । ତାର ତ ହେବନି, ତାର ବନ୍ଧୁ କୁଟୁମ୍ବ, ଆତ୍ମୀୟସ୍ୱଜନଙ୍କର ମଧ୍ୟ ହେବନି ।

ଜ୍ୟୋତିଷ କହିଲା – ତୁ ତ ତାଙ୍କର ଆତ୍ମୀୟ ବନ୍ଧୁ, ତୁ ଶିଖେଉନୁ !

ଉପେନ୍ଦ୍ର ମୁହଁରେ ହସ ଫୁଟିଉଠିଲା । କହିଲା – ଅବଶ୍ୟ ମୁଁ ତାର ବନ୍ଧୁ ; କିନ୍ତୁ ଶିକ୍ଷା ଦେବାର ଭାର ମୋ ଉପରେ ନାହିଁ । ଯିଏ ସବୁ ବନ୍ଧୁଙ୍କଠୁ ବଡ଼ ବନ୍ଧୁ ହେବ, ଯିଏ ସମସ୍ତ ଆତ୍ମୀୟଙ୍କ ଉପରେ ଆତ୍ମୀୟ ହେବ, ଏ ବିଦ୍ୟା ହୁଏତ ସିଏ ଶିଖେଇପାରିବେ, ନଚେତ୍ ତାଙ୍କୁ ଚିରଦିନ ଅଶିକ୍ଷିତ ରହିବାକୁ ହିଁ ପଡ଼ିବ ।

ସରୋଜିନୀ ଏ ପର୍ଯ୍ୟନ୍ତ ନୀରବରେ ସ୍ଥିର ହୋଇ ସବୁକଥା ଶୁଣୁଥିଲା । ମନେହେଲା, ଏଥର ଟିକିଏ ସିଏ ଲୁଚେଇ ଲୁଚେଇ ହସିଲା ।

ଉପେନ୍ଦ୍ର କହିଲା—ସତୀଶ କଥା ଏତିକରେ ଥାଉ । ମତେ ଯିବାକୁ ପଡ଼ିବ, ଦୁଇ ଚାରି ଖଣ୍ଡ ଚିଠି ଲେଖିବାକୁ ଅଛି ।

ଜ୍ୟୋତିଷର ମଧ୍ୟ ଜରୁରୀ କାଗଜପତ୍ର ଦେଖିବାର ଥିଲା । ସେ ମଧ୍ୟ ଉଠୁ ଉଠୁ ହେବାର ଦେଖାଗଲା । କିନ୍ତୁ ସମସ୍ତଙ୍କ ଆଗରୁ ଉଠି ଠିଆହେଲା ସରୋଜିନୀ । ସେ ଉପେନ୍ଦ୍ରକୁ କ'ଣ କିଛି କହିବାକୁ ଇଚ୍ଛା କରୁଥିଲା, କିନ୍ତୁ ସମ୍ଭବ ହେଲା ନାହିଁ । କାହାକୁ ଟିକିଏ ହେଲେ ନମସ୍କାର ନ କରି ଅନ୍ୟମନସ୍କ ଭାବରେ ସେ ଧୀରେ ଧୀରେ ଘରୁ ଚାଲିଗଲା । ଆଜିର ବୈଠକରେ ଜମିଦାର

କଥା ପଡ଼ିଲା ସିନା, ବୈଠକଟା ସେମିତି ଜମିପାରିଲା ନାହିଁ । ଆରମ୍ଭ ଯେମିତି ସରଗରମରେ ହୋଇଥିଲା, ଭାଙ୍ଗିଲା ସେମିତି ନିତାନ୍ତ ଖରାପ ଭାବରେ । ଉପେନ୍ଦ୍ର ଏ ବୈଠକର ଉଦ୍ଦେଶ୍ୟ କଥା ତ କିଛି ହେଲେ ଜାଣେନା, ଜାଣିବାକୁ ଚେଷ୍ଟା ସୁଦ୍ଧା କଲା ନାହିଁ ।

ଷୋହଳ

ତୀକ୍ଷ୍ଣ ବୁଦ୍ଧିମତୀ କିରଣମୟୀ ସ୍ୱାମୀଙ୍କର ରୋଗକୁ ଉପଲକ୍ଷ୍ୟ କରି ଏଇ କେଇଟା ଦିନ ଉପେନ୍ଦ୍ରକୁ ସମସ୍ତ ଭାବରେ ଅତି ନିକଟରେ ପାଇ ତାଙ୍କୁ ଭଲ ଭାବରେ ଚିହ୍ନିପାରିଲି । ଏଥିରେ କେବଳ ଯେ ତାର ସ୍ୱାର୍ଥ-ହାନିର ବ୍ୟାକୁଳ ଆଶଙ୍କାଟା ଦୂର ହେଲା ତା ନୁହେଁ, ଏଇ ଅପରିଚିତ ଉଦ୍ଦେଶ୍ୟରେ ଗୋଟାଏ ଗଭୀର ଶ୍ରଦ୍ଧାର ଭାରରେ ତାର ସମଗ୍ର ହୃଦୟଟା ଜଳଭାରାକ୍ରାନ୍ତ ମେଘ ଭଳି ବର୍ଷଣୋନ୍ମୁଖ ହୋଇଉଠିଲା । ଏଭଳି ଲୋକ ସେ କେବେହେଲେ ଦେଖି ନାହିଁ । ଏଭଳି ଲୋକର ସଂସର୍ଗରେ ଆସିବା ଭାଗ୍ୟକୁ ସେ କଳ୍ପନା ସୁଦ୍ଧା କରି ନ ଥିଲା । ତେବେ ଏହି ଅତି ଅଳ୍ପ ସମୟ ପରିଚୟ ମଧ୍ୟରେ ସେ ତାର ଭବିଷ୍ୟତର ସକଳ ଦୁଃଖ ସୁଖ ତାହାରି ହାତରେ ନିଃଶଙ୍କଚିତ୍ତରେ ସମର୍ପଣ କରିଦେଇ ମନେକଲା, ଏଇ ଲୋକଟି ଉପରେ ନିର୍ଭୟରେ ନିର୍ଭର କରାଯାଇପାରେ । ସେକଥା ଦିନଯାକ ଭାବି ଭାବି ସେ ଆନନ୍ଦ ଅନୁଭବ କରୁଥିଲା । ତାର ମନେହେଉଥିଲା, ଚିରକାରା-ବଦ୍ଧ ତାର ପ୍ରାଣଟା ଯେପରି ମୁକ୍ତପଥର ଆଲୋକ ଦେଖିପାରିଛି ।

ଉପେନ୍ଦ୍ର ସକାଳୁ ରାତିଯାଏଁ ରହି ମୁମୂର୍ଷୁ ବୃଦ୍ଧର ସେବା କରି-ଥିଲା । ହୁଏତ ସେଇ ସେବାର କୌଣସି ମୂଲ୍ୟ ନାହିଁ; କାରଣ ହାରାଣର ଜୀବନର ଆଶା ଆଦୌ ନ ଥିଲା । କିନ୍ତୁ ଏଇ ସେବା କିରଣମୟୀର ଆଖିରେ ତା ସ୍ୱାମୀର ଶୁଖିଲା ଦେହଟାକୁ ବହୁମୂଲ୍ୟ କରି ତୋଳାଇଥିଲା । ଏଇ ଅର୍ଦ୍ଧମୃତ ଦେହଟା ପ୍ରତି ସେ ହଠାତ୍ ପ୍ରଲୁବ୍ଧ ହୋଇ ପଡ଼ିଥିଲା ।

ତାର ଆଗ୍ରହର ବ୍ୟବହାରର ଏଇ ଆକସ୍ମିକ ଅଭାବନୀୟ ପରିବର୍ତ୍ତନ ମୃତ୍ୟୁ ଉପକୂଳରେ ଠିଆହୋଇ ହାରାନ୍ ମଧ୍ୟ ଲକ୍ଷ୍ୟ କରିଥିଲା । ପିଲାଦିନୁ କିରଣ ଆତ୍ମୀୟ ଘରେ ମଣିଷ ହୋଇ ପିଲାଦିନରୁ ହିଁ ତତୋଧିକ ଅନାତ୍ମୀୟ ସ୍ୱାମୀଭବନକୁ ଆସିଥିଲା । ଶାଶୁ ଅଘୋରମୟୀ ତାଙ୍କୁ କୌଣସି ସ୍ନେହ ଆଦର କରି ନାହାନ୍ତି, ବରଂ ନିର୍ଯ୍ୟାତନା ଦେଇ ଆସିଛନ୍ତି । ସ୍ୱାମୀ ମଧ୍ୟ ଦିନେ ହେଲେ ଭଲ ପାଇନାହାନ୍ତି ।

ସେ ଦିନବେଳା ସ୍କୁଲକୁ ଯାଆନ୍ତି ପାଠ ପଢ଼େଇବା ଲାଗି, ରାତିରେ ନିଜେ ପଢ଼ିବସନ୍ତି ଏବଂ ନିଜ ସ୍ତ୍ରୀକୁ ପଢ଼ାନ୍ତି । ବିଦ୍ୟାର୍ଜନର କଠୋର ନିଶା ତାଙ୍କୁ ଏଭଳି ଭାବରେ ଘାରିଥିଲା ଯେ ଉଭୟଙ୍କ ଭିତରେ ଗୁରୁଶିଷ୍ୟା କଠୋର ସମ୍ପର୍କ ଛଡ଼ା ସ୍ୱାମୀ ସ୍ତ୍ରୀର ସମ୍ପର୍କ ପ୍ରତିଷ୍ଠା ହେବାର ତିଳେମାତ୍ର ଅବକାଶ ନ ଥିଲା । ଏହିଭଳି ଭାବରେ ହିଁ ଏଇ ନିରୁପମା ପ୍ରଖର ବୁଦ୍ଧିଶାଳିନୀ ରମଣୀ ଶୈଶବ ଅତିକ୍ରମ କରି ପରିପୂର୍ଣ୍ଣ ଯୌବନର ଠିକ୍ ମଝିଦେଶରେ ଆସି ପହଞ୍ଚିଥିଲା, ଏହିଭଳି ଭାବରେ ହିଁ ସେ ସଂସାରର ସମସ୍ତ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟରୁ ନିର୍ବାସିତ ହୋଇପଡ଼ି ଶୁଷ୍କ, କଠୋର ହୋଇ ଉଠିଥିଲା ଏବଂ ଏହିଭଳି ସେ ସ୍ନେହ, ପ୍ରେମରୁ ବଞ୍ଚିତ ହୋଇ ନାରୀର ଶ୍ରେଷ୍ଠ ଧର୍ମକୁ ଜଳାଞ୍ଜଳି ଦେଇ ବସିଥିଲା । ଅଘୋରମୟୀ ଏ ସମସ୍ତ କଥା ଜାଣନ୍ତି । ତାଙ୍କର ରୂପସୀ ବୋହୂ ଯେ ସତୀ ଧର୍ମର ସମସ୍ତ ମର୍ଯ୍ୟାଦା ବହନ କରି ରହିବ, ଏକଥା ମଧ୍ୟ ସେ ଜାଣନ୍ତି । ବର୍ତ୍ତମାନ କରନ୍ତେ କ'ଣ ? ପୁଅ ମୃତକଳ୍ପ, ଦୁଃସହ ଦୁଃଖର ଦିନ ସମାଗତ । ଏକଥା ମନେକରି ସମ୍ଭବତଃ ବୋହୂର ବିଦଗ୍ଧ ଆଗ୍ରହ ବ୍ୟବହାରକୁ ସେ ଉପେକ୍ଷା କରି ଚୁପ୍‌ରହିଛନ୍ତି । ଯେଉଁ ଡାକ୍ତର ହାରାନର ଚିକିତ୍ସାଭାର ଗ୍ରହଣ କରିଛନ୍ତି, ସିଏ ଯେ କାହିଁକି ବିନା ପଇସାରେ ଏତେ ଔଷଧପତ୍ର ଦେଉଛନ୍ତି, ସେ କଥା ତାଙ୍କର ଅଗୋଚର ନ ଥିଲା; କିନ୍ତୁ ମୃତକଳ୍ପ ସନ୍ତାନର ଚିକିତ୍ସା ପାଖରେ କୌଣସି ଅନ୍ୟାୟକୁ ଦେଖିବାର ସାହସ ତାଙ୍କର ନ ଥିଲା, ଶିକ୍ଷା ମଧ୍ୟ ନ ଥିଲା । ଉପେନ୍ଦ୍ର ମଧ୍ୟ ଯେ ଏହି ଜାଲରେ ଆବଦ୍ଧ ହୋଇ ଆସୁଥିଲା, ତାର ଅକାତର ଅର୍ଥବ୍ୟୟ ଏବଂ ଅକ୍ଳାନ୍ତ ସେବାର ଗୋପନ ଉଦ୍ଦେଶ୍ୟ ଯେ ଆଶୈଶବ ବନ୍ଧୁତ୍ୱକୁ ଅତିକ୍ରମ କରି ନିଃଶବ୍ଦରେ ଆଉ ଅନ୍ୟ ଏକ ସ୍ଥାନରେ ମୂଳ ବିସ୍ତାର କରି-ଥିଲା, ଏ ବିଷୟରେ ତାଙ୍କର କୌଣସି ସନ୍ଦେହ ନ ଥିଲା କି ଆପତ୍ତି ମଧ୍ୟ

ନ ଥିଲା । କାଲଠାରୁ ଉପେନ୍ଦ୍ର ଘରକୁ ଆସି ନାହାଁନ୍ତି, ଏକଥା ଅଘୋରମୟୀ ଘରର ଶ୍ରେଷ୍ଠ ବାରଣ୍ଡାରେ ହାତ ଦେଇ ବସି ଭାବୁଥିଲେ ।

ଶୀତକାଳୀନ ସୂର୍ଯ୍ୟ ସେତେବେଳକୁ ଅସ୍ତ ହୋଇ ନ ଥାଏ । କିନ୍ତୁ ଘର ଭିତର ଅନ୍ଧାର ହୋଇ ଆସିଥାଏ । ସୂର୍ଯ୍ୟ କେତେବେଳେ ଉଦୟ ହୁଅନ୍ତି, କେତେବେଳେ ଅସ୍ତ ହୁଅନ୍ତି, ସୁଦିନରେ ସୁଦ୍ଧା ଏ ଘରର ଲୋକେ କେବେ ଖବର ରଖନ୍ତି ନାହିଁ । ଏବେ ତ ଦୁଃଖର ଦିନ । ତେଣୁ ସୂର୍ଯ୍ୟ ସହିତ ସମସ୍ତ ପ୍ରକାର ସମ୍ବନ୍ଧ ବିଚ୍ଛିନ୍ନ ହୋଇ ପଡ଼ିଥିଲା ।

ଅଘୋରମୟୀ ଡାକଲେ – କିରଣ, ମା ଟିକିଏ ବଳତା ବସେଇ ଦେଇ ଆ ତ । ତୋ ସାଙ୍ଗେ କଥା ଅଛି ।

କିରଣମୟୀ ଘର ଭିତରେ କାମ କରୁଥିଲା, କହିଲା – ସନ୍ଧ୍ୟା ହୋଇନ ମା, ତୁମ ବିଛଣାଟା ପକେଇ ଦେଇ ଯାଉଚି ।

—କିଲୋ, ମୋର ବିଛଣା ! ମୁଁ ଶୋଇଲାବେଳେ ନିଜେ ପକେଇ-ଦେବି ଯେ । ନା ନା, ତୁ ଯାଆ, ସଞ୍ଜଦୀପ ଜାଳି ଦେଇ ଶାନ୍ତିରେ ଟିକିଏ ବସ । ଦିନରାତି ଖଟି ଖଟି ଦେହଟା କ'ଣ ଦେଖାଗଲାଣି ? ସେ ପ୍ରତି ଟିକିଏ ଆଖି ରଖ ମା ! ଏତିକି କହୁ କହୁ ଅଘୋରମୟୀଙ୍କ ଦେହ ଭିତରୁ ଦୀର୍ଘନିଶ୍ୱାସ ବାହାରିଆସିଲା । ସେ ଆଉ କିଛି ନ କହି ଚୁପ୍‌ଚାପ୍ ବସି ରହିଲେ । ଟିକକ ପରେ ବୋହୂ ତାଙ୍କ ପାଖରେ ଆସି ବସିବା ମାତ୍ରେ କହିଲେ – ମା, ଦୀପ ଜାଳିଦେଇ ଆ ।

କିରଣମୟୀ କହିଲା—ତୁମେ କାହିଁକି ବ୍ୟସ୍ତ ହେଲ ମା, ସଞ୍ଜ ହେବାକୁ ଆହୁରି ବହୁତ ଡେରି ଅଛି ।

ଅଘୋରମୟୀ କହିଲେ—ସଞ୍ଜ ନ ହେଉ, ଘରଆଡ଼ ତ ଅନ୍ଧାର ଦେଖାଗଲାଣି । ଟିକିଏ ବେଳ ଥାଉଁ ତୁ ସିଡ଼ିପାଖ ଆଲୁଅଟା ଜାଳିଦେଇ ଆ । ହୁଏତ ଏନ୍ତୁକ୍ଷଣି ଉପେନ୍ ଆସି ହାଜର ହେବ । କାଲିଠୁ ଆସିନ । କିଲୋ ବୋହୂ, ଏପର୍ଯ୍ୟନ୍ତ ତୁ ମୁଣ୍ଡ ବାନ୍ଧିନୁ କି ? ମୁହଁ ଧୁଆଧୋଇ କରି ସଫା ସୁତରା ହୋଇନୁ ? କ'ଣ କରୁଥିଲୁ ଏଯାଏଁ ?

କିରଣମୟୀ ମନ ଭିତରେ ଟିକିଏ ହସି ଉଠି କହିଲା—କେଉଁଦିନ ମୁଁ ଏ ବେଳା ସଫାସୁତୁରା ହେଉଥିଲି କହିଲ ? ଏପର୍ଯ୍ୟନ୍ତ ତ ହେଲେଇ

ଘରର କାମ ଶେଷ ହୋଇନ—ଆଉ ଦେହ ମୁହଁ ଧୁଆଧୋଇ କରି ମୁଣ୍ଡ ବାନ୍ଧିବ କେତେବେଳେ ?

ଶାଶୂ ଟିକିଏ ହସିଲା ଭଳି କହିଲେ—ଶେଷେଇ ପରେ ହେବ । ତୁ ଗଲୁ ଆଗେ ଦେହ ମୁଣ୍ଡ ଧୋଇହୋଇ ଆସିବୁ । ମୁଁ ଯାହା କହୁଚି ଶୁଣ ।

ବୋହୂ ଯିବାକୁ ଉଦ୍ୟତ ହେଉ ହେଉ କହିଲା—ତେବେ ଯାଉଚି, ଧୂପଗୁଡ଼ାକ ଜଳେଇ ଦେଇ ଆସି ତୁମର ପାଖରେ ବସିବି ।

ଅଘୋରମୟୀ ରାଗି କହିଲେ—ମୋ ପାଖରେ ମିଛୁଟାରେ ବସି କି ଲାଭ କହିଲୁ ? କାମ ଆଗ ନା ବସିବାଟା ଆଗ ? ଦିନୁଁ ଦିନ ତୁ କିମିତି କ'ଣ ହୋଇଯାଉଚୁ ବୋହୂ !

ସ୍ନେହର ଅନୁଯୋଗ ହଠାତ୍ ତିରସ୍କାରର ଆକାର ଧରିବା ମାତ୍ରେ କଥାଗୁଡ଼ାକ ହଠାତ୍ ଅତି ଟାଣ ଟାଣ ଓ ରୁକ୍ଷ ଭାବରେ ମହୁମାଛି ବିନ୍ଧିଲା ଭଳି କିରଣମୟୀ କାନରେ ଯାଇ ବସିଲା । ତାର ମଧ ଭାରି ରାଗ ହେଲା—କଠୋର ସ୍ୱରରେ କହିଲା—ତୁମେଇ ତ ମା ମତେ ଏତେ ତୁଚ୍ଛ କରି-ଦେଇଚ । ସବୁ ସମୟରେ ଇମିତି ଓଲଟା ଓଲଟା କଥା କୁହ, ଯାହାର କିଛି ମାନେ ହୁଏନା, କିଛିହେଲେ ବୁଝିହୁଏନା । ତୁମେ କ'ଣ ମୁହଁ ସ୍ପଷ୍ଟ କରି କୁହ । ଏତିକି କହି ସେ ଉପରକୁ ଚାଲିଗଲା । ପରେ ଉପରେ ଧୂପ ଜାଳିଦେଇ ସେ ଯେତେବେଳେ ଶାଶୁଙ୍କ ଘରେ ଧୂପ ଦେବାକୁ ଆସିଲା, ସେତେବେଳେ ଶାଶୁ କାନ୍ଦୁଥିଲେ । କାନ୍ଦଟା ତାଙ୍କର ସ୍ୱଭାବତଃ । ଯେତେ-ବେଳେ ସେତେବେଳେ ସେ କାନ୍ଦିପାରନ୍ତି ।

କିରଣମୟୀ ପାଖକୁ ଯାଇ କହିଲେ— ଜପାମାଳାଟା ଆଣିଦେବି ମା ?

ଅଘୋରମୟୀ କାନ୍ଦ କାନ୍ଦ ସ୍ୱରରେ କହିଲେ—ହେଉ, ଦେ ମା !

କିରଣମୟୀ ଜପାମାଳାଟାକୁ ଆଣି ଦେବାମାତ୍ରେ ଶାଶୁ ହାତଟାକୁ ଧରିଦେଇ କହିଲେ—ଟିକିଏ ମୋ ପାଖରେ ବସିଲୁ ମା ! କିରଣମୟୀ ବସିବା'ମାତ୍ରେ ତା ଦେହ ମୁଣ୍ଡକୁ ହାତରେ ଆଉଁସି ଦେଇ ଦେଇ ଗାଲରେ ଗୋଟିଏ ଚୁମା ଦେଇ ପୁଣି କାନ୍ଦିବାକୁ ଲାଗିଲେ । କିରଣମୟୀ ନିଜକୁ ସମ୍ଭାଳିନେଇ ଏହି ସ୍ନେହର ଅଭିନୟକୁ ସହ୍ୟ କରି ଚାଲିଗଲେ ।

କ୍ଷଣକ ପରେ ଅଘୋରମୟୀ କହିଲେ—ଶୋକ, ଦୁଃଖରେ ମୁଁ ପାଗଳୀ ହୋଇଯାଇଚି । ମୋର ସାମାନ୍ୟ କଥାରେ ରାଗି ପଡ଼ିଲୁ କାହିଁକ କହ ତ ମା ?

କରୁଣାମୟୀ ଅବିଚଳିତ ଭାବରେ କହିଲା— ଦୁଃଖ ତ ତୁମର ଏକୁଟିଆ ନୁହେଁ ମା ! ଆମେ ମଧ୍ୟ ମଣିଷ ।

ଅଘୋରମୟୀ କହିଲେ—ସେକଥା କ'ଣ ମୁଁ ଜାଣେନି, ଜାଣେ । କିନ୍ତୁ ମୋର ଗୋଟିକ ପରେ ଗୋଟିଏ ସବୁ ଗଲେ । ତୁଇ ମୋର ପୁଅ ଝିଅ । ହାରାନର ଶୋକ ତୁଇ କେବଳ ମେଣ୍ଟାଇପାରିବୁ । ଏକଥା କହୁଥାଆନ୍ତି, କାନ୍ଦୁଥାଆନ୍ତି । କିନ୍ତୁ ଏ ଛଳନାରେ କରୁଣା ଭୁଲିଗଲାନି । ସେ ମନେ ମନେ ରାଗିଉଠିଲେ ମଧ୍ୟ ଶାନ୍ତ ଶୀତଳ ଭାବରେ କହିଲା—ତୁମେ କିମିତି ଦୁଃଖ ମେଣ୍ଟେଇବ, ଏତିକ ବେଳୁ ତୁମେ ସିନା ବ୍ୟବସ୍ଥା କରି ରଖିଚ; କିନ୍ତୁ ମୁଁ କିମିତି ଦୁଃଖ ମେଣ୍ଟେଇବି । ସେ କଥା କ'ଣ ଭାବୁଚ ? ତା ଛଡ଼ା ଏସବୁ କଥା ଏବେ କାହିଁକି ? ଯେତେବେଳେ ବାସ୍ତବରେ ଦୁଃଖ ମେଣ୍ଟାଇବା ଦିନ ଆସିବ, ସେତେବେଳେ ଯାହା କରିବ । ଏତିକିବେଳୁ ସେସବୁ ଖରାପ ଚିନ୍ତା ଭଲ ନୁହେଁ ।

ବୋହୂର କଥାଗୁଡ଼ାକ ମଧୁର ନ ହେଲେ ମଧ୍ୟ ଏହା ଭିତରେ ଯେ କେତେ ସ୍ନେହ ରହିଛି, ଅଘୋରମୟୀ ଧରିପାରି ନ ଥିଲେ । ବରଂ କହିଲେ—ସମୟ ଆଉ ଆସିବ କ'ଣ ମା--ଉପୀନ ସେଦିନ ଗୋଉ ସାହେବ ଡାକ୍ତର ନେଇ ଆସିଥିଲା, ସେ ତ କୌଣସି ଭଲକଥା କହି ଗଲେନି । ମୁଁ ତେଣୁ କେବଳ ଭାବୁଚି ମା, ଉପୀନ ଯଦି ଏ ସମୟରେ ଆସି ନ ଥାଆନ୍ତା, ତାହାହେଲେ କି ଦୁର୍ଦ୍ଦଶା ଆମର ହୋଇ ନ ଥାଆନ୍ତା ! ବୋହୂ ଚୁପ୍ ରହିଥିବା ଦେଖି ଅଘୋରମୟୀ କହି ଚାଲିଥାନ୍ତି—ତାକୁ ପିଲାଟିଦିନୁ ଜାଣେ । ହାରାନ, ଉପୀନ ଦି'ଭାଇ । ଏକାଠି ବସାଉଠା । ଉପୀନ ସେହି-ଦିନଠୁ ମତେ ମାଉସୀ ବୋଲି ଡାକିଆସିଛି । ଯେମିତି ବଡ଼ ଲୋକର ପିଲା, ଜ୍ଞାନ ଗୁଣ·ସବୁଥିରେ ସେ ବଡ଼ । ଦେଖିଲୁ, ମତେ କାଲିବାର ଦେଖି କହିଲା—ମା, ମୋତେ ହାରାନଦାର ଶ୍ରେଷ୍ଠ ଭାଇ ବୋଲି ମନେ କରିବ । ମୁଁ କହିଲି—ବାପା ମତେ କୌଣସି ତୀର୍ଥସ୍ଥାନରେ ନେଇ ରଖିଦେଇ ଆ । ଯେଉଁ କେଇଟିଦିନ ବଞ୍ଚି ରହିବି, ଗଙ୍ଗାରେ ସ୍ନାନ କରି କରି ଗଙ୍ଗା-କୋଳରେ ହାରାନ କୋଳକୁ ଯାଇପାରିବି ।

ଆଉ ସେ କିଛି କହିପାରିଲେନି, କାନ୍ଦିଉଠିଲେ । କିରଣମୟୀ ସେମିତି ଚୁପ୍‌ଚାପ୍ । କାନ୍ଦି କାନ୍ଦି ପୁଣି କିଛି ସମୟ ପରେ ଶାଶୂ କହିଲେ—ମଝି ମଝିରେ ମୋ ମନରେ ଏହି କଥା ଆସିଯାଏ, ସେ ଯଦି ଆସି ନ ଥାଆନ୍ତା ! ତେଲେ କିଏ ଡାକୁଚି ଶୁଣିଲୁ ମା !

କିରଣମୟୀ କହିଲା—କାହିଁ କେହି ନାହିଁ ତ । ତଳେ ରୋଷେଇଘରେ ବାସନ ମାଜୁଚି । କିଏ ଡାକିଲେ ସେ ଦୁଆର ଖୋଲିଦେବ ଯେ ।

ଶାଶୁ ଅସ୍ଥିର ହୋଇପଡ଼ି କହିଲେ—ନା ମା, ତୁ ନିଜେ ଯା । ରୋଷେଇଘରଟା କାମ କରୁଥିଲା ବେଳେ କିଛି ଶୁଣିପାରେନା ।

କିରଣମୟୀ କହିଲା—ମୋର ମଧ୍ୟ ବହୁତ କାମ ଅଛି; ରୋଷେଇ କରିବି ।

ଅଘୋରମୟୀ ରାଗିଉଠି କହିଲେ—ଆଲୋ, ରୋଷେଇ କ'ଣ କୁଆଡ଼େ ପଳେଇ ଯାଉଚି ? ଯାଉଚୁନା, ଦୁଆର ଫିଟେଇ ଦେଇ ଆ ।

କିରଣମୟୀ ବିରକ୍ତିରେ କହିଲା—ମୋର ସିମିତି କିଛି କାମ ନାହିଁ । ଏତିକି କହିଦେଇ ରୋଷେଇଘରକୁ ଚାଲିଗଲା ।

ଅଘୋରମୟୀ ରାଗରେ ଆଉ କଥା କହିପାରିଲେ ନାହିଁ । ତାଙ୍କ ଆଖି ଦୁଇଟା ବୋହୂର ଯିବା ବାଟକୁ ଚାହିଁ ଚାହିଁ ଜଳିଉଠିଲା । ପରେ-ପରେ ରୋଷେଇଘରଣୀକୁ ଡାକ ପକେଇଲେ । କିନ୍ତୁ ସେ ଶୀତଜ୍ୱାଳାରେ ଝଣ-ଝଣ କରି ବାସନ ମାଜି ଚାଲିଥାଏ । ତେଣୁ ଅଘୋରମୟୀଙ୍କ ପାଟି ତା କାନରେ ଆଦୌ ପଡ଼ୁ ନ ଥାଏ । ଅଘୋରମୟୀ ଘଣ୍ଟାକୁ ହାତରେ ଧରି ବାରଣ୍ଡା ପାଖକୁ ଆସି ଆଉଥରେ ଗାଳିଦେଇ କହିଲେ —ତୁ କ'ଣ କାନରେ ଠିପି ଦେଇଦେଇଛୁ ନା କଣ ? ଉପୀନ ଘଣ୍ଟେ ହେଲା ବାହାରେ ରହି ଡାକ ପକଉଚି, ଟିକିଏ ହେଲେ ଶୁଣିବାକୁ ନାହିଁ ।

ଏଥରକ ଡାକ ସେ କିନ୍ତୁ ବେଶ୍ ଶୁଣିପାରିଲା । ଉପୀନବାବୁଙ୍କ ନାଁ ଶୁଣିବା ମାତ୍ରେ ସେ ଧଡ଼ପଡ଼ ହୋଇ ଉଠିପଡ଼ି ଧାଇଁଯାଇ କବାଟ ଖୋଲି-ଦେଇ ଆସିଲା; କିନ୍ତୁ ବାହାରେ କେହି ନାହାଁନ୍ତି । ବାହାରେ ଠିଆହୋଇ ଚାରି ଆଡ଼କୁ ଚାହିଁଲା, କେହିନାହାଁନ୍ତି । ସେଥୁ ଆସି ସେ ଅଘୋରମୟୀଙ୍କୁ କହିବା ମାତ୍ରେ ଅଘୋରମୟୀ ଅବିଶ୍ୱାସ କରି କହିଲେ—ନାହିଁ କ'ଣ କହୁଚୁ

କିଲେ ! ମୁଁ ନଜେ ତା ଡାକ ଶୁଣିଚ ଦଗ ! ତୁ ଗଳ ଭିତରକୁ ଯାଇ ଦେଖି ଆ ତ ।

—ଦେଖିଚ, କେଝ୍ଞ ନାହିଁ ।

ତଥାପି ତା କଥାରେ ତାଙ୍କର ବିଶ୍ୱାସ ହେଲାନ । ଉପୀନ କାଲି ଆସିନ, ଆଜ ବ ଆସିବନ ? ତେଣୁ ସେ ବିରକ୍ତ ହୋଇ କହିଲେ—ନା, ତୁ ଆଉଥରେ ଯାଇ ଗଳ ଭିତରଟାକୁ ଭଲ କରି ଦେଖିଆ ।

ବାହାରେ ଅନ୍ଧାରୁଆ ଗଳଟା ଭିତରେ ପଶିବା ପାଇଁ ଗୃହକର୍ତ୍ତ୍ରୀର ଆପତ୍ତି ! ସେ ମଧ୍ୟ ବିରକ୍ତ ହୋଇ ଉତ୍ତର ଦେଲ—କ'ଣ କହୁଚ ମା, ସେ କ'ଣ ମୋ ସାଥିରେ ଲୁଚୁକାଳ ଖେଳ ଖେଳୁଚନ୍ତି ! ଏତିକି କହିଦେଇ ସେ ନଜ କାମରେ ଲାଗିଗଲ ।

ଅଘୋରମୟୀ ଘରକୁ ଫେରି ନର୍ଜୀବ ଭଳି ଶେଯଟା ଉପରେ ପଡ଼ିଗଲେ । ପୀଡ଼ିତ ସନ୍ତାନର ଖବର ନେବାର ଉତ୍ସାହ ତାଙ୍କର ନ ଥିଲା । ତାଙ୍କର ଖାଲି ମନ ଭିତରେ ସେଇ ଗୋଟାଏ କଥା ଘାଣ୍ଟି ହେଉଥାଏ—କାଲି ଆସିଲେନ; ଆଜ ବ ନୁହଁ । ସମ୍ଭବ, ଅସମ୍ଭବ ନାନା କାରଣ ଖୋଜି ବାହାର କରିବା ଭିତରେ ତାଙ୍କର ଏ କଥାଟି ମନେହେଲାନ ଯେ ଉପୀନର ଘର କଲିକତା ନୁହେଁ । କଲିକତା ଆସିଲେ ସେ ହୁଏତ କୌଣସି ଆତ୍ମୀୟ-ସ୍ୱଜନଙ୍କ ଘରେ ଆସି ରହୁଥିବ । ଖାଲି ସେ ଭାବିଲେ, ଉପୀନ ମନରେ କୌଣସି ରାଗ ନାହିଁ ତ ? ହୁଏତ ବୋଧହୁଏ...... । ଏହି କଥା ଭାବି ଭାବି ସେ ଆଉ ଶୋଇପାରିଲେ ନାହିଁ । ସିଧା ସେ ରୋଷେଇ ଘରକୁ ଗଲେ ।

କରୁଣାମୟୀ ଜ୍ୱଳନ୍ତ ଚୁଲି ଆଗରେ ମୁଣ୍ଡକୁ ପାକି ବସି ରହିଥାଏ । ଜ୍ୱଳନ୍ତ ରକ୍ତାଭ ଆଲୋକ ତା ମୁହଁରେ ଆସି ପଡ଼ୁଥାଏ । ମଥା ଉପରେ ଲୁଗା ନ ଥିଲା । ଆଜ ସେ ବାଳ ବାନ୍ଧିନ । ଲୁଖୁରା ବାଳଗୁଡ଼ାକ ଇତଃସ୍ତତଃ ବିକ୍ଷିପ୍ତ ହୋଇ ପଡ଼ି ରହିଥାଏ ।

ଅଘୋରମୟୀ ଦ୍ୱାର ଆଗରେ ନର୍ବାକ୍ ଭାବରେ ଠିଆହୋଇ ରହିଲେ । ଆଜ ଯେଉଁ ଜନଷଟି ତାଙ୍କ ଆଖି ଆଗରେ ପଡ଼ିଲା, ତାର ତାତ୍ପର୍ଯ୍ୟ ବୁଝିବା ଭଳି ଶକ୍ତି ତାଙ୍କର ନ ଥିଲା । ଯେଉଁ ସ୍ତବ୍ଧ ମୁଖ ଉପରେ ଚୁଲିର ରକ୍ତାଭ ଆଲୋକ ବିଚିତ୍ର ତରଙ୍ଗ ଭଳି ଖେଳି ଯାଉଥିଲା, ସେଇ ମୁଖ ସମସ୍ତ ଅଭିଜ୍ଞତାର ବାହାରେ । ଏ ମୁହଁରେ ଦୋଷ କଳଙ୍କ ଅଛି କି ନା,

ଅତିକ୍ରମଣ କରିବା ବଡ଼ କଠିନ । ନିଖୁଣ ବୋଲି ମଧ୍ୟ ତାଙ୍କୁ କୁହାଯାଇ ନ ପାରେ । ଏଭଳି ମୁହଁ ପୂର୍ବରୁ କେବେ ଦେଖାଯାଇନି; ତେଣୁ ଅପୂର୍ବ । ନିର୍ନିମେଷ ଚକ୍ଷୁରେ ଅଘୋରମୟୀ ସେ ମୁହଁଟିକୁ ବହୁକ୍ଷଣ ଚାହିଁବା ପରେ ଗୋଟିଏ ଦୀର୍ଘନିଶ୍ୱାସ ଛାଡ଼ିଲେ ।

ଏହି ନିଶ୍ୱାସର ଶବ୍ଦରେ ଚମକିପଡ଼ି କିରଣମୟୀ ପଛକୁ ମୁହଁ ଫେରାଇ ଠିଆହେଲା । ମୁଣ୍ଡରେ ଓଢ଼ଣୀଟା ଉପରକୁ ଟାଣିନେଇ ସେ କହିଲା—ମା, ତୁମେ ଏଠି କାହିଁକି ?

ଅଘୋରମୟୀ ଚମକିଉଠିଲେ । ଏଭଳି ଶାନ୍ତ, ଏଭଳି କରୁଣ କଣ୍ଠସ୍ୱର ସେ କୌଣସିଠି କେବେ ଶୁଣି ନ ଥିଲେ । କହିଉଠିଲେ—ଏକା ଏକା ବସି ରୋଷେଇ କରୁଚୁ ଦେଖି ଚାଲିଆସିଲି ।

ଶାଶୁଙ୍କ ଆଡ଼କୁ ଗୋଟିଏ ପିଢ଼ା ଘୁଞ୍ଚେଇଦେଇ କିରଣମୟୀ ଚୁଲି ପାଖକୁ ଲାଗି ବସିଲା । ମନ ଭିତରେ ପୁଣି ବିରକ୍ତି ତେଜିଉଠିଲା । ଗନ୍ଧ ଯେଭଳି ପବନକୁ ଆଶ୍ରୟ କରି ବାହାରକୁ ଚାଲିଆସେ, ଅଥଚ ପରେ ଉଡ଼ି ଉଡ଼ି ମିଳିଯାଏ, କିରଣମୟୀର ସେତେବେଳର ମନର ଭାବଟା ଶାଶୁଙ୍କର ଆକସ୍ମିକ ଆଗମନରେ ସେହିଭଳି ମୁହୂର୍ତ୍ତକ ମଧ୍ୟରେ ବାହାରକୁ ଆସି ଏଇ ଛଦ୍ମ ସ୍ନେହର ଝଡ଼ରେ ଉଡ଼ିଗଲା । ଏହା ସତ୍ୟ ନୁହେଁ । କଦର୍ଯ୍ୟ ପ୍ରତାରଣା ମାତ୍ର । କିନ୍ତୁ ଅଯଥା ଯୁକ୍ତିତର୍କ କରିବାକୁ ତାଙ୍କୁ ଆଦୌ ଭଲ ଲାଗୁ ନ ଥିଲା । ସବୁବେଳେ ଝଗଡ଼ା କରି କରି ପ୍ରକୃତରେ ସେ କ୍ଲାନ୍ତ ହୋଇ ପଡ଼ିଥିଲା ।

କିଛି ସମୟ ଚୁପ୍ ରହି ଅଘୋରମୟୀ କହିଲେ— ଚାକରାଣୀକୁ ଟିକିଏ ଡାକିଦେଇ ଆସିବୁ କି ?

କିରଣମୟୀ ଅନ୍ତରରେ ଥିବା ସମସ୍ତ ବିଦ୍ରୋହ ଭାବକୁ ଚାପି-ଚାପି କହିଲା—କାହିଁକି ? ଦରକାର କ'ଣ ? ମୁଁ ତ ସବୁବେଳେ ଏକା ଏକା ରହେ । ଏକାକୀ ରହିବା ମୋର ଅଭ୍ୟାସରେ ପରିଣତ ହୋଇଗଲାଣି । ବରଂ ସେ ଘରେ ଏକା ରହିଛନ୍ତି, ତାଙ୍କରି ପାଖରେ ଯାଇ କିଏ ଜଣେ ବସିଲେ ଭଲ ହୁଅନ୍ତା ।

ପୀଡ଼ିତ ସନ୍ତାନର କଥା ଉଠିବାମାତ୍ରେ ଅଘୋରମୟୀର ମନ ଭିତରଟା ହଠାତ୍ ଯେମିତି କ'ଣ ହୋଇଉଠିଲା । ସେ ବ୍ୟସ୍ତ ହୋଇ କହି-

ଉଠିଲେ— ତେବେ ତାଆର ପାଖକୁ ଯାଉଚ । ତୁ ମଧ୍ୟ ଚିକଏ ଶୀଘ୍ର କାମ ଦାମ ସାରଦେଇ ଚାଲିଆ ।

ଇତି ମଧ୍ୟରେ ଉପେନ୍ଦ୍ର ନିଜ ଗାଁକୁ ଚାଲିଯାଇଛନ୍ତି । ସନ୍ତୋଷ ମଧ୍ୟ ଆଉ ଦିନେ ମାତ୍ର ଉପେନ୍ଦ୍ର ସାଥିରେ ହାରାନଙ୍କୁ ଦେଖିବାକୁ ଆସିଥିଲା, ଆଉ ଆସିନି । ସେ ନିଜ କଥା ନେଇ ବିବ୍ରତ ଥିଲା । ଉପେନ୍ଦ୍ର ତାର ଅନ୍ୟମନସ୍କତା ଓ ଏ ଘରକୁ ଆସିବା ଲାଗି ତାର ଅନିଚ୍ଛା କଥା ଜାଣି ତାକୁ ଆସିବାକୁ କେବେ ଡାକିନି । ଚିକିତ୍ସା ଏବଂ ଅନ୍ୟ ବ୍ୟବସ୍ଥା ନିଜେ ନିଜେ ସ୍ଥିର କରଦେଇ ଯାଇଥିଲେ । କେବଳ କଲିକତା ଛାଡ଼ି ଘରକୁ ଫିରିବା ଦିନ ସନ୍ତୋଷକୁ ଡାକ ମଝିରେ ମଝିରେ ଖବର ନେବାକୁ ଏବଂ ତାଙ୍କୁ ଚିଠି ଲେଖି ଜଣେଇବାକୁ ଅନୁରୋଧ କରି ଚାଲିଯାଇଥିଲେ । ଆଜି ସନ୍ତୋଷ ସ୍କୁଲରୁ ଫେରିବା ମାତ୍ରେ ଉପେନ୍ଦ୍ରର ଚିଠି ପାଇଲା । ସେ ଲେଖିଥିଲେ, ତୋର ପଢ଼ାପଢ଼ି ଭଲ ହେଉଥିବ ବୋଲି ମୋର ଆଶା । କେତେ ଦିନ ହେଲା ହାରାନ୍‌ଦାର ଖବର ନ ପାଇ ବଡ଼ ଚିନ୍ତିତ ହୋଇପଡ଼ିଚି । ଯଦିବା ଜାଣେ ଖବର ଦେବାର ଆବଶ୍ୟକତା ନାହିଁ ବୋଲି ବୋଧହୁଏ ତୁ ଖବର ଦେଉନୁ; ତଥାପି ତାର ଚିକିତ୍ସା କିଭଳି ହେଉଚି ଲେଖି ଶୀଘ୍ର ଜଣାଇବୁ ।

ଯେମିତି ମନେ ହେଲା, ସନ୍ତୋଷ ପିଠିରେ କିଏ ଗୋଟାଏ ଚାବୁକ ମାରି ଦେଲା । ସେଠି ତା ପରେ ଦିନେ ହେଲେ ତ ସେ ହାରାନ୍‌ଦା ଘରକୁ ଯାଇ କ'ଣ ହେଲା, ନ ହେଲା ବୁଝିଆସିନି । ଇତି ମଧ୍ୟରେ ତାଙ୍କ ଘରେ କ'ଣ ନା କ'ଣ ଘଟି ଥାଇପାରେ, ଅଥଚ ତା ଉପରେ ନିର୍ଭର କରି ଉପେନଦା ଗାଁକୁ ଚାଲିଯାଇଛନ୍ତି । ସେ ସଙ୍ଗେ ସଙ୍ଗେ ତଳକୁ ଓହ୍ଲେଇ ଆସିଲା । ବେହାଣ୍ଟ ଜଳଖିଆ ଆଣୁଥିଲା, ଧକ୍କା ବାଜି ତା ହାତରୁ ସମସ୍ତ ଜିନିଷ ତଳେ ପଡ଼ିଗଲା । ସନ୍ତୋଷ ହାରାନ୍‌ଦା ଚିନ୍ତାରେ ଏତେ ଭୋଳ ଯେ କ'ଣ ହେଲା କିଛି ଜାଣିପାରିଲା ନାହିଁ । ରାସ୍ତାକୁ ଆସି ଗୋଟିଏ ଖାଲି-ଗାଡ଼ି ଭଡ଼ା କରି ବସିଲା ଏବଂ ଜଲଦି ଜଲଦି ନେ ବୋଲି ଆଦେଶ ଦେଇ ଗନ୍ତବ୍ୟ ପଥକୁ ଅନେଇ ରହିଲା । ତାର ଭୟ ଥିଲା, ବାଟବଣା ହୋଇ ହୁଏତ ସେ ଗଳିଆଗକୁ ମାଡ଼ିଯାଇପାରେ । ପ୍ରାୟ ୨୦ ମିନିଟ ବାଦ, ଗାଡ଼ିକୁ ଛାଡ଼ି ସେ ଛୋଟ ଗଳିଟା ଭିତରେ ଯାଇ ପହଞ୍ଚିଲା ବେଳକୁ ବେଳ ରାତରାତି ସନ୍ଧ୍ୟା । ଚଞ୍ଚଳ ଚଞ୍ଚଳ ପାଦକୁ ପକେଇ ଶେଷରେ ୧୩ ନମ୍ବର

ଘର ଆଗରେ ପହଞ୍ଚିଲା । ମନେ ହେଲା, କିଏ ଯେମିତି ତାକୁ ଅପେକ୍ଷା କରି ରହିଥିଲା । ସତ୍ୟଶଙ୍କର ବୁକୁ ଭିତରଟା କମ୍ପି ଉଠିଲା । ସହଜରେ ସେ ଘର ଭିତରକୁ ପଶି ପାରିଲା ନାହିଁ ।

ଦ୍ୱାର ପାଖରେ କିରଣମୟୀ । ସେ ହସ ହସ ମୁହଁକୁ ଟିକିଏ ଖୋଲି ଦେଇ ଆଦର ସହକାରେ ଦିଅର ବୋଲି ସମ୍ବୋଧନ କରି କହିଲା—ଆସ, ଠିଆ ହୋଇ ରହିଲ ଯେ !

—ପୁଣି ସେଇ ଦିଅର ! ସତ୍ୟଶଙ୍କର ମୁହଁଟା ଲଜ୍ଜାରେ ଲାଲ ହୋଇ ଉଠିଲା, କିନ୍ତୁ ସଙ୍ଗେ ସଙ୍ଗେ ପରିସ୍ଥିତିକୁ ସମ୍ଭାଳି ନେଇ ବିମୀତ ଭାବରେ କହିଲା—ଦେଖୁଚ ଏଯାଏଁ ମଧ୍ୟ ମତେ କ୍ଷମା ଦେଇନା !

କିରଣମୟୀ କହିଲା—କାହିଁ ତୁମେ ତ କେବେ କ୍ଷମା ଚାହିଁନା । ଚାହିଁବା ପୂର୍ବରୁ ଉପରେ ପଡ଼ିଲେ ମାଜି ନେଇକରି ଅମର୍ଯ୍ୟାଦା କରିବାକୁ ହୁଏ । ଅମର୍ଯ୍ୟାଦା କରିବା ଭଳି କମ୍ ଦାମର ଜିନିଷ ତ ନୁହଁ ତୁମେ ।

ତାରି ଏହି ପ୍ରସନ୍ନ ରହସ୍ୟାଳାପ ମଧ୍ୟରେ ଏପରି ଏକ ଗଭୀର କରୁଣା ପରିସ୍ଫୁଟ ହୋଇଉଠିଲା ଯେ ସତ୍ୟଶଙ୍କର ଆନନ୍ଦ ମୁଖ ଏବଂ ମୃଦୁ କଣ୍ଠରେ କହିଲା—ମୋର ? ମୋର କୌଣସି ଦାମ ନାହିଁ ଭାଉଜ ! ମୋର କୌଣସି ଅମର୍ଯ୍ୟାଦା ହେବନି, ମାଫ କରନ୍ତୁ ।

କିରଣମୟୀ ଅଳ୍ପ ଟିକିଏ ହସି କହିଲା—ଇମିତି ଜିନିଷ ବହୁତ ଅଛି, ଯାହାକୁ କ୍ଷମା କଲେ ତାର ସବୁ ଶେଷ ହୋଇଯାଏ । ଆଜି ତୁମକୁ କ୍ଷମା କରିବାକୁ ଯାଇ ଯଦି ସତ୍ୟଶଙ୍କରବାବୁ ବୋଲି ଡାକେ, ତାହାହେଲେ କହି ରଖୁଚି, ସେ କ୍ଷମା ତୁମେ କେବେ ପାଇବନି । ତୁମକୁ ଧରି ରଖିବାର ଏଇ ଟିକିକ ମାତ୍ର ବନ୍ଧନ ତୁମେ ନିଜେ ହାତକୁ ବଢ଼େଇ ଦେଇଚ । ମିଠା କଥା କହି ସେଇ ଟିକିକ ଭୁଲେଇ ଭାଲେଇ ଯେ ନେଇଯିବ, ସେତେ ନିର୍ବୋଧ ତୁମର ଭାଉଜ ନୁହେଁ ।

ସତ୍ୟଶଙ୍କର ଚମକି ଉଠିଲା । ଏଇ ଶିକୁଳିବନ୍ଧା ବନ୍ଧନ ଉପମାଟା ତାକୁ ଭଲ ଲାଗିଲା । ବରଂ ହଠାତ ତାର ମନେ ହେଲା, ତାର ଅସାବ-ଧାନତାର ସୁଯୋଗ ନେଇ ଏହି ତରୁଣୀଟି ଯେମିତି ସତେ ଗୋଟାଏ ଶକ୍ତ ଶିକୁଳି ତାର ଗୋଡ଼ରେ ବାନ୍ଧି ପକେଇଚି । ସଙ୍ଗେ ସଙ୍ଗେ ତାର ସମସ୍ତ ସହଜବୁଦ୍ଧି ଆତ୍ମରକ୍ଷା ଲାଗି ସଜ୍ଜିତ ହୋଇପଡ଼ିଲା । ଘର ଭିତରେ ପଶୁ

ପଶୁ ତା ଆଖିରେ ଯେଉଁ ଦୃଷ୍ଟି କର୍ତ୍ତବ୍ୟ ହଠାତ୍‌ର ଧକ୍କାରେ କୁଣ୍ଠିତ ଓ ଲଜ୍ଜାରେ ବିନମ୍ର ହୋଇ ଉଠିଥିଲା, ଧକ୍କା ଖାଇ ତାହା ସଂହରଣ ଓ ତୀବ୍ର ହୋଇଉଠିଲା ।

କରୁଣାମୟୀ କହିଲା—ତୁମର ମୁହଁ କିନ୍ତୁ ଶୁଖିଯାଇଛି ଯେ ! ବୋଧହୁଏ କିଛି ଖାଇ ଆସିନା । ଆସ, ଉପରକୁ ଆସ; କିଛି ଖାଇନେବ ।

ସନ୍ତୋଷ କିଛି ନ କହି ନିମନ୍ତ୍ରଣ ରକ୍ଷା କରିବାକୁ ପ୍ରସ୍ତୁତ ହେଲା ଏବଂ ଏଇ ସମସ୍ତ ରହସ୍ୟ ଓ କୌତୁକ ମଧ୍ୟରୁ ପ୍ରକୃତରେ କେତେକାଂଶ କେବଳ ରହସ୍ୟ ଓ କେତେକାଂଶ ରହସ୍ୟହୀନ, ସେ କଥା ଭାବି ଭାବି ସେ ସେଇ ରହସ୍ୟମୟୀର ଅନୁସରଣ କରିବାକୁ ଲାଗିଲା ।

ଉପରକୁ ଉଠି କରୁଣାମୟୀ ପଛକୁ ବୁଲି କହିଲା—ଆଜି ରୁକ୍‌ମଣୀକୁ ନେଇ ମା' କାଳିବାଡ଼ିକୁ ଯାଇଛନ୍ତି । ରୋଷେଇ ଘରେ ବସି ତୁମେ ଲୁଚି ବେଲିଦେବ, ମୁଁ ଛାଣିଦେବି । ପାରିବ ତ ? କହି କିନ୍ତୁ ହସିଉଠି କହିଲା—ତୁମେ ଯେ ପାରିବ, ତୁମକୁ ଦେଖିଲେ, ଜଣାପଡ଼େ ଆସ ।

ସନ୍ତୋଷ ମନ ଭିତରର ଦ୍ୱନ୍ଦ୍ୱକୁ ଚାପି ଭଲ ମଣିଷ ଭଳି କହିଲା—ମୁଁ ଯେ ଲୁଚି ବେଲିପାରେ, ସେ କଥା କଣ ମୋ ଦେହରେ ଲେଖା ହୋଇଛି ଭାଉଜ ?

କରୁଣାମୟୀ କହିଲା— ଲେଖ ପଢ଼ିବା କ'ଣ ଜାଣିବା ଦରକାର ? ସେଦିନ ରାତିରେ ମୋ ଦେହରେ କ'ଣ କିଛି ଲେଖାଥିଲା ? ଅଥଚ ତୁମେ ପଢ଼ିଥିଲ ଯେ ।

ସନ୍ତୋଷ ମୁହଁ ପୁଣି ଉପରକୁ ଉଠେଇଲା । ରୋଷେଇ ଘରକୁ ଯାଇ ପ୍ରଥମରୁ ଏଇମିତି ଠୋକର ପାଇବ ବୋଲି ସେ ଆଶା କରି ନ ଥିଲା । ବ୍ୟଞ୍ଜନପାକ ମିଶି ଜଳଖିଆ ତିଆରି କରିବା ପରେ ଯେତେବେଳେ ଏଇ ସଂଘର୍ଷର ଉତ୍ତାପ ଟିକିଏ ଶିଥିଳ ହୋଇପଡ଼ିଲା, ସେତେବେଳେ କରୁଣା-ମୟୀ ପଚାରିଲା— ତୁମ ବିଷୟରେ ବହୁତ କଥା ତୁମ ଉପୀନଦା ମୁହଁରୁ ଶୁଣିଛି । ଆଚ୍ଛା, ସନ୍ତୋଷ, ସେ ବୋଧହୁଏ କଲିକତାରେ ନାହାନ୍ତି । ଘରକୁ ଚାଲି ଯାଇଛନ୍ତି ନା ?

— ଚାଲିଗଲେଣି ।

ମୁଁ ଜାଣେ; କିନ୍ତୁ ମା ଆଦୌ ବିଶ୍ୱାସ କରନ୍ତି ନାହାନ୍ତି । ମା କହୁଛନ୍ତି, ତାଙ୍କୁ ନ ଜଣେଇ ଉପୀନବାବୁ କଦାପି ଯାଇ ନ ଥିବେ । ବୋଧହୁଏ ତାଙ୍କୁ ହଠାତ୍ ଯିବାକୁ ପଡ଼ିଲା ନା ?

ସତୀଶ ସେକଥା ସଠିକ ଭାବରେ ଜାଣେନା । ପ୍ରକୃତରେ ସେ କିଛି ହେଲେ ଜାଣିନି ।

ଇତି ମଧ୍ୟରେ ଦୁଇ ବନ୍ଧୁଙ୍କ ମଧ୍ୟରେ ଏତେ ଯେ ଅପ୍ରିୟ କଥା ହୋଇଯାଇଛି, ସେ କଥା କୁହାଯାଇ ପାରେନା । ସତୀଶ ଚୁପ ରହିଲା । ତାକୁ ନ କହି ଉପୀନଦା ଯେ କାହିଁକି ଚାଲିଗଲା, ସେ ଆଦୌ ଅନୁମାନ କରିପାରିଲା ନାହିଁ । କିନ୍ତୁ କିରଣମୟୀ କଥାଟାକୁ ଚାପିଦେବାର ସୁଯୋଗ ଦେଲାନି । କହିଲା—ଯାହା ହେଉ ସତୀଶ, କିନ୍ତୁ ଉପୀନବାବୁ ଯେଉଁ କାମଟା କଲେ ନା କିଛି ଭଲ ହେଲାନି । ଯିବି ବୋଲି କହିଥିଲେ କି'ଣ ତାଙ୍କୁ କିଏ ବାନ୍ଧି ରଖିଥିଲା ? ମାଆଙ୍କୁ ଏତେ କଥା ଭାବିବାକୁ ପଡ଼ନ୍ତା ନାହିଁ । ମୁଁ କୌଣସିମତେ ତାଙ୍କୁ ବୁଝେଇ ପାରୁନି । ଉପୀନବାବୁ ସବୁବେଳେ ତ କଲିକତାରେ ରହନ୍ତିନି । ଅନ୍ୟଠି ତାଙ୍କର ଘରଦ୍ୱାର ଅଛି, କାମ ଦାମ ଅଛି । ଏସବୁ ଛାଡ଼ି କେତେ ଦିନ ବା ମଣିଷ ପରର ଦୁର୍ଭାଗ୍ୟକୁ ଧରି ଅଟକି ରହିପାରେ ? କିନ୍ତୁ ବୁଢ଼ା ବୁଢ଼ୀଙ୍କ ପାଖରେ ଏ ଯୁକ୍ତିଟା ଯୁକ୍ତି ବୋଲି ଧରାଯାଏନା । ସେମାନେ ନିଜ କଥାଟାକୁ ହିଁ ଜୋରକରି ଧରି ବସିଥାଆନ୍ତି—ଆଉ କିଛି ଭାବିପାରନ୍ତି ନାହିଁ ।

ସତୀଶ ଏ କଥାର ଠିକ ଜବାବ ନ ଦେଇ କହିଲା—ଉପୀନଦା, ଏତେଦିନ ଧରି ବାହାରେ କିପରି ରହିଲେ, ତାଠୁ ବଳି ବିସ୍ମୟ ଆଉ କିଛି ଥାଇ ନ ପାରେ । କେଉଁଠି ଦିନରୁ ଦୁଇ ଦିନ ସେ ରହିପାରନ୍ତି ନାହିଁ । ବିଶେଷ କରି ବିବାହ ପରେ ଗୋଟାଏ ରାତି ସୁଦ୍ଧା କେଉଁଠି ରହିଗଲେ ମୁଣ୍ଡ ପିଟାପିଟି । ଆଗେ ମୋର ସବୁ ବିଷୟ ସେ ବୁଝୁଥିଲେ । ବର୍ତ୍ତମାନ ସବୁ ଛାଡ଼ିଦେଇ ସେଇ ଘର କଣରେ ପଡ଼ି ରହିଛନ୍ତି । କଟେଜ଼କୁ ଯିବା ପାଇଁ ବାଧ୍ୟ; ତେଣୁ ସେଇଠିକି ଥରେ ଅଧେ ଯାଆନ୍ତି । ଏଇ କଣ ହେଲା ଦେଖିଲ ତ !···

କିରଣମୟୀ ବାଧା ଦେଇ କହିଲା—ବସ ସତୀଶ, ତୁମର ଖାଇବା ବ୍ୟବସ୍ଥା କରିଦେଇ ଆସେ । ତୁମେ ଖାଇ ଖାଉ ଗଳ୍ପ କରିବ,

ଘର ଭଲ ହେବ । ଏତିକି କହି କିରଣମୟୀ ଆସନ ପକାଇ ଜଳଖିଆ କାଢ଼ି ଦେଇ ପାଖରେ ଆସି ବସିଲା । ଆଗ୍ରହର ସହିତ ପଚାରିଲା – ତା ପରେ ?

ସଞ୍ଜୀବ ପାଟି ଭିତରେ ଖଣ୍ଡେ ଲୁଚି ପୂରାଇ କହିଲା—ଉପୀନଦା ଜଣେ ମସ୍ତ ଘଟକ । ସେଠି ଏଠି ବାହାଘର କରେଇବା ତାଙ୍କର ବଡ଼ ସଉକ । ତେଣୁ ସେ ଏମିତିଭଳି ଏକ ବାହାଘର କର୍ତ୍ତା ହୋଇ ଯିବାକୁ ପଡ଼ିଥିବ । ସେଦିନ ଯାହା ହେଲା, କଣ କହିବି ନୂଆବୋଉ ! ଉପୀନଦା ଥିଲେ ଆମର ଜଣେ ସାଙ୍ଗର ବିବାହର ଉଦ୍ୟୋକ୍ତା । ପୂର୍ବରୁ ସମସ୍ତ ଆୟୋଜନ ଉପୀନଦା ନିଜ ହାତରେ କରିଥାଆନ୍ତି । ବିବାହ ଦିନ ଆସି ପହଞ୍ଚିଲା । ଆଉ ଉପୀନଦାର ଦେଖା ନାହିଁ । ଭାଉଜ (ଉପୀନ ସ୍ତ୍ରୀ) ଙ୍କର ଦେହ ଭଲ ନାହିଁ ବୋଲି ଆଉ ଘରୁ ବାହାରିଲେ ନାହିଁ । ଆମେ ସମସ୍ତେ ମିଶି ସେ ଦିନ ଯାହା ଅନୁରୋଧ କରିଚୁନା········କିନ୍ତୁ କିଛିହେଲେ ଫଳ ହେଲାନି । ପଥରର ଦେବତା ହୋଇଥିଲେ ମଧ୍ୟ ସେ ବର ଦେଇଥାଆନ୍ତେ । କିନ୍ତୁ ଉପୀନ୍‌ଦା ଏକାବେଳକେ ଅଟଳ ! ଦେହ ଭଲ ଅଛି ବୋଲି ଭାଉଜ କହିବାମାତ୍ରେ ଉପୀନ୍‌ଦାର ସେଉଁ ଗର୍ଜନ—ତୁମ ଦେହର ଭଲ ମନ୍ଦ କଥା ମୋ ଉପରେ, ତୁମେ ଚୁପ୍ କର ।

କିରଣମୟୀ ସ୍ତବ୍‌ଧ ହୋଇ ସେମିତି ବସି ରହିଥାଏ । ତାର ସମସ୍ତ ବିଗତ ଜୀବନଟା ଯିମିତି ମନେହେଲା; ଅନ୍ତସ୍ଥଳ ଭିତରେ ଘାଣ୍ଟି ତକାଟି ହୋଇଉଠିଲା । ତାର ଭିତରୁ ସେ ଯେଉଁଭଳି ଗୋଟାଏ ରତ୍ନ ଖୋଜି ପାଇଲା । କିନ୍ତୁ ସଞ୍ଜୀବଟା ନିହାତି ବୋକା, କିଛି ବୁଝିପାରିଲା ନାହିଁ । କେଉଁ କାହାଣୀର କେଉଁ ଅଂଶଟା କାହା ହୃଦୟରେ କମିତି କେତେବେଳେ ସ୍ପର୍ଶ କରେ, ସେ ତାର କିଛି ଖବର କ'ଣ କେବେ ରଖିଚି ନା ଆଜି ରଖିବ ! ସେ ସେମିତି କହି ଚାଲିଥାଏ—ଉପୀନ୍‌ଦାର ଅନୁପସ୍ଥିତିରେ କିଏ କେମିତି ନିନ୍ଦା କରିଥିଲା, କିଏ କିମିତି ଉପହାସ କରିଥିଲା, କେତେ ଆନନ୍ଦ ପଣ୍ଡ ହୋଇଥିଲା – ଏଇସବୁ କଥା ।

କିନ୍ତୁ ଏଥର ଶ୍ରୋତା କାହିଁ ? ଏଇ ତୁଚ୍ଛ କାହାଣୀଠାରୁ କିରଣମୟୀ ବହୁ ଦୂରକୁ ଚାଲିଯାଇଥିଲା ।

ହଠାତ୍ ସଞ୍ଜୀବ ତାର ଲୁଚିଖିଆ ଓ ଗଳ୍ପକୁହା ବନ୍ଦକରି ପ୍ରଶ୍ନ କଲା ତୁମେ ଶୁଣୁନ ଯେ, କ'ଣ ଭାବୁଚ ?

କିରଣମୟୀ ଚକିତ ଭାବରେ କହିଲେ—ଶୁଣୁଛ ସନ୍ତୋଷ ! ମୋର କହିବା କଥା ହେଉଛି, ଅସୁଖ ବିସୁଖରେ ଯତ୍ନ ନେବାତ ଭଲ କଥା ।

ସନ୍ତୋଷ ଉତ୍ତେଜିତ ହୋଇ କହିଲା—ଅବଶ୍ୟ । କିନ୍ତୁ ଅତିରିକ୍ତଟା ଭଲ ନୁହେଁ । ଏଇ ସେବନ ଭାଉଜଙ୍କର ମିଳମିଳା ହୋଇଥିଲା ।

ଉପୀନ୍‌ଦା ଆଠ ଦଶ ଦିନ କାଳ ତାଙ୍କ ନେଯପାଖରୁ ଉଠିଲେନି । ଘରେତ ଏତେ ଲୋକ । ଭାଉଜଙ୍କର ଖିଆପିଆ କଥା ଉପୀନ୍‌ଦା ଖାଲି ବୁଝିଲେ କ'ଣ ଭାଉଜଙ୍କର ବସନ୍ତ ଭଲ ହୋଇଯାଇଥାଆନ୍ତା ?

କିରଣମୟୀ ଛନେକପାଇଁ ତା ମୁହଁକୁ ଚାହିଁ ରହି ଗଲେ, ଆଚ୍ଛା ସନ୍ତୋଷ, ତୁମର ଉପୀନ୍‌ଦା କ'ଣ ତୁମର ସେଇ ଶ୍ରେଷ୍ଠ ଭାଉଜଟିକୁ ଭାରି ଭଲ ପାଆନ୍ତି ?

ସନ୍ତୋଷ ସଙ୍ଗେ ସଙ୍ଗେ କହିଲା—ଟିକିଏ ବି ନାହିଁ ? ଧନ୍ୟାନନ୍ଦ ।

କିରଣମୟୀ ପୁଣି କିଛି ସମୟ ଚୁପ୍ ରହିବା ପରେ କହିଲେ—ଭାଉଜ ଦେଖିବାକୁ କିପରି ସନ୍ତୋଷ ! ଭାରି ସୁନ୍ଦରୀ ?

—ହଁ ଭାରି ସୁନ୍ଦର ।

କିରଣମୟୀ ଟିକିଏ ମୁରୁକିହସା ଦେଇ କହିଲେ—କ'ଣ ମୋ ଭଳି ?

ସନ୍ତୋଷର ମୁହଁ ତଳକୁ ହୋଇଗଲା । କିଛି ସମୟ ପରେ ମୁହଁକୁ ଉଠେଇ ପଚାରିଲା—ତୁମେ କ'ଣ ସତେ ଏକଥା ଜାଣିବାକୁ ଚାହଁ ?

ହଁ ।

—ଦେଖ, ମୋ ମତାମତର ବେଶୀ ମୂଲ୍ୟ ନାହିଁ; କିନ୍ତୁ ଯଦି ଥାଏ, ତାହାହେଲେ ମୋ ମତରେ ତୁମ ଭଳି ରୂପସୀ ପୃଥିବୀରେ ବିରଳ ।

କିରଣମୟୀ କ'ଣ କିଛି କହିବାକୁ ଯାଉଥିଲା, ହଠାତ୍ ତଳେ ପାଟିତୁଣ୍ଡ ଶୁଣି ସେ ଉଠିପଡ଼ିଲା । ମା ହୁଏତ କାଳବାଡ଼ିରୁ ଫେରି ଆସିଲେଣି !

ସନ୍ତୋଷ ତାର ଜଳଖିଆ ଶେଷ କରି ବାହାରକୁ ଆସିବା ମାତ୍ରେ ସାମନାରେ ଦେଖିଲା ଅଘୋରମୟୀ । ସନ୍ତୋଷ ମୁହଁକୁ କିଛି ସମୟ ଚାହିଁବା ପରେ ସେ ପଚାରିଲେ— ଏଇ ଉପୀନର ଭାଇଟିକ ବୋଧ୍ୟମା ! ଉପୀନ କେଉଁଠି ?

କିରଣମୟୀ କହିଲା—ସେ ଗାଁକୁ ଚାଲିଯାଇଛନ୍ତି ।

ଅଘୋରମୟୀ ସଂକ୍ଷେପରେ ଠିକ୍ ଅଛି ବୋଲି କହି ତାଙ୍କର ଚନ୍ଦନଚର୍ଚ୍ଚିତ ମୁଖଟିକୁ କଳା କରିଦେଇ ତାଙ୍କ ପୁଅ ଘର ଭିତରକୁ ଚାଲିଗଲେ ।

ସତୀଶ କହିଲା—ମୁଁ ତେବେ ଯାଉଛି………

କିରଣମୟୀ ଅନ୍ୟମନସ୍କ ଭାବରେ କହିଲା—ତେବେ ଯାଅ ।

ସତୀଶ ପାଦେ ଦୁପାଦ ଆଗକୁ ଯିବା ପରେ ଫେରି ଆସି କହିଲା—ଉପୀନ୍‌ଦା ଚିଠି ଦେଇଛନ୍ତି । ହାରାଣଦାର ଚିକିତ୍ସା କିମିତି ଚାଲିଛି ଜାଣିବାକୁ ଚାହିଁଛନ୍ତି ।

କିରଣମୟୀ କହିଲା—ଚିକିତ୍ସା ବନ୍ଦ ଅଛି । ଯେଉଁ ଡାକ୍ତର ଦେଖୁଥିଲା, ତାକୁ ଦେଖାଇବା ପାଇଁ ତାଙ୍କର ଅମତ; ଅଥଚ କି ମତ କହୁନାହାନ୍ତି ।

ସତୀଶ ଆଶ୍ଚର୍ଯ୍ୟ ହୋଇ କହିଉଠିଲା— ସେ କି କଥା ? ତାହାହେଲେ ଚିକିତ୍ସା ବନ୍ଦ କରି ବସିଛ ! ଇଏ କି ରକମ ବ୍ୟବସ୍ଥା !

—ବ୍ୟବସ୍ଥା ନ କରି ସେ ଚାଲି ଯାଇଛନ୍ତି । ମୋର ମନେହେଉଛି, ଥରେ ସେ କହିଥିଲେ, ସତୀଶ ତ ଏଠି ଅଛି, ସେ ସବୁ ବ୍ୟବସ୍ଥା କରିବ । ତୁମେ ତ ଆସୁନା ଏକାବେଳକେ ।

ସତୀଶ କିଛି ସମୟ ଅବାକ୍ ରହି ପରେ କହିଲା—କାଲି ସକାଳେ ଆସିବ । ଏତିକି କହି ସେ ଚାଲିଗଲା ।

ସତୀଶ ଚାଲିଯିବା ପରେ କିରଣମୟୀ ସ୍ୱାମୀ ଶୋଇଥିବା ଘରକୁ ଟିକିଏ ଖୋଲି ଦେଖିନେଲା । ହାରାଣ୍ ଗୋଟାଏ ତକିଆ ଦେହରେ ଦେହକୁ ଭରା ଦେଇ ମା ସହିତ ଆସ୍ତେ ଆସ୍ତେ କଥାବାର୍ତ୍ତା କରୁଥିଲେ । ତାଙ୍କର ଆଜି ସନ୍ଧ୍ୟାରେ ଜର ଆସିନି—ଏଇ ଟିକକ ଖବର ନେଇ ସେ ଧୀରେ ଧୀରେ ଚାଲିଆସିଲା । ବାହାର ଅନ୍ଧାର ଭିତରେ ଚୁପ୍ ଚାପ୍ ବସିରହି ଅପୂର୍ବ ମମତାର ସହିତ ଜର ହେଇନି । ଏଇ ଟିକକୁ ମନ ଭିତରେ ଲାଳନ କରିବାକୁ ଲାଗିଲା । ଆଜି ସତୀଶ ମୁହଁରେ ଉପେନ୍ଦ୍ରର ଅଧଃପତନର ଇତିହାସ ତାର ସମସ୍ତ ବକ୍ଷ ମାଧୁର୍ଯ୍ୟରେ ଭରି ଦେଇଥିଲା । ଆଜି ତେଣୁ ଯାହା କିଛି ଆସି ଏ ହୃଦୟ ଭିତରେ ହାଜର ହେଲା, ତାହା ମଧୁର ହୋଇ କିରଣମୟୀକୁ ଅନିର୍ବଚନୀୟ ରସରେ ସ୍ନିଗ୍ଧ କରି ଦେଇଥିଲା ।

## ସତର

ସେଦିନ ରାତିରେ ସନ୍ଧାଣ ଚାଲିଯିବା ମାତ୍ରେ ବହୁ ସମୟ ଧରି କରୁଣାମୟୀ ଅନ୍ଧକାର ବାରଣ୍ଡାଟାରେ ଚୁପ୍‌ଚାପ୍ ବସିରହି ଶେଷରେ ଉଠିଯାଇ ବେଡ୍‌ରୁମ୍‌ରେ ପଶିଲା । ରତ୍ନା ବସେଇ ଦେଇ ପୁଣି ସ୍ତବ୍ଧ ହୋଇ ବସିରହିଲା ।

ତା ବୁକୁ ମଝିରେ ଆଜି ସନ୍ଧାଣ ଅଜ୍ଞାତସାରେ ନିଜ ଆତ୍ମୀୟ ଜମେଇ ସୁରବାଳା ପ୍ରଭୃତି ଅପରିଚିତ ନରନାରୀର ଦଳକୁ ତା ମନ ଭିତରକୁ ଟାଣିଆଣି ଏଇ ଯେ ଏକ ଅଦ୍ଭୁତ ନାଟକର ଅସ୍ପଷ୍ଟ ଅଭିନୟ ଆରମ୍ଭ କରିଦେଇ ବେଶ୍ ଖସିଗଲା—ନିର୍ଜନ ଘର ଭିତରେ ଏକାକୀ ବସି ତାକୁ ସ୍ପଷ୍ଟ ଭାବରେ ଦେଖିବାର ଲୋଭ ଏକ ଦିଗରେ କରୁଣାମୟୀର ଯେମିତି ପ୍ରବଳ ହୋଇଉଠିଲା, ଅନ୍ୟ ଦିଗରେ ଅନ୍ୟ କାହାର ଅନିର୍ଦ୍ଦେଶ୍ୟ ଆଶଙ୍କାରେ ତା ହାତ ଗୋଡ଼ ଆଖିର ଦୃଷ୍ଟି ସେମିତି ଭାରାକ୍ରାନ୍ତ ହୋଇ-ଉଠିଲା । ଇଏ ଯିମିତି ଅନ୍ଧକାର ରାତିରେ ଭୟଙ୍କର ଭୂତର ଗଳ୍ପ ଭଳି ତାକୁ କ୍ରମାଗତ ଏକ ହାତରେ ଟାଣି ଅନ୍ୟ ହାତରେ ଠେଲିବାକୁ ଲାଗିଲା । ଏହିଭଳି ଭାବରେ ବିଚିତ୍ର ସ୍ୱପ୍ନଜାଲ ଭିତରେ ସେ ଯେତେବେଳେ ନିରତିଶୟ ଅଭିଭୂତ, ଠିକ୍ ସେଇ ସମୟରେ ଯୋତା ଶବ୍ଦରେ ଚମକି ଉଠି ଦେଖିଲା, ଦ୍ୱାରମୁହଁରେ ଆସି ଡାକ୍ତର ଅନଙ୍ଗମୋହନ ହାଜର ।

କରୁଣାମୟୀ ଓଢ଼ଣାକୁ ଭଲ ଭାବରେ ଟାଣିନେଲା—ଡାକ୍ତର ତାକୁ ଦେଖି ଭ୍ରୂକୁଟି କଲେ ।

ଇତି ପୂର୍ବେ ଏଇ ଡାକ୍ତରଟି ଠିକ୍ ଏଇ ଜାଗାରେ ଆସି ବହୁ ଥର ଇମିତି ଠିଆହୁଅନ୍ତି ଏବଂ କରୁଣାମୟୀଙ୍କ ହାତରନ୍ଧା ଖାଇବା ପାଇଁ ଆବେଦନ ଜଣାଇ ଥରକୁଥର ନାନା ରହସ୍ୟ କରିଥାଆନ୍ତି । ସେଇ

ପୁରାତନ ଇତିହାସର ପୁନରାବୃତ୍ତି ହେବ ବୋଲି କଳ୍ପନା କରି କରଣମୟୀର ଚିତ୍ତ ଉଦ୍ବେଳିତ ହୋଇଉଠିଲା ।

ସେ କଠିନ ହୋଇ ତାର ପ୍ରତୀକ୍ଷା କରି ଠିଆହୋଇ ରହିଲା; କିନ୍ତୁ ଡାକ୍ତର ରହସ୍ୟ କଲେନି । ସ୍ତବ୍ଧ ଗମ୍ଭୀର ମୁହଁରେ କିଛି ସମୟ ଚୁପ୍ ରହିବା ପରେ କହିଲେ— ଦଶ ବାର ଦିନ ବାହାରେ ରହିବାକୁ ପଡ଼ିଥିଲି ବୋଲି ହାରାନବାବୁଙ୍କ ବିଷୟରେ ବଡ଼ ଚିନ୍ତିତ ହୋଇ ପଡ଼ିଥିଲି; କିନ୍ତୁ ଆସି ଦେଖୁଚି, ଉଦ୍‌ବେଗର କୌଣସି କାରଣ ନ ଥିଲା ।

କରଣମୟୀ ମୁଣ୍ଡକୁ ଟିକିଏ ନତ କରି କହିଲା— ନା, ସେ ଭଲ ଥିଲେ ।

—ଭଲ ରହିବା ତ ଭଲ କଥା । ମୋର ତାହାହେଲେ ଆସିବାର କୌଣସି ଆବଶ୍ୟକତା ନାହିଁ । କ'ଣ କହୁଚ ?

କରଣମୟୀ କହିଲା—ନା ।

ଡାକ୍ତର କହିଲେ—ତୁମର ଆବଶ୍ୟକତା ନ ଥାଇପାରେ; କିନ୍ତୁ ମୋର ଆବଶ୍ୟକତା ବର୍ତ୍ତମାନ ସୁଦ୍ଧା ଶେଷ ହୋଇନି । ଏଇତକ କହିବା ଲାଗି ହିଁ ମୋତେ ଏତେଦୂର ଆସିବାକୁ ପଡ଼ିଲା ।

କରଣମୟୀ ମୁହଁକୁ ଉଠେଇ ଧୀରେ ଧୀରେ କହିଲା— ବେଶ୍ . ମା ଚେଇଁଛନ୍ତି, ତାଙ୍କୁ କହିଦେଇ ଯିବା ଉଚିତ । ମତେ କହିବା ନିରର୍ଥକ ।

ଡାକ୍ତର ମୁହଁଟାକୁ ଅତି ଗମ୍ଭୀର କରି ପୁଣି କହିଲେ—ମୁଁ ତାଙ୍କରି ପାଖରୁ ହିଁ ଆସୁଚି । ସେ ମଧ୍ୟ କହିଲେ, ମୋର ଆସିବା ଦରକାର ନାହିଁ । ଆବଶ୍ୟକତା ଯେ ଶେଷ ହୋଇଚି, ସେ କଥା ମୁଁ ବୁଝିପାରୁଚି; କିନ୍ତୁ ଡାକ୍ତର ଦକ୍ଷିଣା ବୋଲି ତ ଗୋଟାଏ କଥା ଅଛି, ସେଇଟାକୁ ଭୁଲିଯିବା ଠିକ୍ ନୁହେଁ ।

କରଣମୟୀ ଚୁପ୍ ରହିଲା ।

ଡାକ୍ତର ଶ୍ଳେଷ ଭାଷାରେ କହିଲେ— ପାଞ୍ଚ ଛଅ ମାସ ପରେ ଏ ଘରଟା ତୁମେ ନଦେଲେ ତୁମ ଶାଶୁ ନେବେ । ସେ ତ ତୁମମାନଙ୍କର କଥା । କିନ୍ତୁ ଯାଆ କହିଲେ ତ ଡାକ୍ତର ଯାଏନା କରଣ !

ଡାକ୍ତର ମୁହଁରୁ କରଣ ସମ୍ବୋଧନ ଶୁଣିବା ମାତ୍ରେ ତାର ମନେ ହେଲା, ଡାକ୍ତର ଯିମିତି ତା ଅନ୍ତଃସ୍ଥଳ ଭିତରେ ଗୋଟିଏ ଛୁରି ନିକ୍ଷେପ କଲେ । ସେ ଏଭଳି ଶିହରିଉଠିଲା ଯେ କ୍ଷୀଣ ଆଲୋକ ଭିତରେ ମଧ୍ୟ ଡାକ୍ତର ତା ଶିହରଣକୁ ବେଶ୍ ଦେଖିପାରିଲା ।

କରଣମଶ୍ରୀ ମୃଦୁକଣ୍ଠରେ ପଚ୍ଛରିଲେ—କଣ ଦୃହାଁନ୍ତି ଆପଣ ? ଟଙ୍କା ?

ହସର ଛଳନା କରି ଡାକ୍ତର କହିଲେ—ଆପଣ କାହିଁକି କରଣ ! ଏଠାରେ କେହି ନାହାନ୍ତି, 'ତୁମେ' କହିଲେ ଦୋଷ ହେବନି । କିନ୍ତୁ ଏତେଦିନ ଧରି ମୁଁ କ'ଣ ଗୁହୁଁଥିଲି ଶୁଣେ ? କ'ଣ ଟଙ୍କା ?

ପୁନର୍ବାର କରଣମଶ୍ରୀର ସର୍ବାଙ୍ଗ କମ୍ପି ଉଠିଲା ।

ଡାକ୍ତର କହିଲେ—ଟଙ୍କା ଗୃହେଁ ଏ କଥା କହିବା କଠିନ । ଏବେ ତୁମର ତ କୌଣସି ଅଭାବ ନାହିଁ, ତେବେ ଟଙ୍କା ଦେଇ ବିଦାୟ କର । ମୁଁ ଦଇଟା ଦଗରୁ ଠକିଯିବାକୁ ରାଜି ନୁହେଁ । କିନ୍ତୁ ଏତେଦିନେ ତୁମେ ଯେ ମୋ ମନର କଥା ଜାଣିପାରିଚ, ଏଥିଲାଗି ଧନ୍ୟବାଦ ଜଣାଉଚି । ଆଜି ଆଉ ବେଶୀ ବିରକ୍ତ କରିବିନି । ତେବେ କାଲି ଆସିପାରେ କି ?

ଏଇ ଲୋକଟି ଭିତରେ ଭିତରେ ଯେ କାଉଳ ଦଗ୍ଧ ହୋଇ ଚଢ଼ିଥିଲା ଏବଂ ଏଇ ସମସ୍ତ ଯେ ତାର ଉତ୍କ୍ଷିପ୍ତ ଉତ୍ତପ୍ତ ଭସ୍ମାବଶେଷ, କରଣମଶ୍ରୀ ତାହା ନିର୍ଣ୍ଣିତ ଭାବରେ ବୁଝି ମଧ୍ୟ ଶାନ୍ତ ଦୃଢ଼ସ୍ୱରରେ ମୁହଁକୁ ଉଠେଇ କହିଲା—ନା । ଆପଣ ଟିକିଏ ଅପେକ୍ଷା କରନ୍ତୁ, ମୁଁ ଏଇକ୍ଷଣି ଆଣି ଦେଉଚି । ଏହା କହି ସେ ଝଙ୍କେ ସଙ୍ଗେ ଭିତରକୁ ପଶିଆସିଲା ।

ଡାକ୍ତର ଶଙ୍କିତ ହୋଇପଡ଼ିଲେ । କରଣଙ୍କୁ ସେ ଚିହ୍ନନ୍ତି । କୁଆଡ଼େ କ'ଣ ଯେ ଆଣିବାକୁ ଗଲା, ଏତେ ରାତିରେ କ'ଣ ଯେ ଅସମ୍ଭବ ଗୋଟାଏ କାଣ୍ଡ ଘଟେଇବ, ଏଇ ଦୁର୍ଭାବନା ତାଙ୍କ ମନରେ ଗୁପି ବସିଲା । ସେ ଆଘାତ ପାଇ ଯାଇଚି, ଫେରିଆସି ନିଶ୍ଚୟ ଉଦ୍ଘାତ କରିବ । ନିଃସନ୍ଦେହ ପ୍ରତିଶୋଧର କଠୋରତା କଳ୍ପନା କରି ଅନଙ୍ଗମୋହନ ଆଶଙ୍କାରେ ସ୍ତମ୍ଭିତ ହୋଇପଡ଼ିଲେ ।

କରଣମଶ୍ରୀ ତତ୍‌କ୍ଷଣାତ୍ ଫେରିଆସିଲେ । ସେ ନୀରବରେ କାନରେ ବନ୍ଧା ହୋଇଥିବା କେତେକ ଅଳଙ୍କାରକୁ ଡାକ୍ତରଙ୍କ ପାଦ ପାଖରେ ଅଜାଡ଼ିଦେଇ ଆସ୍ତେ ଆସ୍ତେ କହିଲା—ଏଇ ନିଅନ୍ତୁ ଆପଣ ! ଆପଣଙ୍କ ଦାବୀ ଯେ କେତେ, ସେ ହିସାବ ଏତେ ଦିନ ପରେ କରିବା ବୃଥା । ଏବେ ସମୟ ମଧ୍ୟ ମୋର ନାହିଁ, ଧୈର୍ଯ୍ୟ ମଧ୍ୟ ନାହିଁ । ଯାହା ଥିଲା, ସବୁ ଆଣି ଥୋଇଦେଲି, ମତେ ମୁକ୍ତି ଦିଅ ଏବଂ ଚାଲିଯାଅ ।

ଅନଙ୍ଗମୋହନର ମୁହଁ କଳା ପଡ଼ିଗଲା । କରଣମୟୀ କହିଲେ—ଡେରି କରୁଚ କାହିଁକି ? ବିଶ୍ୱାସ କର, ଆଉ ମୋର ବୋଲି କିଛି ନାହିଁ । ଯାହା ଥିଲା ଆଣି ଦେଇଛି । ସତ ଦେଖୁଚ, ଏତିକି ନେଇ ବିଦାୟ ନିଅନ୍ତୁ ।

ଅନଙ୍ଗ ଉତ୍ତରରେ କହିଲେ—ମୁଁ ତ ତୁମ ଦେହର ଅଳଙ୍କାର ଖୋଜୁଁ ନ ଥିଲି, ଟଙ୍କା ଖୋଜୁଥିଲି ।

କରଣ ଅତି ଅସନ୍ତୁଷ୍ଟ ଭାବରେ କହିଲା—ଗହଣାଗୁଡ଼ାକ ଯେ ଟଙ୍କା, ସେ କଥା ବୁଝିବାର ବୟସ ମୋର ହୋଇଛି । ଅନର୍ଥକ ଯୁକ୍ତିତର୍କ କରନ୍ତୁ ନାହିଁ ।

ଅନଙ୍ଗ ସଙ୍ଗେ ସଙ୍ଗେ ଉତ୍ତର ଦେଲେ—ନା; ମୁଁ କୌଣସିମତେ ସ୍ତ୍ରୀଙ୍କୁ ନେଇପାରିବିନି ।

କରଣମୟୀ ଟିକିଏ ଦୂରରେ ବସି ପଡ଼ିଥିଲା, ସାଙ୍ଗେ ସାଙ୍ଗେ ଉଠି ଆସି କହିଲା—କାହିଁକି ନେଇପାରିବେନି ? କ'ଣ ଦୟା କରୁଛନ୍ତି ? ଯାହା ଦେଇଦେଇଛି, କୌଣସିମତେ ଆଉ ଫେରାଇ ଆଣି ପାରିବିନି । ଆପଣ ହୁଏତ ସ୍ତ୍ରୀଙ୍କୁ ନେଇ ଦୀନ ଦୁଃଖୀଙ୍କ ମଧ୍ୟରେ ବାଣ୍ଟି ଦେଇପାରନ୍ତି । ସେସବୁ ଜିନିଷ ଫେରାଇନେବାରେ ମୋ ସ୍ୱାମୀଙ୍କର ଅମଙ୍ଗଳକୁ ଆମନ୍ତ୍ରଣ କରିପାରିବିନି । ଏତିକି କହି ଅଳଙ୍କାରଗୁଡ଼ାକୁ ଗୋଡ଼ରେ ଆଡ଼େଇ ଦେଇ କହିଲା—ନିଅ କହୁଚି, ନଇଲେ ଦେଖିବ । ଡାକ୍ତର ଅନଙ୍ଗ କିଛି କହି ନ ପାରି ଅଳଙ୍କାରଗୁଡ଼ାକୁ ହାତରେ ଉଠେଇବାକୁ ଲାଗିଲେ ।

କରଣମୟୀ କିଛି ସମୟ ଧରି ସେ ଆଡ଼କୁ ଚାହିଁ ଉଗ୍ରତା ସମ୍ବରଣ କରି ଘୃଣାଭାବ ପ୍ରକଟକରି କହିଲା—ଯାଅ, ସେତକ ନେଇ ସନ୍ତୁଷ୍ଟ ହୁଅ । ଏସବୁର ଚିହ୍ନ ଏ ଘରେ ଥିବା ଯାଏ ମୁହଁକୁ ଭାତ ସୁଦ୍ଧା ରୁଚିବନି କି ଆଖିକୁ ନିଦ ଆସିବନି ।

ଡାକ୍ତର ସବୁଗୁଡ଼ିକୁ ଏକାଠି କରି ଠିଆହେଲେ । କରଣମୟୀ ଅଧୀର ଭାବରେ କହିଲା—ବହୁତ ରାତି ହୋଇଗଲାଣି, ଏଥର ଚାଲିଯାଅ ।

ଡାକ୍ତର କହିଲେ—ହଁ, ଯାଉଚି କରଣ; କିନ୍ତୁ ବଡ଼ ଭୁଲ କରୁଚ ତୁମେ । ମତେ କ୍ଷମା କର କରଣ !

କରଣ ରାଗିଉଠି କହିଲା—ପୁଣି ସେଇ କରଣ ! ହଁ, ଏସବୁ ଜିନିଷ ମୋର ନିଶ୍ଚୟ, କିନ୍ତୁ ଏସବୁର ମାୟା ଯୋଗୁଁ ଆପଣଙ୍କ ସାହାଯ୍ୟ

କରିଥିଲ । ରାତି ବହୁତ ହେଲାଣି ଡାକ୍ତରବାବୁ, ଏଥର ଯାଆନ୍ତୁ ।

ଡାକ୍ତର ନିଜ ନାମ ଛପା ହୋଇଥିବା ଖଣ୍ଡିଏ କାର୍ଡ୍ ପକେଟରୁ ବାହାର କରି କହିଲେ—ନିଅ କିରଣ, ଏଇ ହେଉଚି ମୋର ଘର ଠିକଣା ।

ହଉ ଏ କାର୍ଡ଼ଟାକୁ ଡାକ୍ତର ହାତରୁ ଛଡ଼େଇ ଆଣି ସଙ୍ଗେ ସଙ୍ଗେ ଚୁଲ୍ଲୀ ଭିତରକୁ ପକେଇଦେଇ କହିଲା—ଏହାଠୁ ବେଶୀ ଦରକାର ହେବନି । ଆପଣ ମୋତେ ଏହିକ୍ଷଣି କ୍ଷମା ଚାହୁଁଥିଲେ ନା ? ଆପଣଙ୍କୁ ସମ୍ପୂର୍ଣ୍ଣ କ୍ଷମା କରିପାରିବି ବୋଲି ଭାବି ଆପଣଙ୍କ ସମସ୍ତ ଋଣ ଓ ସମସ୍ତ ସମ୍ବନ୍ଧ ନିଃଶେଷ କରିଦେଲି । କୌଣସି ଦିନ କୌଣସି କାରଣରୁ ଯେମିତି ଆପଣଙ୍କୁ ମୋର ମନେ ନ ପଡ଼େ, ଯିବାବେଳେ କେବଳ ଏଇତକ କହିଦେଇ ଯାଆନ୍ତୁ । ଏତିକି କହିଦେଇ ସେ ସଙ୍ଗେ ସଙ୍ଗେ କବାଟ ବନ୍ଦ କରିଦେଇ ଶୋଇବା ଘର ଭିତରକୁ ପଶିଆସିଲା ।

ବାହାରେ ଡାକ୍ତରର ପଦଶବ୍ଦ ଯେତେବେଳେ ତା କାନରୁ ଅପସରିଗଲା, ସେତେବେଳେ ଗୋଟାଏ ଦୀର୍ଘନିଶ୍ୱାସ ଟାଣି କରୁଣାମୟୀ ଚାହିଁ ଦେଖିଲା ଚୁଲ୍ଲୀ ଲିଭି ପଡ଼ିଚି । ସେ ଚୁଲ୍ଲୀ ଜଳେଇ ଦେଇ ଦୀର୍ଘନିଶ୍ୱାସ ଟାଣି ଚୁପ୍ ହୋଇ ବସିଲା ।

ଶୋଷରେ ତଣ୍ଟି ଶୁଖିଯାଉଚି; ତଥାପି ସେ ବସିବା ସ୍ଥାନରୁ ଉଠିଲା ନାହିଁ । ତାହାର ମନେହେଲା, ବାହାର ଅନ୍ଧକାର ଭିତରେ ଯେତେବେଳେ କ'ଣ କେମିତି ଗୋଟାଏ ଆତଙ୍କ ତାକୁ ଟାଣିନେବା ପାଇଁ ହାତ ବଢ଼େଇ ରହିଛି । ବୁକୁ ଭିତରଟା ଏଭଳି ଅଶାନ୍ତ ହୋଇ-ଉଠିଲା ଯେ ଦୁଇବାହୁ ଦେଇ ସେ ବୁକୁଟାକୁ ଜୋରରେ ଚାପିଧରିଲା । ଏ ବିଦାୟ ପାଲାର ସେ ଦିନେ ନା ଦିନେ ସମ୍ମୁଖୀନ ହେବ, ଏକଥା ସେ ଆଗରୁ କଳ୍ପନା କରିଥିଲା । କିନ୍ତୁ ଅଳଙ୍କାର-ଧନର ବୀଭତ୍ସ ବନ୍ଧନରୁ ନିଜକୁ ଏତେ ଶୀଘ୍ର ମୁକ୍ତ କରିନେବାକୁ ପଡ଼ିବ ବୋଲି ସେ ଚିନ୍ତା କରି ନ ଥିଲା । ପ୍ରୟୋଜନର ଅନୁରୋଧରେ ଯେଉଁ ପାପକୁ ସେ ଡାକି ଆଣି ଏତେ ବଡ଼ କରିଛି, ସେ ସେ ଆଜି ଯାଅ କହିବାରେ ଗଲା, ଏଭଳି ଅସମ୍ଭବ କେମିତି ବା ହେଲା ? ମାନ, ଭିକ୍ଷା, ବିଚ୍ଛେଦର ଅନୁନୟ ବିନୟ ଏ କାମରେ ଅବଶ୍ୟମ୍ଭାବୀ ବ୍ୟାପାରଗୁଡ଼ାକ ଯାହାର କଳ୍ପନା ମାତ୍ର, ତାକୁ ପ୍ରତିଦିନ ଉପ-ଭୋଗରେ ଯେ ବନ୍ଧ ପକାଇଆସିଚି, ସେସବୁ ସେ ଆଜି ବାହାରି ରହିଗଲା,

ସେ କ'ଣ ଖାଲି ଦିନକର ଲାଗି ? ନା, ସ[illegible] ହୋଇଗଲା । ହଠାତ୍ ଦୁଆର ଖୋଲିବା ଶବ୍ଦରେ ଚକିତ ହୋଇପଡ଼ି ମୁହଁକୁ ଉଠେଇ ଦେଖିଲା । ରୁକ୍ମିଣୀ କହୁଚି, ଚୁଲି ଲିଭି ଏକାବେଳକେ ଥଣ୍ଡା ହୋଇ ପଡ଼ିଲାଣି ମା ! ରାତି ତ କମ୍ ହୋଇନି ।

କିରଣମୟୀ ସଙ୍ଗେ ସଙ୍ଗେ ଉଠିପଡ଼ି ପାଖକୁ ଆସି ଚୁପ୍ ଚୁପ୍ ପଚାରିଲା—ଡାକ୍ତର ଅଛନ୍ତି ନା ଗଲେଣି ଲୋ !

—ସେ ତ ଘଣ୍ଟାଏ ହେବ ଗଲେଣି । ହାତର ଝାପଟାକୁ ଟେକେଇ କହିଲା—କିନ୍ତୁ ତୁମକୁ ମଧ୍ୟ କହୁଚି ମା—ଅକସ୍ମାତ୍ ଜିଭ ତାର ବନ୍ଦ ହୋଇଗଲା । ଲେଉଟିପଡ଼ି, ଝାପଟାକୁ ଉଞ୍ଚେଇ କରି ଧରି ଦେଖିଲା, କିରଣମୟୀଙ୍କ ଦେହ ଗୋଟାକଯାକ ଖାଲି ନିରାଭରଣ । ଅବାକ୍ ହୋଇ-ପଡ଼ି କହିଲା—ଏସବୁ କି କାଣ୍ଡ ମା ?

## ଅଠର

ଦିବାକରର ଦୁଃଖର ରାତ୍ରୀ ଶେଷ ହେଲା—ସକାଳ ହେଲା । କାଲି ସକାଳେ ସେ ଭିତରିଆ ବି. ଏ. ଫେଲର ସମ୍ବାଦ ପାଇଥିଲା—ଠିକ୍ ସନ୍ଧ୍ୟା ବେଳେ ତାର ବିବାହ ସମ୍ବନ୍ଧରେ ଠିକ୍ ତାର ଘର ଆଗରେ ନୃପୀନ୍ଦାକୁ ଭଟ୍ଟାଚାର୍ଯ୍ୟ ମହାଶୟଙ୍କ ସହିତ ବେଶ ଉତ୍ସାହ ସହକାରେ କଥାବାର୍ତ୍ତା ହେବାର ଦେଖି ସେ ନିଜର ମରଣ କାମନା କଲା । ସଦ୍ୟ ପୁତ୍ରହରା ମା ଯେମିତି ବ୍ୟଥାରେ ଘୁମେଇପଡ଼ି ପୁଣି ଜାଗି ଉଠେ, ସେହିଭଳି ହତଭାଗିଆର ସେଇ ବ୍ୟଥା ନେଇ ନିଦ ଭାଙ୍ଗି ଉଠିଲା । ଆଖି ମେଲି ଦେଖିଲା, ଘରର ପୂର୍ବଦିଗରେ କାଚ ଦେହରେ ଆଲୋକର ଆଭାସ । ଆଜି ସେଇ ଆଲୋକ ସହିତ ସେ ନିଜେ ଲେଶ ମାତ୍ର ସମ୍ବନ୍ଧ ଅଛି ବୋଲି ଅନୁଭବ କରିପାରିଲା ନାହିଁ । ଦିବସର ଏଇ ପ୍ରଥମ ରଶ୍ମି କଥା ଟିକକୁ ଯେ ସମ୍ଭ୍ରମ ସହକାରେ ଗାତ୍ରୋତ୍ଥାନ କରି ଅଭିବାଦନ କରିବାକୁ

ପଡ଼େ, ଏକଥା ତାର ମନେ ସୁଦ୍ଧା ପଡ଼ିଲା ନାହିଁ । ପାନ୍ଥଶାଳାର ସଂପୂର୍ଣ୍ଣ ଅପରିଚିତ ଅତିଥି ମୁହିଁଭଳି ଏହି ଆଲୋକକଣା ଟିକକୁ ସେ ପରମ ଉଦାସ ଭାବରେ ଚାହିଁ ରହି ବିଛଣାରେ ହିଁ ପଡ଼ିରହିଲା । ସ୍ୱଚ୍ଛକାଚର ବାହାରେ ଅସୀମ ନୀଳାକାଶ ଦେଖାଯାଉଥିଲା । ହଠାତ୍ ତାର ମନେ ହେଲା, ଏଇ ବିରାଟ ସୃଷ୍ଟିଟାର କେଉଁଠି କୋଣେ କୋଣେ ତା ଲାଗି ଟିକିଏ ହେଲେ ସ୍ଥାନ ଅଛି କି ନା ! ସୃଷ୍ଟିକର୍ତ୍ତା ଏତେ ସୃଷ୍ଟି କରିଛନ୍ତି ସତ, କିନ୍ତୁ ଉପରେ, ତଳେ, ଆଖ ପାଖରେ ଜଳ, ସ୍ଥଳ ସବୁଠି ସୂଚ୍ୟଗ୍ର ପରିମିତ ସ୍ଥାନ ମଧ୍ୟ ତା ଲାଗି ସୃଷ୍ଟି କରି ରଖି ନାହାନ୍ତି । ତାର ମା ନାହିଁ, ବାପ ନାହିଁ, ଘରଦ୍ୱାର କିଛି ନାହିଁ, ଜନ୍ମଭୂମି ବି ନାହିଁ । ପ୍ରକୃତରେ ନିଜର ବୋଲି କୌଣସିଟି କିଛି ହେଲେ ନାହିଁ । ଏଇ ଯେ ଶ୍ରେଷ୍ଠ ବର୍ଟରୀଟି, ଶତ ସହସ୍ର ବନ୍ଧନରେ ଯାହା ସହିତ ସେ ଜଡ଼ିତ, ଜ୍ଞାନ ହେବା ପର୍ଯ୍ୟନ୍ତ ଯାହା ତାକୁ ମାତୃସ୍ନେହରେ ଆଶ୍ରୟ ଦେଇ ରଖିଛି, ସେଇଟି ବି ତାର ନିଜର ନୁହେଁ । ଏଇଟା ତାର ମାମୁଘର, ଏ ଆଶ୍ରୟ ତା ଜନନୀର ନୁହେଁ— ବିମାତାର ।

ଏହିଭଳି ଭାବରେ ଦୁଃଖର ଚିନ୍ତା ଯେତେବେଳେ କ୍ରମଶଃ ଜଟିଳ ଓ ବିସ୍ତୀର୍ଣ୍ଣ ହୋଇ ପଡ଼ୁଥିଲା, ଅକସ୍ମାତ ଉପେନ୍ଦ୍ରର କଣ୍ଠସ୍ୱରରେ ଏକ ମୃଦୁ ଭଙ୍ଗୀ ମଧ୍ୟରେ ତାହା ସିଧା ଏବଂ ସହଜ ହୋଇଆସିଲା । ସେ ତତ୍‌କ୍ଷଣାତ୍ ଉଠିପଡ଼ି, ଝରକା ଖୋଲି ମୁହଁକୁ ବଢ଼େଇ ଦେଖିଲା, ଉପେନ୍ଦ୍ର ଚାକରକୁ କ'ଣ ଗୋଟାଏ ଆଦେଶ ଦେଇ ବାହାରକୁ ଚାଲିଗଲେ । ସେ ସିନା କୌଣସି ଆଡ଼କୁ ନ ଚାହିଁ ସିଧାସଳଖ ଚାଲିଗଲେ; କିନ୍ତୁ ଇଆଡ଼େ ଦିବାକର ସେଇ ଆଖି ଦିଇଟାରେ ଭୀଷଣ ବ୍ୟଥା ଅନୁଭବ କରି ମୁହଁ ଫେରାଇନେଲା । ତାର ମନେହେଲା, ଉପୀନ୍‌ଦାର ଦୃଢ଼ ଲଲାଟ ଉପରେ କିଛିଟା ସୂର୍ଯ୍ୟରଶ୍ମି ଯେପରି ଧକ୍‌କା ଖାଇ ତା ଆଖି ଉପରେ ଅଜାଡ଼ି ହୋଇପଡ଼ିଲା । ସେ ପୁଣି ଥରେ ଶେଯରେ ଗଡ଼ିପଡ଼ି, ନିର୍ଜୀବଙ୍କ ଭଳି ଆଖି ବୁଜି ଶୋଇପଡ଼ିଲା । ପୁଣି ମନ ଭିତରେ ସେଇ ଦୁଶ୍ଚିନ୍ତା ।

ଆଜି ବି ପ୍ରତ୍ୟେକ ଦିନ ଭଳି ଭୋର ସକାଳୁ ତାର ନିଦ ଭାଙ୍ଗି ଗଲା ସତ, କିନ୍ତୁ ଗତ ରାତିରେ ସେ ଯେ ଶୋଇପାରିନି, ଦୁଃସ୍ୱପ୍ନ ଭୂତପ୍ରେତ ଦଳ ସାରା ରାତି ଏହି ଦେହଟାକୁ ଝିଙ୍କି ଓଟାରି ଏଇକ୍ଷଣି

ଯେମିତ ଫୋପାଡ଼ଦେଇ ଯାଇଛନ୍ତ, ସେଇମାନଙ୍କ ପତ୍ୟେକ ନିଶ୍ୱାସର ବାଷ୍ପ ଏବେ ମଧ୍ୟ ଘରକୋଣରେ ଜମା ହୋଇ ରହିଛି, ଏ କଥା ସେ ଆଖିବୁଜି ଅନୁଭବ କରିବାକୁ ଲଗିଲା । ପୁଣି ତାର ମନେପଡ଼ିଲା, ସେ ଫେଲ୍ ହୋଇଯାଇଛି । ତାର ବହୁଦୁଃଖରେ ଅର୍ଜନ କରିଥିବା ପାଠ ବ୍ୟର୍ଥ ହୋଇଯାଇଛି । ଆଜ ଏ ସମ୍ବାଦ ସମସ୍ତେ ଶୁଣିବେ···ତାପରେ···ତାପରେ ଧୂଆଁ ଯେଉଳି ଟିକିଏ ରନ୍ଧ୍ର ଦେଇ ଘର ଗୋଟାକଯାକ ଧୂଆଁଳିଆ କରିପକାଏ, ସେହିଭଳି ନିଷ୍ଫଳତାର ଛୁଦ୍ର ଏକ ବାଟ ଧରି ନୈରାଶ୍ୟର ଗାଢ଼ ଅନ୍ଧକାରରେ ତା ମନ ଗୋଟାକଯାକ ପରିପୂର୍ଣ୍ଣ ହୋଇ-ଉଠିଲା ।

ସମସ୍ତ ପ୍ରାୟ ଆଠଟା । ସେ ଦୁଇ ହାତ ମୁଠା କରି ଉଠି ବସି କହିଲା—ନା, କୌଣସିମତେ ହେବନି । ଉପୀନଦା ରାଗ କରନ୍ତୁ ବା ଭାଉଜ ଦୁଃଖ କରନ୍ତୁ, ମୁଁ ଆଉ ପାରିବନି । ଯେ ଗୃହଲକ୍ଷ୍ମୀ ହେବେ, ହୁଏତ ସେ ଆମର ଘରକୁ ଆସିବେ—ନଚେତ୍ କୌଣସି ଦିନ ହେଲେ ଆସିବେନି । ହୁଏତ ସସମ୍ମାନେ ପ୍ରତିଷ୍ଠା କରିବ । ଯଦି ନ ପାରେ, ତାହାହେଲେ ଅସମ୍ମାନ ସହକାରେ ଟାଣିଆଣିବକି । ଏ ସଂକଳ୍ପରୁ କେହି ମତେ ବିଚଳିତ କରି ପାରିବେନି ।

ଦିବାକର ଧୀରେ ଧୀରେ ଅନ୍ତଃପୁରରେ ପ୍ରବେଶ କରି ସୁରବାଳା ଘର ଆଗରେ ଠିଆହୋଇ ଡାକିଲା—ଭାଉଜ !

ଭିତରୁ ମୃଦୁକଣ୍ଠର ଆହ୍ୱାନ ଆସିଲା—ଘରକୁ ଆସ ।

ଦିବାକର ଭିତରକୁ ପଶି ଦେଖିଲା— ଆଲମାରି ଗୋଟାକଯାକ ଖୋଲିଦେଇ ସୁରବାଳା ବାକ୍ସ ସଜାଉଛି । ପଚାରିଲା— ଭାଇ କ'ଣ ମଫସଲକୁ ଯିବେ ?

ସୁରବାଳା କହିଲା—ନା, କଲକତା ଯିବେ ।

ଏହାପରେ ଦିବାକର ମୁହଁରୁ କଥା ବାହାରିଲାନି । ନିଜର ନିର୍ଜନ ଘର ମଧ୍ୟରେ ଯେଉଁ ଶକ୍ତି ତାକୁ ଠେଲିପେଲି ଏତେ ଦୂରକୁ ଆଣିଥିଲା, ଦରକାରବେଳେ ସେ ଶକ୍ତି କୁଆଡ଼େ ଉଭେଇଗଲା । ସେ ମୌନଭାବରେ ଭାବିବାକୁ ଲଗିଲା—କଥାଟାକୁ କିମିତି ଆରମ୍ଭ କଲେ ଭଲ ହେବ ?

ଏହି ସମୟରେ ବାରଣ୍ଡାରେ ଯୋତାଶବ୍ଦ ଶୁଣାଗଲା । ଉପେନ୍ଦ୍ର

ଘରଦା ଆଡ଼େଇ ଘରେ ପଶିଲେ । ଦିବାକର ଅତି ସଂକୁଚିତ ହୋଇ ପଳାଇବାକୁ ଚେଷ୍ଟା କରିବାମାତ୍ରେ ଉପେନ୍ଦ୍ର ଠିଆ ହୁ କହି ଖଟ ଉପରେ ବସିଲେ । ଜାମା ନିଖାଲୁ ଖୋଲୁ ପଚାରିଲେ— ଫେଲ୍ ହେଲୁ କିମିତି ? ପ୍ରତିଦିନ ରାତି ଗୋଟାଏଯାଏଁ ଟେଲେଁ ରହି ରହି ଏତେ ଦିନ କରୁଥିଲୁ କ'ଣ ?

ଏ କଥାର ଉତ୍ତର ?

ଦିବାକର ନତମସ୍ତକରେ ଠିଆହୋଇ ରହିଲା ।

ଉପେନ୍ଦ୍ର କହିବାକୁ ଲାଗିଲେ—ଏ ଘରେ ରହି ତୋର କିଛି-ହେଲେ ହେବନି ଦେଖୁଚି । ଯା, କଲିକତା ଯାଇ ସେଇଠି ପଢ଼ । ତାହା-ହେଲେ ହୁଏତ ମଣିଷ ହୋଇପାରୁ ।

ତା ପରେ ଟିକିଏ ହସି କହିଲେ— ଭାଉଜ ପାଖରେ କି ଆପତ୍ତି କରିବାକୁ ଆସିଥିଲୁ ? ବିବାହ କରିବୁନି—ଏଇ କଥା ତ ?

ଏ କଥା ଶୁଣି ଦିବାକର ବଞ୍ଚିଗଲା । ତାର ସମସ୍ତ ଦୁଃଖ ଯେମିତି ମନେହେଲା ଧୋଇହୋଇଗଲା । ସେ ହଠାତ୍ ହସିଦେଇ ମୁହଁ ଉଠେଇଲା ।

ଉପେନ୍ଦ୍ର ମଧ୍ୟ ହସିଲେ, ଯଦିଓ ସେ ହସର ମର୍ମ କେହି ବୁଝିଲେନି । ତା ପରେ କହିଲେ— ଆଚ୍ଛା, ଏଣିକି ମନ ଦେଇ ପଢ଼ । ଆଗାମୀ ମାର୍ଗଶିର ମାସ ପର୍ଯ୍ୟନ୍ତ ତୋର ଛୁଟି । ବହୁତ ଦିନ ତ ଅଛି । ସ୍ତ୍ରୀ ଆଡ଼କୁ ଚାହିଁ କହିଲେ—ସତୀଶ ଟେଲିଗ୍ରାମ କରିଚି ହାରାନ୍‌ଦାର ଅବସ୍ଥା ଭାରି ଖରାପ । ମୁଁ ରାତି ଗାଡ଼ିପାଏଁ ଅପେକ୍ଷା କରିପାରିବିନି, ଏଇ ଏଗାରଟା ଗାଡ଼ିରେ ଯିବି । ଆଚ୍ଛା, ଥର୍ମମିଟରଟା ଦିଅ ତ ଦେଖି, ଜରଟା ଛାଡ଼ିଲାଣି କି କ'ଣ ଦେଖେ । ଆରେ ଏତେବଡ଼ ବେଡ଼ିଂଟା କ'ଣ ହେବ ?

ସୁରବାଳା ବେଡ଼ିଂ ଫିଟେଇ ଲୁଗାପଟା ରଖୁ ରଖୁ କହିଲା— ଛୋଟ ବେଡ଼ିଂରେ ଦିଇଜଣଙ୍କ ଲୁଗା ରହିବନି । ମୁଁ ମଧ୍ୟ ସାଙ୍ଗରେ ଯିବି ।

ଉପେନ୍ଦ୍ର ଅବାକ୍ ହୋଇ କହିଲେ—ତୁମେ ଯିବ ? ପାଗଳ କି ?

ସୁରବାଳା ମୁହଁକୁ ଉଠେଇ କହିଲା—ନାଁ ତା ପରେ ଦିବାକରକୁ ଲକ୍ଷ୍ୟ କରି କହିଲା—ଟିକିଏ ଶୀଘ୍ର ଗାଧୋଇ ଖିଆପିଆ କରିନିଅ । ତୁମେ ବି ଆମ ସାଥିରେ ଯିବ ।

ଦିବାକର ଆଶ୍ଚର୍ଯ୍ୟ ହୋଇ ଉପେନ୍ଦ୍ରଙ୍କ ମୁହଁକୁ ଚାହିଁବାମାତ୍ରେ ଉପେନ୍ଦ୍ର ହସି କହିଲେ—ଆରେ ତୁ କି ପାଗଳ ହେଲୁ ? ହାଉନ୍ଦାରୁ ଦେହ ଭାରି ଖରାପ । ବୋଧହୁଏ ଦିନ ଶେଷ ହୋଇଆସୁଚି—ମୁଁ ଯାଉଚି ତାର ସତ୍କାର କରି । ତୁମେମାନେ ତାଙ୍କ ଭିତରକୁ ଯିବ କମିତି ? ତୁ ଯା, ନିଜ କାମ କର ।

ସୁରବାଳା ଏଥର ମୁହଁ ଉଠାଇଲା । ଦିବାକର ଆଡକୁ ଚାହିଁ ଶାନ୍ତ ଅଥଚ ଦୃଢ଼ସ୍ୱରରେ କହିଲା—ମୁଁ ଆଦେଶ କରୁଚି ଦିବାକର, ତୁମେ ଯିବା ପାଇଁ ପ୍ରସ୍ତୁତ ହୁଅ । ସେ ତ ତିନି ଦିନ ହେଲା ଜରରେ ପଡ଼ି ହେଉଛନ୍ତି । ଆଜି କି ଜର ଛାଡ଼ିନି । ତେଣୁ ମତେ ଯିବାକୁ ପଡ଼ିବ—ତୁମେ ମଧ । ଯାଅ, ଡେରି କରନା ।

ଉପେନ୍ଦ୍ର ମନେ ମନେ ଭାରି ଆଶ୍ଚର୍ଯ୍ୟ ହୋଇପଡ଼ିଲେ । ସେ ଇତିପୂର୍ବରୁ ସୁରବାଳାଙ୍କର ଏଭଳି କଣ୍ଠସ୍ୱର ଶୁଣି ନ ଥିଲେ । ସେ ଯେ ସ୍ୱଚ୍ଛନ୍ଦରେ ଜଣେ ପୁରୁଷ ଲୋକକୁ ଗୋଟିଏ ଛୋଟ ପିଲା ଭଳି ହୁକୁମ କରିପାରେ, ତାହା ନିଜ କାନରେ ନ ଶୁଣିଲେ ହୁଏତ ସେ ବିଶ୍ୱାସ କରି-ପାରନ୍ତେ ନାହିଁ । ତଥାପି ତିରସ୍କାର ସ୍ୱରରେ କହିଲେ—ମୁଁ ଯାଉଚି ବିପଦ ମଝିକୁ । ତୁମେମାନେ ସାଥିରେ ଯାଇ ସେଇ ବିପଦକୁ ବଢେଇବାର କି ଦରକାର ? ତୁମେମାନେ କେହି ଯାଇପାରିବନି—ଏତକ ତାଙ୍କର ଟିକିଏ କଠୋର ଶୁଣାଗଲା ।

ସୁରବାଳା ଠିଆହୋଇ ସ୍ୱାମୀଙ୍କ ମୁହଁ ଆଡ଼କୁ ଚାହିଁ ଦୃଢ଼ କଣ୍ଠରେ କହିଲା—ତୁମେ କାହିଁକି ଯେ ସମସ୍ତଙ୍କ ଆଗରେ ସବୁ କଥାରେ ମତେ ବକ ! ତୁମେ ଅସୁସ୍ଥ ଅବସ୍ଥାରେ ବାହାରକୁ ଗଲେ ମୁଁ ନିଶ୍ଚୟ ଯିବି । ୯ଟା ବାଜିଲାଣି, ଆଉ ଠିଆହୋଇ ରୁହନି ଦିବାକର, ଯାଅ ।

ଦିବାକର ଆଗରେ ନିଜର ଦୃଢ଼ତାରେ ଉପେନ୍ଦ୍ର ଅତି ଲଜ୍ଜିତ ହୋଇ କହିଲେ—ବକିବି କାହିଁକି ? ବକିନି ତ । କିନ୍ତୁ ବାପା ଶୁଣିଲେ କ'ଣ ମନେ କରିବେ ଭାବ ତ ! ଯା ଦିବାକର, ତୁ ଖାଇପକା ।

ସୁରବାଳା କହିଲା—ବାବା ମତେ ତୁମ ସାଙ୍ଗରେ ଯିବାକୁ କହିଛନ୍ତି ।

—ସ୍ତ୍ରୀ ଭିତରେ ତାଙ୍କ ପାଖକୁ କି ଯାଇଥିଲ ?

—ହଁ, ଯାଏ ତୁମର ଦୁଧ ନେଇ ଆସେ ।

ଉପେନ୍ଦ୍ର ସ୍ତ୍ରୀ ସୁରବାଳାର ଏଇ ମୁହଁଛୁଞ୍ଛା କଥା ଶୁଣି କିଛି ନ କହି ଚୁପ୍ ହୋଇ ଶେଯଟା ଉପରେ ପଡ଼ିଗଲେ । ସୁରବାଳା ଯେ ସାଙ୍ଗରେ ନିଶ୍ଚୟ ଯିବ, ସ୍ୱାମୀର ଅସୁସ୍ଥ ଦେହକୁ ଯେ ସେ ଜଗିରହିବ— ଏଥିରେ ଆଉ କାହାରି ସନ୍ଦେହ ରହିଲାନି । ଦବାକର ପ୍ରସ୍ତୁତ ହେବା ଲାଗି ଧୀରେ ଧୀରେ ବାହାର ହୋଇଗଲା । ଉପେନ୍ଦ୍ର ଭାବିବାକୁ ଲାଗିଲେ, ଜିଦ୍ କରି ସୁରବାଳା ଏଇ ଯେଉଁ ନୂତନ ସମସ୍ୟା ସୃଷ୍ଟି କଲା, କଲିକତା ପହଞ୍ଚି ତାର ସମାଧାନ କେମିତି ହେବ ? କେଉଁଠି ଯାଇ ରହିବେ ? ହାରାନଦା ଘରେ ତ ଅସମ୍ଭବ । କାରଣ କେବଳ ଯେ ସେଠି ସ୍ଥାନାଭାବ ତାହା ନୁହେଁ, ସେଠି କିରଣମୟୀର ସ୍ୱାମୀ ମରିବା ଉପରେ; ତଥାପି ତାର ଆଖି ଆଗରେ ସୁରବାଳା ନିଜ ସ୍ୱାମୀର ସମସ୍ତ ପ୍ରକାର ସେବା ଶୁଶ୍ରୂଷା କରିବ, ଶୋଭନୀୟ, ଅଶୋଭନୀୟ କିଛି ହେଲେ ମାନିବନି, ଏହି କଥା ମନେ ମନେ ଭାବି ସେ ଭାରି ଲଜ୍ଜାବୋଧ କଲା । ବନ୍ଧୁ ଜ୍ୟୋତିଷ ଘରେ ଯାଇ ପହଞ୍ଚିଲେ ପ୍ରାୟ ସେଇ ଅବସ୍ଥା ହେବ । ସୁରବାଳା ଭୀଷଣ ହିନ୍ଦୁ—ଏ ବୟସରେ ମଧ୍ୟ ତାର ଜପ ତପ ଅନେକ । ସେ ଘରେ ଠିକଏ ବି ଅହିନ୍ଦୁ ଆଚାର ବ୍ୟବହାର ଆଖିରେ ଦେଖିଲେ, ହୁଏତ ଜଳଗ୍ରହଣ ମଧ୍ୟ କରିବନି । ଏତେ ବଡ଼ ଘର ଭିତରେ ଏକମାତ୍ର ମାର ଆଚାର ବିଚାର କୌଣସିମତେ କାମ ଦେବନି । ତା ଛଡ଼ା ସେଠି ସରୋଜିନୀ ପ୍ରାୟ ତାର ସମବୟସୀ । ତାଙ୍କର ଘରେ ବସି ତାକୁ ଛୁଁ ଛୁଁକର କରିବା ଉଚିତ ମଧ୍ୟ ନୁହେଁ । ବାକି ରହିଲା ସତୀଶ । ଉପେନ୍ଦ୍ର ଶୁଣିଛି, ସେ ତାର ନୂଆ ବସାରେ ଏକା ରହୁଛି । ସ୍ଥାନ ମଧ୍ୟ ଯଥେଷ୍ଟ । ବିଶେଷତଃ ସେ ଏହି ଜପତପର ଦଳଭୁକ୍ତ । ସତୀଶ ଓ ଦିବାକର ଏଇ ଦୁଇ ଜଣ ଆଚାରନିଷ୍ଠ ବିଅରଙ୍କ ମଧ୍ୟରେ ସୁରବାଳା ବେଶ ଆରାମରେ ଚଳିଯିବ ।

ଉପେନ୍ଦ୍ର ସଙ୍ଗେ ସଙ୍ଗେ ସତୀଶ ପାଖକୁ ଟେଲିଗ୍ରାମ କଲେ— ସେମାନେ ସମସ୍ତେ ଯାଉଛନ୍ତି ।

ସମ୍ବାଦ ପାଇ ସତୀଶ ଷ୍ଟେସନ ଅଭିମୁଖେ ଗଲା । ଭଗବାନ ସତୀଶକୁ ଯଥାର୍ଥରେ ଦେହ ଓ ମନ ଉଭୟ ଦିଗରେ ବେଶ ଶକ୍ତ କରି ଗଢ଼ିଛନ୍ତି । ସେଇଦିନଠୁ ମୁମୂର୍ଷୁ ହାରାନର ହତଭାଗ୍ୟ ପରିବାରର

ସମସ୍ତ ଗୁରୁଙ୍କର ମୁଣ୍ଡରେ ଲଦି ଯିମିତି ଫୁଲଉଥିଲ, ପାର୍ବତୀ-ବିପିନର ଇତିହାସଟାକୁ ସେ ସେମିତି ସହ୍ୟ କରି ନେଇଥିଲା !

ଏଇ ଇତିହାସ କେବଳ ଜାଣେ ବେହାରା ଏବଂ ତାର ପରମ ପୂଜ୍ୟପାଦ ଚକ୍ରବର୍ତ୍ତୀ ମହାଶୟ । ବେହାରା ମନେକରେ, ସେ ସାବିତ୍ରୀକୁ ଅତି ଘୃଣାକରେ । ତେଣୁ କାଲି ବିପଦରୁ ଚକ୍ରବର୍ତ୍ତୀଙ୍କ ପ୍ରସାଦ ପାଇ ନଷ୍ଟ ଟଳମଟିକୁ ଜଗୁଡ଼େଇଦେଇ ପଦର୍ପୋଷ ଟାଣି କହିଲା—ଛି ଛି, ଦେବତାଝିଅଟା କଲା କ'ଣ ? ବାବୁଙ୍କୁ ଛାଡ଼ିଲା । ସୁନାକୁ ଫୋପାଡ଼ି କାନରେ ଗେରୁ ବାନ୍ଧିଲା । ଶେଷରେ ସେଇ ବିପିନବାବୁ ଗୁଣ୍ଡାଟା ସାଥିରେ······

ଚକ୍ରବର୍ତ୍ତୀ ମୁଣ୍ଡକୁ ହଲେଇ ଜବାବ ଦେଲେ—ବେହାରା, ଶାସ୍ତ୍ରରେ ଲେଖା ଅଛି—ମୁନିନାଂ ଚ ମତିଭ୍ରମ । ନଇଲେ ସାବିତ୍ରୀ ଭଳି ଝିଅ ଏଭଳି ବ୍ୟାପାର କରନ୍ତା ! କିନ୍ତୁ ପସ୍ତେଇବ ଯେ । ଝିଅଟା ଦେଖିବାକୁ ସେମିତି ଖରାପ ନ ଥିଲା । ମୋରି ପାଖରେ ବସାଉଠା କରି ବାବୁମାନଙ୍କ ସାଙ୍ଗରେ କେମିତି କଥାବାର୍ତ୍ତା କରିବାକୁ ହୁଏ ଶିଖିଥିଲା । ଯୌବନ···ସଙ୍କଟ ବାବୁଙ୍କୁ ନଜର ଲାଗିଥିଲା । ଆଜି ଟିକିଏ ଅପେକ୍ଷା କରିଥିଲେ····· କିନ୍ତୁ ମୋ କଥା କ'ଣ ରଖିଲା ? ଆରେ ବାବା—ଘୋଡ଼ା ଡେଇଁ ଡେଇଁ ଘାସ ଖାଇଲେ କ'ଣ ହୁଏ ? ଲୋକେ ବିପଦରେ ପଡ଼ିଲେ ବୁଝିଲୁ ବେହାରା, ସମସ୍ତେ ଧାଇଁ ଆସି ଏଇ ଚକ୍ରବର୍ତ୍ତୀ ମହାଶୟଙ୍କ ଗୋଡ଼ ଧରନ୍ତି କାହିଁକି କହିଲୁ ? ଏଇ ସେଇଦିନ ସଜନିର ମା—

ସଜନୀର ଭଲ ଖରାପ ବୃତ୍ତାନ୍ତ ଜାଣିବା ଲାଗି ବେହାରା ଇଚ୍ଛା କରୁ ନ ଥିଲା । ସେ କଥା ମଝିରେ କହିଉଠିଲା— କିନ୍ତୁ ଯାହା କୁହ ଠାକୁର— 'ବାବୁ' ପଦ କାହାକୁ କୁହାଯାଏ ତାହାହେଲେ କୁହାଯିବ ଆମ ବାବୁଙ୍କୁ । କଲିକତା ସହରରେ ବଡ଼ଲୋକ କେତେ ଦେଖିଲଣି । କିନ୍ତୁ ଏମିତି ଲୋକ କାହାରିକୁ ଦେଖିନି । ଯେମିତି ହାତକୁ ଦାନ, ମରଦକା ବାତ । ସେଇ ଯେ ସେଦିନ କହିଦେଲ—ବାବୁ, ଆଜି ନୁହେଁ—କେବେ ବି । ଘୃଣାରେ ତା ନାଁ ପର୍ଯ୍ୟନ୍ତ ଆଉ ଦିନେ ହେଲେ ଉଚ୍ଚାରଣ କଲେନି । ଅଥଚ ସେ କେତେ ଭଲ ପାଉ ନ ଥିଲେ । କ'ଣ କହୁଚନ୍ତି ଠାକୁର !

ଚକ୍ରବର୍ତ୍ତୀ ମୁଣ୍ଡକୁ ହଲେଇ ଜବାବ ଦେଲେ—ସେ କଥା ତ ଆରମ୍ଭରୁ କହିଦେଇଚ । ଏଇଥିରୁ ଯେତେ ଖୁନ୍, ଜେଲ୍, ଫାଶୀ·········

ବେହାରୀ ଶିହରି ଉଠିଲା । କହିଲା— ନା ଠାକୁର, ଆମ ବାବୁ ସେଭଳି ଲୋକ ନୁହନ୍ତି; କିନ୍ତୁ କେଉଁଠି ସେ ଆପଣ ଜାଣନ୍ତି ? ହୁଏତ ଫୁଟପାଥରେ କୋଉଠି ଅଛନ୍ତି·········

ଚକ୍ରବର୍ତ୍ତୀ ଅଟ୍ଟହାସରେ କହିଲେ—ମୂର୍ଖ ଆଉ କାହାକୁ କହନ୍ତି । ସେ କଣ ଉପିନବାବୁଙ୍କ ପାଖରେ ଦାସୀବୃତ୍ତି କରିବାକୁ ଯାଇଛନ୍ତି ଯେ ବାଟରେ ଘାଟରେ ଦେଖାହେବ ? ସେ ନିଜେ ଏବେ କେତେଗଣ୍ଡା ଦାସ ଦାସୀ ରଖିଚ, ଯା ଦେଖି ଆସ ।

ବେହାରୀ ନିରୁଦ୍‌ବିଗ୍ନ ରହିଲା । ସ୍ମିତ ମୁଖରେ ମୁଣ୍ଡକୁ ହଲେଇ କହିଲା—ସେ କଥା ନିଶ୍ଚୟ । ସେଇଥିପାଇଁ ତ ଭାବିଲି—ଯାଏ ଠାକୁର ମହାଶୟଙ୍କ ପାଖକୁ । ଦେଖି ସେ କ'ଣ କହୁଛନ୍ତି ? ତୁମ ତୁଣ୍ଡ ସୁତୁଣ୍ଡ ହେଉ—ସେ ରାଜରାଣୀ ହେଉ । ଗାଡ଼ି ପାଲିଙ୍କିରେ ଚଢ଼ିଯାଉ । ବିଜଣଯାକ ଆଉ ଯେମିତି ସାମନା ସାମନି ଏ ଜୀବନରେ ନ ହୁଅନ୍ତି । ଏଇ କଥା କହି ନେସ ମନ ଆନନ୍ଦରେ ଚକ୍ରବର୍ତ୍ତୀଙ୍କ ପାଦଧୂଳି ମୁଣ୍ଡରେ ମାରି ବାହାରି ହୋଇ ଗ୍ଲଲଗଲା ।

ଇଆଡ଼େ ସତୀଶ ଘରୁ ବାହାରି କୁଆଡ଼େ ଗଲେ ଫେରି ନ ଆସିବା ପର୍ଯ୍ୟନ୍ତ ବେହାରୀ ମନରେ ଏକଥା ଭାବେ—ଭଗବାନ କରନ୍ତୁ, ଦିଜଣଙ୍କ ଭେଟ କେଉଁଠି ହେଲେ ଯେମିତି ନ ହେଉ ।

ସତୀଶ ଯେ ଅତ୍ୟନ୍ତ ବଦରାଗି—ଏ ସମ୍ବାଦ ସେ ବସାର ପୁରାତନ ଦାସଦାସୀଙ୍କ ମୁହଁରୁ ଶୁଣି ଆସିଥିଲା । ଇଆଡ଼େ ସାବିତ୍ରୀ ଯେତେବଡ଼ ଗର୍ହିତ କାର୍ଯ୍ୟ କରିଛି, ସେଥିରେ ଖୁନ୍ ହେବାର ଆଶଙ୍କା ବହୁତ— ଏକଥା ତାରି ଅବିଦିତ ନ ଥିଲା । କେବଳ ସାବିତ୍ରୀ ଯେ କୌଣସି ଦିନ ଦାସ ଦାସୀ ନେଇ ବୁଲାବୁଲି କରିପାରେ—ଏ ସମ୍ଭାବନାଟା ତା ମୁଣ୍ଡକୁ ଡୁକିନି । ଆଜି ଚକ୍ରବର୍ତ୍ତୀ ମୁହଁରେ ଏକଥା ଶୁଣି ସେ ନିର୍ଭୟ ହୋଇ- ପଡ଼ିଲା । ସାବିତ୍ରୀ ଉପରେ ସେ ଭୀଷଣ ରାଗିଉଠିଲା । ଏହା' ପୂର୍ବରୁ ଏତଟା ରାଗ ତା'ର କାହାପ୍ରତି କେବେ ହୋଇ ନ ଥିଲା । ସେ ବାଟରେ ଗ୍ଲଲୁ ଗ୍ଲଲୁ

ପ୍ରତି ମୁହୂର୍ତ୍ତରେ ଆଶା କରିବାକୁ ଲାଗିଲା — ହୁଏତ ମସ୍ତ ଗୋଟାଏ ଗାଡ଼ି ଦେହରେ ରାଜରାଣୀ ବେଶରେ ସାବିତ୍ରୀକୁ ଦେଖିବାକୁ ପାଇବ। ସାବିତ୍ରୀକୁ ବେହାରୀ ପ୍ରକୃତରେ ଭାରି ଭଲ ପାଏ । ଚିରଦିନ ସାବିତ୍ରୀ ତାର ପରମ ସ୍ନେହ ଓ ଶ୍ରଦ୍ଧାର ପାତ୍ରୀ । ସେ ଦୁଃଖୀ । ସେ ତାର ଭଲ ଅବସ୍ଥାର ଲୋକଙ୍କ ସାଙ୍ଗରେ ଠିଆହୋଇ, ଦାସୀ ବୃତ୍ତି କରି ଏଭଳି ବଞ୍ଚୁଛି ଶୁଣିଲେ ଲଜ୍ଜାରେ ତା ମୁଣ୍ଡ ନଇଁଯାଏ । ତଥାପି ସେହି ଦିନରୁ ତାର ଅନ୍ତରରେ ବଡ଼ ଦୁଃଖ, ବଡ଼ ଯାତନା ପାଇ ମଧ୍ୟ ବେହାରୀ ତା ଉପରେ ବଡ଼ ରୁଷ୍ଟ ହୋଇ ଉଠିଥିଲା; କିନ୍ତୁ ଆଜି ସେ ଯେମିତି ଶୁଣିଲା, ସାବିତ୍ରୀ ତା ମୁନିବର ପଥରେ ମସ୍ତ ଗୋଟାଏ କଣ୍ଟକ, ସୁଖର ଅନ୍ତରାୟ ନୁହେଁ, ସେ ମନେ ମନେ ତାକୁ ଆଶୀର୍ବାଦ କଲା । ସାବିତ୍ରୀ ରାଜରାଜେଶ୍ୱରୀ ହେଉ, ସୁଖୀ ହେଉ, ନିର୍ବିଘ୍ନ ହେଉ ।

ଊନତିରିଶି

ହାରାନଙ୍କ ଜୀବନ ମରଣର ଲଢ଼େଇ ନିମନ୍ତେ ଯେମିତି ଗୋଟାଏ କରୁଣ ତାମସା ହୋଇଉଠିଛି । କ୍ଷୁଧାର୍ତ୍ତ ସର୍ପ ଭଳି ମୃତ୍ୟୁ ତାକୁ ଯେତେ ଅବିଚ୍ଛିନ୍ନ ଆକର୍ଷଣରେ ଜଠର ଭିତରକୁ ଟାଣୁଥିଲା, ବେଙ୍ଗ ଭଳି ସେ ତାର ଦୁଇ ଗୋଡ଼ରେ ମରଣକୁ ସେତିକି ଜୋରରେ ଅଟକେଇ ଧରି କୌଣସି ଏକ ଅଦ୍ଭୁତ କୌଶଳରେ ମୃତ୍ୟୁକୁ ଗଡ଼େଇ ଚାଲିଥିଲା । ବସ୍ତୁତଃ ଅଶେଷ ଦୁଃଖମୟ ତା ପ୍ରାଣଟା ଯେମିତି ତାର କୌଣସିମତେ ଶେଷ ହେବନି, ସେଭଳି ମନେ ହେଉଥିଲା ।

ଏଇ ବିପଦରେ ସତୀଶ ଆସିଥିଲା ସାହାଯ୍ୟ କରିବାକୁ; କିନ୍ତୁ କିରଣମୟୀର ସ୍ୱାମୀସେବା ଦେଖି ବିସ୍ମୟରେ ହତବୁଦ୍ଧି ହୋଇପଡ଼ିଲା । ସେ ନିଜେ ଦେଖିଛି, ସ୍ତ୍ରୀଲୋକ ଆଖିରେ ସ୍ୱାମୀଠାରୁ ବଡ଼ କେହି ନାହିଁ । ସେ ସେକଥା ଜାଣେ; କିନ୍ତୁ ଯେ କୌଣସି କାରଣରୁ ହେଉ, କୌଣସି ମଣିଷ ଯେ ସବୁକଥା ଜାଣିଶୁଣି ଏତେବଡ଼ ପରିଶ୍ରମ, ଏଭଳି ପ୍ରାଣପାତ କରିପାରେ, ସେକଥା ସେ କଳ୍ପନା ସୁଦ୍ଧା କରିପାରେନା ।

ଇଏ କି ଆଶ୍ଚର୍ଯ୍ୟ ସେବା ! ପ୍ରତ୍ୟହ ସାରା ରାତି ଶେଯ ପାଖରେ ବସିରହିବା କି ଅକ୍ଳାନ୍ତ ପରିଶ୍ରମ ! ଅଥଚ ମୁହଁ ଉପରେ ଅବସାଦ, ବିଷାଦର ଚିହ୍ନ ମୁଦ୍ଧା ନାହିଁ । ମୁହଁ ଦେଖି କାହାର ବୁଝିବାର ସାଧ ନାହିଁ ଯେ କେତେବଡ଼ ବିପଦ ତା ମୁଣ୍ଡ ଉପରେ ଆସନ୍ନ ହୋଇ ରହିଛି !

ସତୀଶ ତାର ଏହି ଭାଉଜଟିକୁ ଯଥାର୍ଥରେ ବଡ଼ ଭଉଣୀ ଭଳି ଭଲପାଇ ଆସୁଥିଲା । ତାର ଏକାନ୍ତ ଉଦ୍‌ବେଗହୀନ ପତିସେବା ଦେଖି ତା ମନରେ ବ୍ୟଥା ହେଉଥିଲା । ସେ ମନେ ମନେ ଭାବୁଥିଲା, ଯେଉଁ କାରଣରୁ ହେଉ, ଭାଉଜଙ୍କ ଆଶା ଯେ ସ୍ୱାମୀ ନିଶ୍ଚୟ ବଞ୍ଚିବେ । କିନ୍ତୁ ଶେଷରେ ତା ମନରେ ଯେ କି ଗୋଟାଏ ବେଦନା ଆଘାତ କରିବ, ସେ କଥା କଳ୍ପନା କରି ସେ ବ୍ୟାକୁଳ ହୋଇ ଉଠୁଥିଲା । କି ଉପାୟରେ ଏଇ ଅପ୍ରିୟ ସତ୍ୟକୁ ପ୍ରକାଶ କରାଯିବ, ସେକଥା ସେ ସବୁବେଳେ ଚିନ୍ତା କରୁଥିଲା ।

ଦିନ ଥିଲା, ଯେତେବେଳେ ନିଜ ସମ୍ବନ୍ଧରେ ସତୀଶର ବଡ଼ ବିଶ୍ୱାସ ଥିଲା ଯେ ସେ ବୁଦ୍ଧିମାନ, ଲୋକଚରିତ୍ର ବୁଝିବାରେ ଅଭିଜ୍ଞ; କିନ୍ତୁ ସାବିତ୍ରୀ ପାଖରେ ଆଘାତ ଖାଇ ଏବେ ତାର ଦର୍ପ ଭାଙ୍ଗି ପଡ଼ିଛି । ସାବିତ୍ରୀ ତାକୁ ଛାଡ଼ି ବିପିନ ପାଖକୁ ଚାଲିଗଲା । ସଂସାରରେ ଏକଥା ଯେତେବେଳେ ସମ୍ଭବ ହୋଇପାରିଲା, ସେତେବେଳୁ ସେ ମନେ ମନେ ସ୍ଥିର କରି-ନେଇଛି, ଲୋକଚରିତ୍ର ସେ କିଛିହେଲେ ବୁଝେନା । ମଣିଷ ମନ ଭିତରେ କ'ଣ ଅଛି, କ'ଣ ନାହିଁ, ତାକୁ ଆଲୋଚନା କରି ସିଏ ବା ବଡ଼େଇ ଦେଖାଉ ପଛକେ, ସେ ଆଉ କରିବନି । କଥାଟାକୁ ମନେ-ପକାଇବା ମାତ୍ରେ ତାର ଅନୁତାପ ଓ ଲଜ୍ଜାର ଅନ୍ତ ରହେନା । ଏଇ ଭାଉଜ କଥା ଦେଖାଯାଉ । ବୁଦ୍ଧିର ଗର୍ବରେ ହିଁ ସେ ଏଇ ଭାଉଜଟି ସମ୍ବନ୍ଧରେ ଅନେକ କଥା ଭାବିଥିଲା ଏବଂ ଉପୀନ୍‌ଦାଙ୍କୁ ଶିଖେଇବାକୁ ଯାଇଥିଲା ।

ଆଜି ସକାଳେ ସତୀଶ ଘରେ ପହଞ୍ଚି ଦେଖିଲା—କିରଣମୟୀ ସେମିତି ପ୍ରସନ୍ନ ଭାବରେ ଶାନ୍ତୋଜ୍ଜ୍ୱଳ ମୁଖରେ ଘର କାମରେ ବ୍ୟସ୍ତ । ଦୁଇ ଦିନ ହେଲା ଶାଶୁ ପୁଣି ଅସୁସ୍ଥା ! ଗତ ରାତିରେ ଜ୍ୱର ବଢ଼ିବାରେ ସେ ଏପର୍ଯ୍ୟନ୍ତ ଶେଯରୁ ଉଠି ନାହାନ୍ତି । କିରଣମୟୀଙ୍କ ମୁହଁକୁ ଦେଖି କୌଣସି କଥା ଅନୁମାନ କରିବାର ଉପାୟ ନ ଥିଲା; ତେଣୁ

ପ୍ରତିଦିନ ସେ ପରିଚର୍ଯ୍ୟା ଉଚିତ କରି ଯାଉଥିଲେ ବୁଝେ । ଆଜି ଓପର ଓଳିରୁ ମାତେ କରୁଣାମୟୀ କାମ କରୁଛନ୍ତି ମୁହଁକୁ ଉଠେଇ କହୁ ସମସ୍ତ ଚାହିଁରହି କହିଲେ—ସତୀଶ, ଆଉ ଡେରି କରିବାର ଆବଶ୍ୟକତା ନାହିଁ । ତୁମର ଦାଦାଙ୍କୁ ଆସିବା ପାଇଁ ଲେଖ । ସତୀଶ ଖୁବ ହୋଇ ପ୍ରଶ୍ନକଲା—କାହିଁକି ?

ମନେହେଲା, କରୁଣାମୟୀଙ୍କ ମୁହଁ ଉପରେ ଦେଇ ଶରତ୍‌କାଳୀନ ଖଣ୍ଡିଏ ଲଘୁ ମେଘ ଏହିକ୍ଷଣି ଭାସିଗଲା । ଏଇ ମୁହଁ ସହିତ ଯାହାର ପରିଚୟ ନାହିଁ, ଏ ସୂକ୍ଷ୍ମ ଚିହ୍ନକ ତା ନଜରରେ ପଡ଼ିବନି । ନିଶ୍ୱାସ ମାରି କରୁଣାମୟୀ କହିଲେ—ଏଥର ମନେ ହେଉଛି, ଯନ୍ତ୍ରଣା ଶେଷ ହୋଇଆସୁଛି । ତୁମେ ଯାଅନି, ଗୋଟାଏ ଟେଲିଗ୍ରାମ କରିଦିଅ ।

ସତୀଶ ନିଃଶଙ୍କରେ ଚାହିଁରହି କହିଲା—ଏକଥା ମୁଁ ଆଗରୁ ଜାଣେ ଭାଉଜ ! କିନ୍ତୁ ସାହସ ହେଉ ନ ଥିଲା ତୁମକୁ କହିବା ପାଇଁ ।

କରୁଣାମୟୀ ସହଜ ଭାବରେ କହିଲେ—ଭୟ ପାଇବାରେ କ'ଣ ଅଛି ? ତାଙ୍କର ଶ୍ୱାସ ଲକ୍ଷଣରୁ ମୁଁ ପୋରଦିନଠାରୁ ଜାଣିପାରିଛି । କାଲି ରାତିରେ ଆଉ ଟିକିଏ ବଢ଼ିଛି । ଇଏ ଆଉ କମିବନି । ତେଣୁ ଏଥରେ ସେ ଆସନ୍ତୁ ବୋଲି କହୁଛି ।

ସତୀଶ ଏ ଖବର ଜାଣି ନ ଥିଲା । ଚମକିଉଠି କହିଲା—କାହିଁ ମୁଁ ତ ସେକଥା ଜାଣେନି ! ତୁମେ ବି ତ କହିନା !

କରୁଣାମୟୀ କହିଲେ—ନା, ରୋଗ ଏତେ ଧୀରେ ଧୀରେ ବଢୁଛି ଯେ ଜାଣିବା ମୁସ୍କିଲ । ତେବେ ଆଜି ବିଶେଷ ଭୟ ନାହିଁ । କିନ୍ତୁ ବିପଦ ଉପରେ ବିପଦ ଦେଖୁଚ ତ ! କାଲିଠୁ ମାଆଙ୍କର ପୁଣି ଦେହ ଖରାପ ! ଏଇ ଦେଖିଆସିଲି, ଖୁବ୍‌ଜର । ବାଉଳା ଚାଉଳା ହେଉଛନ୍ତି । ଏହା କହି ସେ ଟିକିଏ ହସିଉଠିଲେ । କିନ୍ତୁ ଏ ହସ ଦେଖିଲେ ମଣିଷ ଆଖିରୁ ଲୁହ ଖସିଆସେ । ସତୀଶ ଆଖିରେ ଲୁହ ଭରିଆସିଲା । ସେ ସଜଳ କଣ୍ଠରେ ଆସ୍ତେ ଆସ୍ତେ କହିଲା—ଉପୀନ୍‌ଦା ଆସନ୍ତୁ । କରୁଣାମୟୀ କହିଲେ—ଆଉ ଗୋଟାଏ ଖବର ଶୁଣିବ ସତୀଶ !

ସତୀଶ ମୌନ ମୁଖରେ ଚାହିଁରହିଲା । କରୁଣାମୟୀ କହିଲେ—ସେଦିନ ସଂଧ୍ୟାରେ ଗୋଟାଏ ଓକିଲର ଚିଠି ପାଇଲି । ସେଥିରୁ ଜଣାଗଲା, ଦି ବର୍ଷ ପୂର୍ବେ ସେ ଜଣେ ବନ୍ଧୁଙ୍କର ଜାମିନ ହୋଇ ଦୁଇ ହଜାର ଟଙ୍କା

କରିଜ କରିଛନ୍ତି । ବାନ୍ଧୁ ବ୍ୟବସାୟୀ ଫେଲ ମାରିବାରୁ ମୂଳସୁଧ ମିଶାଇ ପ୍ରାୟ ଚାରି ହଜାର ଟଙ୍କା ସ୍ୱାଙ୍କର ମୁଣ୍ଡରେ ଲଦି ଦେଇ ବିଷ ଖାଇ ମରିଛି । ସେ ଟଙ୍କା ଏ ଦାମୀ ଘରର ଇଟା ପଥର ବିକିଲେ ପରିଶୋଧ ହୋଇପାରିବ କି ନା, ଓକିଲ ସେ ଖବର ଜାଣିବାକୁ ଚାହିଁଛନ୍ତି । ଏତିକି କହି ସେ ପୁଣି ସେମିତି ହସିଉଠିଲେ ।

ସନ୍ତୋଷ ମୁହଁ ନୁଆଁଇ ତଳକୁ ଚାହିଁରହିଲା । ସେ ଆଖି ଫିଟାଇ ଦେଖିବାକୁ ମଧ୍ୟ ସାହସ କରିପାରିଲାନି । ସେ ପ୍ରଶ୍ନର ଜବାବ ଦେବାକୁ ମଧ୍ୟ କିଛି ଭାବିପାରିଲାନି ।

ସନ୍ତୋଷ ଉପେନ୍ଦ୍ରକୁ ଟେଲିଗ୍ରାମ କରି ଯେତେବେଳେ ଫେରି ଆସିଲା, ସେତେବେଳକୁ ସକାଳ ଦଶଟା । ଆସ୍ତେ ଆସ୍ତେ ରୋଷେଇ ଘରେ ଯାଇ ସେ ଉପସ୍ଥିତ ହେଲା ।

କରୁଣାମୟୀ ଶାଶୁଙ୍କ ଲାଗି ସାଗୁ ତିଆରି କରୁଥିଲେ । ମୁହଁକୁ ଉଠେଇ କହିଲେ—ବସନ୍ତୁ ନା ସନ୍ତୋଷ ! ସନ୍ତୋଷ ଲକ୍ଷ୍ୟ କଲା, କରୁଣାମୟୀଙ୍କ କଣ୍ଠଟା ଟିକିଏ ଭାରି ହୋଇଉଠିଛି । ଆଖିରେ ଲୁହ ନାହିଁ, କିନ୍ତୁ ପତା ଦିଟା ଓଦା ଓଦା । ସେ ଅଦୂରରେ ଚୌକି ଉପରେ ବସିପଡ଼ିଲା । ବସ କହି କରୁଣାମୟୀ ଆସନ ଦେବାକୁ ଭୁଲିଯାଇଛନ୍ତି ଆଜି । ସନ୍ତୋଷ କେଉଁଠି ବସିଲା କି ଠିଆହୋଇ ରହିଛି, ବୋଧହୁଏ ତାଙ୍କୁ ଆଉ ଦେଖାଯାଉ ନ ଥିଲା । ତାଙ୍କର କୌଣସି ବିଷୟରେ ସନ୍ତୋଷ କୌଣସି ରକମର ତ୍ରୁଟି କେବେ ଦେଖି ନାହିଁ । ଏତେ ଦିନ ଯିବା ଆସିବା କରିବା ଭିତରେ ସେ କେବେହେଲେ ତାଙ୍କର ସୌଜନ୍ୟର ଅଭାବ ଟିକିଏ ହେଲେ ଦେଖି ନାହିଁ । ତେଣୁ କରୁଣାମୟୀଙ୍କର ଆଜି ଏଇ ଟିକିକ ତ୍ରୁଟିରେ ସେ ବେଶ ବୁଝିପାରିଲା; ଏକ ଅବ୍ୟକ୍ତ ବ୍ୟଥାରେ କରୁଣାମୟୀ ଯେଭଳି ଆଚ୍ଛନ୍ନ ହୋଇପଡ଼ିଛନ୍ତି ।

ବହୁ ସମୟ ଧରି ଉଭୟେ ଚୁପଚାପ୍ ରହିଲେ । ହଠାତ୍ କରୁଣା-ମୟୀ ନିଜକୁ ନିଜେ ବ୍ୟଙ୍ଗ କରିବା ଭଳି ଏକ ତୀବ୍ର ହସ ହସି-ଉଠିଲେ । ବୋଧହୁଏ ସେ ଏଇ ଚିନ୍ତାରେ ମଗ୍ନ ଥିଲେ । ପଚାରିଲେ—କହିଲ ଭଲା ସନ୍ତୋଷ, ଯମ ସହିତ ଏଇସବୁ ଦେଣା ପାଉଣାର ହିସାବ ପରେ ମୁଁ ଚାକିରି କରିବା ଉଚିତ ନା ଭିକ୍ଷା ମାଗିବା ଉଚିତ ?

କଥାଟା ସନ୍ତୋଷ ବେଶ୍ ବୁଝିପାରିଲା । କହିଲା—ଉପୀନ୍‌ବାବୁଙ୍କୁ ପଚାରିବ, ସେ ଏହାର ଠିକ୍ ଜବାବ ଦେବେ ।

କରୁଣାମୟୀ କହିଲେ—ନ ପଚାରି ମୁଁ ବେଶ୍ ବୁଝିପାରୁଛି ଯେ ହୁଏତ ସେ ଦୟାକରି ଆମକୁ ଗଣ୍ଡେ ଖାଇବାକୁ ଦେବେ; କିନ୍ତୁ ପର ଉପରେ ନିର୍ଭର କରି ରହିବାଟା ତ ଭିକମଗା ସଙ୍ଗେ ସମାନ ।

ସନ୍ତୋଷ ହଠାତ୍ ପ୍ରତିବାଦ କରିବାକୁ ଗଲା; କିନ୍ତୁ ଜବାବ କ'ଣ ଦେବ କଥା ଖୋଜି ନ ପାଇ ଚୁପ୍ ରହିଲା ।

କରୁଣାମୟୀ ତା ମନର ଭାବ ବୁଝି ମୁରୁକିହସା ଦେଇ କହିଲେ—ମୁହଁ ଫିଟେଇ କହିଲେ ନିଶ୍ଚୟ କଥାଟା ରୂଢ଼ ହେବ, ସେ କଥା ମୁଁ ଜାଣେ ସନ୍ତୋଷ; କିନ୍ତୁ କଥାଟା ଯେ ସତ୍ୟ । କିଛି ସମୟ ରହି କହିଲେ—ତୁମ ଦାଦାଙ୍କୁ ମୁଁ ଚିହ୍ନିପାରିନି ବୋଲି ମନେ କରନା । ମୁଁ ତାଙ୍କୁ ଚିହ୍ନେ । ଅନାଥର ନାଥ ସେ; କିନ୍ତୁ ଖାଲି ଦେଲେ ତ ଚଳିବନି, ନେବାକୁ ମଧ ହେବ । ଦେବାଟା କେବେ ଦେଖିନି ସନ୍ତୋଷ, କିନ୍ତୁ ସାରାଜୀବନ ପରମନକୁ ଯୋଗେଇ ଚଳିପାରିବା ଯେ କି କଠିନ, ସେ କଥା ହାଡ଼େ ହାଡ଼େ ଅନୁଭବ କରୁଛି ।

ତଥାପି ସନ୍ତୋଷ ଉତ୍ତର ଖୋଜି ପାଇଲାନି । କିଛି ସମୟ ପରେ ନିଜକୁ ଆଉ ରୋକି ନ ପାରି କରୁଣାମୟୀ କହିଲେ—ଏ ପୃଥିବୀ ସହିତ ମୋର କାରବାର ବେଶୀ ଦିନର ନୁହେଁ—ଦେଣାପାଉଣା ଆଦି ଶୋଧ ପରିଶୋଧ କରିବା ଲାଗି ବହୁତ ଦିନ ବାକି ଅଛି । ଏକ ଘଡ଼ି ଜୀବନର ହିସାବ ନିକାଶରେ ଭୁଲଭ୍ରାନ୍ତି ସ୍ୱାଭାବିକ । ସେତେବେଳେ ସେ ବା କ'ଣ କହିବେ, ମୁଁ ବା କ'ଣ ହାତ ପାତି ମାଗିବ ? ପୁଣି ମୂଳରୁ ଜୀବନଟାକୁ ଆରମ୍ଭ କରିବାକୁ ପଡ଼ିବ ।

ଏପର୍ଯ୍ୟନ୍ତ ସନ୍ତୋଷ ଶ୍ରଦ୍ଧା ଓ ବ୍ୟଥା ସହିତ ତାର ଭାବୀ ଆଶଙ୍କାର କଥାଗୁଡ଼ାକ ମନେ ମନେ ଗଣୁଥିଲା; କିନ୍ତୁ ଶେଷ କଥାଟାରେ ସେ ଖୋଞ୍ଚା ଖାଇ ଚମକି ଉଠିଲା । କହିଲା—ଇଏ କି କଥା ଭାଉଜ ! ଭୁଲଭଟକ ହେବ କାହିଁକି ?

କରୁଣାମୟୀ ସନ୍ତୋଷର ଉତ୍କଣ୍ଠିତ ବିସ୍ମୟକୁ ଲକ୍ଷ୍ୟ କରି ହସିଲେ । ମୁହୂର୍ତ୍ତକ ମଧ୍ୟରେ ନିଜର ବ୍ୟଗ୍ର ଉତ୍ତପ୍ତ କଣ୍ଠସ୍ୱର ଶାନ୍ତ କୋମଳ କରି କହିଲେ—କିଏ ବା ଜାଣେ ସନ୍ତୋଷ ? ମୁଁ ତ ଫେରେ ମଣିଷ !

ହସ ଦେଖି ସତୀଶ ନିଜର ଭ୍ରମ ବୁଝିପାରିଲା । ମୁହୂର୍ତ୍ତିକ ଉତ୍ତେଜନାରେ ତା ମନ ଯେ କୁଅର୍ଥ ଗ୍ରହଣ କରି ବସାଇଥିଲା, ସେଇ ଲଜ୍ଜାରେ ମୁଣ୍ଡକୁ ନୁଆଇଁ ସେ ଆସ୍ତେ ଆସ୍ତେ କହିଲା—ମତେ କ୍ଷମା କର ଭାଉଜ ! ମୁଁ ଯେତିକି ନିର୍ବୋଧ, ସେତିକି ଅପବିତ୍ର ।

କିରଣମୟୀ କୌଣସି ଜବାବ ଦେଲେନି, ଟିକିଏ ହସିଦେଲେ ।

ଅକସ୍ମାତ୍ ସତୀଶର ଅନୁତପ୍ତ ଅପରାଧୀ ମନ ଉଦ୍ଦୀପ୍ତ ହୋଇଉଠିଲା । ଜୋର ଦେଇ କହିଉଠିଲା—କେବଳ ଉପୀନ୍‌ଦାଙ୍କ କଥା ହେବ କାହିଁକି ? ସେ କ'ଣ ସବୁ, ମୁଁ କେହି ନୁହେଁ ? ମୁଁ ତୁମକୁ ତାଙ୍କର ଆଶ୍ରୟ ନେବାକୁ ଦେବିନି ।

କିରଣମୟୀ ହସ ହସ ମୁହଁରେ କହିଲେ—ସେ ଏକା କଥା । ତୁମେ ଆଉ ତୁମର ଦାଦା ତ ପର ନୁହଁ ! ତୁମର ଆଶ୍ରୟ ନେଲେ ବି ତ ତୁମର ମନ ଯୋଗେଇବାକୁ ପଡ଼ିବ ।

ସତୀଶ କହିଲା—ନା ହେବନି, ମୁଁ ତୁମର ଶ୍ରେଷ୍ଠ ଭାଇ; କିନ୍ତୁ ଉପୀନ୍‌ଦା ତୁମ ସ୍ୱାମୀଙ୍କର ବନ୍ଧୁ । ଦରକାର ହେଲେ ମୋ ଭଉଣୀର ଭାର ମୁଁ ନେଇପାରେ ।

—କିନ୍ତୁ ତୁମର ମନ ଯୋଗେଇ ଯଦି ମୁଁ ଚଳି ନ ପାରେ ?

—ମୁଁ ମଧ୍ୟ ତୁମର ମନ ଯୋଗେଇ ଚଳିବିନି ।

—ମୁଁ ଯଦି ଦୋଷ ଅପରାଧ କରେ ?

—ତାହାହେଲେ ଭାଇ ଭଉଣୀଙ୍କ ମଧ୍ୟରେ ଝଗଡ଼ା ହେବ ।

—ଜୀବନରେ ଯଦି କୌଣସି ଭୁଲଭଟକ ହୋଇଯାଏ, ତାହା ହେଲେ ଏଇ ଶ୍ରେଷ୍ଠ ଭାଇଟି କ'ଣ କ୍ଷମା କରିପାରିବ ?

ସତୀଶ କିରଣମୟୀଙ୍କ ମୁହଁକୁ କିଛି ସମୟ ଚାହିଁରହି ବ୍ୟଥିତ ସ୍ୱରରେ କହିଲା—ଏ ଭୁଲଭଟକର ଅର୍ଥଟା ମୁଁ ବୁଝିପାରୁନି ଭାଉଜ ! ଶ୍ରେଷ୍ଠ ଭାଇକୁ ଅର୍ଥଟା ବୁଝାଇବା ଉଚିତ ବୋଲି ଯଦି ମନେକର, ତାହା ହେଲେ ବୁଝାଅ; ଯଦି ଉଚିତ ମନେ ନ କର, ତାହାହେଲେ ବୁଝାଇବା ଦରକାର ନାହିଁ । ଅପରାଧର ଅର୍ଥ ଯାହା ହେଉ ନା କାହିଁକି, ତୁମେ ସେ କଥା ମନରେ ସୁଦ୍ଧା ଆଣ ନାହିଁ । ଯଦିବା ତାହା ସମ୍ଭବ ହୁଏ, ତଥାପି ମୁଁ ଭୁଲିପାରିବିନି ଦିଦି ଯେ ମୁଁ ତୁମର ଶ୍ରେଷ୍ଠ ଭାଇ !

ସଞ୍ଜୀବର ମାଳବୀ କଥା ମନେପଡ଼ିଲା । କହିଲା—ଭାଉଜ, ଆଜ ତୁମର ଏହି ଶ୍ରେଷ୍ଠ ଭାଇଟିର ଅହଂକାର ମାର୍ଜନା କର; କିନ୍ତୁ ଯେଉଁ ଅପରାଧକୁ ମୁଁ ଏ ଜୀବନରେ କ୍ଷମା କରିପାରିବି, ସେ ଅମାର୍ଜ୍ୟ କ୍ଷମା କରିବାକୁ ସ୍ୱୟଂ ଭଗବାନ ମଧ୍ୟ କୁଣ୍ଠିତ ହୁଅନ୍ତେ । ଏତିକି କହିଦେଇ ମୁହଁ ଟେକି ଦେଖିଲା, କରୁଣାମୟୀଙ୍କ ଦୁ' ଆଖିରୁ ଧାର ଧାର ହୋଇ ଲୁହ ଗଡ଼ି ଚାଲିଛି । ସଞ୍ଜୀବ ପୁଣି ଦୃଢ଼ ସ୍ୱରରେ କହିଲା—ଆଜ ମନେ ଥରେ ଭଲ କରି ଚାହିଁ ଦେଖି ଦିଅ, ଯେଉଁ ସଞ୍ଜୀବ ନିଜ ଦୁର୍ବୁଦ୍ଧିର ସ୍ପର୍ଦ୍ଧାରେ ତୁମକୁ ଭାଉଜ ବୋଲି ଏପର୍ଯ୍ୟନ୍ତ ବରଣ କରି ଆସୁଥିଲା, ସେ ତୁମର ଏଇ ଭାଇଟି ନୁହେ । କହୁ କହୁ ତାର ସମଗ୍ର ମୁହଁଟା ପ୍ରଦୀପ୍ତ ହୋଇଉଠିଲା । ସେ ପ୍ରବଳ ବେଗରେ ମୁଣ୍ଡ ହଲାଇ କହିଲା—ନା, ନା, ସେ ଲୋକ ମୁଁ ନୁହେଁ, ସେ କେବେହେଲେ ତୁମକୁ ଚିହ୍ନିପାରିନି, କେବେହେଲେ ତୁମକୁ ପୂଜା କରିବାକୁ ଶିଖିନି । ସେଇଥିପାଇଁ ସେ ଜଗନ୍ନାଥଙ୍କୁ କାଠର ପିତୁଳା ବୋଲି ଉପହାସ କରୁଥିଲା । ନିଜର ମହାପାତକର ଭାର ନେଇ ସେ ଡୁବି ଯାଇଛି । କରୁଣାମୟୀ ନିର୍ନିମେଷ ଚକ୍ଷୁରେ ତା ଆଡ଼କୁ ଚାହିଁରହିଲେ ।

ତାପରେ ଧୀରେ ଧୀରେ ଅତି ମୃଦୁକଣ୍ଠରେ ପ୍ରଶ୍ନ କଲେ—କିମିତି ମୋର ପରିଚୟ ପାଇଲୁ ଭାଇ !

ସଞ୍ଜୀବ କହିଲା--ସେସବୁ କଥା ଗୁରୁଜନମାନଙ୍କ ଆଗରେ କହିବା କଥା ନୁହେଁ ।

--କହିବା କଥା ନୁହେଁ ! ସେ ପୁଣି କି କଥା ? ଅକସ୍ମାତ୍ ଭୟ ଓ ସଂଶୟରେ କରୁଣାମୟୀର ମୁଖ ବିବର୍ଣ୍ଣ ହୋଇପଡ଼ିଲା । ଡାକିଲା—ସଞ୍ଜୀବ !

—କ'ଣ ଭାଉଜ !

—ମୁହଁ ଉଠେଇଲ ଦେଖି !

—ସଞ୍ଜୀବ ମୁହୂର୍ତ୍ତେ ସମୟ ସ୍ତବ୍ଧ ରହିବା ପରେ ମୁହଁ ଉପରକୁ ଟେକିଲା । କରୁଣାମୟୀ ଏକଦୃଷ୍ଟିରେ ଚାହିଁରହି କହିଲେ—ସଞ୍ଜୀବ, ତୁମେ ଯେ ମନରେ ଗୋଟାଏ ବଡ଼ ବ୍ୟଥା ନେଇ ଆସିଚ, ମୁଁ ଜାଣେ । କିନ୍ତୁ ପଚାରିବାର ଅଧିକାର ନ ଥିଲା ବୋଲି ଜାଣିବାକୁ ଚାହିଁ ନାହିଁ । କିନ୍ତୁ ତୁମେ ଆଜଠୁ ମୋର ଶ୍ରେଷ୍ଠ ଭାଇ । କ'ଣ ହେଇଛି କୁହ ତ !

ସଞ୍ଜୀବ 'ମୁହଁକୁ' ଟେକି କହିଲା--ସେ ବଡ଼ ଲଜ୍ଜାର ବିଷୟ ଭାଉଜ !

କରଣମୟୀ କହିଲେ—ହେଉ ଲଜ୍ଜାର କଥା । ତଥାପି ତୁମକୁ ତୁମର ଏଇ ଭଉଣୀଟିକୁ ତାର ଭାଗ ଦେବାକୁ ପଡ଼ିବ । ବ୍ୟଥା ତୁମେ ଏକା ଏକା ବହିନେବାକୁ ମୁଁ କଦାପି ଦେବିନି ।

ତାପରେ ଟିକିଏ ଟିକିଏ କରି କରଣମୟୀ ମୂଳରୁ ଏହି ଦୁଃଖର ବିସ୍ମୃତ କିଛି ଇତିହାସ ସଂଗ୍ରହ କରିନେଇ ଶେଷରେ କହିଲେ— କିନ୍ତୁ ତୁମେ କାହିଁକି ଏଭଳି କାମ କଲ ?

ସନ୍ଧାଣ ନିର୍ବାକ ।

କରଣମୟୀ ପ୍ରଶ୍ନ କଲେ—କିଏ ସେ ?

ସନ୍ଧାଣ ମୁହଁକୁ ନୁଆଇଁ ଅସ୍ପଷ୍ଟ କଣ୍ଠରେ କହିଲା—ହତଭାଗିନୀ ।

—କିନ୍ତୁ ଅଛି କେଉଁଠି ସେ ?

—ଜାଣେନା ।

—ଖୋଜ କରିନା ?

ସନ୍ଧାଣ ଧୀର କଣ୍ଠରେ କହିଲା--ତାର କୌଣସି ଆବଶ୍ୟକତା ନାହିଁ । ଶୁଣିଚି, ସେ ଭଲରେ ଅଛି ।

କରଣମୟୀ ବ୍ୟଥିତ ହୋଇ କହିଲେ—ଭଲ ଅଛି ? ଛି ଛି, କାହିଁକି ଇମିତି ନିଜକୁ ଠକେଇଲ ?

ଏଥର ସନ୍ଧାଣ ପୁଣିଥରେ ମୁହଁକୁ ଉଠେଇଲା । ସୁସ୍ପଷ୍ଟ କଣ୍ଠରେ ଜବାବ ଦେଲା—ମୁଁ ଠକିନି ଭାଉଜ ! କାରଣ ମୁଁ ତାକୁ ଭଲ ପାଇ ପାରିଥିଲି । କିନ୍ତୁ ଠକିଛି ସେ । ସେ ବୋଧହୁଏ ଭଲ ପାଇପାରିନି ।

—।ତାପରେ ?

—ପ୍ରଥମେ ସେ ନିଜର ମନ ବୁଝିପାରିନି । କିନ୍ତୁ ଯେତେବେଳେ ପାରିଲା, ସେତିକ ବେଳକୁ ହିଁ ସେ ଚାଲିଗଲା

—ନ କହି ଲୁଚି କରି ଗଲା ?

—ସନ୍ଧାଣ ମୁଣ୍ଡକୁ ହଲେଇ କହିଲା—ନା, ସେ କଥା ମଧ୍ୟ ନୁହେଁ । ଯିବା ଆଗରୁ ସାବଧାନ କରି ଗଲା—ଜଣେ ଅସ୍ପୃଶ୍ୟ କୁଳଟାକୁ ଭଲ ପାଇ ଭଗବାନଦତ୍ତ ଏଇ ମନଟାରେ ଯେମିତି ମୁଁ କାଳିମା ନ ବୋଳେ ।

କରଣମୟୀ ଗମ୍ଭୀର ବିସ୍ମୟରେ ଧୀର ସ୍ଥିର ଭାବରେ ବସିରହିବା ପରେ କହିଲେ—କ'ଣ କହିଗଲା ?

ସଷ୍ଠାଶ ପୁଣି ସେଇପରି କହିଲା । କରଣମୟୀ କିଛି ସମୟ ଚୁପ୍ ରହି ହଠାତ୍ କହିଉଠିଲେ—କିନ୍ତୁ ପୁଣି ଯେତେବେଳେ ଦେଖାଦେବ, ତା'କୁ ଥରେ ମୋତେ ଦେଖେଇବ ?

ସଷ୍ଠାଶ ସେଦିନର କଥା ସ୍ମରଣ କରି କହିଲା—କିନ୍ତୁ ଆଉ ତ ଦେଖାଦେବନି ଭାଉଜ !

କରଣମୟୀ ମ୍ଳାନ ହସ ହସି କହିଲେ—ପୁଣି ଦେଖାଦେବ ।

—କେବେ ହେବ ? ନ ହେବାଟା ହିଁ ତ ଭଲ ।

କରଣମୟୀ ମୁଣ୍ଡ ହଲାଇ କହିଲେ—କେବେ ଯେ ହେବ ତା' ଜାଣେନା । କିନ୍ତୁ ଯଦି କେବେ ଦୁଃଖରେ କିମ୍ବା ବିପଦରେ ପଡ଼, ସେତେବେଳେ ଯାଇ ଦେଖାଦେବ—ସେ ଦେଖାରେ ମଙ୍ଗଳ ଛଡ଼ା ଅମଙ୍ଗଳ ହେବନି । ସେ ଯେଉଁଠି ବି ଥାଉ, ତୁମ ନିଜଠାରୁ ମଧ୍ୟ ସେ ତୁମର ଅଧିକ ମଙ୍ଗଳାକାଂକ୍ଷିଣୀ—ଏକଥା ଯେମିତି କେବେହେଲେ ଭୁଲିବନି ।

ସେଇଦିନ ସଂଧ୍ୟାରେ କରଣମୟୀ ମୁମୂର୍ଷୁ ସ୍ୱାମୀଙ୍କ ଶେଯ ପାଖରୁ ଉଠିଆସି କିଛି ସମୟ ପାଇଁ ବାହାରେ ଠିଆ ହୋଇଥିଲେ । ଦରଜା ପାଖରେ କାନ୍ଥକୁ ଆଉଜି ସଷ୍ଠାଶ ଚୁପ୍ ହୋଇ ବସି ରହିଥିଲା । କ୍ଲାନ୍ତି—ବଶତଃ ବୋଧହୁଏ ଟିକିଏ ଘୁମେଇ ପଡ଼ିଥିଲା । କରଣମୟୀ ବିସ୍ମିତ ଭାବରେ ପଚାରିଲେ—ସଷ୍ଠାଶ, ଏମିତି ଏଠି ବସିରହିଛ କାହିଁକି ? ବସାକୁ କାହିଁକି ଯାଉନ ?

ସଷ୍ଠାଶ ଧଡ଼ପଡ଼ ହୋଇ ଉଠି କହିଲା—ନା ।

—ଏପର୍ଯ୍ୟନ୍ତ କେଉଁଠି ଥିଲ ?

—ଇଆଡ଼େ ସିଆଡ଼େ ବୁଲୁଥିଲି । ଆଜି ଆଉ ବସାକୁ ଯିବିନି ।

—ଛି, ସେ କି କଥା । ଖାଇବନି, ଶୋଇବନି—ନା ନା, ଯାଅ ଖାଇଟିପିଇ, ବସାକୁ ଚାଲି ଯାଅ, କୌଣସି ଭୟ ନାହିଁ ।

ସଷ୍ଠାଶ କହିଲା—ଭୟ ଥାଉ ବା ନ ଥାଉ, ଆଜି ତୁମକୁ ଏକୁଟିଆ ଛାଡ଼ିଦେଇ ଚାଲିଯାଇ ପାରିବି ନାହିଁ । ମୁଁ ହୋଟେଲରୁ ଖାଇଦେଇ ଆସିଛି ।

କରଣମୟୀ କହିଲେ—ସେ କଥା ହୋଇପାରିବ ନାହିଁ । ମୁଁ ଜାଣେ, ତୁମର ହୋକାନ ଜଳଖିଆରେ ପେଟ ପୂରେନା । ମତେ ତା'ହେଲେ

ରାନ୍ଧିବାକୁ ପଡ଼ିବ । ଧର ମୁଁ ଏଇ ରାନ୍ଧିଲି । କିନ୍ତୁ ଏଇ କେତେ ଦିନ ହେଲା ତୁମର ଠିକ୍ ସମୟରେ ଖିଆପିଆ ହୋଇନି । କାଲି-ପଅରିଦିନ ବିଲକୁଲ ତ ଶୋଇନ । ଦେହ ଉପରେ ଯଥେଷ୍ଟ ଅତ୍ୟାଚାର କଲଣି, ଆଉ କରିବାକୁ ଦେବିନି । ଆଜି ରାତିରେ ଏଇଠି ରହିଲେ ତୁମର ଦେହ ନିଶ୍ଚୟ ଖରାପ ହେବ, ଏକଥା ମୁଁ ଭଲ ଭାବରେ ଜାଣିପାରୁଛି ।

ସତୀଶ କହିଲା— ଦିନେ ଦି'ଦିନର ଖିଆପିଆରେ କମ ହୋଇଗଲେ ମୋର ଦେହ ଖରାପ ହୋଇଯାଏ । କିନ୍ତୁ ତୁମେ ଯେ ମାସ୍ ମାସ ଧରି ଏକାଦିକ୍ରମେ ଏଇ ଖିଆପିଆର ଏତେ ଅବହେଳା କଲଣି, କାହିଁ ତୁମର ଦେହ ତ ଖରାପ ହେଉନି ? ଯାହା ଖାଇ ଦିନ ରାତି କଟଉଚ, ତାହା ଅନ୍ୟ ମଣିଷକୁ ଦେଖିବାକୁ ଦେଉନ ସିନା, ଭଗବାନ ଦେଖୁଚନ୍ତି । ମୋର ତ ମନେ ହେଉଚି, ଆଉ କିଛିକେ ଖଟିଲେ ତୁମେ ଏକାବେଳକେ ମରିଯିବ ।

କିରଣମୟୀ କହିଲେ—ହାଁ' ହେଲେ ତୁମେ କ'ଣ କହିବାକୁ ଚାହୁଁଚ, ଏକ ମାସ କାଳ ନ ଖାଇ ନ ପିଇ ତୁମେ ବଞ୍ଚି ରହିପାର ?

ସତୀଶ କହିଲା—ସେକଥା କହୁନି, କିନ୍ତୁ—

କିରଣମୟୀ ହସି କହିଲେ—ଏଥିରେ କିନ୍ତୁ ଆସିଲା କେଉଁଠୁ ? ମୁଁ ଯେ ମାଇପି ଲୋକ । ଝିଅ ପିଲାଏ ଯେତେ ଖଟିଲେ ବି ଦେହ ଖରାପ ହୁଏନା । ସେମାନେ ସହଜେ ମରନ୍ତିନି । କେଉଁଠି ଭଲା ଶୁଣିଚ, ଝିଅ ପିଲାଏ ଖଟି ଖଟି ମରି ଯାଇଚନ୍ତି ?

—ନା, ଶୁଣିନି । ଶୁଣିଚି, ସେମାନେ ଅମର ।

—ହଁ, ଠିକ୍ ଶୁଣିଚ । ସେମାନଙ୍କର ତ ପ୍ରାଣ ନ ଥାଏ, ମରିବେ କୁଆଡ଼ୁ । ମୋର ତ ମନେହୁଏ, ଏ ମାଇପି ଜାତଟାର ଗଳାରେ ଦଉଡ଼ି ଲଗାଇ ଦଶ ବର୍ଷ ଟାଙ୍ଗି ରଖିଲେ ବି ମରିବେନି ।

ସତୀଶ କ୍ଷୁବ୍ଧ ହୋଇ କହିଲା—ତୁମର ଏସବୁ ତାମସା ମୁଁ ଶୁଣିବାକୁ ଚାହେଁନା ଭାଉଜ ! ଶୁଣିଲେ ପାପ ।

କିରଣମୟୀ ଏଥର ଗମ୍ଭୀର ହୋଇ କହିଲେ—ଆଚ୍ଛା ସତୀଶ, ତୁମେ ହଠାତ୍ ଝିଅମାନଙ୍କ ପକ୍ଷପାତୀ ହୋଇଉଠିଚ କାହିଁକି କୁହ ତ ?

ସତୀଶ କହିଲା—ଭାଉଜ, ମୁଁ ବେଶ୍ ବୁଝିପାରୁଚି, ଯେତେବେଳେ ସେତେବେଳେ ସ୍ତ୍ରୀଲୋକ ନାଁ ଧରି ତୁମେ ନିଜ ଉପରେ ହିଁ କଠୋର ବିଦ୍ରୂପ କର । କାହିଁକି କର ଜାଣେନା । କିନ୍ତୁ ତୁମ ସମ୍ବନ୍ଧରେ ବ୍ୟଙ୍ଗ ବିଦ୍ରୂପ ତୁମ ମୁହଁରୁ ମୁଁ କାହିଁକି କେଜାଣି ସହିପାରୁନି । ଏଥିରେ ମୋ ମନରେ ବଡ଼ ଆଘାତ ଲଗେ । ଆଚ୍ଛା, ମୁଁ ଚାଲିଲି ।

—ଶୁଣ ସତୀଶ !

ସତୀଶ ଫେରି ଠିଆହେଲା, କହିଲା—କ'ଣ ?

—ସତେ ରାଗିଲ ?

—ହଁ, ରାଗ୍ ଲଗେ । ସଂସାରରେ ମୁଁ ଦୁଇଟି ଲୋକକୁ ଦେବତା ଭଳି ଭକ୍ତି କରେ, ଉପୀନ୍‌ଦା ଆଉ ତୁମକୁ । ଜଣକୁ ମନେ ପକେଇଲେ ତୁମ ଦୁଇଜଣଯାକକୁ ଏକା ସାଙ୍ଗରେ ଦେଖେ । ଏ ଧରଣର ଥଟ୍ଟାତାମସା ମୋର ସହ୍ୟ ହୁଏନା । ଯାଉଚି, ଖାଇପିଇ ହୁଏତ ଆଉଥରେ ଆସିବି । ଏହା କହି ସତୀଶ ତଳକୁ ଚାଲିଗଲା ।

କିରଣମୟୀ ନିସ୍ପନ୍ଦ ଭାବରେ ଆଖିବୁଜି ଠିଆହୋଇ ରହିଲେ । ତାଙ୍କ ଦୁଇ କାନ ଭିତରେ କେବଳ ଗୋଟିଏ ମାତ୍ର ପ୍ରତିଧ୍ୱନି—'ମୁଁ ଜଣକୁ ଭାବିଲାମାତ୍ରେ ଦୁଇଜଣଙ୍କୁ ଦେଖେ ।'

## କୋଡ଼ିଏ

ଭାଷା ହେଉ ବା ଇଙ୍ଗିତ ହେଉ, କେଉଁଠି ହେଲେ ସତୀଶ ସାବିତ୍ରୀର ନାମ ସୁଦ୍ଧା ଉଚ୍ଚାରଣ କରେ ନାହିଁ । ତେଣୁ ଯେତେବେଳେ କିରଣମୟୀଙ୍କଠାରୁ ଏକଥା ପ୍ରକାଶ ହୋଇଚି, ସେତିକିବେଳେ ତା ଦେହ ଦେଇ ଅମୃତସ୍ରୋତ ବହିଚାଲିଚି । କିରଣମୟୀ ସତୀଶ ଆଖିରେ ସାକ୍ଷାତ ଦେବୀ । ତାଙ୍କର ସମସ୍ତ କଥା ଏକାନ୍ତ ଶ୍ରଦ୍ଧା ସହକାରେ ସେ ବିଶ୍ୱାସ କରେ । ସେ କହିଥିଲେ—ଦୁଃଖର ଦିନରେ ପୁଣିଥରେ ଦେଖାହେବ । ସେପର୍ଯ୍ୟନ୍ତ ତାର ନିଭୃତ ଅନ୍ତରବାସୀ ଶୋକାର୍ତ୍ତ ବିଚ୍ଛେଦ ସେହି ପରମ ବାଞ୍ଛିତ ଦୁଃଖ ଦିନର ଆଶାରେ ଉନ୍ମୁଖ ହୋଇ ଉଠିଥିଲା । କେଉଁ ଦୁଃଖ କେଉଁ ଭାବରେ

ଏବଂ କେତେ ଧନ ଭିତରେ ତାଙ୍କୁ ଦେଖାଦେବା ଲାଗି ଦୟାକରିବେ, ଏଇ ଚିନ୍ତାରେ ସେ ଧୀରେ ଧୀରେ ବାଟ ଚାଲି ଚାଲି ଘଣ୍ଟା ଆଠଟାବେଳକୁ ଆସି ବସାରେ ଉପସ୍ଥିତ ହେଲା । ଘରେ ପହଞ୍ଚି ଯେଉଁଆଡ଼େ ଯେଉଁ ବସ୍ତୁ ଆଡ଼କୁ ଚାହିଁଲା, ତାହା ତା ମନରେ ଏକ ଅଦ୍ଭୁତ ଭାବ ସୃଷ୍ଟି କଲା । ସାର୍ଟଟା ଖୋଲି ଯାକେଟ ଦେହରେ ରଖିଲାବେଳକୁ ଦେଖିଲା—ଲୁଗାଗୁଡ଼ାକ ଚଜଡ଼ା ହୋଇ ରହିଛି । ହରିଣ ଶିଙ୍ଘ ଉପରେ ଟଙ୍ଗା ହୋଇ ରହିଥିବା କାଚ ପିନ୍ଧାଲୁଗାଟି ବେଶ୍ କୁଞ୍ଚ ହୋଇ ଥୁଆ ହୋଇଛି । ବସିବାକୁ ଗଲାମାନେ ଦେଖିଲା, ଚେୟାର ଉପରେ ରଖାହୋଇଥିବା ମଇଳା ଲୁଗାଗୁଡ଼ାକ ଆଜି ନାହିଁ । ଦୁ' ସପ୍ତାହ ଧରି ଧୋବା ଆସିନି । ତେଣୁ ମଇଳା ଲୁଗାଗୁଡ଼ାକ ପ୍ରତ୍ୟହ ବସିବା ଚୌକିଟା ଉପରେ ଧୀରେ ଧୀରେ ଉଚା ହୋଇଉଠୁ-ଥିଲା । ବସିବାବେଳେ ସତ୍ତ୍ୱଶ ସେଗୁଡ଼ାକୁ ତଳକୁ ଫୋପାଡ଼ିଦେଇ ବସେ । ଉଠି ଚାଲିଗଲେ ବେହାରା ପୁଣି ସେଗୁଡ଼ାକୁ ନେଇ ଯଥାସ୍ଥାନରେ ଥୋଇ ଦିଏ । ସାତଦିନ ଧରି ପ୍ରଭୁ ଓ ଭୃତ୍ୟ ଏଇ କାର୍ଯ୍ୟ ହିଁ କରୁଥିଲେ । ହଠାତ୍ ଆଜି ସେଗୁଡ଼ିକ ବୁଜୁଲା ବନ୍ଧାହୋଇ ଆଲନା ଆଗପଟେ ଆଡ଼େଇହୋଇ ରହିଛି । ବିଛଣା ଚାଦରି, ତକିଆଖୋଳି ଅତି ମଇଳା ହୋଇ ପଡ଼ିଥିଲା । ଆଜି ଏକାବେଳକେ ଧୋବ ଫର୍‌ଫର୍ । ମଶାରିଟା ଚରଦିନ ଅନ୍ଧାରୁଙ୍କ ଭଳି ଓଟମୁହଁ ହୋଇ ଟଙ୍ଗା ହୋଇ ରହିଥାଏ । ସେଇଟା ବି ଚାରିକୋଣ ଠିକ ସମାନ ହୋଇ ଭଦ୍ରହୋଇ ପଡ଼ିଛି । ଲଣ୍ଠଣଟାର ଗୋଟିଏ କୋଣରେ କଳା ଉଠେ, ଆଜି ସେଇଟା ନିଖୁଣ ଭାବେ ଚମତ୍କାର ଜଳୁଛି । ସବୁ ଦିଗରୁ ଶ୍ରୀର ଲକ୍ଷଣ ଦେଖି ସତ୍ତ୍ୱଶ ଖୁବ୍ ତୃପ୍ତି ବୋଧକଲା; କିନ୍ତୁ ବୃଦ୍ଧ ବେହାରାର ଏ ଆକସ୍ମିକ ରୁଚି ପରିବର୍ତ୍ତନର କୌଣସି କାରଣ ଖୋଜି ପାଇଲାନି । ଡାକିଲା—ବେହାରା !

ବେହାରା ଅନ୍ତରାଳରେ ଠିଆହୋଇ ରହିଥିଲା । ଆସି ସତ୍ତ୍ୱଶ ଆଗରେ ଠିଆହେଲା ।

ସତ୍ତ୍ୱଶ କହିଲା—ବେଶ୍, ତୁ ଯଦି ଏସବୁ କରିପାରୁ, ତାହାହେଲେ ଏତେଦିନ ଧରି ଘରଟାକୁ ଇମିତି ମଇଳା ପକେଇ ରଖିଥିଲୁ କାହିଁକି ? ବଡ଼ ଖୁସି ହେଲି ।

ବେହାରା ହର୍ଷବିନୟରେ ମୁଖ ଈଷତ୍ ଅବନତ କରି କହିଲା—ଆଜ୍ଞା, ଆପଣଙ୍କର ଗୋଟିଏ ତାରି ଚିଠି ଆସିଛି ।

—କାହିଁ ? କହି ଇତସ୍ତତଃ ଆଖି ବୁଲାଇବାମାତ୍ରେ ଟେବୁଲ ଉପରେ ରଖାହୋଇଥିବା ହଳଦିଆ ଲଫାପାଟିଏ ଆଖିରେ ପଡ଼ିଲା । ଖୋଲି ଦେଖିଲା—ଉପୀନ୍ଦାର ଖବର । ସେ ସାଢ଼େ ୯ଟାବେଳେ ହାଓଡ଼ା ଷ୍ଟେସନରେ ପହଞ୍ଚିବେ । ଘଡ଼ିରେ ପ୍ରାୟ ସାଢ଼େ ଆଠଟା ବାଜି ଯାଇଥାଏ । ବ୍ୟସ୍ତ ହୋଇ କହିଲା—ଶୀଘ୍ର ଗୋଟାଏ ଗାଡ଼ି ନେଇଆ ବେହାରୀ, ଉପୀନ୍ଦା ଆସୁଛନ୍ତି ।

ପାଞ୍ଚ ମିନିଟ ମଧ୍ୟରେ ବେହାରୀ ଗାଡ଼ି ଡାକି ସମ୍ବାଦ ଦେଲା ଏବଂ କବାଟ ପଛକୁ ଠିଆହୋଇ ପଚାରିଲା—ବାବୁଙ୍କୁ ନେଇ ବସାକୁ ଆସିବେ ତ ?

ସନ୍ତୋଷ ଚନ୍ଦ୍ରାକର କହିଲା—ନା, ଆଜି ରାତିରେ ଆଉ ଫେରିବା ହେବନି । ଉପୀନ୍ଦା ସେ ସିଧା ହାରାନ୍ଦା ଘରକୁ ଯିବେ, ସନ୍ତୋଷ ମନରେ ଏ ବିଷୟରେ କୌଣସି ସନ୍ଦେହ ସୁଦ୍ଧା ନ ଥିଲା । କାରଣ ସେ ସସ୍ତ୍ରୀକ ଆସିବା ଖବର ଟେଲିଗ୍ରାମରେ ନ ଥିଲା ।

ସନ୍ତୋଷ ଇତି ମଧ୍ୟରେ ଦଖଣ୍ଡ ଲୁଚି ତରତରରେ ଖାଉଥିଲା । ବେହାରୀ କହିଲା—ବାବୁ, ଗୋଟିଏ ନିବେଦନ ଅଛି ।

ପ୍ରାର୍ଥନା ଜଣାଇଲେ ବେହାରୀ ପଣ୍ଡିତିଆ ଭାଷା ପ୍ରୟୋଗ କରିଥାଏ ।

ସନ୍ତୋଷ ମୁହଁ ଉଠେଇ ପଚାରିଲା—କି ନିବେଦନ ?

—ଆଜ୍ଞା !—ଏତିକି କହି ବେହାରୀ ଚୁପ୍ !

ସନ୍ତୋଷ ପ୍ରଶ୍ନ କଲା—କ'ଣ ଆଜ୍ଞା ଶୁଣେ ।

ବେହାରୀ ଇତସ୍ତତଃ ଭାବରେ କହିଲା—ଆଜ୍ଞା, ତିନିଶହଟା ଟଙ୍କା ହେଲେ—

ସନ୍ତୋଷ ବିସ୍ମିତ ହୋଇ କହିଲା—ପଅରଦିନ ତ ତିନିଶ ଟଙ୍କା ନେଲୁ । ଘରକୁ ପଠେଇଚୁ ?

ବେହାରୀ ଧୀର କଣ୍ଠରେ କହିଲା—ପଠେଇବା ଲାଗି ତ ନେଇଥିଲି; କିନ୍ତୁ ଚକ୍ରବର୍ତ୍ତୀ ଠାକୁରଙ୍କ ଘରେ············

ଚକ୍ରବର୍ତ୍ତୀ ନାଁ ଧରିବାମାତ୍ରେ ସନ୍ତୋଷ ରାଗିଉଠି କହିଲା—ମୋ ଟଙ୍କାତକ ଚକ୍ରବର୍ତ୍ତୀଙ୍କୁ ଦାନ କରାଯାଉଛି ନା ? ଏ ଟଙ୍କାଟା ଆଉ କାହାକୁ ?

—ଆଜ୍ଞା ଦାନ ନୁହେଁ, ଜଣେ ବନ୍ଧୁ ଦୁଃଖରେ ପଡ଼ି—

—କରଜ ଚାହିଁଛ ?

—ଆଜ୍ଞା, କରଜ ବା ତାକୁ କିଏ ଦେବ ?

ସତୀଶ ଅଧୀର ଭାବେ ଠିଆହୋଇ କହିଲା—ତୋର ଥିବ, ତୁ ଦେ । ମୁଁ ଏତେ ବଡ଼ଲୋକ ନୁହେଁ ଯେ ନଇତି ଟଙ୍କା ନଷ୍ଟ କରିପାରିବ । ମୁଁ ଦେଇପାରିବିନି ।

ଏଥର ବେହାରୀ କାନ୍ଦକରି କହିଲା—ନ ଦେଲେ ଚଳିବନି ବାବୁ ! ନ ହେଲେ ମୋ ଦରମାରୁ ଦିଅନ୍ତୁ ।

ଦରମା ନାଁ ଶୁଣିବାମାତ୍ରେ ସତୀଶ ଧମକେଇ କହିଲା—ଦରମା ଟଙ୍କା ? ଏପର୍ଯ୍ୟନ୍ତ କେତେ ଟଙ୍କା ନେଲୁଣି କହିଲୁ ଭଲା ?

ବେହାରୀ କହିଲା—ନେଇଁମାନେ ପିଲାମାନଙ୍କ ପାଖକୁ ତିନି ବିଘା ଜମି, ହଳେ ବଳଦ କିଣିବା ପାଇଁ ପଠେଇ ଦେଇଛି । ତା ଛଡ଼ା ଗୋଟିଏ ନୂତନ ଘର ତୋଳି ଦେଇଛି । ଇଏ କ'ଣ ମୋ ଦରମା ଟଙ୍କାରୁ ? ମୋ ଟଙ୍କା ଆପଣଙ୍କ ପାଖରେ ଜମା ଅଛି, ସେଇଥିରୁ ଦିଅନ୍ତୁ ।

ସତୀଶ ହସି ପକେଇଲା । କହିଲା—ତୋ ପିଲାଙ୍କ ପାଇଁ କିଣିଦେଇ ମୋର ତ ଭାରି ଉପକାର କରିଛୁ ! ଯା' ମୋର ଟଙ୍କା ନାହିଁ । ଏହା କହି ଗୁଦରଟାକୁ କାନ୍ଧରେ ପକେଇ ସତୀଶ ଷ୍ଟେସନ ଆଡ଼କୁ ବାହାରିଗଲା ।

ବେହାରୀ ନିଜ ଘରକୁ ଆସି କହିଲା—ମା, ପୂଜାପୂଜି କରି ଟିକିଏ ଜଳଖିଆ ଖାଇନେ । କାଲି ଯେଉଁଠୁ ହେଲେ ବ୍ୟବସ୍ଥା କରି ନିଶ୍ଚେ ଦେବି ।

ସାବିତ୍ରୀ ଘରେ ଲୁଗା କାନକୁ ବଚ୍ଛେଇ ଦେଇ ଶୋଇଥିଲା । ଉଠି ବସି ପଚାରିଲା—ବାବୁ ଦେଲେନି !

ବେହାରୀ କହିଲା—ତାଙ୍କ କଥା ତ ଜାଣ । ପରଦୁଃଖ କଥା କହି ଯେତେବେଳେ ଟଙ୍କା ଚାହିଁଛି, ନିଶ୍ଚୟ ପାଇବି । ସେ ପରା ଦାତାକର୍ଣ୍ଣ ମୁନିବ । ଏବେ ସିନା ନ ଦେଇ ଷ୍ଟେସନକୁ ଚାଲିଗଲେ, କିନ୍ତୁ କାଲି ସକାଳେ ଫେରିଆସିଲେ ସେ ନିଜେ ଡାକି ଦେବେ । ତୁମର କୌଣସି ଚିନ୍ତା ନାହିଁ ମା ! ଉଠି ଟିକିଏ ଜଳଖିଆ କର । ସାରାଦିନ ନ ଖାଇ ରହିଛ !

ସାବିତ୍ରୀର ମ୍ଳାନ ପାଣ୍ଡୁର ମୁହଁରେ ଟିକିଏ ହସ ଫୁଟିଉଠିଲା । କହିଲା—ଭଲ ହୋଇଚି । ଆଜି ରାତିରେ ତ ସେ ଫେରିବେନି । ତାହା-ହେଲେ କାଲି ଦିପହର ବେଳା ଗାଡ଼ିରେ କାଶୀ ଚାଲିଯାଇ ପାରିବେ । କ'ଣ କହୁଚୁ ବେହାରୀ !

ବେହାରୀ କହିଲା—ନିଶ୍ଚୟ ମା ! ନିଶ୍ୱାସ ଛାଡ଼ି କହିଲା—ତୋ ମୁନିବ ଆଉ ମୋ ମୁନିବ ? ଦେଶରୁ ବୁଢ଼ୀ ଖଣ୍ଡିଏ ଚିଠି ଦେଇଥିଲା, ତାକୁ ଧରି ବାବୁଙ୍କ ପାଖକୁ ଗଲି ପଢ଼ି ଶୁଣାଇବା ପାଇଁ । ପଢ଼ି କ'ଣ କହିଲେ ଜାଣୁ ? କହିଲେ—ବେହାରୀ ! ତୋର ଘରେ ଆଉ କିଏ ଅଛନ୍ତି କରେ ? କହିଲି—ଦୁଃଖୀ ଗରିବଙ୍କର ଆଉ କିଏ ଥାଆନ୍ତେ ? ସେତିକିରେ ଆଉ ସେ କଥା ପୁଚ୍ଛା କହିଲେନି । ଚାରି ଦିନ ପରେ ଛ'ଶ ଟଙ୍କା ଦେଇ ଘରକୁ ପଠେଇଦେଲେ । ଜମି କିଣିଲି, ଗୋରୁଗାଈ କିଣିଲି, ଘରଦ୍ୱାର କଲି, ପିଲାଙ୍କ ହାତରେ ଦେଇ ବାବୁଙ୍କ ସେବା କରିବାକୁ ଫେରିଆସିଲି । ବୁଢ଼ୀ କାନ୍ଦି କାନ୍ଦି କହିଲା—ମତେ ଥରେ ନେଇ ଚାଲ, ଚରଣ ଦର୍ଶନ କରି ଆସିବି । କହିଲି—ନା ଲୋ, ଆଉ କ'ଣ ବଢ଼େଇବୁ କାହିଁକି ? ଭୁଲିଗଲେ ତ ନିଶ୍ଚୟ ତୋ ହାତରେ ଶହେ ଦୁଇଶ ଦେଇଦେବେ । ଆଉ ସିଏ ତୋ ମୁନିବ ! ଦେହ ଖରାପ ହେଲାରୁ ପାଞ୍ଚ ସାତ ଟଙ୍କା ଖର୍ଚ୍ଚ ହୋଇଚି ବୋଲି କହିଲେ କ'ଣନା ଧାର ପରିଶୋଧ କରି ଯାଆନ୍ତେ ହେଲେ ପାଆ ! ଗୃହକର୍ମ କରିବାକୁ ଯାଇ କେତେ ଦୁଃଖ ସହିଚୁ ମା ! ଆଉ ବିପିନବାବୁ ନାଁରେ ତୋର କେତେ ନିନ୍ଦା ନ କରିଚି ! କ୍ଷମା କର ମା, ନହେଲେ ମୋ ଜିଭ ଖସିଯିବ !

ବିପିନ ନାଁ ଶୁଣିବାମାତ୍ରେ ସାବିତ୍ରୀର ଦେହ କଣ୍ଟା କଣ୍ଟା ହୋଇ ଉଠିଲା । ଅସ୍ପଷ୍ଟ ସ୍ୱରରେ ଛି ଛି କରିଉଠିଲା ସେ । କିନ୍ତୁ ସଙ୍ଗେ ସଙ୍ଗେ ଜିଭକୁ ଚାପିଧରି କହିଲା—ଗାଧୋଇବ ବେହାରୀ, ଖଣ୍ଡିଏ ଲୁଗା ଦେଇ-ପାରିବୁ ?

—ଲୁଗା ? ଖଣ୍ଡିଏ କାହିଁକି, ପାଞ୍ଚ ଖଣ୍ଡ ଦେଇପାରିବ । ସେଥିରେ କୌଣସି ଦୁଃଖ ନାହିଁ; କିନ୍ତୁ ଶୂଦ୍ରଲୋକର ପିନ୍ଧାଲୁଗା ତମେ ଦେବ କିମିତି ? ବରଂ ଚାଲ, ବାବୁଙ୍କର ଗୋଟିଏ ସଫା ଲୁଗା ନେଇଆସିବୁ ।

ବେହାରୀର ଦେବ-ଦ୍ୱିଜଙ୍କ ପ୍ରତି ଗାଢ଼ ଭକ୍ତି । ତେଣୁ ପ୍ରତିବାଦ ନିଷ୍ଫଳ ବୁଝିପାରି ବେହାରୀ କଥାରେ ରାଜିହୋଇ ତାର ପଛେ ପଛେ ଗଲା ।

ଗାଧୋଇସାରି ସାବିତ୍ରୀ ସନ୍ତୀଶର ଧୂଆ ଦେଶୀ ଗାମୁଛା ପିନ୍ଧି ମନେ-ମନେ ଟିକିଏ ହସିଲା । ପୂଜାପୂଜି କଲା ଏବଂ ବେହାରୀ ଆଣିଥିବା ବଲିଷ୍ଠ ଚାକରେ ପ୍ରସ୍ତୁତ କଞ୍ଚାଗୋଲା ଓ ସନ୍ଦେଶ ସେବନ କରି ସୁସ୍ଥବୋଧ କଲା ।

ତାର ପାନ ଓ ଦୋକତା ଖାଇବାର କୁଅଭ୍ୟାସ ଥିଲା । ତଥାପି ଦୋକାନ ପାନ ସେ ଖାଏନି ଜାଣି ଇତିମଧ୍ୟରେ ବେହାରୀ କିଛି ପାନ ଓ ଗୁଆ ସଂଗ୍ରହ କରି ଆଣିଥିଲା । ସେଗୁଡ଼ାକ ଗୋଟାଏ ଥାଳିରେ ସଜେଇ ହାଜର କରିବାମାତ୍ରେ ସାବିତ୍ରୀ ହସି ହସି କହିଲା—ବେହାରୀ, ତୁ ତ ମତେ ଟିକିଏ ହେଲେ ଭୁଲିନୁ ଦେଖୁଚି !

ବେହାରୀ ଜବାବ ଦେଲା—ତଥାପି ତ ମୁଁ ମଣିଷ ! ତମେ ଥରେ ଦେଖିଲେ ପଶୁପକ୍ଷୀ ବି ଭୁଲିପାରିବେନି ମା ! ଏତିକି କହି ସେ ରନ୍ଧାଘର ଭିତରକୁ ହିନ୍ଦୁସ୍ଥାନୀ ପୂଜାରୀ ପାଖରୁ ଦୋକ୍ତା ଆଣିବାକୁ ଚାଲିଗଲା ।

ଲଣ୍ଠଣଟାକୁ ଆଗକୁ ଟାଣିନେଇ ଆସି ସେ ପାନ ସଜେଇବାକୁ ଲାଗିଲା । ମୁଣ୍ଡରେ ଲୁଗା ନାହିଁ । ଆର୍ଦ୍ର କେଶଭାର ସମସ୍ତ ପିଠିବ୍ୟାପୀ ଟେବୁଲ ଉପରେ ହୁଞ୍ଚି ହୋଇ ପଡ଼ିଚି । ଦି' ତିନିଟା ଚୂର୍ଣ୍ଣ କୁନ୍ତଳ ଅଞ୍ଚଳର କଳା ଧଡ଼ି ସହିତ ମିଶି କାନ୍ଧ ଉପରୁ କୋଳ ପର୍ଯ୍ୟନ୍ତ ଝୁଲିପଡ଼ିଚି । ନାରୀର ରୋଗକ୍ଲିଷ୍ଟ, ଶୀର୍ଣ୍ଣ ପାଣ୍ଡୁର ମୁଖର ଯେ ନିଜସ୍ୱ ଗୋପନ ମାଧୁର୍ଯ୍ୟ ଅଛି, ତାହା ହିଁ କୃଶାଙ୍ଗୀ ସଦ୍ୟସ୍ନାତା ମୁଖ ଉପରେ ବିରାଜମାନ କରିଥିଲା । ସେ ଅନ୍ୟମନସ୍କା, ଚିନ୍ତାମଗ୍ନା ।

ସହସା ଦୂରବର୍ତ୍ତୀ ଯୋତାର ପଦଶବ୍ଦ ସନ୍ନିକଟବର୍ତ୍ତୀ ହୋଇଆସିଲା । ତଥାପି ସେ ଶବ୍ଦ ତାର କାନକୁ ଗଲା ନାହିଁ । ଯେତେବେଳେ ଗଲା, ସେତେ-ବେଳେ ଉପେନ୍ଦ୍ର, ସନ୍ତୀଶ ଏକାବେଳକେ ଦୁଆର ଆଗରେ ଠିଆହୋଇଛନ୍ତି । ଧ୍ୟାନ ଭାଙ୍ଗି ସାବିତ୍ରୀ ମୁହଁ ଟେକିଲା ଏକାବେଳକେ ବିବର୍ଣ୍ଣ ଓ ଆତ୍ମହରା ହୋଇଉଠିଲା ଏବଂ ସେଇ ମୁହୂର୍ତ୍ତର ଅସତର୍କ ଅବସ୍ଥାରେ ବଙ୍ଗ ରମଣୀର ଜନ୍ମଜନ୍ମାର୍ଜିତ ଅନ୍ଧସଂସ୍କାର ତାକୁ ଅପରିସୀମ ଲଜ୍ଜାରେ ଏକାବେଳକେ ଅଭିଭୂତ କରିପକାଇଲା ଏବଂ ପରମୁହୂର୍ତ୍ତରେ ସେ ଦୁଇ ହାତ ବଢ଼େଇ ତାର ଆରକ୍ତ ମୁହଁ ଉପରେ ଆବକ୍ଷ ଦୀର୍ଘ ଓଢ଼ଣା ଟାଣିଦେଲା ।

ସତୀଶ ହତବୁଦ୍ଧି ଭଳି କହିଉଠିଲା—ସାବିତ୍ରୀ, ତୁ !

ସୁରବାଳା ଏପର୍ଯ୍ୟନ୍ତ ଆଲୁଅ ସାହାଯ୍ୟରେ ବେହାଗୀ ଓ ହବାକର ସହିତ ଉପରକୁ ଉଠି ଯାଇଥିଲା । ଉପେନ୍ଦ୍ର ଫେରିଯାଇ କହିଲେ—ବାଣ୍ ଆଉ ଆସନା ସୁରବାଳା, ସେଇଠି ଠିଆହୁଅ ।

ସୁରବାଳା ଆଶ୍ଚର୍ଯ୍ୟ ହୋଇ କହିଲା—କାହିଁକି ?

ଉପେନ୍ଦ୍ର ସେ ପ୍ରଶ୍ନର ଜବାବ ନ ଦେଇ କହିଲେ—ହବାକର, ଭାଉଜଙ୍କୁ ଗାଡ଼ି ଭିତରକୁ ଫେରାଇ ନେଇ ଯା । ସତୀଶ, ମୁଁ ମଧ୍ୟ ଚାଲିଲି । ଏତିକି କହିଦେଇ ସେ ଧୀରେ ଧୀରେ ଚାଲିଗଲେ ।

## ଏକୋଇଶି

ଉପେନ୍ଦ୍ରଙ୍କ ପଦଶବ୍ଦ କ୍ଷୀଣରୁ କ୍ଷୀଣତର ହୋଇ ସିଡ଼ିରେ ମିଳେଇଗଲା । ଅବସନ୍ନ, ଅଭୁକ୍ତ ପୁଣି ସସ୍ତୀକ—ଏଇ ଅନ୍ଧକାର ରାତି । ତଥାପି ଟିକିଏ ବୋଲି ସଂଶୟ, ବନ୍ଧୁ ପ୍ରମାଣେ ଦ୍ୱିଧା ତାଙ୍କ ମନରେ ଜାଗିଲା ନାହିଁ । ସତୀଶ ଘର ଭିତରେ ବସି ଯେ ତରୁଣୀଟି ନିଦାରୁଣ ଲଜ୍ଜାରେ ଓ ଭୟରେ ଏଭଳି ଲୁଗା ଢାଙ୍କି ପକେଇଲା, ତା ସମ୍ବନ୍ଧରେ କୌଣସି ଗୋଟିଏ ପ୍ରଶ୍ନ ପଚାରିବା ଲାଗି କୌଣସି ଆବଶ୍ୟକତା ବୋଧ ମଧ୍ୟ ସେ କଲେ ନାହିଁ । ଘୃଣାରେ ସେ ଯେଉଁ ବିମୁଖ ହୋଇପଡ଼ିଲେ, ଆଉ ସେ ମୁହଁ ଫେରାଇ ଚାହିଁଲେନି ।

କିନ୍ତୁ ଏମିତି କାଉଁଳି ଯେ ଘଟିଗଲା ! ମୁହୂର୍ତ୍ତକ ପରେ ଅବସ୍ଥାଟାକୁ ସମ୍ୟକ୍ ଭାବରେ ଉପଲବ୍ଧି କରି ସାବିତ୍ରୀ ଶିହରି ଉଠିଲା । ସହସ୍ର ପୁରୁଷଙ୍କ ଦୃଷ୍ଟି ସମ୍ମୁଖରେ ବି ଆଉ ଯେ ତାର ଲଜ୍ଜା କରିବାର ଅଧିକାର ନ ଥିଲା, ମୁହୂର୍ତ୍ତକ ଭୁଲରେ ଏକଥା ଭୁଲିଯାଇ ସେ ଯେ ଗୋଟାଏ ବିଷମ ଭୁଲ କରିପକାଇଲା ! ତାର ମନେହେଲା, ଏଇ ତାର ସରମର କ୍ଷୁଦ୍ର ମୁଖାବରଣଟି ଯେମିତି ନିମିଷକରେ ଦିଗନ୍ତ-ବିସ୍ତୃତ ହୋଇ କୁଣ୍ଠିତ ଲଜ୍ଜାରେ ତାର ପଦ-ନଖଠାରୁ ଆରମ୍ଭକରି ମୁଣ୍ଡର ବାଳ ପର୍ଯ୍ୟନ୍ତ ସବୁ ଯେମିତି ଜଡ଼ ପାଲଟିଗଲା । ଏତିକି ଟିକିଏ ଲଜ୍ଜା ବଞ୍ଚାଇବା ଲାଗି ଯେ

ଲଜ୍ଜାର ପାହାଡ଼ ତାର ମୁଣ୍ଡ ଉପରେ ଆସି ଅଜାଡ଼ି ହୋଇ ପଡ଼ିବ, ମୁହୂର୍ତ୍ତିକ ପୂର୍ବରୁ କିଏ କ'ଣ ଭାବିଥିଲା !

ଶ୍ବାସରୋଧର ଉପକ୍ରମରେ ପ୍ରାଣପଣେ ଯେମିତି ମଣିଷ ମୁହଁଟାକୁ ବାହାର କରିବାକୁ ଚେଷ୍ଟାକରେ, ସାବିତ୍ରୀ ଠିକ୍ ସେହିମିତି ତାର ମୁହଁର ଓଢ଼ଣାଟାକୁ ମୁଣ୍ଡ ଉପରକୁ ଜୋର୍ ସହିତ ଠେଲିଦେଇ ଋଜୁ ହୋଇ ବସିଲା । ପ୍ରଶ୍ନକଲା—ସେ କିଏ ?

ସନ୍ତୋଷ ଆଚ୍ଛନ୍ନ ଭଳି ଦ୍ୱାର ପାଖରେ ଠିଆହୋଇ ରହିଥିଲା । ଆଚ୍ଛନ୍ନ ଭଳି ଉତ୍ତର ଦେଲା—ଉପୀନ୍‌ଦା ଆଉ ଭାଉଜ !

ଏଁ, ଏଇ ଉପୀନ୍‌ଦା ଆଉ ଭାଉଜ ! ସେମାନେ ! ସାବିତ୍ରୀ ଖାଇର ଭଳି ସାଙ୍ଗେ ସାଙ୍ଗେ ଉଠିପଡ଼ି ପାଟିକରି କହିଲା—ଛାଡ଼ିଲ, ମୁଁ ଯାଏ, ସେମାନଙ୍କୁ ଫେରାଇ ଆଣେ । ଛି, ମୁଁ ଯେ ଅନ୍ୟ କେହି ନୁହେଁ, ବସାର ସାମାନ୍ୟ ଗୋଟାଏ ଦାସୀ ମାତ୍ର—ଛାଡ଼ ଛାଡ଼, ମୁଁ ଯାଏ ।

ଉପୀନ୍‌ବାବୁ ଯେ କିଏ, ସାବିତ୍ରୀ ଭଲଭାବରେ ଜାଣେ । ସନ୍ତୋଷର କଥାବାର୍ତ୍ତାରେ ଅନେକ ଥର ଅନେକ ପରିଚୟ ପାଇଛି ତାଙ୍କର ।

ଏତେ ସମୟ ପରେ ଯେମିତି ସନ୍ତୋଷର ନିଦ୍ରାଭଙ୍ଗ ହେଲା । ଏଇ ପାଟିତୁଣ୍ଡ, ସାବିତ୍ରୀର ବ୍ୟସ୍ତବ୍ୟସ୍ତ ଭାବ ତାର ସମସ୍ତ ବିହ୍ୱଳତାକୁ ମୁହୂର୍ତ୍ତକ ମଧ୍ୟରେ ଘୁଞ୍ଚାଇଦେଇ ଏକାବେଳକେ ସଜାଗ କରିଦେଲା । ଏଥର ସେ ସଚେତ ଭାବରେ ଠିଆହୋଇ ଦ'ହାତ ପ୍ରସାରି କହିଲା—ନା !

ସାବିତ୍ରୀ ବ୍ୟାକୁଳ ଗଳାରେ ହାତଯୋଡ଼ି କହିଲା—ନା କାହିଁକି, ସର୍ବନାଶ କରନା ସନ୍ତୋଷବାବୁ, ବାଟ ଛାଡ଼ । ମୋର ସତ୍ୟ ପରିଚୟ ସେମାନଙ୍କୁ ଜାଣିବାକୁ ଦିଅ ।

ସନ୍ତୋଷ ବାଟ ଛାଡ଼ିଲାନି । ପଚାରିଲା—ତୋର ସତ୍ୟ ପରିଚୟ ମତେ ଆଗ ଶୁଣାଅ ।

ସାବିତ୍ରୀ ସହସା ଜବାବ ଦେଇପାରିଲା ନାହିଁ । ଖାଲି ଚାହିଁ ରହିଲା ।

ଏଭଳି ନିରୁତ୍ତର ଚାହାଣି ସନ୍ତୋଷ ପୂର୍ବରୁ ବହୁଥର ଦେଖିଛି । କିନ୍ତୁ ଇଏ ତ ସେଇଭଳି ଚାହାଣି ନୁହେଁ । ଏ ଚାହାଣିରେ ଏଡ଼େବଡ଼ ଆଘାତରେ ମଧ୍ୟ କାହିଁ ନିଆଁ ତ ଜଳି ନାହିଁ । କି ଆଶ୍ଚର୍ଯ୍ୟ ସ୍ନିଗ୍ଧ କରୁଣ ଆଖି ଦୁଇଟି ! ଇଏ କ'ଣ ସେଇ ସାବିତ୍ରୀର ?

କ୍ଷଣକ ପରେ ସେ ଧୀରେ ଧୀରେ କହିଲା—ମୋର ପରିଚୟ ? ଏଇ ତ କହିଲି, ବସାର ଦାସୀ । ସନ୍ତୋଷବାବୁ, ଦୟାକରି ଶୁଣନ୍ତୁ, ମୁଁ ସେମାନଙ୍କୁ ଯାଇ ଫେରେଇ ନେଇଆସିବି । ଏ ଅନ୍ଧକାର ଅଜଣା ସହରରେ ସେମାନେ କ'ଣ ବାରଦାଣ୍ଡ ଶୁଣ୍ଢି ପିଣ୍ଡା ହେବେ ? ସେ କ'ଣ ଭଲ ହେବ ?

ସନ୍ତୋଷ ତଳେତଳେ ବିଚଳିତ ନ ହୋଇ ଜବାବ ଦେଲା—ଭଲ-ମନ୍ଦ ବୁଝିବାର ଭାର ସେଇମାନଙ୍କ ଉପରେ ଥାଉ । ବାଟରେ ଘୁରିବୁଲିବା ବରଂ ଢେର୍ ଭଲ, କିନ୍ତୁ ମୁଁ କୌଣସିମତେ ଭାଉଜଙ୍କୁ ଏ ଘର ଦ୍ୱାର ମାଡ଼ିବାକୁ ଦେଇପାରିବିନି ।

—କାହିଁକି ପାରିବନି ? ମୁଁ ଘରେ ଗୋଡ଼ ଦେଇଛି ବୋଲି ! ସନ୍ତୋଷବାବୁ, ମା ବସୁମତୀ ମଧ୍ୟ କ'ଣ ମୋ ସ୍ପର୍ଶରେ ଅଶୁଚି ହୋଇଯାଆନ୍ତି !

ସନ୍ତୋଷ ମୁହଁ ଉଠେଇ ମୌନରହି ପ୍ରଶ୍ନକଲା—ତୁ ଏ ଘରକୁ ଆସିଲୁ କାହିଁକି ?

ସାବିତ୍ରୀ ମୁହଁ ଉଠେଇ ଚାହିଁପାରିଲାନି । ମାଟିତଳକୁ ଚାହିଁ ଅଶ୍ରୁବିଜଡ଼ିତ ସ୍ୱରରେ କହିଲା—ଆପଣ ମୋର ପୁରୁଣା ମନିବ । ତେଣୁ ଅସମୟରେ କିଛି ଭିକ୍ଷା ଆଶାରେ ଆସିଥିଲି ।

ସନ୍ତୋଷ ବିଦ୍ରୂପ କରି ହସିଲା । କହିଲା—ଅସମୟରେ ଭିକ୍ଷା ମାଗିବାକୁ ! କିନ୍ତୁ ମନିବ ତ ତୋର ଜଣେ ନୁହେଁ ସାବିତ୍ରୀ ! ସ୍ତ୍ରୀ ଭିତରେ ଜଣ ଜଣ କରି ସବୁ ମନିବଙ୍କ ଘରେ ବୁଲିଆସିଚୁ ବୋଧହୁଏ !

ସନ୍ତୋଷର ନିଷ୍ଠୁରତମ ଆଘାତ ତା ବୁକୁ ଭିତରଟାକୁ ଟିକି ଟିକି କରି କାଟି ପକାଇଲା । କିନ୍ତୁ ଆଉ ସେ ମୁହଁ ଉଠେଇଲାନି କି ପଦେହେଲେ କଥା ବି କହିଲାନି ।

ସନ୍ତୋଷ ପୁଣି କହିଲା—ବିପିନ୍‌ବାବୁ ତତେ ତଡ଼ିଦେଲେ କାହିଁକି ? ତାର ସଉକ ମେଣ୍ଟିଗଲା ନା ?

ସାବିତ୍ରୀ ତଥାପି ନିରୁତ୍ତର ।

ସନ୍ତୋଷର ହଠାତ୍ ମନେପଡ଼ିଲା ବେହାଗର ଟଙ୍କା ମାଗିବା କଥା । ପଚାରିଲା—କି ଭିକ୍ଷା ଚାହୁଁ ? ତିରିଶଟା ଟଙ୍କା ନା ?

ସାବିତ୍ରୀ ମୁଣ୍ଡ ହଲାଇ ହଁ କଲା ।

ଆଚ୍ଛା କହି ସନ୍ତୋଷ ଦରଜା ପାଖରେ ଯାଇ ଠିଆହେଲା ଏବଂ ଚକ୍ଷୁ ପଲକରେ ଘରର ଗୃହଆଡ଼େ ଦୃଷ୍ଟି ନିକ୍ଷେପ କରି ନିର୍ବାକ୍ ହୋଇ ଠିଆ-ହେଲା । ଏଇ ଗୃହର ନୂତନ ଘରପାଟି ଟିକିକ ପୂର୍ବରୁ ତାକୁ କେତେ ଆନନ୍ଦ ଦେଇଥିଲା, ଏବେ ସେହି ଘରପାଟି ଯେମିତି ତାକୁ ମାଡ଼ି ଗୋଡ଼ାଇଲା । ଅଦୂରରେ ଏଇ ଯେଉଁ ଶଯ୍ୟା, ସେଇଟା ବି ଏଇ ଫୁଲୋକଟା-ଦ୍ୱାରା ସୁସଜ୍ଜିତ । ଷ୍ଟେସନ ଯିବା ପୂର୍ବରୁ ଏହାର ଉପରେ ଶୋଇ କ୍ଷଣକାଳ ଲାଗି ବିଶ୍ରାମ କରିଯାଇଥିଲା ସେ, ଏଇ କଥାକୁ ସ୍ମରଣ କରି ତାର ସର୍ବାଙ୍ଗ ସଙ୍କୁଚିତ ହୋଇଉଠିଲା । ସେଠାରୁ ଆଖି ଫେରାଇଆଣି ସାଙ୍ଗେ ସାଙ୍ଗେ ତା ଖୋଲି କରୁ ନୋଟ ଟାଣିଆଣି ସାବିତ୍ରୀ ଗୋଡ଼ତଳକୁ ରାଗରେ ଫୋପାଡ଼ି ଦେଇ କହିଲା—ଯାଆ, ଏତିକ ନେଇ ଚାଲିଯା । ଆଉ କେବେ ଆସିବୁନି ଯେମିତି !

ସାବିତ୍ରୀ ତିନୋଟି ମାତ୍ର ନୋଟ ଉଠେଇନେଇ ’ଗଣି ଠିଆହେଲା । ଏଇ ସମସ୍ତଟିକୁ ସନ୍ତୋଷ ନୀରବରେ ଗୃହିଁ ରହିଥିଲା । ସାବିତ୍ରୀ ଠିଆହେବା ମାତ୍ରେ ତାକୁ କ’ଣ ଗୋଟାଏ କଥା କହିବାକୁ ଗଲାବେଳକୁ ଅକସ୍ମାତ୍ ତାର କଣ୍ଠରୋଧ ହୋଇପଡ଼ିଲା ।

ହାୟ ରେ ! ଏ ସମ୍ବାଦ ସେ ତ ରଖିନ । ଶେଷ ଜ୍ୟୋତ୍ସ୍ନାର ରୌଦ୍ର ଭଳି ତାର ଗୁପ୍ତ କ୍ରୋଧ ଯେତେବେଳେ ଏହି ହତଭାଗିନୀକୁ ନିରୁପାୟ ନିର୍ବାକ୍ ଧରାତଳ ଭଳି ଦଗ୍ଧ କରୁଥିଲା, ସେତେବେଳେ ବି ଅଲକ୍ଷ୍ୟ ଆକାଶରେ ତାର ବିନ୍ଦୁ ବିନ୍ଦୁ ବାରିସଞ୍ଚୟ ଗୁରୁମେଘ ଘନେଇ ଉଠୁଥିଲା । ସେ ଯେ ଅଜ୍ଞାତସାରରେ ଏଭଳି ଏକ୍ରେଣୀଭୁ ଏତେ ନିଃଶବ୍ଦ ସଞ୍ଚାରଣରେ ତାକୁ ଘେରି ଧରିପାରେ, ଏକଥା ତ ସନ୍ତୋଷ ଜାଣେନି । ତାର କଣ୍ଠ, ତାର ମୁହଁ, ତାର ଚକ୍ଷୁ ଯେଭଳି କୌଣସି ଅଦୃଶ୍ୟରେ ରୁପିହୋଇ ଆସିଲା । ହଠାତ୍ ସେ ପ୍ରବଳ ଚେଷ୍ଟାରେ ନିଜକୁ ମୁକ୍ତକରି ଡାକିଲା—ସାବିତ୍ରୀ !

—ଆଜ୍ଞା !

—ଗଳ୍ପରେ ଶୁଣିଚି, ଅମୁକ ଅମୁକକୁ ଘୃଣାକରେ । ମୋର ବିଶ୍ୱାସ ହୁଏନି । ଭାବେ, ଏଇଟା ଖାଲି ରାଗର କଥା । କେବେହେଲେ ଭାବିପାରି ନାହିଁ, ମଣିଷ ମଣିଷକୁ କିପରି ଘୃଣା କରେ । ଆଜି ଦେଖୁଚି,

ପାରେ, ମଣିଷ ମଣିଷକୁ ଘୃଣା କରିପାରେ ! ସାବିତ୍ରୀ, ଶପଥ କରି କହୁଛି, ମୁଁ ମରଣକୁ ଏଡ଼ାଇପାରେ; କିନ୍ତୁ ତତେ ସ୍ପର୍ଶ କରି ନ ପାରେ ।

ସାବିତ୍ରୀ ନିର୍ବାକ୍ ।

—ଆଚ୍ଛା ସାବିତ୍ରୀ, ଏଇ ଟଙ୍କାଠୁ କି ତୋ ପାଖରେ ଆଉ କିଛି ବଡ଼ ନୁହେଁ ? ନଇଲେ ଏଇ ଛଅଟା ନୋଟ କୌଣସିମତେ ତୁ ଉଠେଇ ପାରି ନ ଥାଆନ୍ତୁ । ଆଜି ମୋ ପାଖରେ ଯାହା କିଛି ଅଛି ମୁଁ ସବୁ ଦେଇଦେବାକୁ ତିଆରି, ତୁ ମତେ ଗୋଟାଏ କଥା କହିବୁ ।

—ପଚାରନ୍ତୁ ।

—ପଚାରୁଛି କହି ସତୀଶ କ୍ଷଣକ ପାଇଁ ନୀରବ ରହି କହିଲା— ପ୍ରଶ୍ନ କରିବାକୁ ମଧ୍ୟ ଲଜ୍ଜା ଲାଗେ; କିନ୍ତୁ ଜାଣିବାକୁ ଇଚ୍ଛା ହେଉଛି ବୋଲି ପଚାରୁଛି । କେତେବେଳେ କାହାକୁ କେଉଁଦିନ ତୁ ଭଲ ପାଇଛୁ ?

ସାବିତ୍ରୀ ପଲକମାତ୍ର ମୌନରହି ମୃଦୁ ଅଥଚ ସୁସ୍ପଷ୍ଟ କଣ୍ଠରେ କହିଲା—କ'ଣ ହେବ ଆପଣ ମୋ କଥା ଜାଣିବାରେ ?

ସତୀଶ ଏ ପ୍ରଶ୍ନର କୌଣସି ଜବାବ ଖୋଜି ପାଇଲାନି ।

ସାବିତ୍ରୀ ଦ୍ୱାର ଆଡ଼କୁ ଅଗ୍ରସର ହୋଇ କହିଲା—ସଂସାରରେ ତ ବହୁତ କଥା ଆପଣ ଜାଣନ୍ତିନି; ତଥାପି ତ ଦିନ କଟିଯାଏ । ଏ କଥାଟା ନ ଜାଣିଲେ ଆପଣଙ୍କର କୌଣସି କ୍ଷତି ହେବ ନାହିଁ ।

– ହୁଏତ ହେବନି କହି ସତୀଶ ଦୀର୍ଘଶ୍ୱାସ ଲୁଚିବା ଲାଗି ଚେଷ୍ଟାକଲା; କିନ୍ତୁ ସେତିକି ସାବିତ୍ରୀ ବେଶ୍ ଶୁଣିପାରିଲା । ସେ ମୁହଁ ଫେରାଇ ଠିଆ-ହେବାମାତ୍ରେ ତାର ରୋଗ-ପାଣ୍ଡୁର ମୁହଁଟି ଉପରେ ସତୀଶର ଆଖି ପଡ଼ିଲା । ଚମକପଡ଼ି ପଚାରିଲା—ତୋର ଦେହ ଖରାପ ହୋଇଛି ସାବିତ୍ରୀ !

ସାବିତ୍ରୀ ଆଖିପଲକରେ ମୁହଁକୁ ତଳକୁ କରି କହିଲା—ନା ତ ।

—ବଡ଼ ରୋଗା ଦେଖାଯାଉଛୁ ଯେ !

—ତା କିଛି ନୁହେଁ କହି ସାବିତ୍ରୀ ଯିବାକୁ ବାହାରିଲା ।

—ଶୁଣିଲୁ ?

ସାବିତ୍ରୀ ନିରୁତ୍ତର ଭାବରେ ଦ୍ୱାରର ବାହାରେ ଯାଇ ଛିଡ଼ାହେଲା । ଘର ଭିତରୁ ଗୋଟାଏ ରୁଦ୍ଧ କଣ୍ଠର ଡାକ ଶୁଭିଲା—ସାବିତ୍ରୀ, ତୁ ସତେ କ'ଣ କୌଣସିଦିନ ମତେ ଭଲ ପାଇନୁ ?

ସାବିତ୍ରୀ ଏରୁଣ୍ଡି ଉପରେ ଭର ଦେଇ ସେମିତି ଠିଆହୋଇ, ଆଜ ମୁହଁ ଫେରାଇନେଲା ।

ଭିତରର ସଜଳକଣ୍ଠ ଯେଭଳି ବାଗେଇତ ହୋଇଯାଉଥିଲା । ମନେ-ହେଲା ସତୀଶ ଛୁହାଇ ଛୁହାଇ ଡାକୁଚି—ସାବିତ୍ରୀ, ଥରେ ମୁହଁ ବୋଲେ କହିଦେଇ ଯା, ମୁଁ କ'ଣ ଏତେଦିନ ଖାଲି ନିଦ୍ରାକୁ ଭଲ ଏଇ ଦୁଃଖର ବୋଝ ବୋହି ବୁଲୁଚି ? ମୋ ଭାଗ୍ୟରେ କ'ଣ ସବୁ ଭୁଲ, ସବୁ ମିଥ୍ୟା ! ଏଇ ଅପରିସୀମ ଦୁଃଖଟା କ'ଣ ମୋର ଅଦୃଷ୍ଟରେ ମୂଳରୁ ଶେଷଯାଏ ଖାଲି ଫାଙ୍କି ?

ସାବିତ୍ରୀ କ୍ଷଣକ ଲାଗି ଚିନ୍ତାକରି ଫେରି ଠିଆହୋଇ କହିଲା—ବାବୁ, ମୁଁ ନିହାତି ଅସୁବିଧାରେ ପଡ଼ି ବେହାରୀ ପାଖରୁ ଟଙ୍କା ଧାର ନେବ ବୋଲି ଆସିଥିଲି । ସତ କଥା କହୁଚି, ଇମିତି ଅବସ୍ଥାରେ ପଡ଼ିବ ବୋଲି ଜାଣିଥିଲେ ମୁଁ ଆଦୌ ଆସି ନ ଥାଆନ୍ତି ।

ସତୀଶ ଅବାକ୍ ହେଲା । ଏ କଣ୍ଠସ୍ୱର ଶାନ୍ତ ଏବଂ ମୃଦୁ; କିନ୍ତୁ କୋମଳତାଶୂନ୍ୟ !

ସେ ପୁଣି କହିଲା—ଆପଣ ଶପଥ କରି କହିଲେ, ମୋତେ ଆପଣ ଘୃଣା କରନ୍ତି ? ଆପଣଙ୍କ ଖୁସି ହେଲେ ମତେ ଭଲ ପାଇପାରନ୍ତି; ରାଗ ହେଲେ ଘୃଣା କରିପାରନ୍ତି । ଆପଣ ତ ସବୁବେଳେ ସେମିତି କରି-ଥାଆନ୍ତି । କିନ୍ତୁ ମୋର ଗୋଡ଼ହାତ ବନ୍ଧା । ଏ ବାଟରେ ଯେତେବେଳେ ପାଦ ଦେଇଛି, ସେତେବେଳେ ସୁପଥ, କୁପଥ ଯାହାହେଉ, ତାକୁ ଧରି ନ ଚାଲିବାର ଉପାୟ ନାହିଁ ।

ସତୀଶ ନିର୍ବାକ୍, ସ୍ତବ୍ଧ । ଖାଲି ବିହ୍ୱଳବିସ୍ଫାରିତ ଚକ୍ଷୁରେ ତା ଆଡ଼କୁ ଚାହିଁରହିଲା ।

ସାବିତ୍ରୀ ଏ ଦୃଶ୍ୟ ସହ୍ୟ କରିପାରିଲା ନାହିଁ । ନିର୍ନିମେଷ ନୟନରେ ଅନ୍ୟ ଆଡ଼କୁ ମୁହଁ ଫେରାଇ ଚାହିଁଲା । ତା ନିଜ କଥା, ନିଜ ବୁକୁରେ ମୃତ୍ୟୁ-ଶେଲ ଭଳି ବିନ୍ଧିବାକୁ ଲାଗିଲା । ତଥାପି ମରଣାହତ ସୈନିକ ଭଳି ଶେଷଥର ପାଇଁ ସତୀଶର ଲଜ୍ଜାକର ପ୍ରଣୟ ଉପରେ ଖଡ଼୍ଗାଘାତ କଲା । କହିଲା—ଆପଣ ପଚାରୁଛନ୍ତି, କୌଣସି ଦିନ ଆପଣଙ୍କୁ ଭଲ ପାଇଛି କି ନା ? ନା, ପାଇନି । ଯାହା କରୁଥିଲି, ସେସବୁ ଥିଲା ଛଳନା । କାହାକୁ ଭଲ ପାଏ, ସେ ଖବର ତ ଆପଣ ଆଗରୁ ପାଇଛନ୍ତି ।

ସାବିତ୍ରୀ ମୁହଁରୁ ଏକଥା ଶୁଣି ହଠାତ୍ ମନେହେଲା, ତାର ବୃଦ୍ଧ ପ୍ରତିମାଟିକୁ ନଦୀଜଳରେ ବିସର୍ଜନ ଦେଇ ଦଳି ପେଷି ମାଟିର ପିଣ୍ଡ କରି କିଏ ଯେମିତି ତାର ଆଖି ଆଗରେ ଫୋପାଡ଼ି ଦେଇ ଚାଲିଯାଉଛି । ସେ ଆଖି ଫେରାଇନେଇ କହିଲା—ଯାଆ ଚାଲିଯା ମୋ ମୁହଁ ଆଗରୁ ।

ସାବିତ୍ରୀ ଏରୁଣ୍ଡି ଉପରେ ମୁଣ୍ଡକୁ ଲଗାଇ ପ୍ରଣାମ କରି ନିଃଶବ୍ଦରେ ଚାଲିଗଲା । ସଞ୍ଜାଶ ମୁଣ୍ଡଟେକି ଚାହିଁଲା ନାହିଁ, କିନ୍ତୁ ଶେଷ ମୃଦୁ ପଦଶବ୍ଦ ଶୁଣିବାକୁ ପାଇଲା ।

ବେହାରୀ ଘରେ ଧିମି ଧିମି ହୋଇ ଆଲୁଅ ଜଳୁଥିଲା । ସାବିତ୍ରୀ ଅର୍ଦ୍ଧମୁଦ୍ରିତ ଚକ୍ଷୁରେ ଟଳି ଟଳି ସେଇ ଘର ଭିତରକୁ ପଶି ଦି ହାତ ବଢ଼େଇ କ'ଣ ଗୋଟାଏ ଧରିବାକୁ ଯାଉଥିଲା, ହଠାତ୍ ତା ମୁଣ୍ଡ ଝାଇଁ ଝାଇଁ ହୋଇଗଲା । ମୂର୍ଚ୍ଛା ହୋଇ ସେ ତଳେ ପଡ଼ିଗଲା ।

ବେହାରୀ ଉପେନ୍ଦ୍ର ପ୍ରଭୃତିଙ୍କୁ ଜ୍ୟୋତିଷ ସାହେବଙ୍କ ଘର ଆଡ଼କୁ କିଛି ବାଟ ଆଗେଇଦେଇ ଆସି ଅଳ୍ପ କିଛି ସମୟ ପୂର୍ବରୁ ଘରକୁ ଫେରି ଆସିଥିଲା ଏବଂ ଅନ୍ଧାରରେ ଲୁଚିରହି ସାବିତ୍ରୀର ଶେଷକଥା କେତେ ପଦ ସେ ଶୁଣିବାକୁ ପାଇଥିଲା । ଆଜି ଦିନଯାକ ସେ ସାବିତ୍ରୀ ସମ୍ବନ୍ଧ କେତେ ଗଳ୍ପ କରିଛି । ନିଷ୍ଠୁର ଗୃହସ୍ଥ ଘରେ କାମ କରି ସେ ଯେଉଁ ଦୁଃଖ କଷ୍ଟ ପାଇଥିଲା, ରୋଗରେ ପଡ଼ି ଯେତେ ଯନ୍ତ୍ରଣା ସହିଥିଲା—ସେସବୁ ଶୁଣି ବେହାରୀ କାନ୍ଦି କାନ୍ଦି ଅସ୍ଥିର ହୋଇ ପଡ଼ିଥିଲା । ଅଥଚ ଏଇମାତ୍ର ବାବୁଙ୍କ ସାକ୍ଷାତରେ ସାବିତ୍ରୀ କାହିଁକି ଯେ ମୂଳରୁ ଶେଷଯାଏ ମିଛ କହିଗଲା, ତାର କୌଣସି ତଥ୍ୟ ବୁଢ଼ା ଖୋଜି ପାଇଲା ନାହିଁ । ସାବିତ୍ରୀ ଚାଲିଯିବା ମାତ୍ରେ ସେ ମଧ୍ୟ ଅନ୍ଧାରେ ଅନ୍ଧାରେ ବାବୁଙ୍କ ଦୃଷ୍ଟି ଆଡ଼େଇ ଆସୁ ଆସୁ ତାକୁ ଦେଖି ନ ପାରି ରାସ୍ତାକୁ ଛୁଟିଲା । ଇଆଡ଼େ ସିଆଡ଼େ ଚାହିଁ କୁଆଡ଼େ ତାକୁ ଦେଖିବାକୁ ନ ପାଇ ପୁଣି ଘର ଭିତରକୁ ଆସି ନିଜ ବସା ଭିତରଟାକୁ ଖୋଜିବାକୁ ଯାଇ ଏକାବେଳକେ ସ୍ଥିର ହୋଇ ଠିଆ ହେଲା । ତାପରେ ସାବଧାନରେ ଖସିଆସି ଦୀପ ଜଳେଇ ଦେଇ ମୁହଁ ପାଖକୁ ଆସି ଡାକିଲା—ଇମିତି ଏ ମାଟିରେ ଶୋଇଲୁ କାହିଁକି ମା !

ଜବାବ ନ ପାଇ ସସ୍ନେହ କଣ୍ଠରେ କହିଲ—ରୋଗା ଦେହ, ଅନ୍ଧାରେ ଶୋଉଚୁ, ଆହୁରି ଅସୁଖ ହୋଇପଡ଼ିବ ଯେ ମା ! ଉଠି ବସ, ମୁଁ ଗୋଟାଏ ସଜପ ପକେଇ ଦଏ ।

ସାବଣୀ ନିର୍ବାକ୍, ସ୍ଥିର !

ବେହାଣ୍ଡା ବିସ୍ମିତ ହୋଇପଡ଼ିଲା । କିଛି କରି ଦେଖାଯାଉ ନ ଥିଲା; ଘପଟାକୁ ମୁହଁ ପାଖକୁ ଆଣି ଟିକିଏ ନଇଁପଡ଼ି ଦେଖି ଦେଖି ଚିତ୍କାର କରିଉଠିଲା—ଆଲୋ ଇଏ କ'ଣ କଲୁ !

ସାବଣୀର ଆଖି ଦୁଇଟି ବୁଜି ହୋଇଯାଇଥାଏ, ମୁହଁ ଗୋଟାକଯାକ ନୀଳବର୍ଣ୍ଣ । ଏତେ ବଡ଼ ପାଟିରେ ବି ସେ ଉତ୍ତର ଦେଲାନି, ସେମିତି ମଲାଙ୍କ ଭଳି ପଡ଼ିରହିଲା ।

ଉପର ଘରେ ସତ୍ତାଶ ମୂର୍ତ୍ତି ଭଳି ବସି ରହିଥିଲ । ବେହାଣ୍ଡା ପାଟିରେ ସେ ଚମକି ଉଠିଲା । ରନ୍ଧାଘର ବ୍ରାହ୍ମଣ ପୂଜାରୀ ଧାଇଁଆସି ଖବର ଦେଲା ।

ସତ୍ତାଶ ବେହାଣ୍ଡା ଘରେ ପହଞ୍ଚି ସାବଣୀ ମୁଣ୍ଡ ପାଖରେ ଆଣ୍ଠୁମାଡ଼ି ବସିଲା । ଆଲୁଅ ଆଣି ଦେଖି ଜାଣିପାରିଲା, ସାବଣୀ ଅଚେତ ହୋଇ-ପଡ଼ିଚି । କହିଲା—ପାଟି କରନା ବେହାଣ୍ଡା, ମୁହଁରେ ପାଣି ଛିଞ୍ଚ । ପୂଜାରୀକୁ କହ ପଙ୍ଖା ନେଇ ବାଞ୍ଚୁ ।

ସାହସ ପାଇ ବେହାଣ୍ଡା ସଙ୍ଗେ ସଙ୍ଗେ ପାଣି ଛିଞ୍ଚିବାକୁ ଲାଗିଲା । ହିନ୍ଦୁସ୍ଥାନୀ ପୂଜାରୀ ପଙ୍ଖା କରିବାକୁ ଲଗିଲ ।

କିଛି ସମୟ ପରେ ସାବଣୀ ନିଶ୍ୱାସ ନେଲା । ପରକ୍ଷଣରେ ଆଖି ମେଲ ମୁଣ୍ଡ ଉପରକୁ ଓଢ଼ଣା ଟାଣିନେଇ ଉଠି ବସିଲା ।

ସତ୍ତାଶ କହିଲା—ପୂଜାରୀ, ଶୀଘ୍ର ଗ୍ଲାସେ ଗରମ ଦୁଧ ନେଇଆସ । ଆଉ ବେହାଣ୍ଡା, ତୁ ତାକୁ କହ କି ଓଦା ଲୁଗାଟା ପାଲଟି ପକାଉ ।

ପୂଜାରୀ ଦୁଧ ଆଣିବାକୁ ଗଲା—ବେହାଣ୍ଡା ବୋଧହୁଏ ଧୀରେ ଧୀରେ ଲୁଗା ପାଲଟିନେବାକୁ କହିଲା ।

ଅଳ୍ପ ସମୟ ଚୁପ୍ ରହି ସତ୍ତାଶ ପୁଣି କହିଲା—ସୁସ୍ଥବୋଧ କଲେ ସେ କୁଆଡ଼କୁ ଯିବ ବୁଝି । ଗୋଟାଏ ଗାଡ଼ି ଡାକଦେ ତ ବେହାଣ୍ଡା, ପ୍ରାପରେ ଯେମିତି ସେ ଚାଲି ଚାଲି ନ ଯାଏ ।

ସାବଣୀର ସର୍ବାଙ୍ଗ କମ୍ପି ଉଠିଲା । କିନ୍ତୁ କ୍ଷୀଣ ଆଲୋକରେ ତାହା କେହି ଲକ୍ଷ୍ୟ କଲେ ନାହିଁ । ସେ ପ୍ରାଣପଣେ ଆତ୍ମସମ୍ବରଣ କରି ନିଶ୍ଚଳ ରହିଲା ।

ସନ୍ତୋଷ ଆଉ କିଛି ସମୟ ସ୍ଥିର ରହି କହିଲା—ଆଉ ଯଦି ସୁସ୍ଥ ବୋଧ ନ କରେ—ନ ହେଲେ—ନ ହେଲେ—ମୋର ଘରେ ଶୋଇବାକୁ କହିଦେବୁ, ମୁଁ ଆଉ କୁଆଡ଼କୁ ଯିବି ।

ସାବଣୀ ଶିହରଣଟି ଅନୁଭବ କଲା, କୁକଥା ବୁଝିଲେ ବି ସେ ଆଉ କୌଣସିମତେ ତାକୁ ଧରି ରଖିପାରିବନି ।

ସନ୍ତୋଷ ଗୋଟାଏ ପ୍ଲେଟ ଗୁଡ଼ି ବେହାରୀ ହାତକୁ ବଢ଼ାଇଦେଇ କହିଲା—ଦେଖ ବେହାରୀ, ଘରର ଚାବିଟା ତୋର ପାଖରେ ରହିଲା । ଯାହା ଟଙ୍କା ଦରକାର ହେବ, ଗଲାବେଳେ ସେ ଯେମିତି ନେଇଯାଏ । ସେମା ଦେହରେ ଯେମିତି—

ସନ୍ତୋଷର କଥାଗୁଡ଼ାକ ବିଷ ଓ ଅମୃତ ମିଶ୍ରଣରେ ସାବଣୀର କଣ୍ଠ ପର୍ଯ୍ୟନ୍ତ ଫେଣେଇ ଉଠିଲା । ସନ୍ତୋଷ କହିଲା—ମୁଁ ପଥରଘାଟକୁ ଯାଉଛି ବେହାରୀ ! କାଲି ଫେରିଲା ବେଳକୁ ଟିକିଏ ଡେରି ହୋଇଯିବ । ପାଦେ ପଛକୁ ହଟି କହିଲା— ସାବଣୀ, କୌଣସି ସଂକୋଚ କରନା; ଯାହା ଆବଶ୍ୟକ ହେବ, ନେବୁ ମୁଁ ଚାଲିଲି ।

ସନ୍ତୋଷ ଚାଲିଗଲା ।

ସାବଣୀ ପୁଣି ଥରେ ଭୂଇଁରେ ଲୋଟିପଡ଼ିଲା । ବୁକୁଫଟା ଶବ୍ଦରେ କାନ୍ଦି କହିଲା—ଆହା ସନ୍ତୋଷବାବୁ ଏଇ ପାପିଷ୍ଠାଟାକୁ କାହିଁକି ଏତେ ଭଲ ପାଉଥିଲେ ! ଏଇ ଯେ ଶପଥ କଲି ମତେ ଘୃଣା କର, ଏଇ କ'ଣ ଘୃଣା କରିବା ? ତୁମକୁ ଏତେ ଦୁଃଖ ଦେବା, ଏତେ ମିଛ କହିବା ସବୁ କ'ଣ ତୁମର ସ୍ନେହାଗ୍ନିରେ ପୋଡ଼ି ପାଉଁଶ ହୋଇଗଲା ! କ'ଣ କଲେ ମୁଁ ତୁମ-ଠାରୁ ଘୃଣା ପାଇବି, କିଏ କହିବ ?

ବେହାରୀ ଏ କଥାର ଅର୍ଥ ଟିକିଏ ହେଲେ ବୁଝିପାରିଲା ନାହିଁ । ଟିକିଏ ପାଖକୁ ଯାଇ ସାନ୍ତ୍ୱନା-ସ୍ୱରରେ କହିଲା—ମା, କାହିଁକି ତୁ ବାବୁଙ୍କ ପାଖରେ ଏତେ ମିଛ କହିଲୁ ? ଯେଉଁଠିକି କେବେହେଲେ ଯାଇନୁ,

କୌଣସି ଦୋଷ କରିନୁ, ସେସବୁ କଥା ନିଜ ଦେହକୁ ନେଇ ଏତେ ଅପରାଧିମା ହେଲ୍ କାହିଁକି ?

ସାବିତ୍ରୀ କାନ୍ଦି କାନ୍ଦି କଣ୍ଠରେ କହିଲା—ଧର୍ମ ଜାଣେ ବେହାରୀ, ମୋର ସବୁକଥା ମିଥ୍ୟା । କହିବାକୁ ବୁକୁ ଫାଟିଯାଉଛି, ତଥାପି କହିବାକୁ ପଡ଼ିଲା । କିନ୍ତୁ କୌଣସି କାମରେ ତ ଲାଗିଲାନି ବେହାରୀ—କୌଣସି କାମରେ ଲାଗିଲାନି ।

ବେହାରୀ ମୂକଙ୍କ ଭଳି ତା ମୁହଁ ଆଡ଼କୁ ଚାହିଁ କହିଲା—ମିଛ ପୁଣି କିଛି କାମରେ ଲାଗେ !

ସାବିତ୍ରୀ ଉଠି ବସି ଆଖି ପୋଛି ପକାଇଲା । ତା ମୁହଁ ଆଡ଼କୁ ଚାହିଁ କହିଲା—ଠିକ୍ ଜାଣୁ ବେହାରୀ, କୌଣସି କାମରେ ଲାଗେନି ?

ବେହାରୀ କିଛି ସମୟ ଚିନ୍ତା କରି କହିଲା—ହଁ ଆସେ ! ଅଦାଲତରେ ମିଛ କହି କାମ ହୁଏ । ସେଠାରେ ମିଥ୍ୟା କଥାର ତ ଜୟ ଜୟକାର ।

ସାବିତ୍ରୀ ଏହାର ଜବାବ ଦେଲାନି । ବହୁ କ୍ଷଣ ସ୍ଥିର ହୋଇ ବସି କହିଲା— କାହିଁକି ଏତେ ମିଛ କହିଲି, ହୁଏତ ଦିନେ ବୁଝିବୁ । କିନ୍ତୁ ସେ କଥା ଥାଉ । ଆଚ୍ଛା, ମୋର ଦୁଇଟି କଥା ରଖିବୁ ?

—ରଖିବି । କୁହ କି କଥା ?

ଗୋଟାଏ କଥା ହେଉଛି—ମୁଁ ଚାଲିଗଲେ ବି ବାବୁଙ୍କୁ କୌଣସି ଦିନ ଜଣେଇବୁନି ମୂଳରୁ ଶେଷଯାଏ ମୁଁ ତାଙ୍କୁ ମିଛ କହି ଦେଇଥିଲି ବୋଲି ।

ବେହାରୀ ମୌନ ରହିଲା । ସାବିତ୍ରୀ କହିଲା—ଆଉ ଗୋଟାଏ କଥା, ମୋର ଠିକଣା ତତେ ଲେଖି ଜଣେଇବି । ଯଦି କେବେ ମୋର ଆସିବା ଦରକାର ହୁଏ, ମତେ ଜଣାଇବୁ । ତତେ କହିବାକୁ ଲାଜ ଲାଗୁନି ବେହାରୀ, ମୋ ଛଡ଼ା ତାଙ୍କୁ କେହି ଶାସନ କରିପାରିବେନି । ମୋ ଛଡ଼ା ବିପଦବେଳେ ତାଙ୍କର ସେବା କେହି କରିପାରିବେନି ।

ବେହାରୀ କାନ୍ଦି ପକେଇଲା । ଆଖିବୁଜି କହିଲା—ସବୁ ଜାଣେ ମା !

ସାବିତ୍ରୀ ଉଠି କହିଲା—ତେବେ ଚାଲିଲି । ତାଙ୍କୁ ତୋର ହାତରେ ଦେଇଗଲି । ଦେଖ ବେହାରୀ, ମୋର ଦୁଇଟି କଥା ରଖ । ଭଗବାନ କରନ୍ତୁ,

ତୁମେ ସୁଖୀ ହୁଅ । ମୋର ଏ ପୋଡ଼ା ମୁହଁ ନେଇ ଯେମିତି ମୁଁ ତୁମ ସାମନାକୁ ନ ଆସେ ! ଏହା କହି ସାବିତ୍ରୀ ଆଖି ପୋଛି ଅଗ୍ରସର ହେଲା ।

ରାସ୍ତାକୁ ଆସି ଗାଡ଼ି ଭଡ଼ା କରି ସାବିତ୍ରୀକୁ ବସେଇ ଦେଇ ବେଦାଶ୍ରୀ ମୁଣ୍ଡ ଲଗେଇ ପ୍ରଣାମ କଲା । ଆଖି ପୋଛି, ଗଳା ପରିଷ୍କାର କରି କହିଲା—ମୋର ବି ଗୋଟିଏ ନିବେଦନ । ଆଜିପର୍ଯ୍ୟନ୍ତ ଯେମିତି ପିଲା ବୋଲି ମନେ କରିଥିଲ, ଦରକାର ହେଲେ ପୁଣି ସ୍ମରଣ କରିବ ।

— ହଁ, କରିବିନ, ନିଶ୍ଚୟ କରିବ ।

ଗାଡ଼ି ଛୁଟିଦେଲା । ବେଦାଶ୍ରୀ ପୁଣି ଥରେ ବାଟରେ ମୁଣ୍ଡକୁ ନୁଆଇଁ ପ୍ରଣାମ କରି କୁଞ୍ଜକାନନରେ ଆଖି ପୋଛି ବସାକୁ ଫେରିଲା ।

## ବାଇଶି

ପଥରଘାଟକୁ ଚାଲିଲି କହି ସତୀଶ ରାତି ୧୧ଟା ବେଳେ ବସାର ବାହାରକୁ ଆସି କିଛି ବାଟ ଗିବା ପରେ ଭୀଷଣ କ୍ଲାନ୍ତ ବୋଧକଲା । ପାଦ ଅଚଳ, ସର୍ବାଙ୍ଗ ପଥର ଭଳି ଭାରି । ବିରାଟ ଗୋଟାଏ ଗଭୀର ଅବସାଦ ତାର ମନ ଦେହ ଚାରିଆଡ଼େ ପରିବ୍ୟାପ୍ତ ହୋଇପଡ଼ିଚି ।

କେତେଦିନ ପୂର୍ବେ ଏଇମିତି ଗୋଟାଏ ରାତିର କଥା ମନେପଡ଼ିଲା । ଯେଉଁଦିନ ବେଦାଶ୍ରୀ ସାବିତ୍ରୀଘରୁ ଫେରିଆସି କହିଥିଲା ଯେ ସେ ନାହିଁ, ବିପିନ ବାବୁଙ୍କ ଘରକୁ ଚାଲିଯାଇଛି, ସେ ଦିନର ସମ୍ବାଦଟା କେବଳ କେତେକ ମୁହୂର୍ତ୍ତ ଲାଗି ତାକୁ ଅବଶ କରି ପକାଇଥିଲା । ପରକ୍ଷଣରେ ଅଭିମାନ ଅପମାନର ଯେ ଭୀଷଣ ଅଗ୍ନି ପ୍ରଜ୍ୱଳିତ ହୋଇ ଉଠିଥିଲା, କଲ୍ଲାର ନିର୍ଜନ ପ୍ରାନ୍ତରରେ ସ୍ତବ୍ଧ ଆକାଶ ତଳେ ଆଖି ପାଣି ଲିଭି ନ ଗଲେ ଯେଉଁଠି ତାହା ଯେତେଦିନ ହେଉ ସାବିତ୍ରୀକୁ ନିଯପରି ଦଗ୍ଧ ନ କରି ଶାନ୍ତ ହୁଅନ୍ତାନି, ସେଇମିତି ଗୋଟାଏ ରାତି ତ ଆଜି ଆସିଥିଲା । ତେବେ ସେଇମିତି ନିଆଁ ଜଳିଲାନି କାହିଁକି ?

ଗୋଟାଏ ଖାଲି ଗାଡ଼ି ଯାଉଥିଲା, ଡାକି କହିଲା—ପଥରଘାଟକୁ ନିବୁ ?

ଗାଡ଼ିଓ୍ୱାନ ଗାଡ଼ି ରଖି ସତୀଶ ଆଡ଼କୁ ଚାହିଁ ଭାବିଲା, ନିଶ୍ଚୟ ଇଏ ଗୋଟାଏ ମାତାଲ । କହିଲା—ବାପ୍‌ରେ, ସେ ତ ବହୁତ ଦୂର । ତିନି ଟଙ୍କା ଲାଗିବ ବାବୁ, ଟଙ୍କା ଅଛି ତ ?

—ହଁ ଅଛି କହି ସତୀଶ ଯାଇ ଗାଡ଼ିରେ ବସିଲା । ଗାଡ଼ିର ଗୋଟାଏ କଣରେ ମୁଣ୍ଡ ରଖି ଆଖି ବୁଜିଲା । କ୍ଲାନ୍ତି ତାକୁ ଏଭଳି ଅବସନ୍ନ କରି ଦେଇଥିଲା ଯେ ଅଧିକ କଥା କହିବାର ଶକ୍ତି ତାଠି ନ ଥିଲା ।

ଅନେକ ସମୟ ପରେ ଅନେକ ପଥ ଅତିକ୍ରମ କରି ଗାଡ଼ିଓ୍ୱାନ ପଚାରିଲା—ଠିକ୍ କେଉଁ ଜାଗାକୁ ଯିବ ବାବୁ, ଠିକଣା କରି କୁହନ୍ତୁ । ମିଛଟାରେ ଏଠି ସେଠିକି ଘୂରିପାରିବିନି । ସତୀଶ ନିଜ ବସାର ଠିକଣା ଦେଲା । କିଛି ସମୟ ପରେ ଗାଡ଼ି ଆସି ଘରଦୁଆରେ ହାଜର ହେଲା । ବହୁତ ଡକାଡ଼ିକି ପରେ ବେହାରା ଆସି କବାଟ ଖୋଲିଦେବାରେ ସତୀଶ ଚୁପ୍‌ଚାପ୍ ପଚାରିଲା—ବେହାରା, ସାବିତ୍ରୀ କ'ଣ ମୋର ଘରେ ?

ବେହାରା ବିହ୍ୱଳିତ ଭାବରେ ଚାହିଁରହି କହିଲା—ନା ବାବୁ, ସେ ତ ନାହିଁ । ସେଇକ୍ଷଣି ଚାଲିଗଲା ।

—ଚାଲିଯାଇଛି ?

—ହଁ, ସେ ନାହିଁ ।

ସତୀଶ ନିଶ୍ୱାସ ମାରି ବେହାରା ଶେଯର ଗୋଟିଏ ପାଖରେ ବସି-ପଡ଼ିଲା । ଏଇ ସାବିତ୍ରୀର ନ ରହିବାଟା ସୁଖର କିମ୍ବା ଦୁଃଖର, ସତୀଶ ଠିକ୍ ସେମିତି ଉପଲବ୍‌ଧି କରିପାରିଲାନି ।

ବେହାରା କିଛି ସମୟ ପରେ ମୃଦୁ ସ୍ୱରରେ କହିଲା—ମୁଁ ଗାଡ଼ି ଠିକ୍ କରିଦେଲି, ସେ ଚାଲିଗଲା । ଚାଲନ୍ତୁ ନିଜ ଘରକୁ । ମୁଁ ଧାପ ଲଗେଇ ଦେଉଚି ।

—ନା ଥାଉ, ମୁଁ ଜଳେଇ ଦେଇପାରିବି କହି ସତୀଶ ଉଠିବାକୁ ଆରମ୍ଭ କଲା ।

ତା ଆରଦିନ ସକାଳେ ତାର ଅତୃପ୍ତନିଦ୍ରା ଯେତେବେଳେ ଭାଙ୍ଗିଲା, ସେତେବେଳକୁ ବହୁତ ବେଳ ହୋଇ ଯାଇଥାଏ ।

ଅକସ୍ମାତ୍ ପ୍ରଚଣ୍ଡ ଝଡ଼ ଭଳି ସବୁ ଜିନିଷ ଓଲଟପାଲଟ କରିଦେଇ କେତେ କାଣ୍ଡ ଏ ରାତିରେ ଘଟିଗଲା । ଇତସ୍ତତଃ ବିକ୍ଷିପ୍ତ ବିପର୍ଯ୍ୟସ୍ତ ଚିନ୍ତା-ଗୁଡ଼ିକ ମଝିରେ ବହୁ ସମୟ ପର୍ଯ୍ୟନ୍ତ ତା ମନ ସ୍ଥିର ହୋଇ ରହିଲା ।

ବେହାଲି ଗୁଡ଼ାଏ ଅଣି ଦେବା ମାତ୍ରେ ସତୀଶ ପଚାରିଲା—ଆଚ୍ଛା ବେହାରି, ସାବିତ୍ରୀ ଗତକାଲି କେତେବେଳେ ଘରକୁ ଆସିଥିଲା ?

ସାବିତ୍ରୀକୁ ଗାଡ଼ିରେ ବସେଇ ଦେଇ ଫେରିଆସିବାବେଳୁ ତା ହୃଦୟ ଭିତରଟା ବ୍ୟଥାବିଦଗ୍ଧ ହୋଇ କାନ୍ଦି ଉଠୁଥିଲା । ସେ ଅବନତ ମୁଖରେ ମୃଦୁ କଣ୍ଠରେ କହିଲା—ଦିପହରେ ।

ସେ କେମିତି ଏ ଘରର ସନ୍ଧାନ ପାଇଲା ?

—ସେ କଥା ତ ମୁଁ ଜାଣେନା ।

ସତୀଶ ତା ମୁହଁ ଆଡ଼କୁ କଠୋର ଦୃଷ୍ଟିପାତ କରି କହିଲା—ମୁଁ କ'ଣ ବଳଦ ହୋଇଚି ଯେ ଏକଥା ମଧ୍ୟ ବୁଝିବାକୁ ମୋର ମୁଣ୍ଡ ନାହିଁ ? ସତ କଥା କହ ।

ବେହାରି ଆଶ୍ଚର୍ଯ୍ୟ ହୋଇ ଦୁଇ ଆଖି ବିସ୍ଫାରିତ କରି ଖାଲି ବାବୁଙ୍କ ଆଡ଼କୁ ଚାହିଁରହିଲା ।

ସତୀଶ କହିଲା—ବୋକାଙ୍କ ଭଳି ଚାହିଁରହିଲୁ ଯେ ! ତୁ ଉପିନ-ଘର ଆଡ଼କୁ ଯାଇନୁ ? ସାବିତ୍ରୀ ସହିତ ତୋର ସେଠି କଥାବାର୍ତ୍ତା ହୋଇନ ? ସତ କହ ।

—ନା ବାବୁ କହି ବେହାରି ସେଠାରୁ ଚାଲି ଯାଉ ଯାଉ ସତୀଶ ଅଧିକ ରାଗିଯାଇ କହିଲା—ଠିଆ ହୋ ବେହାରି ! ତୁ ତାକୁ ଏଠିକି ଆସିବା ପାଇଁ ଶିଖେଇନୁ ?

ବେହାରି ନିଃଶବ୍ଦରେ ମୁଣ୍ଡ ହଲାଇ କହିଲା—ନା ବାବୁ !

— ପୁଣି ସେଇ ନା !

ବେହାରି ମୁଣ୍ଡ ତଳକୁ କରି ରହିଥିଲା, ଚମକିଉଠି ମୁଣ୍ଡ ଉଠେଇ ନେଲା । ସତୀଶ କହିଲା—ପୁଣି ସେଇ ନା ! ତେବେ କିମିତି ସେଇ ସଇତାନଟା ଏଇ ଘରର ସନ୍ଧାନ ପାଇଲା ? ଯାଆ ତୁ, ତାରି ପାଖରେ ଯାଇ ରହ, ମୋ ପାଖରେ ରହିବା ଦରକାର ନାହିଁ । ଘର ଭିତରେ ମୁଁ ଶତ୍ରୁ ପୋଷି ପାରିବିନି । ଆଜ ଏହିକ୍ଷଣି ତୁ ଘର ଛାଡ଼ି ଚାଲିଯା ।

ବେହାରି ପଦେହେଲେ କଥା କହିଲାନି । କେବଳ ତାର ବିସ୍ମୟ-ବିସ୍ଫାରିତ ଦୁଇ ଚକ୍ଷୁରୁ ଧାର ଧାର ହୋଇ ଅଶ୍ରୁ ବିଗଳିତ ହେବାକୁ ଲାଗିଲା ।

ଏଇ ଅଶ୍ରୁ ସତୀଶ ଦେଖିଲା । କିଛି ସମୟ ଧରି ମୌନ ରହି ପୁଣି ପ୍ରଶ୍ନ କଲା— ରାତିରେ ସେ ଗଲା କୁଆଡ଼େ ?

ବେହାରୀ ଆଖି ବୁଜି କହିଲା—ଜାଣେନା । ଚିଠି ଲେଖି ତା ଠିକଣା ଜଣାଇବ ବୋଲି କହିଦେଇ ଯାଇଚି ।

ସତୀଶ ପୁଣି କିଛି ସମୟ ସ୍ଥିର ହୋଇ ନରମ କଣ୍ଠରେ କହିଲା— ଭାରି ରୋଗା ଦେଖାଯାଉଥିଲା । ଖୁବ୍ ବେମାରି ହୋଇଥିଲା ନା ?

ବେହାରୀ ମୁଣ୍ଡ ହଲାଇ କହିଲା—ହଁ ।

ସତୀଶ ପୁଣି କିଛି ସମୟ ଚୁପ୍ ରହି କହିଲା—କିନ୍ତୁ ଏଥର ତତେ ସତର୍କ କରେଇଦେଉଚି ବେହାରୀ, ମୋ ବସା ଭିତରେ ସେ ଯେମିତି ଆଉ ନ ପଶେ କିମ୍ବା କୌଣସି ଆଳ ଦେଖାଇ ମୋ ସହିତ ଦେଖା କରିବାର ଚେଷ୍ଟା ନ କରେ । ମୋ ଗୁହିବ କାହିଁ ? ଯିବାବେଳେ କେତେ ଟଙ୍କା ତାକୁ ଦେଲୁ ?

ବେହାରୀ ଗୁହିବ ବାହାର କରିଦେଇ କହିଲା—କାହିଁ, ଟଙ୍କା ତ କିଛି ଦେଇନି ।

—ଦେଇନୁ ? କାହିଁକି ? ତତେ ଦେବାକୁ କହି ଯାଇଥିଲି ।

—ସେ ନେବାକୁ ଗୁହିଁଲାନି । ଏତିକି କହି ବେହାରୀ ବାହାରକୁ ଗ୍ଳଲିଗଲା । ସତୀଶ ପୁଣି ତାକୁ ଡାକି ପଠେଇଲା । ସାବିତ୍ରୀ ଉପସ୍ଥିତ ନାହିଁ, ବେହାରୀ ତାକୁ ଭଲ ପାଏ; ତେଣୁ ଏଇ ବେହାରୀକୁ ଆଘାତ କଲେ ତାର କିଛିହେଲେ କ୍ଷୋଭ ମେଣ୍ଟେ । ବେହାରୀ ଆସିବାମାତ୍ରେ ସତୀଶ ପଚାରିଲା—ତା ପରେ ତୋ ସହିତ କି କି ପରାମର୍ଶ ହେଲା ?

ବେହାରୀ ଆଉ ନିଜକୁ ଚୁପ୍ ରଖିପାରିଲାନି । ଅଶ୍ରୁରୁଦ୍ଧ କଣ୍ଠରେ କହିଉଠିଲା— ବାବୁ, ମୋ ଭଳି ଲୋକ ସହିତ ସାବିତ୍ରୀ କ'ଣ ବା ପରାମର୍ଶ କରିବ ? ନେହୁରା କରି କହୁଚି, ଯାହା ଇଚ୍ଛା ଶାସ୍ତି ଦିଅନ୍ତୁ, ଆଉ ଇମିତି କେବେ ଜାଳି ପୋଡ଼ି ମାରିବେନି । ଏହା କହି ସେ କଇଁ କଇଁ ହୋଇ କାନ୍ଦିଉଠିଲା ।

ସତୀଶର ନିଜ ଆଖିକୋଣ ମଧ୍ୟ ଓଦା ଓଦା ହୋଇଆସିଲା । 'ଆଚ୍ଛା ତୁ ଯା' କହି ବେହାରୀକୁ ବିଦାୟ କରିଦେଇ ସେ ଶେଯରେ ଶୋଇପଡ଼ିଲା ଓ ତମାଖୁ ଟାଣିବାକୁ ଲାଗିଲା । ବଡ଼ ଜ୍ୱାଳାରେ ଜଳିଉଠି ତା ମୁହଁକୁ

ସାବିତ୍ରୀ ପ୍ରତି ଗୁଡ଼ାଏ କୁଭାଷା ବାହାରି ଆସିଥିଲା ସତ, କିନ୍ତୁ ତାର ଶେଷଟିକୁ ଶୀର୍ଣ୍ଣ ମୁହଁ ଭିତରେ ଭିତରେ ତାକୁ କନ୍ଦେଇ ପକାଉଥିଲା । ବେହାଗ୍ର କଥାରୁ କିଛିହେଲେ ପରିଷ୍କାର ନ ହେଲେ ମଧ୍ୟ ଏତିକିମାତ୍ର ଜାଣିବାକୁ ପାଇଲା ଯେ ସାବିତ୍ରୀ କୁଆଡ଼େ ଅନିର୍ଦ୍ଦିଷ୍ଟ ଭାବରେ ଚାଲିଗଲା । ଗଲା କୁଆଡ଼େ ? ବର୍ଷେ ଦି'ବର୍ଷ ପୂର୍ବେ ତାଙ୍କର ନବନାଟ୍ୟ ସମାଜରେ ଵାଲ୍ମୀକି ପ୍ଲେ ହୋଇ ଯାଇଥିଲା । ହଠାତ୍ ସେଇ କଥାଟା ତାର ମନେପଡ଼ିଲା । ତଥାପି ତାକୁ କାହିଁକି ହାପୁ ଭୁଲିପାରେନା ! ଯେଉଁ ସାବିତ୍ରୀ ଦୁଷ୍ଟା ସ୍ତ୍ରୀ ଭଳି ତାକୁ ଖାଲି ଦୁଃଖ ଦେଇଆସୁଚି, ଏଇ କେଇ ଘଣ୍ଟା ଭିତରୁ ସେ ନିଜେ ସ୍ୱୀକାର କରିଯାଇଛି ଯେ ସିଏ ତା'ର କିଛି ନୁହଁ, ଉଭୟ ମଧ୍ୟରେ କୌଣସି ବନ୍ଧନ ନାହିଁ—ଯା ବିରୁଦ୍ଧରେ ତା ମନରେ ଖାଲି ଘୃଣା ରହିଛି, ତଥାପି ତାରି ଲାଗି ତା ମନଟା ଇମିତି ହାହାକାର ହୋଇଉଠୁଚି କାହିଁକି ? ଇମିତି ଭୀଷଣ ବିଦ୍ୱେଷ ଓ ଏଡ଼େ ବଡ଼ ଆକର୍ଷଣ ଏକାସାଙ୍ଗରେ ତା ବୁକୁ ଭିତରେ ସ୍ଥାନ ପାଇଲା କିମିତି ?

## ତେଇଶି

ଦୁଇ ଘଣ୍ଟା ପରେ ସନ୍ଧାଣ ପଥରଘାଟ ଆଡ଼କୁ ବାହାରି ମନେ ମନେ କହିଲା—ଓଃ କି ସଇତାନ ! ଯାଉ, ମୁଁ ମଧ୍ୟ ବଞ୍ଚିଗଲି । ମୋର କାନ୍ଧ ଉପରୁ ଭୂତ ଖସିଗଲା । ରାସ୍ତାରେ ଯାଉ ଯାଉ ଭାବିବାକୁ ଲାଗିଲା, କିନ୍ତୁ ଉପୀନ୍‌ଦାଙ୍କୁ ମୁଁ ଆଜ ମୁହଁ ଦେଖାଇବି କେମିତି ? କାରଣ ନିଆଁରେ ହାତ ଦେଲେ କ'ଣ ହୁଏ, ଏହାକୁ ଯେମିତି ସେ ନିଶ୍ଚିତ କରି ଜାଣେ, ତାହାର ଆବାଲ୍ୟ-ସୁହୃଦ୍ ଉପୀନ୍‌ଦାଙ୍କୁ ଠିକ୍ ସେମିତି ଚିହ୍ନେ । ତାଙ୍କ ପାଖରେ ଏସବୁ ଅପରାଧର କ୍ଷମା ନାହିଁ । ଆଜନ୍ମ ସ୍ନେହର ମୂଲ୍ୟରେ ବି ଧାଡ଼ୁଏ ହେଲେ ପ୍ରଶ୍ରୟ ପାଇବାର ଆଶା ନାହିଁ, ଏ କଥା ତା'ଠାରୁ ବେଶୀ ଆଉ କିଏ ଜାଣେ ?

କରଣମଙ୍ଗୀଙ୍କ ଦାଣ୍ଡ ଦୁଆର ଖୋଲା ଥିଲା । ସେଇଠି ଆସି ସଞ୍ଜିଣ ଚୁପ୍ କରି ଠିଆ ହେଲା ଏବଂ ଭିତରେ ପଶିବା ଆଗରୁ ସବୁକଥା ପୁଣି ଥରେ ଭଲ କରି ଭାବିନେଲା ।

ମନେହେଲା, କେବଳ ଉପୀନ୍ଦା ତାର ପରମ ମିତ୍ର, ଗୁରୁ ଏବଂ ଆଦର୍ଶ । ତାଙ୍କଠାରୁ ପ୍ରକୃତରେ ଆଉ କିଏ ଆପଣାର ଅଛି ? ସେଇ ଉପୀନ୍ଦାଙ୍କ ପାଖରେ ଯାଇ ମୁଣ୍ଡଟେକି ଠିଆ ହେବାର ତାର ଆଉ କୌଣସି ରାସ୍ତା ନାହିଁ । ସେ କଳ୍ପନା କରି ଦେଖିଲା, ଆଜି ଦେଖାହେବା ମାତ୍ରେ ତାଙ୍କର ସେଇ ଅତ୍ୟନ୍ତ କଠୋରସ୍ତବ୍ଧ ଆଖିର ଜ୍ୱଳନ୍ତ ଚାହାଣି ସେମାନଙ୍କର ଆଜନ୍ମ ବନ୍ଧୁତ୍ୱ, ସ୍ନେହ, ପ୍ରେମ ସବୁ ନିଃଶେଷ, ଦଗ୍ଧ କରିଦେବ—କିଛିହେଲେ କ୍ଷମା କରିବ ନାହିଁ ।

ଖାଲି କ'ଣ ଏଇୟା ? ଏ ଘରର ଦୁଆର ଆଜିଠାରୁ ଚିରଦିନ ପାଇଁ ବନ୍ଦ ହୋଇଯାଇପାରେ । ଆଉ ଏଠାକୁ ସେ କେଉଁ ମୁହଁ ନେଇ ପ୍ରବେଶ କରିବ ?

କିନ୍ତୁ ଏତେ କ୍ଷତି, ଏତେ ଲାଞ୍ଛନା ଯାହା ପାଇଁ, ଏତେ ବଡ଼ ସର୍ବନାଶ କରି ଯିଏ ଚାଲିଗଲା, ସେ ତାର କିଏ ? ଯିଏ ନିଜେ ଧରା-ଦେଇନି ଅଥଚ ବାନ୍ଧି ଦେଇଗଲା, ଦୁଃଖ ଭୋଗ କରି ନାହିଁ ଅଥଚ ଦୁଃଖସାଗରରେ ବୁଡ଼େଇ ଦେଇଗଲା, ଯାହାକୁ ସତ ବୋଲି ସ୍ୱୀକାର କରିଯାଏନା, ଅଥଚ ମିଛ ବୋଲି କହି ଉଡ଼େଇଦେବା ଅସାଧ୍ୟ ! ନିଶ୍ୱାସ ଛାଡ଼ି ସଞ୍ଜିଣ ମନେ ମନେ କହିଲା—ସାବିତ୍ରୀ ଦୁଃଖ ଦେଇଛୁ, ସେଥିପାଇଁ ଆଉ ଦୁଃଖ ନାହିଁ; କିନ୍ତୁ ସତ ମିଛ ମିଶେଇ ଏ କ'ଣ ବିଷମ ବିଡ଼ମ୍ବନାରେ ମୋତେ ବାନ୍ଧି ଦେଇଗଲୁ !

ଦାସୀ ହଠାତ୍ ପାଟି କରି ଉଠିଲା—ବୋଉ, ଆପଣଙ୍କୁ ଡାକୁଛନ୍ତି !

ସଞ୍ଜିଣ ଚମକିପଡ଼ି ଚାହିଁଲା — ପଚାରିଲା, ଉପେନ୍ଦ୍ର ବାବୁ ଆସିଛନ୍ତି ?

—ହଁ, କାଲି ବହୁତ ରାତିରେ ।

—ତାଙ୍କର ଶ୍ରେଷ୍ଠ ଭାଇ ? ଭାଉଜ ?

ଦାସୀ ମୁଣ୍ଡ ହଲାଇ କହିଲା – କାହିଁ ନାଇଁ ତ ! ସେ ଏକୁଟିଆ ଆସିଛନ୍ତି । ଆସିବା ପରଠୁ ତ ଆମ ବାବୁଙ୍କ ପାଖରେ ବସିଛନ୍ତି ।

—ବାବୁ କେମିତି ଅଛନ୍ତି ?

ନିଶ୍ୱାସ ମାରି ଦାସୀ କହିଲା—ଆଉ ବାବୁ ! ଚଞ୍ଚଳ ଚାଲିଗଲେ ମଙ୍ଗଳ ।

ଟିକିଏ ଚୁପ୍ ରହି ସତୀଶ କହିଲା—ଉପେନ୍ଦ୍ର କେଉଁଠି ?

—ସେ ଏଇକ୍ଷଣି ଗାଧୋଇସାରି ରନ୍ଧାଘରକୁ ଗଲେ ।

ସତୀଶ ଆଉ କୌଣସି ପ୍ରଶ୍ନ ନ କରି ଗୋଡ଼ ଚପି ଚପି ସିଧା ରନ୍ଧାଘରକୁ ଚାଲିଗଲା ।

କିରଣମୟୀ ବୋଧହୁଏ ଅପେକ୍ଷା କରିଥିଲେ । ସତୀଶ ଦ୍ୱାରପାଖରେ ପହଞ୍ଚିବାମାତ୍ରେ ଅତି ଉତ୍ସାହରେ ପଚାରିଲେ—ଘରେ ନ ପଶି ଠିଆ ହୋଇଥିଲ କାହିଁକି ସତୀଶ ! ଆଗି, ମୁହଁ ଏମିତି ଶୁଖିଲା ଦିଶୁଛି କାହିଁକି ? ରାତିରେ କ'ଣ ଶୋଇନ ?

ପ୍ରଶ୍ନଟା ସତୀଶର କାନରେ ବାଜିବାମାତ୍ରେ ତାର ମୁହଁଟା ରାଗରେ ନିଆଁ ଭଳି ଲାଲ ହୋଇଉଠିଲା । କହିଲା—ଆଉ କ'ଣ କରନ୍ତି, ରାତି ଗୋଟାକଯାକ ଚେଇଁ ତାଙ୍କୁ କୋଳରେ ଧରି ଆମୋଦ କରୁଥିଲି । ଶୁଣି ସନ୍ତୁଷ୍ଟ ହେଲ ତ ? ସେଇ ଶ୍ରେଷ୍ଠ ଲୋକ ତୁମରି ସେ ଉପୀନ୍‌ବାବୁଙ୍କୁ କହିଦିଅ, ମତେ ଯଦି ସେ ପଚାରନ୍ତି, ତାହା ହେଲେ ଠିକେ ଠିକେ ସବୁ ସତ କଥା କହନ୍ତି । ସଂସାରରେ ତା ଛଡ଼ା ସତ କଥା କହିବା ଲୋକ ବହୁତ ଅଛନ୍ତି । ତା ଛଡ଼ା ସେ ମୋର ସେମିତି କେହି ନୁହେଁ ଯେ ଭୟରେ ତାଙ୍କୁ ମିଛ କଥା କହିଯିବି ! କୁହ ତାଙ୍କୁ, ବୁଝିଲ ଭାଉଜ ! କହିଦେଇ ସତୀଶ ଫେରିଆସିଲା ।

ହଠାତ୍ ସତୀଶର ଏଇ ଭାବ, ଏଭଳି ଅତ୍ୟୁଗ୍ର କଣ୍ଠ ସ୍ୱରରେ କିରଣମୟୀ ଏକାବେଳକେ ନିର୍ବାକ୍ ! ସତୀଶ ବଡ଼ ଘରର ଦୁଆର ପାରି ହୋଇ ବାହାରକୁ ଚାଲିଯିବା ଦେଖି କିରଣମୟୀ ବ୍ୟସ୍ତ ହୋଇ ଡାକିଲେ—ସତୀଶ, କୁଆଡ଼େ ଚାଲିଯାଉଚ ? ଟିକିଏ ଶୁଣ !

ସତୀଶ ଫେରି ଠିଆହୋଇ ପାଟି କରି କହିଲା—କ'ଣ ହେବ ଶୁଣେ ! ସତ କହୁଚି ଭାଉଜ, ସିଏ ଯେ ଏଡ଼େ ଶ୍ରେଷ୍ଠଲୋକ, ସେକଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ସେ ଯେଉଁଠି ରହିବ, ମୁଁ ସେଠି ରହି ନ ପାରେ । ଆଜି ବୁଝିପାରୁଚି, ହଠାତ୍ ବାବା ସେଦିନ ଇମିତି ଗୋଟାଏ

ଚିଠି ଲେଖିଥିଲେ କାହିଁକି ? କିନ୍ତୁ ସେଇ ମାଟମନା ଲୋକଟାକୁ କହି ଦିଅ ଭାଉଜ, ମୁଁ ତାକୁ ଖାତିର କରେନା କି କେବେ କରିବିନି ।

କିରଣମୟୀ ବ୍ୟସ୍ତ ହୋଇ କହିଲେ—କାହାକୁ ? କି କଥା କହୁଛ ସତୀଶ ?

ଠିକ୍ କହୁଚି ଭାଉଜ, ଠିକ୍ କହୁଚି । ତୁମକୁ କହିଲେ ସେ ବେଶ୍ ବୁଝି ପାରିବ ଯେ । କିନ୍ତୁ ତୁମକୁ ମଧ୍ୟ କହିଦେଉଚି ଆଜି, ବିନା ଦୋଷରେ ସେ ମୋତେ ତୁମର ଦୁଆର ବନ୍ଦ କରିଦେଲା ସତ, କିନ୍ତୁ ଦିନେ ବୁଝିବ, ସତୀଶ ଯେତେ ମନ୍ଦ ହେଉ ପଛକେ, ଯେଉଁ ମଣିଷ ତାକୁ ବିଶ୍ୱାସ କରେ ସେ କେବେ ଠକେନି । ଆଉ ଗୋଟିଏ କଥା ତାକୁ କୁହ, ସେ ଯେତେ ଇଚ୍ଛା ପ୍ରାଣଭରି ମୋର ସର୍ବନାଶର ଯେମିତି ଚେଷ୍ଟାକରେ; କିନ୍ତୁ ମୁଁ ମଧ୍ୟ ତାକୁ ଆଉ ମୁହଁ ଦେଖାଇବିନି—ସେ ମଧ୍ୟ ଯେମିତି ମତେ···ହଠାତ୍ ସତୀଶ ଦୁଆର ଆଡ଼କୁ ଚାହିଁ ଚୁପ୍ ହୋଇଗଲା ଏବଂ ଟିକିଏ ପରେ ମୁହଁ ବୁଲେଇ ଝଡ଼ ଭଳି ଚାଲିଗଲା । ତା'ର ଦୃଷ୍ଟି ଅନୁସରଣ କରି କିରଣମୟୀଙ୍କର ମଧ୍ୟ ଆଖି ଯାଇ ପଡ଼ିଲା ପଥରମୂର୍ତ୍ତି ଭଳି ସ୍ତବ୍ଧ ଉପେନ୍ଦ୍ର ଉପରେ । ସେ ପାଟିଶୁଣି ଶୁଣି ରୋଗୀ ପାଖରୁ ଉଠିଆସି ଦୁଆର ପାଖରେ ଠିଆହୋଇ ସବୁ ଶୁଣୁଥିଲେ ।

କିରଣମୟୀ ଭାବିଲେ, ବୋଧହୁଏ କଥା କ'ଣ ଉପେନ୍ଦ୍ର ତାହା ଜାଣିବାକୁ ନିଶ୍ଚୟ ଇଚ୍ଛା କରିବେ । କିନ୍ତୁ ସେ କିଛି ନହେଲେ କହିଲେ ନାହିଁ । ନିଃଶବ୍ଦରେ କବାଟ ବନ୍ଦ କରି ଭିତରକୁ ଚାଲିଗଲେ ।

କିରଣମୟୀଙ୍କର ବିସ୍ମୟର ସୀମା ନାହିଁ । ଇଏ ପୁଣି କି କାଣ୍ଡ ! ସତୀଶ ତାର ଉପୀନ୍‌ଦାଙ୍କୁ ଏଭଳି ନାହାରି ମୁହଁ ଉପରେ ଅପମାନ କରିଗଲା କେମିତି ? କେଉଁଥିପାଇଁ ? ସେ ରନ୍ଧାଘରକୁ ଫେରିଯାଇ କାମ-ଗୁଡ଼ିକ ଯେମିତି ସ୍ୱପ୍ନାବିଷ୍ଟ ଭଳି କରି ଯାଉଥିଲେ । କିନ୍ତୁ ମନ ମଧ୍ୟରେ ଗୋଟିଏ ଗଭୀର ବିକ୍ଷୁବ୍ଧ ବିସ୍ମୟ ସହସ୍ର ରୂପ ନେଇ ନିରନ୍ତର ଚକ୍ର ଭଳି ତାଙ୍କ ମୁଣ୍ଡରେ ଖେଳିବାକୁ ଲାଗିଲା । ତାଙ୍କ ଘର ଭିତରେ ଯେ ଏଡ଼େ ବଡ଼ ଏକ ବିପଦ ଆସନ୍ନ ହୋଇ ରହିଛି, କ୍ଷଣକାଳ ଲାଗି ସେ ସେକଥା ମଧ୍ୟ ଭୁଲିଗଲେ । କାଲି ସଂଧ୍ୟା ପରେ ସତୀଶ ବସାକୁ ଫେରିଯାଇଛି । ତାପରେ ଏହି ଗୋଟିଏ ରାତି ଭିତରେ ଏଭଳି କ'ଣ ଘଟିପାରେ, ଯେଉଁଥିରେ

ସେ ଏପରି ଉନ୍ମତ୍ତ ଆଚରଣ କରି ଚାଲିଗଲା । ଅଥଚ ଉପେନ୍ଦ୍ର, ସତେ ଯେପରି ସେ କଥା ଜାଣିବାକୁ ଚାହୁଁନଥିଲେ । ତାଙ୍କର ମନେହେଲା, ଏତିକାଳ ଲାଗି ଉପେନ୍ଦ୍ରଙ୍କର ଶୁଷ୍କ କଠିନ ମୁଖ ଉପରେ ଯେଉଁଭଳି ଦୁଃସହ ବିସ୍ମୟ ଫୁଟି ଉଠିଥିଲା; କିନ୍ତୁ ଏହା ସତ୍ୟ କିମ୍ବା ତାଙ୍କର କେବଳ ମନର କଳ୍ପନା, ତାହା କିଏ ଜାଣେ ?

ଉପେନ୍ଦ୍ର ଫେରିଯାଇ ମୁମୂର୍ଷୁ ହାରାନ୍ ଶେଯ ପାଖରେ ଆଗେ ଯେଉଁଠି ବସିଥିଲେ, ସେଇଠି ଯାଇ ବସିଲେ । ସେ ସ୍ୱଭାବତଃ ଶାନ୍ତ ପ୍ରକୃତିର । ସହସା କାହାର ସପକ୍ଷରେ ବା ବିପକ୍ଷରେ ମତାମତ ସେ ଗ୍ରହଣ କରନ୍ତି ନାହିଁ । କିନ୍ତୁ ତାଙ୍କର ସେଇ ସହଜ, ନିର୍ମଳ ବସ୍ତୁରସମତା ନ ଥିଲା । କାଲି ରାତିରେ ସୁରବାଳା ପ୍ରଭୃତିଙ୍କୁ ଯେତେବେଳେ ଜ୍ୟୋତିଷର ଘରେ ପହଞ୍ଚାଇ ଦେଇ ସେ ଗଭୀର ରାତିରେ ହାରାନ୍ ଘରେ ପହଞ୍ଚିଲେ, ସେତେବେଳେ ହାରାନ୍‌ର ଶ୍ୱାସ-କଷ୍ଟ ଭୟାନକ ଭାବରେ ବୃଦ୍ଧି ପାଇଥିଲା । ଭିତରେ ସଂଜ୍ଞା ଅଛି କି ନା, ତାହା ବି ଅନୁମାନ କରିବା କଠିନ । ଗୃହଆଡ଼େ ମୃତ୍ୟୁର ଛାୟା ଘନେଇ ଆସିଥିଲା । ତଥାପି ମନେ ହେଉଥିଲା, କେଉଁଠାରେ ବି ଠିକିଏ ହେଲେ ବ୍ୟାକୁଳତା ନାହିଁ । ଇତିପୂର୍ବରୁ ଅନେକ ମୃତ୍ୟୁଶଯ୍ୟା ସେ ଦେଖିଥିଲେ ଓ ସ୍ତ୍ରୀ ସହିତ ତା ପ୍ରଭେଦ ବହୁତ । ରୋଗୀ ମୁଣ୍ଡ ଉପରେ ତେଲ ଦୀପ ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ । ମା ଘରର ଗୋଟାଏ ପାଖରେ ପଟି ପକେଇ ନିଦ୍ରିତା । କେବଳ କିରଣମୟୀ ଚେଙ୍କି ବସିଥାନ୍ତି । କିନ୍ତୁ ତାଙ୍କ ଆଚରଣରେ କୌଣସି ଲକ୍ଷଣ ଖୋଜି ନ ପାଇ ମନେ ମନେ ସେ ନିଶ୍ଚିତ ହୋଇ-ଥିଲେ ଯେ କିରଣମୟୀ ପରମ ଉଦାସୀନତା ମଧ୍ୟରେ ସ୍ୱାମୀଙ୍କ ମୃତ୍ୟୁକୁ ପ୍ରତୀକ୍ଷା କରି ବସିଛନ୍ତି । ମାର ଆଖିରେ ନିର୍ଲିପ୍ତ ଭାବ. ନିଜର ରୋଗ ଓ ଦୁର୍ଗନ୍ଧ ଦେହ ନେଇ ସେ ଅସ୍ଥିର ।

କାଲି ରାତିରେ ଉପେନ୍ଦ୍ର ସ୍ପଷ୍ଟ ଦେଖିବାକୁ ପାଇଥିଲେ, କେବଳ ବାଧିକା ଯେ ଏ ଦୁଇଟି ରମଣୀ ଭିତରେ ନ ଥିଲା ତାହା ନୁହେଁ, ବରଂ ଏହା ଭିତରୁ ବଞ୍ଚିବାର ଆଶା ହିଁ ଗୋଟାଏ ବନ୍ଧ ଭଳି ହୋଇ ଏହି କ୍ଷୁଦ୍ର ପରିବାରଟିକୁ କେବଳ ସୁଖ ଦୁଃଖର ପ୍ରବାହକୁ ବାଧାଗ୍ରସ୍ତ କରି ଆବର୍ଜନାରେ ନିରନ୍ତର ପୀଡ଼ିତ କରି ରଖିଛନ୍ତି । ଯେପରି ହେଉ, ଏହି ଅବରୋଧରୁ ମୁକ୍ତି ପାଇଲେ ଏମାନେ ଯେମିତି ନିଶ୍ୱାସ ମାରନ୍ତେ !

ଉପେନ୍ଦ୍ର ଆଜିସୁଦ୍ଧା କିରଣମୟୀଙ୍କୁ ଚିହ୍ନି ପାରି ନ ଥିଲେ । ସେ ସୁଯୋଗ ବି ତାଙ୍କ ଭାଗ୍ୟରେ କେବେ ଘଟି ନ ଥିଲା । କିନ୍ତୁ ସତୀଶ ଚିହ୍ନିଥିଲା । ତେଣୁ ପ୍ରଥମ ଯେଉଁଦିନ ଏମାନେ ହାରାନ୍‌ଙ୍କ ଘରେ ପଦାର୍ପଣ କରିଥିଲେ, କିରଣମୟୀଙ୍କର ସେଦିନ ରାତିର ଆଚରଣ ସତୀଶ ତ ଭୁଲିଯାଇଥିଲା, ଅଧିକନ୍ତୁ ନିଜ ରୁଢ଼ତାର ଅପରାଧ ନିଜେ ସ୍ୱୀକାର କରି ଏବଂ କିରଣମୟୀଙ୍କର କ୍ଷମାଲାଭ କରି 'ଭାଇ' ସ୍ଥାନଲାଭ କରିଥିଲା । କିନ୍ତୁ ଉପେନ୍ଦ୍ରର ସେ ଅବକାଶ ଘଟି ନ ଥିଲା । ତେଣୁ କାଲି ରାତିରେ ଏ ଘରେ ପଦାର୍ପଣ ତାଙ୍କର ଅପ୍ରସନ୍ନ ଚିତ୍ତ ମା ବିରୁଦ୍ଧରେ ବିତୃଷ୍ଣା ଏବଂ ସ୍ତ୍ରୀ ବିରୁଦ୍ଧରେ ନିବିଡ଼ ଘୃଣାରେ ପରିପୂର୍ଣ୍ଣ ହୋଇ ଉଠିଥିଲା । ତେଣୁ ସକାଳେ କିରଣମୟୀ ଯେତେବେଳେ ଗୁହାରି ଦେଇଗଲା, ଉପେନ୍ଦ୍ର ସ୍ପର୍ଶ ସୁଦ୍ଧା କଲେ ନାହିଁ ।

ସକାଳେ ସତୀଶର ଯିବା ଆସିବା ଖବର ଅଘୋରମୟୀ ଆଦୌ ଜାଣିପାରି ନ ଥିଲେ । ସେ ତଳେ ନିଜ କାମରେ ଲିପ୍ତ ଥିଲେ । ହଠାତ୍ ଧୀରେ ଧୀରେ ପାଦ ଚପି ଚପି ଘର ଭିତରେ ପଶିଲେ ଏବଂ ପୁଅକୁ ଗୁହାଁ ଖାଲି କାନ୍ଦିବାକୁ ଲାଗିଲେ । କେହି ତାଙ୍କୁ ସାନ୍ତ୍ୱନା ଦେବାକୁ ନ ଥିଲେ । ହଠାତ୍ ତାଙ୍କର ଗୁହାରି ଗିନା ଉପରେ ଆଖି ପଡ଼ିବାମାତ୍ରେ କାନ୍ଦ କାନ୍ଦ କଣ୍ଠରେ କହିଲେ—କି ବାବା, ଗୁହାରି ପିଇଲୁ ନାହିଁ ଯେ !

ଉପେନ୍ଦ୍ର ସଂକ୍ଷେପରେ କହିଲେ—ନା, ପିଇନି ।

ଅଘୋରମୟୀ ଅତି ବ୍ୟଗ୍ର ହୋଇଉଠି କହିଲେ—ନା, ନା, ତା ହେବନି ବାବା ! ରାତି ସାରା ଚେଇଁ ରହିଛୁ, ତା ଉପରେ ଯଦି ଦେହ ଖରାପ ହୁଏ ତ ଆଉ କେହିହେଲେ ବଞ୍ଚିବୁନି ବାବା !

ଉପେନ୍ଦ୍ର କୌଣସି କଥା କହିଲେନି, ଖାଲି ଅଘୋରମୟୀଙ୍କ ମୁହଁ ଆଡ଼କୁ ଗୋଟାଏ ତୀକ୍ଷ୍ଣ ଦୃଷ୍ଟି ନିକ୍ଷେପ କଲେ ଏବଂ ଗୋଟିଏ ଆଡ଼କୁ ଗୁହାଁ-ରହିଲେ । ଏ ଚାହାଣି କାହିଁକି ? ତାର ଅର୍ଥ କ'ଣ ଅଘୋରମୟୀ ଚିନ୍ତା ବୁଝିପାରିଲେନି, କିରଣମୟୀ ବେଶ୍ ବୁଝିପାରିଲେ । ମୃତକଳ୍ପ ଘରପୁଅର ଶେଯ ପାଖରେ ବସିରହି ପରପୁଅ ପ୍ରତି ମା ହୃଦୟର ନିବେଦନ କେତେ ଯେ ଅସଙ୍ଗତ, ଅଶୋଭନ ଦେଖାଗଲା, ତାହା କିରଣମୟୀଙ୍କ ତୀକ୍ଷ୍ଣ

ବୁଦ୍ଧିର ଅଗୋଚର ନ ଥିଲା; କିନ୍ତୁ ଉପେନ୍ଦ୍ର ଯେ ଗୋଟାଏ ତୁଚ୍ଛ ଅନୁରୋଧ ବିରୁଦ୍ଧରେ ଏଭଳି ଦୃଢ଼, ଜିଦ୍‌ଖୋର ହୋଇ ବସି ରହିଛନ୍ତି, ସେକଥା ବୁଝିବାର ସାଧ୍ୟ ନ ଥିଲା କିରଣମୟୀଙ୍କର ।

ଏଇ ଜଟିଳଦ୍ୱନ୍ଦ୍ୱର ଅବସାନ ଘଟିଲା ଡାକ୍ତର ଆସିବା ପରେ । ସାହେବ ଡାକ୍ତର ୨୩ ମିନିଟ ରୋଗୀକୁ ପରୀକ୍ଷା କରିବା ପରେ ଶେଷ ଜବାବ ଦେଇଗଲେ ଏବଂ ତା ସଙ୍ଗେ ସଙ୍ଗେ ଏଇ ଭରସା ଦେଇଗଲେ ଯେ ରୋଗୀର ଜୀବନ ଏବେ ଶେଷ ହେବନି, ଅନ୍ତତଃ ଆଜି ଗୋଟାଏ ରାତି ଯିବ ।

ସମୟ ସେତେବେଳକୁ ଦଶଟା । କିରଣମୟୀ ଟିକିଏ ପାଖକୁ ଲାଗି ଆସି ମୃଦୁ କଣ୍ଠରେ କହିଲେ—ଆପଣ ଅନ୍ତତଃ ସେମାନଙ୍କୁ ଖବର ଦେଇ-ଆସିବା ତ ଦରକାର ।

ଉପେନ୍ଦ୍ର କହିଲେ— ଖବର ଦେଇଆସିବା ଦରକାର ନାହିଁ; ସେମାନେ ସମସ୍ତେ ଜାଣନ୍ତି ।

—ତଥାପି ଥରେ ଯିବା ଉଚିତ । ଏବେ ତ କୌଣସି ଭୟ ନାହିଁ । ଗାଧୁଆପାଧୁଆ ସାରି ଟିକିଏ ବିଶ୍ରାମ କରି ଫେରିଆସିବେ ।

ଉପେନ୍ଦ୍ର କୌଣସି କଥା କହିଲେନି । କିରଣମୟୀ ଧୀରେ ଧୀରେ ଅଥଚ ଦୃଢ଼ କଣ୍ଠରେ କହିଲେ—ଟିକିଏ ଚିନ୍ତାକରି ଦେଖନ୍ତୁ, ସ୍ନାନାହାର ନ କରି ଏମିତି ମୁହଁକୁ ମୁହଁ ଗୁହାଁଗୁହିଁ ହୋଇ ବସିବାରେ କୌଣସି ଫଳ ନାହିଁ । ଗାଡ଼ିରେ ତ ନିଦ ହୋଇ ନ ଥିବ । ତା ପରେ ଆଜି ସାରାଦିନ ଏମିତି ଅନିଦ୍ରା ରହିଲେ ଦେହ ଖରାପ ହୋଇ ଯାଇପାରେ । ସତୀଶ ତ ନାହାନ୍ତି, ଆପଣଙ୍କର ଯଦି ଦେହ ଖରାପ ହୋଇପଡ଼େ ନା········ମୁଁ ଏଠି ବସିଛି, ଆପଣ ଯାଆନ୍ତୁ ସିଆଡ଼େ ଟିକିଏ ବୁଲିଆସନ୍ତୁ ।

ହଠାତ୍ ଉପେନ୍ଦ୍ର ମୁହଁ ଟେକି ଗୁହିଁବାର ଦୃଷ୍ଟିକୁ ଅବନତ କରି-ପକାଇଲେ । ଏଭଳି ଏତେ କଥା କିରଣମୟୀ ତାଙ୍କୁ କେବେହେଲେ କହି ନ ଥିଲେ । ଏ କଣ୍ଠସ୍ୱରରେ ଶୁଭଭଲାଷର ଆତିଶଯ୍ୟ ନାହିଁ; ତଥାପି କି ଦୃଢ଼, କି କୋମଳ ! ଉପେନ୍ଦ୍ରଙ୍କର କାନ ଭିତରେ କିରଣମୟୀଙ୍କର ଏ ଆବେଦନ ଅପରୂପ ହୋଇଉଠିଲା । ବହୁଦିନ ପୂର୍ବେ ଦିନକର ରାତିରେ ଯେଉଁ ତୀବ୍ର କଣ୍ଠ, କଠିନ ଭାଷା ସେ ଏଇ କିରଣମୟୀଙ୍କଠାରୁ ଶୁଣିପାଇଥିଲେ,

ତାଠାରୁ ଏ କଣ୍ଠର କି ପାର୍ଥକ୍ୟ ! ଉପେନ୍ଦ୍ର କୌଣସି ଆଡ଼କୁ ନ ଚାହିଁ ପ୍ରଶ୍ନ କଲେ – ଆପଣମାନଙ୍କର ଆଜି କମିତି ଚଳିବ ?

କିରଣମୟୀ କହିଲେ—ସେ କଥା ପଚାରି ଲାଭ କ'ଣ ? ସେ ଯାଆନ୍ତୁ କି ଶୀଘ୍ର ଫେରିଆସିବେ, ଡେରି କରିବେନି ।

ମୁହୂର୍ତ୍ତକ ଭିତରେ ଉପେନ୍ଦ୍ର ସବୁକଥା ଭୁଲିଯାଇ ଦୁଇ ଆଖିର ପରିପୂର୍ଣ୍ଣ ଦୃଷ୍ଟି କିରଣମୟୀଙ୍କ ମୁହଁ ଉପରେ ନିବଦ୍ଧ କଲେ । ପ୍ରଥମେ ଦୃଷ୍ଟିରେ ପଡ଼ିଲା କିରଣମୟୀଙ୍କ ସୀମନ୍ତର ସେ ଗାଢ଼ ସିନ୍ଦୂର ରେଖା – ନାରୀ-ସୌଭାଗ୍ୟର ସର୍ବଶ୍ରେଷ୍ଠ ନିଦର୍ଶନ, ଏ ଜୀବନର ପରମ ଶ୍ରେୟଃ—ଏ ପର୍ଯ୍ୟନ୍ତ ନଷ୍ଟ ହୋଇ ନାହିଁ । ସଧବାର ସମସ୍ତ ଗୌରବ ବହନ କରି ଏବେ ବି ବିଦ୍ୟମାନ । ପ୍ରବଳ ବାଷ୍ପୋଚ୍ଛ୍ୱାସରେ ଉପେନ୍ଦ୍ରଙ୍କର ସାରା ଦେହ ଶିହରିଉଠିଲା ।

କିରଣମୟୀ ଦେଖିବାକୁ ପାଇଲେ; କିନ୍ତୁ ତାର ପ୍ରତିଦ୍ୱନ୍ଦ୍ୱୀର କୌଣସି ଆଭାସ ତାଙ୍କ ମୁହଁରେ ଦେଖାଗଲା ନାହିଁ । କହିଲେ—ଆପଣ ଉଠନ୍ତୁ, ତାଙ୍କୁ ଟିକିଏ ଦୁଧ ପିଆଇଦିଏ ।

ଉପେନ୍ଦ୍ର କହିଲେ—ଆଉ ସେ ଔଷଧଟା !

—ନା-ନା, ଆଉ ସେ ଔଷଧ ଖୁଆଇ ତାଙ୍କୁ ଅଯଥା କଷ୍ଟ ଦିଅନ୍ତୁ ନାହିଁ । ବହୁତ ଔଷଧ ଜୋର କରି ଖୁଆଇଚି, ଆଉ ଦେଇପାରିବିନି ।

ଉପେନ୍ଦ୍ର କୌଣସି ପ୍ରତିବାଦ କଲେ ନାହିଁ । ଔଷଧର ଅନାବଶ୍ୟକତା କଥା ସେ ନିଜେ ଜାଣନ୍ତି । ସ୍ୱାମୀଙ୍କୁ ଦୁଧ ପେଇବା ଲାଗି ବାହାରିବାମାତ୍ରେ ଉପେନ୍ଦ୍ର ଉଠି ଠିଆହେଲେ ଏବଂ ଅତିଶୀଘ୍ର ସ୍ନାନାହାର କରି ଫେରିଆସିବି କହି ବାହାରକୁ ବାହାରିବାମାତ୍ରେ କିରଣମୟୀ ମୃଦୁ କଣ୍ଠରେ କହିଲେ— ଯଦି ପାର, ସତୀଶ ବସା ବାଟେ ଦେଇ ଟିକିଏ ଆସିବ ।

—କାହିଁକି ?

—ଆଗରୁ ତ ଲୋକ ନାହାନ୍ତି, କାହାକୁ ପଠେଇବା ସହଜ ନୁହେଁ, ସେଇଥିପାଇଁ କହୁଥିଲି, ଯଦି ପାରି······ ।

ଉପେନ୍ଦ୍ର ଠିକ୍ ଭାବିପାରିଲେ, ସତୀଶକୁ ଡାକିବା କଥାରେ କିରଣମୟୀ ନିଶ୍ଚୟ ଜାଣିଶୁଣି ତାଙ୍କୁ ଗୋଟାଏ ଖୋଞ୍ଚା ଦେଲେ । ତେଣୁ ତିକ୍ତ କଣ୍ଠରେ ପଚାରିଲେ—ତାର କ'ଣ ଆସିବା ବିଶେଷ ଦରକାର ?

ଏହି କଣ୍ଠସ୍ୱର ଓ ତାର ତାତ୍ପର୍ଯ୍ୟ କିରଣମୟୀଙ୍କର ଅଗୋଚର ରହିଲା ନାହିଁ । କିନ୍ତୁ ତା ବୋଲି ନିଜ କଣ୍ଠସ୍ୱରଦ୍ୱାରା ଆଉ ସେ ତାକୁ ବଢ଼ାଇଲେନି । କେବଳ କହିଲେ— ଏହି ଦୁଃସମୟରେ ସମସ୍ତଙ୍କର ପ୍ରୟୋଜନ ଉପୀନ୍‌ବାବୁ ! ନା ଜାଣି କାହିଁକି ଯେ ସେ ଆପଣଙ୍କ ଉପରେ ଏପରି ରାଗି ଚାଲିଗଲେ, ସେ କଥା ବି ଜାଣେନା । ସେଇଥିପାଇଁ କହୁଛି, ଥରେ ତାଙ୍କୁ ଡାକିଆଣିଲେ ଭଲ ହୁଅନ୍ତା ।

ଉପେନ୍ଦ୍ର ମନେ ମନେ ବିରକ୍ତ ହୋଇ କହିଲେ—ଆପଣ ସେଥିଲାଗି ଉଦ୍‌ବିଗ୍ନ ହେବା ଦରକାର ନାହିଁ । ସେ ତ ମୋର ବନ୍ଧୁ । ଆମର ଯାହା ଭଲମନ୍ଦ, ଆମେ ନିଜ ମଧ୍ୟରେ ସ୍ଥିର କରି ନେଇପାରିବୁ ଯେ ! ତେବେ ଆପଣଙ୍କର ଯଦି ବିଶେଷ କିଛି କାମ ଥାଏ, ତାହାହେଲେ ଡାକେଇ ପଠେଇବି । ମୁଁ ନିଜେ ଯାଇ ଡାକିଆଣିବା ଲାଗି ସମୟ ହେବନି ।

କିରଣମୟୀ ମୃଦୁ ସ୍ୱରରେ କହିଲେ—ଭଲ କଥା । ଲୋକ ପଠେଇ ଡାକେଇ ଆଣିଲେ ହେଲା । ଯିମିତି ହେଲେ ଆସିଲେ ଗଲା । ଦୁଇ ବନ୍ଧୁଙ୍କ ମଧ୍ୟରେ ବୁଝାମଣା ହୋଇଯିବ । କିନ୍ତୁ ମୁଁ ତାର ଭଉଣୀ । ଏତେବଡ଼ ବିପଦ ସମୟରେ ସେ ତ ଠିକଏ ପାଖରେ ରହିବା ଦରକାର ।

—ନାଇଁ, କିଛି ଚିନ୍ତା କରନ୍ତୁନି, ମୁଁ ତାକୁ ଡକେଇ ପଠେଇବି । ଭାଇ ଭଉଣୀଙ୍କ ନୂତନ ସମ୍ବନ୍ଧ କିଭଳି କେବେ ଯେ ଗଢ଼ିଉଠିଲା, ତାହା ସ୍ଥିର କରିବା ଭାର ତାଙ୍କ ଉପରେ ଯେ ନାହିଁ, ସେ କଥା ସେ ମନେ ମନେ ସ୍ଥିର କରିନେଲେ । କିନ୍ତୁ ଯେଉଁ ଆତ୍ମୀୟତାର ଧାର ତାଙ୍କ ଭିତର ଦେଇ ବାଟ କାଟି ଆସିଥିଲା, ସେ ଧାର ଯେ ତାଙ୍କୁ ଅତିକ୍ରମ କରି ବହୁଦୂର ଚାଲିଗଲଣି, ଏ ସଂବାଦ ତାଙ୍କୁ ଆଘାତ କରିପାରିଲାନି । ବନ୍ଧୁ ପ୍ରତି ସେ ଯାହା ଇଚ୍ଛା ତାହା କରିପାରନ୍ତି; କିନ୍ତୁ ଭାଇ-ଭଉଣୀଙ୍କ ନିକଟତମ ସମ୍ବନ୍ଧ ମଧ୍ୟରେ କିରଣମୟୀ କୌଣସି ବନ୍ଧୁକୁ ଯେ କୌଣସି ହସ୍ତକ୍ଷେପ କରିବାକୁ ଦେବେନି, ସେକଥା ବୁଝିବାକୁ ତାଙ୍କର କୌଣସି ବାକି ରହିଲା ନାହିଁ ।

ଛୋଟିଆ ଗଳିଟିକୁ ଶୀଘ୍ର ଶୀଘ୍ର ପାର ହୋଇ ଆସି ଉପେନ୍ଦ୍ର ମେନ ରୋଡ଼ରେ ଗାଡ଼ି ଭଡ଼ା କଲେ । ଅନ୍ଧକାରର ଶୀତଳ ମୃତ୍ୟୁପୁରୀ ବାହାରେ, ସହରର ଏହି ପ୍ରଖର ସୂର୍ଯ୍ୟାଲୋକଦୀପ୍ତ ଜୀବନ୍ତ କର୍ମଚଞ୍ଚଳ ରାଜପଥ ଉପରେ ଠିଆହୋଇ ସୁଦ୍ଧା ସେ ଆରାମ ବୋଧ କଲେ ନାହିଁ ।

ଦରକାର ହେଲେ କିରଣମୟୀ ଯେ କେତେ ଉଗ୍ର ଓ କଠିନ ହୋଇପାରନ୍ତି, ତା ସେ ଦିନେ ଦେଖିଥିଲେ; କିନ୍ତୁ ତାଙ୍କର ଶାନ୍ତ ବିରୋଧ ମଧ୍ୟ ଯେ ତାହା ଅପେକ୍ଷା କମ୍ କଠିନ ନୁହେଁ, ଆଜି ସେ ଏହି କେତୋଟି କଥାରେ ସ୍ପଷ୍ଟ ଅନୁଭବ କଲେ । କିନ୍ତୁ କଳହର କାରଣ ଯାହାହେଉ, ଦୋଷ ଗୁଣର ବିଚାର ସେ ନିଜେ କରିବେ ଏବଂ କାହାକୁ ହାତ ଦେବାକୁ ଦେବେନି, ଏଇ କଥାଟା ତାଙ୍କ ମୁଣ୍ଡରେ ଘୂରିବାକୁ ଲାଗିଲା ।

## ଚବିଶି

ନାରୀ ସମ୍ବନ୍ଧରେ ଉପେନ୍ଦ୍ରଙ୍କର ମତ ପରିବର୍ତ୍ତନ କରିବାର ସମୟ ଆସି ପହଞ୍ଚିଗଲା । ସେ ଆଜି ମନେ ମନେ ସ୍ୱୀକାର କଲେ, ସ୍ତ୍ରୀ ସମ୍ବନ୍ଧରେ ତାଙ୍କର ଗୋଟିଏ ମସ୍ତବଡ଼ ଭୁଲ ତାଙ୍କର ଜ୍ଞାନ ଭିତରେ ରହି ଯାଇଥିଲା । ଇମିତି ବି ନାରୀ ଅଛନ୍ତି, ଯାହା ଆଗରେ ପୁରୁଷର ଅଭ୍ରଭେଦୀ ଶିର ମଧ୍ୟ ଅବନତ ହୋଇଆସେ—ଜୋର ଖଟାଇବାକୁ ପଡ଼େନା, ଆପେ ଆପେ ନଇଁ-ଆସେ । ସେଭଳି ଗୋଟିଏ ନାରୀ କିରଣମୟୀ । ସେଦିନ ରାତିରେ କିରଣ-ମୟୀଙ୍କ ତୁଣ୍ଡରୁ ଯେପରି ଭାଷା ଶୁଣିଥିଲେ, ସେଥିରେ ସେ ସତୀଶ ପାଖରେ ମୁହଁ ଖୋଲି କିଛି କହିପାରିଲେନି ସତ, ମନେ ମନେ ଭାବିଲେ, ଏଭଳି ସ୍ୱଭାବର ନାରୀ ଦୁନିଆ ରେ ବିରଳ । ଏମାନେ ତ ଟିକିକ କଥାରେ ଗଳାରେ ଦଉଡ଼ି ଲଗେଇ ମରିଯିବା ଲୋକ ! କିନ୍ତୁ ଆଜି ସେ ଦେଖିବାକୁ ପାଇଲେ, ଏଭଳି ନାରୀ ପୁଣି ଅତି ସଙ୍କଟ ସମୟରେ ମଧ୍ୟ ମୁଣ୍ଡକୁ ଠିକ୍ ରଖିପାରେ । ଏ ଘରକୁ ସତୀଶ ଆସିବା ଉଚିତ କି ଅନୁଚିତ, ସେ ଯାହା-ହେଉ ପଛେ, କିରଣମୟୀ ଡାକିଛନ୍ତି ଯେତେବେଳେ, ଏ ଖବରଟା ସତୀଶକୁ ଦେବାକୁ ହିଁ ପଡ଼ିବ ।

ବାଟରେ ଯାଉ ଯାଉ ସେ ମନେ ମନେ ଏ କଥାଟାକୁ ଯେତେ ଭାବିବାକୁ ଲାଗିଲେ, ତାଙ୍କ ମନ ସେତିକି ଅକ୍ଷେପରେ ଭରିଉଠିଲା । କାରଣ ସେ ସତୀଶକୁ ଏତେ ଭଲ ପାଉଥିଲେ ବୋଲି ଆଜି ତାଙ୍କ ମନଟା ତା ଉପରେ

ବିତୃଷ୍ଣାରେ ଯେମିତି ଭରିଯାଇଛି । କିନ୍ତୁ ଆଜି ଯେ ସତୀଶ ପ୍ରକାଶ୍ୟରେ ତାର ମୁହଁ ଉପରେ ଚିରଦିନ-ଅଧିକୃତ ଅଗ୍ରଜ ଆସନଟିକୁ ପାଦରେ ଦଳି ଦେଇଗଲା, କୌଣସି ସଂକୋଚ ସୁଦ୍ଧା କଲା ନାହିଁ, ସବୁ ଦୁଃଖଠାରୁ ଏ ଦୁଃଖ ହିଁ ଉପେନ୍ଦ୍ରର ହୃଦୟ ଭିତରଟାକୁ ମନ୍ଥନକରି ପକାଇଲା ।

କିଛିଦିନ ତଳେ ଗାଁ ଘରେ ବସିଥିବାବେଳେ ଖଣ୍ଡିଏ ବେନାମୀ ଚିଠିରେ ସେ ସତୀଶ କଥା ଶୁଣିଥିଲା । ସେ ଚିଠିଟି ରାଖାଲ ଲେଖିଥିଲା । ଯେତେବେଳେ ଦୁଇଜଣଙ୍କ ମଧ୍ୟରେ ଭାବ ଥିଲା, ସେତେବେଳେ ସତୀଶର ନିଜ ମୁହଁରୁ ରାଖାଲ ତାର ଏହି ପରମ ବନ୍ଧୁଟିର ବହୁ ଅସାଧାରଣ କାହାଣୀ ଶୁଣିଥିଲା । ଉପୀନ୍ଦାଙ୍କ ଅସାମାନ୍ୟ ବିଦ୍ୟାବୁଦ୍ଧି ଏବଂ ତାର ତୁଷାରଶୁଭ୍ର ଅକଳଙ୍କ ଚରିତ୍ରର ଖ୍ୟାତି ଏବଂ ସବୁ ଗର୍ବଠୁ ବଡ଼ ଗର୍ବ ଥିଲା ସେଇ ଉପୀନ୍ଦାଙ୍କ ଅପରିମେୟ ସ୍ନେହ । ସେଇଠି ଖଣ୍ଡିଆ ହୋଇଯିବା ଭଳି ମାରାତ୍ମକ ଆଘାତ ଯେ ସତୀଶ ପକ୍ଷରେ ଆଉ କିଛି ହୋଇପାରେନା, ଧୂର୍ତ୍ତ ରାଖାଲ ତାହା ଠିକ୍ ବୁଝିଥିଲା ।

କିନ୍ତୁ ସେ ଚିଠି ସେତେବେଳେ କୌଣସି କାମରେ ଲାଗିଲାନି । ଉପେନ୍ଦ୍ର ଚିଠିଟି ଟୁକୁରେଇ ଫୋପାଡ଼ିଦେଇ ପତ୍ରପ୍ରେରକକୁ ଲକ୍ଷ୍ୟ କରି ମନେ ମନେ କହିଥିଲା — ତୁ ଯିଏ ପଛେ ହୁଅ ଏବଂ ସତୀଶର ଯେତେ ଗୋପନୀୟ କଥା ଜାଣିନା କାହିଁକି, ମୁଁ ତୋ'ଠୁ ବେଶୀ ଜାଣେ ସତୀଶକୁ । ଦିନେ ଦୁଇ ଦିନ ପରେ ସତୀଶର ବାପାକୁ ସେ କହିଥିଲା — ସତୀଶ ଭଲରେ ଅଛି । ତେବେ ମନେ ହେଉଚି, କାହା ସଙ୍ଗେ କଳିକଜିଆ କରି ବସା ଛାଡ଼ି ଅନ୍ୟ ବସାରେ ଯାଇ ରହିଛି । ସେ ଲୋକଟା ତା ନାଁରେ ଇଆଡ଼ୁ ସିଆଡ଼ୁ ଗୁଡ଼ାଏ ବେନାମୀ ଚିଠିରେ ଲେଖି ପଠେଇଛି ।

ବୁଢ଼ାବାପା ପଚାରିଥିଲେ—ଇଆଡ଼ୁ ସିଆଡ଼ୁ ଗୁଡ଼ାକ କ'ଣ କରେ ଉପୀନ୍ ?

ଉପେନ୍ଦ୍ର କହିଥିଲା—ସେଇଥିରୁ ଗୁଡ଼ା ମିଛ କଥା ଶୁଣି ସମସ୍ତ ନଷ୍ଟ କରିବାରେ ଆପଣଙ୍କର କୌଣସି ଲାଭ ନାହିଁ । ମୋରି ହାତରେ ସତୀଶ ମଣିଷ ହୋଇଚି । ମୁଁ ଜାଣେ, ସତୀଶ କ'ଣ କରେ ନ କରେ । ଆପଣ ନିଶ୍ଚିନ୍ତ ରହନ୍ତୁ ।

ଉପେନ୍ଦ୍ରର ଏହି ବିଶ୍ୱାସ ଚୂରମାର ହୋଇଗଲା ସାବିତ୍ରୀକୁ ସ୍ୱଚକ୍ଷୁରେ ଦେଖି । ସନ୍ତୋଷର ନିଜ ନ କକ୍ଷରେ ପ୍ରସାଧାନରତା ଏକାକିନୀ ଜଣେ ସ୍ତ୍ରୀଲୋକ ! ମୁହଁରେ କି ସୁଗଭୀର ଲଜ୍ଜା ! ସମସ୍ତ ଲଜ୍ଜାକୁ ଟପେଇ ସେଇ ଦୁଇଟି ଆୟତ ଚକ୍ଷୁର ବ୍ୟଥିତ ବ୍ୟାକୁଳ ଦୃଷ୍ଟିରେ କି ଶଙ୍କା ଓ ଭୟ ! ଉପୁଚ୍ଚା କ'ଣ କିଛି ଭୁଲ କରିବାର ? ମୁହୂର୍ତ୍ତକ ମଧ୍ୟରେ ରାଖାଲର ସେହି ଚିଠି ଖଣ୍ଡିକର ସମସ୍ତ ଲିପି, ରେଖା, ବିନ୍ଦୁ, ବିସର୍ଗ ଯେମିତି ନିଆଁ ଭଳି ଜଳି ଉଠିଥିଲା । ସନ୍ଦେହ କରିବାର ଆଉ କୌଣସି ଆବଶ୍ୟକ ନ ଥିଲା ।

ଉପେନ୍ଦ୍ରର ସେହି ମୁହୂର୍ତ୍ତରେ ସେଇ ଚିଠି ଖଣ୍ଡିକ ଉପରେ ବିଶ୍ୱାସ ଜନ୍ମି ଥିଲା—ରାଖାଲର କୌଣସି ଭୁଲ ନାହିଁ । ଯାହା ଲେଖିଥିଲା, ଅକ୍ଷରେ ଅକ୍ଷରେ ସତ୍ୟ । ସେ ଚିଠିରେ ସାବିତ୍ରୀ କଥା ଉଲ୍ଲେଖ ଥିଲା, ପୁଣି ସାବିତ୍ରୀର ଭ୍ରୂଲତା ଉପରେ ଗୋଟିଏ କଳାଜାଇ ଯେ ଅଛି, ସେ କଥା ମଧ୍ୟ ଲେଖା-ଥିଲା । କଳାଜାଇଟି ଏତେ ସ୍ପଷ୍ଟ ଯେ ଉପେନ୍ଦ୍ର ପଲକମାତ୍ରେ ସେଇଟିକୁ ଦେଖି ପାରିଥିଲା ଏବଂ ଏଇ ସେଇ ସାବିତ୍ରୀ ନିଶ୍ଚୟ, ଏକଥା ମନେ ମନେ ସ୍ଥିର କରି ନେଇଥିଲା ।

ସନ୍ତୋଷକୁ ଡାକିବା ଭଳି ଗୋଟାଏ ଅପ୍ରିୟ କାମ ଯିବାବେଳେ କରିହେଇ ମିବ କି ନାହିଁ ସେ କଥା ମନେ ମନେ ସ୍ଥିର କରୁ କରୁ ହଠାତ୍ ଗାଡ଼ିଟା ଆସି ଜ୍ୟୋତିଷ ଘର ଦ୍ୱାରମୁହଁରେ ହାଜର ହେଲା । ଘର ଭିତରେ ପଶୁ ପଶୁ ତା ଆଖି ସିଧା ଯାଇ ପଡ଼ିଲା ଦୋତାଲା କୋଠା ଉପରେ ।

ସେ ଦେଖିଲା, ଯାହା ଆଶା କରିଥିଲା, ତାହା ହିଁ······ଉନ୍ମୁକ୍ତ ସୁମାର୍ଜ ବାତାୟନ ପାଖରେ ଗୋଟିଏ ସ୍ତବ୍ଧ ପ୍ରତିମା ଏଇ ବାଟକୁ ଯେମିତି ମନପ୍ରାଣ ଢାଳି ଦେଇ ଠିଆ ହୋଇଛି । ଦୂରରୁ ଭଲ କରି ଦେଖିବା ସମ୍ଭବ ନୁହେଁ । ତେବେ ତାର ମନଶ୍ଚକ୍ଷୁରେ ଏଇ ବାତାୟନବର୍ତ୍ତିନୀର ଓଷ୍ଠାଧରର ଈଷତ୍ କମ୍ପନଟିକକରୁ ଚକ୍ଷୁ ପଲ୍ଲବ ପ୍ରାନ୍ତ ପର୍ଯ୍ୟନ୍ତ ଗୋଟିଏ ଜଳରେଖା ଯେ ଗଡ଼ିଗଲୁଛି, ସେ କଥା ସେ ସ୍ପଷ୍ଟ ଦେଖିପାରିଲା ।

ତା ମୁଣ୍ଡରୁ ସବୁ ଅଭିମାନ ଅପମାନ କୁଆଡ଼େ ଉଭେଇଗଲା । ଖାଲି ଗୋଟାଏ କଥା ଭାବିବାକୁ ଲାଗିଲା, ସୁରବାଳାର ସାଙ୍ଗ ସାଥି ଏବଂ

ସକାଳଟା କି କଷ୍ଟରେ କଟି ନ ଥିବ ! ଏ ଗଭୀର ରାତିରେ ଅସୁସ୍ଥ ସ୍ୱାମୀକୁ ଘରୁ ଛାଡ଼ିଦେଇ ସେ କ'ଣ ଅସ୍ଥିରରେ ରହିପାରେ ? ଏଇ କଥା ଭାବିବା ମାତ୍ରେ ଉପେନ୍ଦ୍ର ମନେ ମନେ ଟିକିଏ ହସିଉଠିଲା; କିନ୍ତୁ ପର କ୍ଷଣରେ ତା ଆଖିକୋଣ ଓଦା ଓଦା ହୋଇଆସିଲା ।

ସରୋଜିନୀ ବୋଧହୁଏ ଖବର ପାଇ ଆଗରୁ ଆସି ବାରଣ୍ଡାରେ ଉପେନ୍ଦ୍ରକୁ ଅପେକ୍ଷା କରି ରହିଥିଲା । ଉପେନ୍ଦ୍ରକୁ ଦେଖିବା ମାତ୍ରେ ଏକାବେଳକେ ହସି ହସି ଘର ଫାଟେଇ ପକାଇଲା । ଗାଡ଼ି ଭିତରୁ ଓହ୍ଲାଉ ନ ଓହ୍ଲାଉଣୁ କହିଉଠିଲା— ବାହାରେ ଦଣ୍ଡେ ବି ରହିପାରିବନି, ଚାଲବଟି ଶୀଘ୍ର ଉପରକୁ ।

ଉପେନ୍ଦ୍ର ଯଥାସାଧ୍ୟ ଗମ୍ଭୀର ମୁଖରେ କାରଣ ପଚାରନ୍ତେ ନିଜେ ହସି-ଉଠିଲା । ସରୋଜିନୀ ହସି ହସି କହିଲା—ଗୋଟିଏ ଭଲ ଲୋକଙ୍କୁ କାଲି ରାତିରେ ଜମା କରିଦେଇ ଗଲ, ନିଜେ ଶୋଇଲେନି କି ମତେ ବି ଶୋଇ-ଦେଲେନି । ଗାଡ଼ିର ଶବ୍ଦ ହେଲାମାତ୍ରେ ଯାଇ ଝରକା ପାଖରେ ହାଜର !··· ଆରେ, ଚିଠି ଲେଖି ବସିଗଲ ଯେ । ନା, ନା ସେ କଥା ହେବନି, ଯାଅ ଆଗ ଦେଖାଦେଇ ଆସ; ତା ପରେ ଯା ଇଚ୍ଛା ତା କର·········

ବାହାର ବାରଣ୍ଡାର ଗୋଟିଏ ସ୍ଲେଟ ଟେବୁଲ ଉପରେ ଲେଖିବାର ସରଞ୍ଜାମ ଥିଲା । ଉପେନ୍ଦ୍ର ଖଣ୍ଡିଏ କାଗଜ ଟାଣିନେଇ କହିଲା—ବରଂ ଚିଠି ଲେଖିସାରିବା ପରେ ଯାହା କରିବାକୁ କୁହ କରିବି; କିନ୍ତୁ ତା ପୂର୍ବରୁ ନୁହେଁ । ଗୋଟିଏ ମିନିଟ ଇଚ୍ଛା ହେଲେ ଯାଇ ଖବର ଦେଇ ଆସିପାର ।

ସରୋଜିନୀ ହସ ହସ ମୁହଁରେ କହିଲା—ମୋର ଖବର ଦେବାର ଦରକାର ନାହିଁ । ସେଇ ତ ମତେ ଖବର ନେବାକୁ ପଠେଇଛନ୍ତି । ଆଚ୍ଛା, ମିନିଟିଏ ଠିଆ ହୋଇ ରହୁଚି, କାମ ସାରନ୍ତୁ, ଆପଣଙ୍କୁ ସାଙ୍ଗରେ ନେଇ ଯାଇ ଯିବି ।

ଉପେନ୍ଦ୍ର ଆଉ କୌଣସି ଜବାବ ନ ଦେଇ ଚିଠି ଲେଖିବାକୁ ଲାଗିଲା । ଲେଖୁ ଲେଖୁ ତା ମୁହଁ ଉପରେ ବ୍ୟଥା ଓ ବିରକ୍ତିର ଚିହ୍ନ-ଗୁଡ଼ାକ ଯେ ସରୋଜିନୀ ପାଖରେ ରହି ସ୍ପଷ୍ଟ ଦେଖିବାକୁ ପାଉଥିଲା, ତାହା ସେ ଜାଣି ସୁଦ୍ଧା ପାରିଲା ନାହିଁ ।

ଚିଠି ଲେଖା ଶେଷ କରି ଲଫାପା ଭିତରେ ପୂରେଇ ଉପେନ୍ଦ୍ର ମୁହଁ ଟେକି ଗୁହାଁଲା । କୋଚମ୍ୟାନ ଆସି ସରୋଜମାଙ୍କୁ ଖବର ଦେଲା - ମା, ଗାଡ଼ି ପ୍ରସ୍ତୁତ ହେଲାଣି ।

ଉପେନ୍ଦ୍ର ପଚ୍ଚରିଲା – ଆପଣ ବାହାରିବେ ନା କ'ଣ ?

ସରୋଜମା କହିଲା – ହଁ । ଗ୍ରେଟ ପିଆନୋଟା ମରାମତି କରିବାକୁ ଦେଇଚି, ଯିବି ଟିକିଏ ଦେଖିଆସିବି କେତେ ଦୂର ଗଲା ।

ଉପେନ୍ଦ୍ର ଖୁସି ହୋଇ କହିଲା—ଠିକଣା ଲେଖାଅଛି, ଟିକିଏ କଷ୍ଟ କରି ସଇସ ହାତରେ ଘର ଭିତରକୁ ଯଦି ପଠେଇଦେବ··· କହି ଉପେନ୍ଦ୍ର ସରୋଜମା ହାତକୁ ଚିଠିଟା ବଢ଼େଇଦେଲା ।

ସରୋଜମା କିଛି ସମୟ ଧରି ଚିଠିର ଠିକଣାକୁ ଗୁହାଁ ରହିଲା । ଗ୍ରେଟ ଠିକଣାଟିଏ । ତେଣୁ ବେଶୀ ସମୟ ଲାଗିଲାନି ପଢ଼ିବା ପାଇଁ । ତା ପରେ, ମୁହଁ ଉଠେଇ କହିଲା—ସତୀଶବାବୁ ଏଥର ଆମ ଘରକୁ ନ ଆସିଲେ କାହିଁକି ?

—ସିଏ ତ ଆମ ସାଥିରେ ଆସିନି, ସେ ଏଠି ବରାବର ରହନ୍ତି ।

ଏ ସମ୍ବାଦରେ ସରୋଜମା ଚମକି ଉଠିଲା । ଉପେନ୍ଦ୍ରର ଏସବୁ ଦେଖିବା ଭଳି ସମୟ ନ ଥିଲା; ଥିଲେ ନିଶ୍ଚୟ ଆଶ୍ଚର୍ଯ୍ୟ ହୋଇ ପଡ଼ିଥାନ୍ତା ।

ସରୋଜମା ନିଜର ଲଜ୍ଜା ଲୁଚିଦେଇ ସହଜ ଭାବେ କହିବାକୁ ଚେଷ୍ଟା କଲା – ସେ କେବେ ଏଆଡ଼କୁ ଭୁଲରେ ସୁଦ୍ଧା ମାଡ଼ି ନାହାନ୍ତି; କିନ୍ତୁ ଏତେ ଦିନ ହେଲା ଏଇ କଲକତାରେ ରହିଛନ୍ତି ।

ଉପେନ୍ଦ୍ର ଅନ୍ୟମନସ୍କ ଭାବେ ଆଉ କ'ଣ ଗୋଟାଏ କଥା ଭାବୁ-ଥିଲା । କହିଲା – ବୋଧହୁଏ ଆପଣଙ୍କ କଥା ତାର ମନେ ନାହିଁ । କଥା କେତେ ସହଜ, କିନ୍ତୁ କି କଠିନ ଭାବରେ ଆଉ ଗୋଟାଏ କାନରେ ନ ବାଜିଲା !

ଭଲ କଥା ! ଦ୍ୱିବାକର କାହିଁ, ତାକୁ ଦେଖୁ ନାହିଁ ଯେ ।

ସେ ଦାଦାଙ୍କ ସାଙ୍ଗରେ ହାଇକୋର୍ଟ ଆଡ଼େ ବୁଲିବାକୁ ଯାଇଛନ୍ତି । ଚାଲନ୍ତୁ, ଆପଣଙ୍କୁ ସାଙ୍ଗରେ ନେଇ ତାଙ୍କ ଜମା କରିଦେଇ ଆସେ— କହି ସରୋଜମା ଘର ଭିତରେ ପ୍ରବେଶ କଲା ।

୧୫।୨୦ ମିନିଟ ପରେ ଫେରିଆସି ସେ ଗାଡ଼ିରେ ବସିଲା । ଆଦେଶମତେ ଗାଡ଼ି ସତୀଶ ବସା ଆଡ଼େ ଗୁଲିଲା । ଗାଡ଼ି ଭିତରେ ବସି

ସରୋଜନୀର ବୁକ୍ ଭିତରଟା କମ୍ପି ଉଠିଲା । ଗାଡ଼ି ଯେମିତ ଆଗକୁ ଆଗ ଚ୍ଛଲିଲା, ହୃତ୍‌ସ୍ପନ୍ଦନ ସେତିକ ଦୁର୍ନିବାର ହୋଇଉଠିଲା । ଠିକ୍ ମନେହେଲା, ଯେପରି ସେ ଗୋଟାଏ ଅତି ଗୁରୁତର ଦାୟିତ୍ୱ ବହନ କରି ଯାଉଛି ।

କିଛି ସମୟ ପରେ ଗାଡ଼ି ସଞ୍ଜୀବ ବସା ଆଗରେ ଆସି ଠିଆ ହେଲା । ସଇସ ଚିଠିଟି ଧରି ଘର ଭିତରକୁ ଗଲା । ସରୋଜନୀ ଗାଡ଼ିର ଗୋଟାଏ କୋଣରେ ବସି, କାନ ପାତି କବାଟ ଉପରେ ସଇସର କରାଘାତ ଶୁଣିବାକୁ ପାଇଲା । କିଛି ସମୟ ପରେ କବାଟ ଖୋଲା ଶବ୍ଦ ଏବଂ ତା ଭିତରକୁ ଯିବା ଭଳି ଅନୁଭବ କଲା । ତା ପରେ··· ତା ପରେ ସରୋଜନୀ କାହାର ସୁପରିଚିତ ଗମ୍ଭୀର କଣ୍ଠସ୍ୱର କାନରେ ପଡ଼ିବାର ଆଶଙ୍କା ଓ ଆକାଂକ୍ଷାରେ ସ୍ତବ୍ଧ କଣ୍ଟକିତ ହୋଇ ବସିରହିଲା । ସଞ୍ଜୀବ ନିଶ୍ଚୟ ଜାଣିବାକୁ ପାଇବ ଯେ ସେ ଗାଡ଼ି ଭିତରେ ଅଛି ଏବଂ ଜାଣିସାରି ନିଶ୍ଚୟ ଗାଡ଼ି ପାଖକୁ ଆସି ଡାକିନେବ । ତାର ଏତିକ ବି ମନେ ହେଲା ନାହିଁ ଯେ ଯେଉଁ ଲୋକ ଅତି ଉଦାସୀ ହୋଇ ସୁଦ୍ଧା ଏତେ ସହଜରେ ଭୁଲି ଯାଇପାରେ, ସେ ଲୋକ ପାଖକୁ ସେ ଆସିଚି, ଏ ଖବର ଟିକିଏ ହେଲେ ତାକୁ ବିଚଳିତ କରିପାରିବ ନାହିଁ ।

ପୁଣି ସଇସର କଣ୍ଠସ୍ୱର ଦ୍ୱାର ପାଖରେ ଶୁଣାଗଲା । କବାଟ ମଧ୍ୟ ବନ୍ଦ ହୋଇଗଲା । କ୍ଷଣକାଳ ପରେ ଚିଠିଟି ଫେରାଇ ନେଇ ଆସି ସଇସ କହିଲା—ବାବୁ ଘରେ ନାହାନ୍ତି ।

—ଘରେ ନାହାନ୍ତି ? ମୁହୂର୍ତ୍ତକାଳ ପାଇଁ ସରୋଜନୀ ସ୍ୱସ୍ତି ଅନୁଭବ କଲା । ମୁହଁକୁ ଛୁଆଡ଼ି କହିଲା—ଚିଠିଟା ଫେରାଇ ନେଇ ଆସିଲୁ କାହିଁକି ? ଘରେ କାହାକୁ ଦେଇଆ ।

ସଇସ କହିଲା—ବାବୁ କଲିକତାରେ ନାହାନ୍ତି । ୧୦ଟା ବେଳ ଟ୍ରେନରେ ଗାଁକୁ ଚ୍ଛଲି ଯାଇଛନ୍ତି ।

କଥାଟା ଶୁଣି ନିଜେ ଯାଇ ବସାଟାକୁ ଦେଖିଆସିବା ଲାଗି କାହିଁକି ଯେ ତାର ଦୁର୍ଦ୍ଦମନୀୟ ସ୍ପୃହା ହେଲା, ତାର କାରଣ ସେ ଠିକ୍‌ମତେ ନିଜେ ବି ବୁଝିପାରିଲା ନାହିଁ । କିନ୍ତୁ ପରକ୍ଷଣରେ ଓହ୍ଲାଇ ଆସିଲା ଏବଂ ଆଜ୍ଞାଥରେ କବାଟ ଖୋଲି ଭିତରେ ପଶିଲା । ହିନ୍ଦୁସ୍ତାନୀ ପୂଜାରୀ ଜନିଷପତ୍ର ଜଗିବା

କାମରେ ନିଯୁକ୍ତ ଥିଲା । ତାର ସାହାଯ୍ୟରେ ସବୁ ଘରଗୁଡ଼ାକ ବୁଲିବାଳି ଦେଖିଆସି ତଳକୁ ଆସିବା ବାଟରେ ଅଲଗୁଣିରେ ଝୁଲା ହୋଇଥିବା ଗୋଟାଏ ଅର୍ଦ୍ଧମଳିନ ଚଉଡ଼ା ଧଡ଼ିର ଶାଢ଼ୀ ଉପରେ ତାର ଦୃଷ୍ଟି ପଡ଼ିଲା । କୌତୂହଳୀ ହୋଇ ପ୍ରଶ୍ନ କରିବାରେ ପୂଜାରୀ ନିଜ ଭାଷାରେ କହିଲା—ଲୁଗାଟି ମା'ଙ୍କର ।

ସାବିତ୍ରୀ ଦି'ପହରେ ଗାଧୁଆ ପାଧୁଆ ସାରି ତାର ପିନ୍ଧା ଲୁଗାଟି ଏଇଠି ଶୁଖେଇଦେଇ ଯାଇଥିଲା । ତାହା ସେପର୍ଯ୍ୟନ୍ତ ସେମିତି ଟଙ୍ଗା ହୋଇ ରହିଥିଲା । ସରୋଜିନୀ ଆଶ୍ଚର୍ଯ୍ୟ ହୋଇ ନାନା ଆଡ଼ୁ ନାନା କଥା ପଚାରିବା ପ୍ରସଙ୍ଗରେ ଏ ମାଆଟି କିଏ ପଚାରିବାରେ ତା ସମ୍ବନ୍ଧରେ ଯାହା ଜାଣିବାକୁ ପାଇଲା, ସେଥିରେ ତା'ର ଆଶ୍ଚର୍ଯ୍ୟର ମାତ୍ରା ବହୁତ ବଢ଼ିଗଲା । ଯେଉଁ ବ୍ୟାପାର ସବୁବେଳେ ଘଟେନା ଏବଂ ଯାହା ଭିତରେ ପାପ ଅଛି, ତାହା ଚଳେଇ କରି ବୁଝି ନ ପାରିଥିଲେ ସମସ୍ତେ ନିଜ ବୁଦ୍ଧି ଅନୁସାରେ ଏକାରକମ ବୁଝିପାରନ୍ତି ।

ଏହି ପୂଜାରୀଟି ମଧ୍ୟ ସସ୍ତ୍ରୀକ ଉପେନ୍ଦ୍ରର ଆସିବା ଏବଂ ସଙ୍ଗେ ସଙ୍ଗେ ଇମିତି ଚାଲିଯିବା ପରେ ପରେ ଆଜି ସକାଳେ ବାବୁଙ୍କ ଅକସ୍ମାତ୍ ପ୍ରସ୍ଥାନରେ ଏହି 'ମା'ଟିର ଭୂମିକା ଯେ କ'ଣ, ସେ ଠିକଏ ଠିକଏ ଠଉରେଇ ନେଇଥିଲା । ବିଶେଷ କରି ସନ୍ତୋଷର ଉଦ୍‌ଭ୍ରାନ୍ତ ଆଚରଣ ସମସ୍ତଙ୍କ ଦୃଷ୍ଟିରେ ପଡ଼ିବା ସ୍ୱାଭାବିକ । ତେଣୁ ସେ ସାବିତ୍ରୀ ଦେହ ଖରାପ ପ୍ରଭୃତି ନାନା କଥା କହିଲା ଏବଂ ତାଙ୍କର ଦେଖାଶୁଣା କରିବା ଲାଗି ଯେ ବାବୁ ଇମିତି ବ୍ୟାକୁଳ ଓ ବ୍ୟସ୍ତ ଭାବରେ ଚାଲିଯାଇଛନ୍ତି, ଏ କଥା ମଧ୍ୟ ସେ ଏକାରକମ ସରୋଜିନୀକୁ ବୁଝେଇଦେଲା । ସରୋଜିନୀ ଅନ୍ତତଃ ଏଇ ଗୋଟିଏ କଥା ଜାଣିପାରିଲା ଯେ ଉପେନ୍ଦ୍ରବାବୁ ପ୍ରମୁଖ ପ୍ରଥମେ ଏହି ଘରକୁ ଆସିଥିଲେ—ବେଡ଼ିଂପତ୍ର ମଧ୍ୟ ସବୁ ଓହ୍ଲା ହୋଇଥିଲା; କିନ୍ତୁ ତତ୍‌କ୍ଷଣାତ୍ ସେଇ ଗାଡ଼ିରେ ଏ ଘରୁ ଚାଲିଯିବାକୁ ହେଲା । ଅଥଚ ସେମାନଙ୍କ ଭିତରୁ କେହିହେଲେ ସନ୍ତୋଷର ନାମ ସୁଦ୍ଧା ଉଲ୍ଲେଖ କରିନାହାନ୍ତି ।

ତାପରେ ଆଜିର ଏ ଚିଠି—ସ୍ପଷ୍ଟ ବୁଝାଗଲା, ଉପେନ୍ଦ୍ର ତାର ବନ୍ଧୁଙ୍କର ଆକସ୍ମିକ ପ୍ରସ୍ଥାନର ସମ୍ବାଦ ଜାଣନ୍ତିନି । ଅଧୀର ଭାବରେ ସେ କ୍ରମାଗତ ଏଇ ରମଣୀଟି ସମ୍ବନ୍ଧରେ ନାନା ରକମ ପ୍ରଶ୍ନ କରି ତାର ବୟସ ଏବଂ ସୌନ୍ଦର୍ଯ୍ୟର ଯେଉଁ ତାଲିକା ପାଇଲା, ତାହା ସତ୍ୟକୁ ଟପି ବହୁ ଊର୍ଦ୍ଧ୍ୱକୁ

ଚାଲିଗଲେ । ଅବଶେଷରେ ଫେରିଆସି ସେ ଗାଡ଼ିରେ ବସିଲା । ସେତେବେଳେ ତାର ପିଆନୋ ବଜାଉଥିବା ସଉକ କୁଆଡ଼େ ଉଡ଼ିଗଲା ଏବଂ ଅଜ୍ଞାତ ଗୁରୁଭାବରେ ବୁକୁ ଭିତରଟା ଭାରାକ୍ରାନ୍ତ ହୋଇଉଠିଲା ।

ଏହି ରହସ୍ୟମୟୀଟି କିଏ ଏବଂ କି ସୂତ୍ରରେ ଆସିଥିଲା, ତାହା ଜଣାଗଲାନି । କିନ୍ତୁ ଗୋଟାଏ ଲୁଚକାଳିର ଅସ୍ତିତ୍ୱ ତା ମନ ଭିତରେ ଦୃଢ଼ ଭାବରେ ମୁଦ୍ରିତ ହୋଇ ରହିଲା ।

ସତୀଶ ଓ କିରଣମୟୀ ଉପରେ ବିରକ୍ତ ଓ ଅଭିମାନ ଉପେନ୍ଦ୍ରର ଯେତେ ବଡ଼ ହେଉନା କାହିଁକି, ତାକୁ ଅବହେଳା କରିବା ତାର ସ୍ୱଭାବ ନୁହେଁ । ତେଣୁ ଖିଆପିଆ ସାରି ଦିବାକରଙ୍କ ଘରକୁ ଫେରିଆସିବା ଲାଗି ଇଚ୍ଛା ଥିଲା ସତ, କିନ୍ତୁ କିଛିଦୂର ଯାଇ ତାକୁ ପରାଜିତ କଲା । ବିଶେଷ କରି ଝିଅଟି ଇମିତି ଭାବ ଦେଖେଇ ଦେଇଛି ଯେ ତାକୁ ଅତିକ୍ରମ କରି ଚାଲିଯିବା ଅସାଧ୍ୟ ହୋଇଉଠିଲା ।

ସ୍ନାନ ପରେ ତାର ଉତ୍କଣ୍ଠିତ ନିଦ୍ରା ଭାଙ୍ଗିଲାବେଳକୁ ପ୍ରାୟ ସନ୍ଧ୍ୟା । ଧଡ଼ପଡ଼ କରି ଉଠିବାମାତ୍ରେ ପାଖରେ ଟିପୟ ଉପରେ ଥିବା ଖଣ୍ଡିଏ ଚିଠି ଉପରେ ତାର ଦୃଷ୍ଟି ପଡ଼ିଲା । ଉଠେଇ ନେଇ ଦେଖିଲା, ପତ୍ରଟି ସେମିତି ବନ୍ଦ ରହିଛି । ଯେଉଁ କାରଣରୁ ହେଉ, ତାହା ସତୀଶ ହାତରେ ପଡ଼ିନାହିଁ । ଶବ୍ଦ ଶୁଣି ଘରବାଲା ଘର ଭିତରକୁ ପଶିଆସି କହିଲା—ସତୀଶ କଲିକତାରେ ନାହାନ୍ତି । ୧୦ଟା ଗାଡ଼ିରେ ଗାଁକୁ ଯାଇଛନ୍ତି ।

ଏ ସମ୍ବାଦ ଶୁଣି ଉପେନ୍ଦ୍ରର ମୁହଁ କଳା ପଡ଼ିଗଲା । ପ୍ରଥମେ ତାର ମନେ ହେଲା, ଏଇ ଅପରିଚିତ ସହର ଭିତରେ ହାରାଣର ଆସନ୍ନ ମୃତ୍ୟୁ ସଂକ୍ରାନ୍ତ ଯାବତୀୟ କର୍ତ୍ତବ୍ୟ ଏବେ ଏକାକୀ ତାକୁଇ କରିବାକୁ ପଡ଼ିବ । ଓଃ, ବାପରେ କେତେ କାମ ! ଡାକ୍ତର ଡକା, କିନିଷପତ୍ର ଯୋଗାଡ଼ କରିବା, ସଦ୍ୟ ବିଧବା ଓ ଜନନୀ-କୋଳରୁ ମୃତ ଦେହକୁ ଟାଣି ନେଇ ଯିବା—ଏଇ ମର୍ମାନ୍ତିକ ଶୋକର ଦୃଶ୍ୟକୁ କଳ୍ପନା କରିବା ମାତ୍ରେ ତାର ସର୍ବାଙ୍ଗ ପଥର ଭଳି ଭାରି ହୋଇଗଲା । ନିଜର ଅଜ୍ଞାତସାରରେ ସେ ସତୀଶ ଉପରେ ଯେ କେତେ ନିର୍ଭର କରି ବସି ରହିଥିଲା, ତାହା ତାର ଅଭିମାନ ଓ ଅପମାନର ଆବରଣ ଭେଦ କରି ଦେଖାଦେଲା ।

ଏହିସବୁ କାର୍ଯ୍ୟ ଉପେନ୍ଦ୍ରର ପ୍ରକୃତିବିରୁଦ୍ଧ । ସାଧାରଣତଃ ସେ କୌଣସି ବିନ ସ୍ତ୍ରୀ ଭିତରେ ପଡ଼ିବାକୁ ଚାହାନ୍ତି ନାହିଁ । କିନ୍ତୁ ସତୀଶ ପକ୍ଷରେ ଏ କାମଟା କେତେ ସହଜ ! ଗାଁରେ ଇମିତି ଲୋକ କେହି ମରି ନାହାନ୍ତି, ଯାହାକୁ ନେବା ପାଇଁ ସତୀଶ ତାର କର୍ମପଟୁ ସୁସ୍ଥ ସବଳ ଦେହଟିକୁ ନେଇ ଠିଆ ହୋଇ ନାହିଁ ଏବଂ ସମସ୍ତ ଅପ୍ରିୟ କାର୍ଯ୍ୟ ବିନା ଆଡ଼ମ୍ବରରେ ସଂପନ୍ନ କରି ନାହିଁ । ଦୁଃସମୟରେ ସମସ୍ତେ ସତୀଶକୁ ଖୋଜଥାନ୍ତି ଏବଂ ତାର ଆଗମନରେ ଶୋକାର୍ତ୍ତ ଓ ବିପନ୍ନ ଗୃହସ୍ଥ ଦୁଃଖ ମଝିରେ ସାନ୍ତ୍ୱନା ଓ ସାହସ ପାଇଥାଏ । ସେ ଯେତେବେଳେ ଏକାବେଳକେ କଲିକତା ଛାଡ଼ି ଚାଲିଗଲା, ସେତେବେଳେ ଉପେନ୍ଦ୍ରକୁ ଆଉ ବାଟଘାଟ କିଛି ଦେଖାଗଲା ନାହିଁ ।

ସୁରବାଳା ସ୍ୱାମୀଙ୍କ ମୁହଁର ଭଙ୍ଗୀକୁ ଲକ୍ଷ୍ୟ କରି ହାରାଣ୍‌ର ଅବସ୍ଥା କଥା ପଚାରିଲା; କିନ୍ତୁ ସତୀଶ ପ୍ରସଙ୍ଗ ବିଲକୁଲ ଉଠାଇଲା ନାହିଁ । ସରୋଜିନୀ ଫେରିଆସି କଥା ବାହାର କରିବା ଲାଗି ଗଳ୍ପ ଛଳରେ ଯାହା କହିଥିଲା, ସେଥିରୁ କାଲି ରାତିର ଘଟଣା ସେ ଅନୁମାନ କରି ନେଇଥିଲା । ସତୀଶ ଯେ ଉପେନ୍ଦ୍ରର କେତେ ଅନ୍ତରଙ୍ଗ ବନ୍ଧୁ, ସେ କଥା ସେ ଜାଣେ ବୋଲି ସତୀଶ କଥା ନ ଉଠେଇ ଏଡ଼େଇଦେଲା ।

ସୁରବାଳାର ସାଂସାରିକ ବୁଦ୍ଧି ଉପରେ ଉପେନ୍ଦ୍ରର କୌଣସି ଆସ୍ଥା ନ ଥିଲା ବୋଲି ସେ କୌଣସି ଦିନ ସ୍ତ୍ରୀ ପାଖରେ କୌଣସି ସମସ୍ୟା ଉଲ୍ଲେଖ କରେ ନାହିଁ; କିନ୍ତୁ ଏକ୍ଷଣି ସେ ନିଜକୁ ଏତେ ବିପନ୍ନ ବୋଲି ଭାବୁଥିଲା ଯେ ତତ୍‌କ୍ଷଣାତ୍ ସମସ୍ତ ଅବସ୍ଥା ପ୍ରକାଶ କରି ବ୍ୟାକୁଳ ଭାବରେ କହିଲା—ସତୀଶ ଯେ ମତେ ଏ ବିପଦ ମଝିରେ ପକେଇଦେଇ ଚାଲିଯିବ ସୁର, ଏକଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଏକା ଏକା ଏ ଅଜଣା ଜାଗାରେ ମୁଁ କରେ କ'ଣ ? ଉପେନ୍ଦ୍ର ଏତିକ କହି ସ୍ତ୍ରୀ ମୁହଁକୁ ଅସହାୟ ଶିଶୁଟି ଭଳି ଚାହିଁରହିଲା ।

କିନ୍ତୁ ଆଶ୍ଚର୍ଯ୍ୟର କଥା, ସ୍ୱାମୀଙ୍କର ମୁହଁରୁ ଏତେବଡ଼ ବିପଦ ଖବର ପାଇ ସୁଦ୍ଧା ସୁରବାଳା ମୁହଁରେ ତିଳେହେଲେ ଉଦ୍‌ବେଗ ପ୍ରକାଶ ପାଇଲା ନାହିଁ । ସେ ପାଖକୁ ଲାଗିଆସି ସ୍ୱାମୀଙ୍କର ଗୋଟାଏ ହାତକୁ ଧରି ଟାଣିଆଣି ପୁଣି ଥରେ ବିଛଣାରେ ବସେଇ ଦେଇ ଧୀର ଭାବରେ କହିଲା—

ଏତେ ଭାବୁଛ କାହିଁକି, ଏ କଲିକତା ସହରରେ କାହା ଲାଗି କାହାର କାମ ଅଟକି ଯିବନି । ଶୀଘ୍ର ତିଆରି ହୋଇ ରୁହ, ମୁହଁ ଧୋଇ ସେତିକି ପିଇ-ସକାଅ । ଡାକ୍ତରଙ୍କ ସାଙ୍ଗରେ ଧରି ମୁଁ ଯିବି, ତୁମେ ଆଗେ ଯାଅ ।

ଉପେନ୍ଦ୍ର ଅବାକ୍ ହୋଇ କହିଲା – କଣ ହେଲା, ତୁମେ ଯିବ ?

ସୁରବାଳା ଅବିଚଳିତ ଭାବରେ କହିଲା—ହଁ, ଯିବି । ଯାଇପି ଲୋକଙ୍କ ଦୁଃଖ ସମୟରେ ପାଖରେ ରହିବା ଯାଇପି ଲୋକଙ୍କ କାମ । ଏହା କହି ସେ ଉପେନ୍ଦ୍ରର କୌଣସି ଅନୁମତିକୁ ଅପେକ୍ଷା ନ କରି ପାଖଘରୁ ଖାଦ୍ୟ ଆଣି ସ୍ୱାମୀଙ୍କ ଆଗରେ ଥୋଇଦେଲା । ଡାକ୍ତରଙ୍କୁ ସମ୍ବାଦ ଦେଇ ନିଜେ ପ୍ରସ୍ତୁତ ହେବା ଲାଗି ଶୀଘ୍ର ବାହାର ହେଲା ।

ପ୍ରତି ଘରେ ଘରେ ସେତେବେଳେ ସନ୍ଧ୍ୟାଦୀପ ଜଳି ଉଠୁଥିଲା । ଠିକ୍ ଏହି ସମୟରେ ସେମାନେ ହାରାଣ୍ ଘରେ ପହଞ୍ଚିଲେ । ଆଗ-ପଟ ଦରଜା ଖୋଲା, କିନ୍ତୁ ତଳେ କେହିହେଲେ ନାହାନ୍ତି । ଚାରିଆଡ଼େ ଅନ୍ଧକାର, ନିସ୍ତବ୍ଧତା । ଶ୍ମଶାନ ଭଳି ସ୍ତବ୍ଧ । ଉଭୟଙ୍କୁ ସାବଧାନତା ସହକାରେ ଅନୁସରଣ କରିବାକୁ ଇଙ୍ଗିତ ଦେଇ ଉପେନ୍ଦ୍ର ନିଃଶବ୍ଦରେ ଉପରକୁ ଉଠି ହାରାଣ୍ର ରୁଦ୍ଧ କବାଟ ସମ୍ମୁଖରେ କ୍ଷଣକାଳ ଲାଗି ସ୍ତବ୍ଧ ହୋଇ ଠିଆ ହୋଇପଡ଼ିଲା । ଭିତରୁ କେବଳ ଗୋଟାଏ ମର୍ମ-ଭେଦୀ ଦୀର୍ଘଶ୍ୱାସ କାନରେ ଆସି ପଡ଼ିଲା । କମ୍ପିତ ହସ୍ତରେ ଦ୍ୱାର ଠେଲି ଖୋଲିବା ମାତ୍ରେ ଅନ୍ଧାର ଶେଯ ଉପରେ ଆପାଦମସ୍ତକ ବସ୍ତ୍ରାଚ୍ଛାଦିତ ହାରାଣର ମୃତ ଦେହ ଆଖିରେ ପଡ଼ିଲା । ଗୋଡ଼ଦିଗ ମଝିରେ ମୁହଁ ଗୁଞ୍ଜି ସଦ୍ୟ ବିଧବା କିରଣମୟୀ ବସିରହିଛି । ସେ ମୁହଁ ଉଠେଇ ଦେଖିଲି ଏବଂ ପରକ୍ଷଣରେ ଉଠି ଠିଆହୋଇ ଆର୍ତ୍ତକଣ୍ଠରେ 'ମା' ବୋଲି ଚିତ୍କାର କରି ଉପେନ୍ଦ୍ର ପାଦତଳେ ମୂର୍ଚ୍ଛିତ ହୋଇ ପଡ଼ିଗଲା ଏବଂ ସେଇ ମୁହୂର୍ତ୍ତରେ ନିମିଷକ ଭିତରେ ଉଦ୍‌ଭ୍ରାନ୍ତ ହତବୁଦ୍ଧି ସ୍ୱାମୀକୁ ଏକପାଖକୁ ଠେଲିଦେଇ ଘରେ ପଶି ସୁରବାଳା କିରଣମୟୀର ମୁହଁଟିକୁ ନିଜ କୋଳ ଭିତରକୁ ଟାଣିନେଲା ।

## ପଚିଶି

ଅସ୍ଥି-ମାଂସ-ମେଦ-ମଜ୍ଜା-ରକ୍ତରେ ଗଠିତ ଏଇ ମଣିଷ ଦେହରେ ସମସ୍ତ ବସ୍ତୁର ଗୋଟାଏ ସୀମା ନିର୍ଦ୍ଦିଷ୍ଟ ଅଛି । ମାତୃସ୍ନେହ ମଧ୍ୟ ଅସୀମ ନୁହେଁ— ତା'ର ବି ପରିମାଣ ଅଛି । ରକ୍ତ ଚଳାଚଳ ଯେତେବେଳେ ବନ୍ଦ ହୋଇ-ଆସେ, ସେତେବେଳେ ସେହି ସୀମାରେଖାର ଏକାନ୍ତରେ ଠିଆ ହୋଇ ଜନନୀ ବି ସନ୍ତାନକୁ ବନ୍ଧନ କରି ପଦେ ହେଲେ ଅଗ୍ରସର ହୋଇପାରନ୍ତି ନାହିଁ । ତେଣୁ ସ୍ନେହ ହେଉ ବା କ୍ଷମତା ହେଉ, ତାର ଅଭାବରେ ସେ ମୀମାଂସାର ଭାର ଅନ୍ତର୍ଯ୍ୟାମୀଙ୍କ ହାତରେ— ମା'ର ହାତରେ ନ ଥାଏ । ତେଣୁ ସେଦିନ ଯେତେବେଳେ ହାରାନ୍‌ର ମୃତ ଦେହ ମା କୋଳରୁ ଖସି ଶ୍ମଶାନକୁ ଚାଲିଗଲା, ସେତେବେଳେ ଅଘୋରମୟୀଙ୍କ ବକ୍ଷଭେଦୀ ଯେଉଁ ଦୀର୍ଘଶ୍ୱାସ ସେଇ ଅସୀମ ପଦପ୍ରାନ୍ତରେ ଏଇ ମୃତ୍ୟୁର ବାର୍ତ୍ତା ବହନ କରି ଚାଲିଗଲା, ଆଉ କ'ଣ ନେଇ ଗଲା ତାହା ଅନୁମାନ କରିବାର ସାଧ୍ୟ ମନୁଷ୍ୟର ନାହିଁ ।

ସେ ଅଦ୍ଭୁତ ଜ୍ୱରରେ ପଡ଼ିଥିବାବେଳେ ହାରାନର ମୃତ୍ୟୁ ଘଟିଲା । ତାପରେ ଆଠ ଦଶ ଦିନ ସେ କିମିତି କଟିଲା, ତାହା ସେ ନିଜେ ଜାଣି ସୁଦ୍ଧା ପାରିଲେ ନାହିଁ । ଶ୍ରାଦ୍ଧଟା କୌଣସିମତେ ଶେଷ ହୋଇଯିବା ପରେ ସେ ଉପେନ୍ଦ୍ରକୁ କହିଲେ---ବାପା, ଶୁଣ, ପଡ଼ଶା ମଲ୍ଲିକଘରର ବଡ଼ବୋହୂ କାଶୀ, ବୃନ୍ଦାବନ, ପ୍ରୟାଗ ତୀର୍ଥ କରି ଯାଉଛନ୍ତି । ମୁଁ ତାଙ୍କ ସାଙ୍ଗେ ଗଲେ କ'ଣ ହେବନି ?

—କାହିଁକି ହୋଇପାରିବନି, ସ୍ୱଚ୍ଛନ୍ଦରେ ହେବ । କିନ୍ତୁ—କହି ସେ କରଣମୟୀଙ୍କ ଉପରେ ଦୃଷ୍ଟି ନିକ୍ଷେପ କଲା ।

କରଣମୟୀ ବୁଝିପାରି କହିଲେ—ମୋ ଲାଗି କୌଣସି ଚିନ୍ତା ନାହିଁ ମୁଁ ଗୃହିଣୀକି ନେଇ ବେଶ୍ ରହିପାରିବି ।

ଉପେନ୍ଦ୍ର କିନ୍ତୁ ଏ କଥାକୁ ହଠାତ୍ ସମର୍ଥନ କରି ନ ପାରି ଚୁପ୍ ରହିଲା । କରଣମୟୀ ତା ମୁହଁକୁ କିଛି ସମୟ ଚାହିଁ ରହି କହିଲେ— କାହିଁ ଏକଥା ସ୍ୱଚ୍ଛନ୍ଦରେ ହୋଇନପାରେ ଯେ ଦିବାକର ତ କଲିକତାରେ

ରହି ବି.ଏ. ପଢ଼ିବା କଥା ସ୍ଥିର କରାଇଛ, ତାଙ୍କୁ ମୋ ପାଖରେ ରଖିଦିଅ । ଗୋଟାଏ ଅଜଣା ବସାରେ ରହିବା ଅପେକ୍ଷା ମୋ ଆଖି ଆଗରେ ରହିବା ବେଶି ଭଲ । ସୁବିଧା ତ ହେବ, କଲିକତାରେ ଏକା ରଖିବାରେ ଯେଉଁ ସବୁ ଭୟ ଅଛି, ସେ ଭୟ ବି ରହିବନି । ଏହା କହି ସେ ଉପେନ୍ଦ୍ର ମୁହଁକୁ ଚାହିଁ ରହିଲେ ।

ଅଘୋରମୟୀ ଏ କଥାକୁ ପୂର୍ଣ୍ଣ ସମର୍ଥନ କରି କହିଉଠିଲେ---ଏ ବ୍ୟବସ୍ଥା ହେଲେ ତ ଆଉ କୌଣସି ପ୍ରଶ୍ନ ଉଠୁ ନାହିଁ । ସେଥି କର ବାପା, ସେଥି କର । ସେଇ ପିଲାଟାର ସୁବିଧା ହେବ—ଆଉ ଏ ହତଭାଗିନୀଟି କଥା-ବାର୍ତ୍ତା କରି ଦିନ କଟାଇପାରିବ ।

ଉପେନ୍ଦ୍ର କରଣମୟୀଙ୍କର ସାହସ ଦେଖି ସ୍ତମ୍ଭୀଭୂତ ହୋଇପଡ଼ିଲା । ଏମିତି ଗୋଟିଏ ପ୍ରସ୍ତାବ କରଣମୟୀଙ୍କ ମୁହଁରୁ ଯେ ବାହାରିବ, ସେକଥା ସେ କଳ୍ପନା ସୁଦ୍ଧା କରି ନ ଥିଲା । ଦିବାକର ଯାହା ହେଉ ଶିଶୁ ନୁହେଁ, ପୂର୍ଣ୍ଣବୟସ୍କ ଯୁବକ । ଏଇ ନିର୍ଜନ ଘରଟା ଭିତରେ ଏଇ ଅପରୂପା ପୂର୍ଣ୍ଣଯୌବନା ରମଣୀ ଆଉ ଗୋଟିଏ ଯେ ଯୁବକକୁ ଲାଳନ ପାଳନ କରିବାର ସମସ୍ତ ଦାୟିତ୍ୱ ନିଃସଙ୍କୋଚ ଭାବରେ ଗ୍ରହଣ କରିପାରେ, ଏହା ଦେଖି ଉପେନ୍ଦ୍ରର ମୁହଁରୁ କଥା ବାହାରିଲା ନାହିଁ । କରଣମୟୀ ଯେ ଅସାମାନ୍ୟା ବୁଦ୍ଧିମତୀ, ଏହା ତାକୁ ଜାଣିବାକୁ ବାକି ରହିଲା ନାହିଁ । ସଂଗତ ଓ ଅସଂଗତ, ସାଂସାରିକ ଓ ସାମାଜିକ ବିଧିବ୍ୟବସ୍ଥା ବିଶେଷ ଜାଣି, ବୁଝି ଯେ ସେ ଏ ପ୍ରସଙ୍ଗ ଉତ୍ଥାପିତ କରିଛି, ଏଥିରେ କୌଣସି ସନ୍ଦେହ ନାହିଁ । ତେବେ ?

ଉପେନ୍ଦ୍ର ମୁହୂର୍ତ୍ତକ ଭିତରେ ତାହାର ସଂଶୟୋତ୍ତେଜିତ ସମସ୍ତ ପର୍ଯ୍ୟବେକ୍ଷକ ଶକ୍ତିକୁ ଜାଗ୍ରତ ଓ ଏକତ୍ର କରି ଏଇ ଅନନ୍ତ ସୌନ୍ଦର୍ଯ୍ୟ-ମୟୀର ଅନ୍ତର ଭିତରେ ପ୍ରବେଶ କରିବା ପାଇଁ ଚାହିଁଲା; କିନ୍ତୁ ବାଟ ପାଇଲା ନାହିଁ ।

ମୁହୂର୍ତ୍ତକ ପାଇଁ ଦୁହେଁ ପରସ୍ପରକୁ ଚାହିଁ ରହିଲେ । ଏଇ ଚାହିଁ ରହିବା ଭିତରେ କରଣମୟୀ ଓ ଉପେନ୍ଦ୍ର ଅତି ଘନିଷ୍ଠ ହୋଇପଡ଼ିଲେ । ସେମାନଙ୍କ ମଧ୍ୟରେ ଏକ ନୂତନ ପରିଚୟର ସନ୍ଧାନ ମିଳିଲା । ଏଇ ସେହି କରଣମୟୀ ! କି ସୁନ୍ଦର ପରିପାଟୀରେ ନିଜକୁ ସଜେଇଥିଲା

ସେଦିନ । ତାର ଆଜ ସର୍ବାଙ୍ଗରେ ଆଗ ଝଲସି ଉଠିଥିଲା । ସେ ସାଜସଜ୍ଜାର ତୁଳନା ନ ଥିଲା । ସର୍ବାଙ୍ଗ କହୁଥିଲେ—ଉପୀନ୍ଦ୍ରା ! ସ୍ତ୍ରୀକୁ ହିଁ କହନ୍ତୁ ସଜେଇ ହେବା । କିନ୍ତୁ ଆଜ · ତାର ରୂପ ଶିଥିଳ କେଶପାଶ ଓ ବିଧବାର ପୋଷାକ ଦେଖି ଉପେନ୍ଦ୍ରର ମନେହେଲା, ସେ ପୂର୍ବରୁ ଏପରି କେବେ ଦେଖି ନ ଥିଲା । ଉପେନ୍ଦ୍ର ମନେ କଲା ସୌନ୍ଦର୍ଯ୍ୟର ଏଇ ଯେଉଁ ଅପରସୀମ ସମାବେଶ, ଏହା ଠିକ୍ ଯେଭଳି ଅଗ୍ନିଶିଖା ଭଳି ତରଙ୍ଗିତ ହୋଇ ଉପରକୁ ଉଠିଛି—ଏହାକୁ ଦୁଇ ଚକ୍ଷୁ ଭରି ଗ୍ରହଣ କରାଯାଇପାରେ; କିନ୍ତୁ ସ୍ପର୍ଶ କରାଯାଇ ପାରେନା । ଯିଏ କରେ, ସିଏ ମରେ । ଏଇ ଶୁଭ୍ରଶିଖାରୂପିଣୀ ବିଧବା ଯେ ନିଃସଙ୍କୋଚ ଭାବରେ ଦିବାକରକୁ ଗ୍ରହଣ କରିବାକୁ ଚାହିଁଛି, ତା' ବାସ୍ତବରେ ଅଧିକାରର ଗର୍ବରେ ହିଁ କରିଛି । ଏଥିରେ ଦୁଃସାହସ ବା ସ୍ପର୍ଦ୍ଧା ନାହିଁ ।

ଉପେନ୍ଦ୍ର ସେତେବେଳେ କୌଣସି ଉତ୍ତର ଦେଇପାରିଲାନି ସତ, କିନ୍ତୁ ତାର ମନଶ୍ଚକ୍ଷୁରେ ଏଇ ବିଧବା ପାଖରେ ଦିବାକରଟି ଏକାବେଳକେ ନିତାନ୍ତ ଶ୍ରେଷ୍ଠ ଶିଶୁଟି ଭଳି ଅକିଞ୍ଚିତ୍କର ହୋଇପଡ଼ିଲା । ସେ ଦିନ ସର୍ବାଙ୍ଗକୁ ଶ୍ରେଷ୍ଠ ଭାଇଟି ଭଳି ତା ପାଖକୁ ପଠାଇଦେବା ପାଇଁ କାହିଁକି ଯେ ସେ ଅନୁରୋଧ କରିଥିଲା, ଉପେନ୍ଦ୍ର ତା ସ୍ପଷ୍ଟ ଭାବରେ ବୁଝିପାରିଲା । ଏଇ ମହିମାମୟୀର ସମ୍ମୁଖରେ ଉପେନ୍ଦ୍ରର ପରିତୃପ୍ତ ମନ ନିଃଶବ୍ଦରେ କରପତ୍ର ଯୋଡ଼ି ନିଜର ଅପରାଧ ବାରମ୍ବାର ସ୍ୱୀକାର କରିବା ପାଇଁ ବ୍ୟାକୁଳ ହୋଇଉଠିଲା । ଉପସ୍ଥିତ ତିନିଜଣଯାକ ନିର୍ବାକ୍ । ଶେଷରେ କିରଣମୟୀଙ୍କ ମୁହଁରୁ କଥା ବାହାରିଲା । ଅନୁନୟ କଣ୍ଠରେ କିରଣମୟୀ କହିଲେ—ଦିବାକରକୁ ମୋ ପାଖରେ ରଖିବାରେ କିଛି ଆପତ୍ତି ଅଛି ?

—ଆପତ୍ତି ? କିଛି ନାହିଁ । ଆପଣ ତାର ଦାୟିତ୍ୱ ନେବେ, ତାର ପରମ ଭାଗ୍ୟ । ଦିବାକର ଆମରି ସାଙ୍ଗରେ ଆସିଥିଲା, କୁଆଡ଼େ ଚାଲିଯାଇଛି; ନଚେତ୍ ତାକୁ ଡାକି କହି ଦେଇଥାଆନ୍ତି ।

ଏଭଳି ଉତ୍ତର ଶୁଣି କିରଣମୟୀଙ୍କ ମନରେ ଆନନ୍ଦର ସୀମା ରହିଲା ନାହିଁ । ତାଙ୍କ ଆଖିରୁ ଲୁହ ଖସି ଆସୁଥିଲା । ଅନ୍ୟ ଆଡ଼େ ମୁହଁ ବୁଲେଇ ସେ ଲୁହକୁ ସମ୍ବରଣ କରିବାକୁ ଲାଗିଲେ । ଉପେନ୍ଦ୍ରର ମୁହଁରୁ ଏଇ ଟିକକ ଆତ୍ମୀୟ ସମ୍ବୋଧନ ପାଇ ମନେହେଲା, ସେ ଯୁଗ ଯୁଗ ଧରି ତୃଷାର୍ତ୍ତ

ହୋଇ ରହିଥିଲେ । ସନ୍ଧାଶ ବି ଏମିତି ଡାକେ, ଧବାକର୍'ବି ଏମିତ ଡାକେ । କନ୍ତୁ ସେ ଡାକ ଆଉ ଏ ଡାକ ମଧ୍ୟରେ କ ଅପରମେୟ ବ୍ୟବଧାନ ! ଏ ଆହ୍ୱାନଟିକକଦ୍ୱାସ୍ ଏତେ ଦନ ପରେ ଉପେନ୍ଦ୍ର ଯେ ତାଙ୍କୁ ନକଟକୁ ଆକର୍ଷଣ କଲ ! ହଠାତ୍ ତାଙ୍କର ଆଶଙ୍କା ହେଲା, ଏ ଆକର୍ଷଣର ପ୍ରଚଣ୍ଡ ବେଗ ଦ୍ରୁଏତ ସେ ସହ୍ୟ କରପାରିବେ ନାହିଁ ।

କନ୍ତୁ ଏମାନଙ୍କ ଏଇ ଆକସ୍ମିକ ମମତାରେ ଅଘୋରମୟୀ ମନେ ମନେ ଶଙ୍କିତ ହୋଇଉଠିଲେ । ଜଣେ ଯଦ ବା ରାଜ ହେଲା, ଆଉ ଜଣେ ମୁହଁ ମୋଡ଼ ରହିଲା । ସେ ଆଉ ରହିପାରିଲେ ନାହିଁ । କହିଲେ—ବାପା ଉପୀନ୍, ତାହାହେଲେ ମୋ ଯିବାରେ ତ କୌଣସି ବାଧା ନାହିଁ । କନ୍ତୁ ଯିବା ଡେର କର ଲାଭ ନାହିଁ । ମୁଁ ଯାଉଚ, ମଲ୍ଲିକଙ୍କର ବୋହୂକୁ କହିଦେଇ ଆସିବ ।

ଉପେନ୍ଦ୍ର କରଣମୟୀ ପ୍ରତି ଆଉଥରେ ଦୃଷ୍ଟିପାତ କର କହିଲା—ମୁଁ ତ କହୁଛି ମାଉସୀ, ସେଥିରେ ମୋର କୌଣସି ଆପତ୍ତି ନାହିଁ । ତୁମର ବୋହୂ ସମ୍ମତ ହେଲେ ହେଲା । ତାଙ୍କର ଯେତେବେଳେ ମନ ଅଛି, ସେତେବେଳେ ତୁମର ତୀର୍ଥଯାତ୍ରାରେ ତ କୌଣସି ବାଧା ଅଛି ବୋଲ ମୁଁ ମନେକରୁନ ।

—ତେବେ ଯାଉଛି ବାପା, ଏହିକ୍ଷଣି କହିଦେଇ ଆସିବ । ବୁଝି ଆସିବ, ସେମାନେ କେବେ ଯାଉଛନ୍ତି । ଏହା କହି ଅଘୋରମୟୀ ଆଉ କାଳ ବିଳମ୍ବ ନ କର ବ୍ରଜରାଣୀଙ୍କ ସାଙ୍ଗରେ ନେଇ ଆନନ୍ଦରେ ଚାଲିଗଲେ ।

ଅଘୋରମୟୀଙ୍କ ତରତର ଦେଖି ଉପେନ୍ଦ୍ର ତୃପ୍ତି ବୋଧ କଲା । କହିଲା—ଯାହା ହେଉ, ଭଲ ହେଲା । ଯେମିତି ହେଲେ ହେଉ, ମାଉସୀ କଛି ଦନ ବାହାରେ ବୁଲବୁଲ କରିଆସିବା ଦରକାର ।

କରଣମୟୀ କନ୍ତୁ ନୀରବ । ଏହି ସମସ୍ୟାଟିକକ ମଧ୍ୟରେ ସେ ଯେମିତ ବମନା ହୋଇ ପଡ଼ିଥିଲେ । ଜବାବ ନ ପାଇ ଉପେନ୍ଦ୍ର ପୁଣି କହିଲା—ଆପଣଙ୍କର ଯଥାର୍ଥ ସମ୍ମତ ଅଛି ତ ?

ଉପେନ୍ଦ୍ରର କଣ୍ଠସ୍ୱରରେ ସେ କଛି ସମୟ ଉପେନ୍ଦ୍ର ମୁହଁକୁ ନତାନ୍ତ ନବୋଧ ଭଳ ଚାହିଁରହି ସହସା ଯେମିତି ସଚେତନ ହୋଇଉଠିଲେ ।

କହିଲେ—ଅଛି କ'ଣ, ନଷ୍ଟପ୍ରାୟ ଅଛି । ଏଇ ଯେ ଅନ୍ଧକୂପ, ତାହା ମୁଁ କେବଳ ଜାଣେ । ଯାଆନ୍ତି, କିନ୍ତୁ ଦିନ ଏ ଦୁଃଖସାଗରରୁ ଅବ୍ୟାହତି ପାଇ-ଯାଆନ୍ତି ।

କଥାଗୁଡ଼ାକ ଏମିତି ତାଙ୍କ ମୁହଁରୁ ବାହାରିପଡ଼ିଲା ଯେ ଉପେନ୍ଦ୍ର ବ୍ୟଥା ଅନୁଭବ କଲା । ପୀଡ଼ିତ ଚିତ୍ତରେ କିଛି ସମୟ ମୌନ ରହି କହିଲା—ଏ ଦୁଃଖସାଗରରୁ କେବଳ ମାଉସୀ ନୁହେଁ ତୁମେ ବି ବାହାର ହେବା ଉଚିତ ।

କରୁଣାମୟୀ କାତରଦୃଷ୍ଟିରେ ଚାହିଁ କହିଲେ—ମୋର କିଏ ଅଛି ଯେ କାହା ପାଖକୁ ଯିବି ?

ଉପେନ୍ଦ୍ର ପ୍ରଶ୍ନ କଲା--- ଆପଣଙ୍କ ବାପଘରେ କ'ଣ କେହି ନାହାନ୍ତି ?

କରୁଣାମୟୀ ହସି କହିଲେ—ବାପଘର ଯେ କେଉଁଠି ସେ କଥା ବି ଜାଣେନା । ମାମୁଁ ଘରେ ମଣିଷ ହୋଇଥିଲି । ସେମାନଙ୍କ ଖବର ୮।୧୦ ବର୍ଷ ହେବଣି ଜାଣେନା । ୧୦ ବର୍ଷ ବୟସରୁ ବାହା ହୋଇ ଏଇ ଘରେ ପଶିଚି । ମରଣ ନ ହେଲେ କ'ଣ ଆଉ ଏ ଘରୁ ବାହାରିବି ? ଏହା ଶୁଣି ଉପେନ୍ଦ୍ର ବ୍ୟଥିତ ହୋଇପଡ଼ିଲା । ଟିକିଏ ଚିନ୍ତା କରି କହିଲା—ଆପଣ କାହିଁକି ମାଉସୀଙ୍କ ସହିତ ପଶ୍ଚିମକୁ ଯାଉ ନାହାନ୍ତି ? ବୁଲାବୁଲି ହେବ, ତୀର୍ଥ କରିବା ମଧ୍ୟ ହେବ । ଏହା କହି ସେ କରୁଣାମୟୀଙ୍କ ମୁହଁର ଭାବ ଦେଖି ଆଶ୍ଚର୍ଯ୍ୟ ହୋଇପଡ଼ିଲା; କାରଣ ଏଭଳି ପ୍ରସ୍ତାବରେ ସେ କିଛି ହେଲେ ଆନନ୍ଦ ପ୍ରକାଶ କଲେ ନାହିଁ । ସେଭଳି ନିରୁତ୍ସାହ ମୁଖରେ ନୀରବରେ ଚାହିଁରହିଲେ ।

ଉପେନ୍ଦ୍ରର ତତ୍କ୍ଷଣାତ୍ ମନେପଡ଼ିଲା, ସେ ଘର ଗୁଡ଼ି ଯାଇ ପାରୁ ନାହାନ୍ତି । ସେ କହିଲା—ଆପଣଙ୍କର ଘର ଲାଗି ଚିନ୍ତା ତ ? କୌଣସି ଚିନ୍ତା କରିବା ଦରକାର ନାହିଁ । ମୁଁ ଦେଖାଶୁଣା କରିବାର ବନ୍ଦୋବସ୍ତ କରିଦେବି । କୌଣସି ଗୋଟିଏ ଜିନିଷ ନଷ୍ଟ ହେବନି ।

ଏଥର କରୁଣାମୟୀ ମୃଦୁକ ହସ ହସି କହିଲେ—ତୁମେ ବୋଧହୁଏ ମୋର ସେଇ ପ୍ରଥମ ଦିନର ପାଗଳାମିକୁ ମନେପକେଇ ଏ କଥା କହୁଛ ନା ?

ଉପେନ୍ଦ୍ର ଅପ୍ରତିଭ ହୋଇ ସଙ୍ଗେ ସଙ୍ଗେ କହିଲା—ନା, ନା, ତାହା ନୁହେଁ । ଯଦିବା ତାହା ହୁଏ, ତାକୁ ପାଗଳାମି ବୋଲି କହୁଛ କାହିଁକି ? ଏ ଅବସ୍ଥାରେ ଏଭଳି ସତର୍କ ହେବା ତ ଉଚିତ ।

କିରଣମୟୀ ହସହସ ମୁହଁରେ କହିଲେ—ଏତେଟା ସତର୍କ ହେବା କ'ଣ ଭଲ ?

ଉପେନ୍ଦ୍ର କହିଲା—ନୁହେଁ କାହିଁକି ? ନିଜ ଘରଦ୍ୱାର, ଧନସମ୍ପତ୍ତି ପ୍ରତି ମମତା କାହାର ନାହିଁ ? ଭବିଷ୍ୟତ୍ ଦୁଶ୍ଚିନ୍ତା କାହାର ନ ହୁଏ ? ନା, ନା, ଇମିତି କଥା ଆପଣ ଆଉ କେବେ କହିବେନି । ସେମିତି କହିବାରେ କୌଣସି ଅସଂଗତି ଓ ଅସ୍ୱାଭାବିକତା କିଛିହେଲେ ନ ଥିଲା ।

—ନ ରହିବାଟା ହିଁ ଭଲ । କିନ୍ତୁ ମୁଁ ତ ସେଇଟାକୁ ନିହାତି ପାଗଳାମି ଛଡ଼ା ଆଉ କିଛି ବୋଲି ଭାବିପାରୁନି । ହଠାତ୍ ଗମ୍ଭୀର ହୋଇ କହିଲେ—ତୁମକୁ କି ସନ୍ଦେହ କରି ନ ଥିଲି ? ଛି, ଛି, କି କଡ଼ାକଥା କହି ନ ଥିଲି ? ମନେପଡ଼ିଲେ ଲାଜରେ ମରିଯାଏ । କହୁ କହୁ ତାଙ୍କର ସ୍ୱଭାବସୁନ୍ଦର ମୁହଁଟି ସଙ୍କୋଚ ଓ ଅନୁତାପରେ ଯେପରି ବିଗଳିତ ହୋଇ-ପଡ଼ିଲା ।

ଉପେନ୍ଦ୍ର ପ୍ରତିବାଦ କଲା ନାହିଁ, ନୀରବରେ ଗୁହିଁରହିଲା ।

କିଛି ସମୟ ମୌନ ରହି ସେ ପୁଣି କହିଲେ—କିନ୍ତୁ ସେ ମମତା ଏବେ କାହିଁ ଉପେନ୍ଦ୍ର ! ଥରେ ହେଲେ ତ ମୋର ମନରେ ସ୍ଥାନ ପାଉନି ଏ ଘରଦ୍ୱାର ରହିବ ନା ଯିବ ? ଥିଲେ ଥାଉ, ନଚେତ୍ ଯାଉ । ଭାବେ, ବାହାର ଗଛତଳ ତ କେହି ଘୁଞ୍ଚେଇ ପାରିବେନି, ସେତିକି ମୋ ପକ୍ଷରେ ଢେର୍ ।

ଉପେନ୍ଦ୍ର ତାର କୌଣସି ପ୍ରତ୍ୟୁତ୍ତର ଦେଲାନି । ସଦ୍ୟ ବିଧବାର ବୈରାଗ୍ୟଜନିତ ଏହି କେତୋଟି କଥା ଶୁଣି ତାର ହୃଦୟ ଶ୍ରଦ୍ଧା ଓ କରୁଣାରେ ଭରିଉଠିଲା ।

କିରଣମୟୀ କହିଲେ—ଘର ଲାଗି ନୁହେଁ ଉପେନ୍ଦ୍ର, କିନ୍ତୁ ମାଆଙ୍କ ପାଇଁରେ ତୀର୍ଥକୁ ଯାଇ ମୁଁ କ'ଣ ବା ଶାନ୍ତି ପାଇବି ? ଶୁଣିଚି, ସେସବୁ ସ୍ଥାନମାନଙ୍କରେ ବହୁ ଲୋକଙ୍କର ଭିଡ଼ ହୁଏ ।

ଉପେନ୍ଦ୍ର ମୁଣ୍ଡ ହଲେଇ କହିଲା— ତୀର୍ଥସ୍ଥାନରେ ଲୋକଭିଡ଼ ତ ହୁଏ; କିନ୍ତୁ ଆପଣଙ୍କର ଆଉ କିଛି ନ ହେଉ ପଛକେ, ତୀର୍ଥ କରିବା ତ ହେବ । ସେ ତ ଗୋଟାଏ କାମ ।

କରୁଣାମୟୀ ପୁଣି ଉପେନ୍ଦ୍ର ମୁହଁକୁ ଚାହିଁ ମୁରୁକ ମୁରୁକ ହସିଲେ, କିନ୍ତୁ କହିଲେନି । ସେ କାହିଁକି ଯେ ହସିଲେ, ତାର ତାତ୍ପର୍ଯ୍ୟ ବୁଝି ନ ପାରି ଉପେନ୍ଦ୍ର କ'ଣ କହିବାକୁ ଯାଉଥିଲା; କିନ୍ତୁ ହଠାତ୍ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ପାଖ ଘରୁ ଦିବାକର ବାହାର ହେଲା ।

ତୁ କ'ଣ ଏତେବେଳଯାଏଁ ଏ ଘରେ ଥିଲୁ ?

କରୁଣାମୟୀ କହିଲେ—ଦିବାକର ଦୟାକରି ମୋ ବହିଗୁଡ଼ିକ ସାଇତି ରଖୁଥିଲେ । ସେ କଥା କହିବାକୁ ମୁଁ ଭୁଲି ଯାଇଥିଲି ।

ଦିବାକର ପାଖକୁ ଆସି କହିଲା—କେତେ ବହି, କି ଅବସ୍ଥାରେ ପଡ଼ିରହିଚି ! କିନ୍ତୁ ଖୋଲି ଦେଖିଲେ ଜଣାଯାଏ, ସେ କି ଯତ୍ନ ସହକାରେ ପଢ଼ି ନ ଥିଲେ !

କରୁଣାମୟୀ ହସି ଉଠି କହିଲେ—ତୁକ୍ଷଣରେ ! ଯାହାକୁ ପଢ଼ା କୁହାଯାଏ, ସେ ସେମିତି ପଢ଼ୁଥିଲେ । ତୁମ ହାତରେ ସେଇଟା କି ବହି ଦିବାକର !

ଦିବାକର ସଲଜ୍ଜିତ ଭାବରେ କହିଲା—ମୁଁ ସଂସ୍କୃତ ଜାଣେନା; ତଥାପି ପଢ଼ିବା ଲାଗି ଚେଷ୍ଟା କରିବି । ଏଇଟା କଠୋପନିଷଦ ।

କରୁଣାମୟୀ କହିଲେ—ଏତେ ବହି ଥାଉ ଥାଉ ପସନ୍ଦ ହେଲା କଠୋପନିଷଦ ?

ଦିବାକର ପ୍ରଶ୍ନଟା ଠିକ୍ ବୁଝିପାରିଲା ନାହିଁ । ମୁହଁକୁ ଚାହିଁ କହିଲା—କାହିଁକି ଭାଉଜ, ଏହାଠୁ ବଳି କ'ଣ ସଂସାରରେ ଭଲ ବହି ଅଛି ? ତେବେ ମୋ ପକ୍ଷରେ ହୁଏତ ଅନଧିକାର ଚର୍ଚ୍ଚା; କିନ୍ତୁ ଯଥାସାଧ୍ୟ ଚେଷ୍ଟା କରିବା ତ ଉଚିତ ।

କରୁଣାମୟୀ ମୃଦୁ ହସ ହସି କହିଲେ— ଯାହା ମନେ କରିଛ ଦିବାକର, ତାହା ନୁହେଁ । ଏମିତି ଚେଷ୍ଟା କରିବାର ମୂଲ୍ୟ ଆଉ ନାହିଁ । ତେବେ ସ୍ଥାନେ ସ୍ଥାନେ ମନ୍ଦ ଲାଗେନା ଅବଶ୍ୟ । ହାତରେ କାମଦାମ ନ ଥିଲେ, ଆତ୍ମା ଫାତ୍ମା ନାନାରୂପ ଅଜବ ଗଳ୍ପ ଓ ଛବି ଗଳ୍ପ ପଢ଼ିଲେ ସମୟଟା କଟିଯାଏ । ଏଇଯା ହିଁ ହୁଏ ।

ତାମସା ଶୁଣି ଦିବାକରର ମୁହଁଟା ଏକାବେଳକେ ପାଂଶୁବର୍ଣ୍ଣ ହୋଇପଡ଼ିଲା । କହିଲା—କ'ଣ କହୁଚ ଭାଉଜ ! ମୁଁ ତ ଶୁଣିଚି, ଉପନିଷଦ ହେଉଚି ଏକରକମ ବେଦ ! ଏହାର ପ୍ରତି ଅକ୍ଷର ଯେ ଅଭ୍ରାନ୍ତ ସତ୍ୟ !

ତାର ବସ୍ତୁପୂର ପରିମାଣ ଦେଖି କରୁଣାମୟୀ ପୁଣି ହସିଉଠିଲେ, କହିଲେ—କୌଣସି ଧର୍ମଗ୍ରନ୍ଥ ବି କେବେହେଲେ ଅଭ୍ରାନ୍ତ ସତ୍ୟ ହୋଇପାରେନା । ବେଦ ବି ଧର୍ମଗ୍ରନ୍ଥ; ସୁତରାଂ ଏଥିରେ ମିଥ୍ୟାର ଅଭାବ ନାହିଁ ।

ଦିବାକର ଦୁଇକାନରେ ଆଙ୍ଗୁଠି ଦେଇ ମୁଣ୍ଡ ହଲେଇ କହିଲା—କ'ଣ କହୁଚ, ବେଦ ମିଥ୍ୟା ! ଏକଥା ଆଉ କେବେ କହିବନି । ଶୁଣିଲେ ବି ପାପ ହୁଏ—ବେଦ ମିଥ୍ୟା ! ଲୋକେ କଥାରେ କହନ୍ତି, ବେଦବାକ୍ୟ । ଇଏ କ'ଣ ମଣିଷ ତିଆରି ଯେ ମିଥ୍ୟା ହେବ ! ଇଏ ପରା ବେଦ !

ତାର ଭାବଭଙ୍ଗୀ ଦେଖି କରୁଣାମୟୀ ଖିଲ ଖିଲ କରି ହସିଉଠିଲେ । ଦିବାକର କାନରୁ ଆଙ୍ଗୁଠି କାଢ଼ିନେଇ ଲଜ୍ଜିତ ହୋଇ କହିଲା—ସତରେ ପାପ ହୁଏ ଭାଉଜ ! ବେଦ କେବେ ମିଥ୍ୟା ହୁଏ ? ଇଏ କ'ଣ ବାଜେ ଧର୍ମଗ୍ରନ୍ଥ ଯେ ଶିବର ଭକ୍ତ ବୋଲି ଲୋକେ ଦିଇଟା ପ୍ରକ୍ଷିପ୍ତ ଭାବରେ ରଚିତ ଶ୍ଳୋକ, ୧୦ଟା ମନଗଢ଼ା ରୂପ କଥା ଭର୍ତ୍ତି କରିଦେବେ । ବେଦର ଅର୍ଥ ହେଉଚି ସାକ୍ଷାତ ସତ !

କରୁଣାମୟୀ ମୁହଁର ହସ ଚାପି ହଠାତ୍ ଗମ୍ଭୀର ହୋଇ କହିଲେ—କେଜାଣି, ତାଙ୍କର ମୁହଁରୁ ଯାହା ଶୁଣିଥିଲି, ସେଇ କଥା କହିଲି । କିନ୍ତୁ ତୁମେ ତ ଏହିକ୍ଷଣି ସ୍ୱୀକାର କଲ, ଧର୍ମଗ୍ରନ୍ଥ ଯାର ନାମ, ସେଥିରେ ଦୁଇ ଶିବଙ୍କ ଭକ୍ତ ବୋଲି ମିଥ୍ୟା ଭକ୍ତ ଭର୍ତ୍ତି କରାଯାଉଛି ।

ଦିବାକର ମାନିନେଲା । କିଛିଦିନ ପୂର୍ବେ ପୁରାଣ ସମ୍ବନ୍ଧରେ ସେ ମାସିକ ପତ୍ରିକାରେ ସମାଲୋଚନା ପଢ଼ିଥିଲା । କହିଲା—ଅତି ଅନ୍ୟାୟ । ଉପକଥାରେ ମିଥ୍ୟା ଶ୍ଳୋକ ଯେ ଅଛି, ଏକଥା ଅସ୍ୱୀକାର କରିପାରେନା । କିନ୍ତୁ ସେସବୁ ତ ବେଶୀ ଦିନ ଚଳେନା ଭାଉଜ ! ଯାହା ମିଥ୍ୟା—ତାହା ଦୁଇ ଦିନରେ ଧରାପଡ଼ିଯାଏ ।

—କିମିତି ଧରାପଡ଼େ ?

ଦିବାକର କହିଲା—ସେକଥା ମୁଁ ଠିକ୍ ଜାଣେନା ଭାଉଜ ! କିନ୍ତୁ ଯାହା ମିଥ୍ୟା, ତାର ଠିକଣଠି ଆଲୋଚନା କଲେ ଜଣାପଡ଼େ କେଉଁଟା ଖାଣ୍ଟି, କେଉଁଟା ମିଶା; କେଉଁଟା ମିଥ୍ୟା ଓ କେଉଁଟା ପ୍ରକ୍ଷିପ୍ତ । କିନ୍ତୁ ତା ବୋଲି ଆପଣ ଯେ ବେଦକୁ ସ୍ୱୀକାର କରିବେନି, ସେଇଟା ଅନ୍ୟାୟ, ବଡ଼ ଅନ୍ୟାୟ ।

ଉପେନ୍ଦ୍ର କିଛି ସମୟ ଧରି କୌଣସି ପଦେହେଲେ କଥା କହିଲାନ । କିରଣମୟୀର ଏସବୁ ଉଗ୍ର ପରିହାସର ତାତ୍ପର୍ଯ୍ୟ ଯେ କ'ଣ, ତାହା ଠିକ୍‌ଭାବେ ଅନୁମାନ କରି ନ ପାରି ଚୁପ୍‌କରି ବାକ୍‌ବିତଣ୍ଡା ଶୁଣୁଥିଲା ।

କିରଣମୟୀ ତା ଆଡ଼କୁ ଥରେ କଟାକ୍ଷରେ ଚାହିଁ ବୋଧହୁଏ ଟିକିଏ ନିଜ ହସକୁ ଗୋପନ କଲେ । ପରେ ଗମ୍ଭୀର ହୋଇ ଦିବାକରକୁ କହିଲେ—କ'ଣ କହୁଚ ଦିବାକର, ମୁଁ ଥରେ ଗୋଟାଏ ଧର୍ମଶାସ୍ତ୍ରରେ ପଢ଼ିଥିଲି ଯେ ଜଣେ ବ୍ରାହ୍ମଣର ପୁଅ କୌଣସି କାରଣରୁ ଯମ ସହିତ ଦେଖା କରିବାକୁ ଯାଇଥିଲା । ଯମ ସେତେବେଳେ ଘରେ ନ ଥିଲେ, ବୋଧହୁଏ ଶ୍ୱଶୁରଘରକୁ ଯାଇଥିଲେ । ତିନି ଦିନ ପରେ ଫେରିଆସି ଘର ଲୋକଙ୍କଠୁ ଶୁଣିବାକୁ ପାଇଲେ, ବ୍ରାହ୍ମଣପୁଅ ଅନଶନ କରିଛି, ଜଳ ଗ୍ରହଣ ବି କରିନି । ଏକେ ତ ବ୍ରାହ୍ମଣ, ତା ଛଡ଼ା ଅତିଥି । ଯମ ବଡ଼ ଦୁଃଖିତ ହୋଇପଡ଼ିଲେ । ଶେଷରେ ବିନୀତ ଭାବରେ କହିଲେ – ତୁ ବାବା, ୩ ଦିନ ଅନଶନ ବଦଳରେ ୩ଟି ବରନେ । ଆଚ୍ଛା—କଥାଟା ଶେଷ କରିବା ପୂର୍ବରୁ ଦିବାକର ହୋ ହୋ କରି ହସିଉଠିଲା । କହିଲା – ଏ କେଉଁ ଉପନ୍ୟାସ ଆରମ୍ଭ କରିଦେଲ ଭାଉଜ ?

କିରଣମୟୀ ଶାନ୍ତ ଭାବରେ କହିଲେ—ଆଉ କ'ଣ କହିବି, ଯାହା ପଢ଼ିଥିଲି, ତାହା ହିଁ କହୁଚି । ଆଚ୍ଛା, ଏମିତି ଘଟଣା ଘଟିପାରେ ବୋଲି କ'ଣ ତୁମର ବିଶ୍ୱାସ ହୁଏ ?

ଦିବାକର ଜୋରଦେଇ କହିଲା—ନିଶ୍ଚୟ ନା, ଅସମ୍ଭବ ।

– ଅସମ୍ଭବ କାହିଁକି ? ଧର୍ମଶାସ୍ତ୍ରରେ ତ ଅଛି ।

– ଥାଉ ଧର୍ମଶାସ୍ତ୍ରରେ, ଏଇଟା ଗୋଟାଏ ପ୍ରକ୍ଷିପ୍ତ ଉପନ୍ୟାସ ।

– ଉପନ୍ୟାସ ବୋଲି କିମିତି ଜାଣିଲ ?

– ଜାଣ ଭାଉଜ, ସମସ୍ତଙ୍କର କିଛି ନା କିଛି ବୁଦ୍ଧି ଶୁଦ୍ଧି ଅଛି । ମୁଁ ବେଶୀ କିଛି ଜାଣେନା ଅବଶ୍ୟ; କିନ୍ତୁ ଇଏ ଯେ ମିଥ୍ୟା ଘଟଣା, ସେଥିରେ କୌଣସି ସନ୍ଦେହ ନାହିଁ । ଇମିତି କେବେ ଘଟି ନ ପାରେ ।

କିରଣମୟୀ କହିଲେ—ଆଚ୍ଛା ଦିବାକର, ଇମିତିଭାବେ ସମସ୍ତେ ନିଜର ବିଦ୍ୟାବୁଦ୍ଧି ଓ ଅଭିଜ୍ଞତାଦ୍ୱାରା ସତ ଆଉ ମିଛକୁ ଓଜନ କରିଥାଆନ୍ତି । ତା ଛଡ଼ା ଆଉ କୌଣସି ମାନଦଣ୍ଡ ନାହିଁ । କିନ୍ତୁ ଏ

ଜିନିଷ ସମସ୍ତଙ୍କ ପକ୍ଷରେ ଏକା ନୁହେଁ । ତୁମେ ଯାହାକୁ ସତ୍ୟ ବୋଲି ବୁଝିପାର, ମୁଁ ଯଦି ନ ପାରେ ତ ମତେ ଦୋଷ ଦେବା ଠିକ୍ ନୁହେଁ ।

ଦିବାକର ସଙ୍ଗେ ସଙ୍ଗେ କହିଲା—ନିଶ୍ଚୟ ତା ନୁହେଁ ।

କରୁଣାମୟୀ କହିଲେ—ତେବେ ଦେଖ ଦିବାକର, ଏଥିରେ ଯେତେବେଳେ ଅମେଳ ହେଲେ ଦୋଷ ଦିଆଯାଏନା, ସେତେବେଳେ ଯେଉଁ ଜିନିଷ ବୁଦ୍ଧି ଓ ଅଭିଜ୍ଞତା ବାହାରେ, ତା ସମ୍ବନ୍ଧରେ ମତାନୈକ୍ୟ ହେବା ସମ୍ଭବ । କିନ୍ତୁ ଏ ବିଷୟରେ ମୁଁ ଜୋର ଦେଉନି । ଆମ ଦୁଇ-ଜଣଙ୍କର ମନେ ହେଉଛି, ଏଇ ଘଟଣା ଆମ ବୁଦ୍ଧିର ବାହାରେ । ସେଥିପାଇଁ ଏଇଟା ଉପନ୍ୟାସ ନା ଦିବାକର !

କରୁଣାମୟୀ ଯେ ତାକୁ କୁଆଡ଼େ ଠେଲି ନେଇଯାଉଛନ୍ତି, ତାହା ଠିକ୍ ଭାବରେ ବୁଝି ନ ପାରି ଦିବାକର ସଂକ୍ଷେପରେ କହିଲା—ହଁ ।

କରୁଣାମୟୀ ପୁଣି ଥରେ ହସିଉଠି କହିଲେ—ବେଶ୍ ବେଶ୍, କିନ୍ତୁ ମୋର ଏଇ ଉପନ୍ୟାସର ଶେଷ ଭାଗଟା ତୁମ ହାତରେ ଯେଉଁ ବହି ଖଣ୍ଡିକ ଅଛି, ସେଇଥିରେ ହିଁ ପାଇବ ।

ଦିବାକର ଚକିତ ହୋଇ କହିଲା—ଏଇ ଉପନିଷଦରେ ?

କରୁଣାମୟୀ ସେଇମିତି କୌତୁକରେ କହିଲେ—ହଁ, ସେଇଥିରେ । ବେଶୀ ଖୋଜିବାକୁ ପଡ଼ିବନି; କିନ୍ତୁ ଯଦି ପାଅ, ସେତେବେଳେ ତୁମର ପ୍ରତି ଶବ୍ଦ ଅଭ୍ରାନ୍ତ ସତ୍ୟ ବୋଲି ମନେ ହେବନି ତ ?

ଦିବାକର ଜବାବ ଦେଲାନି, ହତବୁଦ୍ଧି ହୋଇ ବସିରହିଲା ।

କରୁଣାମୟୀ ଉପେନ୍ଦ୍ରର ନିର୍ବାକ୍ ମୁଖ ପ୍ରତି ଚାହିଁ କହିଲେ—ତୁମର କି ମତ ଉପେନ୍ଦ୍ର ?

ଉପେନ୍ଦ୍ର ଖାଲି ଟିକିଏ ହସିଲା, କିଛି କହିଲାନି ।

ଦିବାକର ନିଜକୁ ସମ୍ଭାଳି ନେଇ କହିଲା— କିନ୍ତୁ ଏଇଟା ରୂପକ ହୋଇ ବି ପାରେ ।

କରୁଣାମୟୀ କହିଲେ—ହଁ, ତାହା ହୋଇପାରେ; କିନ୍ତୁ ରୂପକ ତ ସତ ଘଟଣା ନୁହେଁ । ଏଇ ବହି ଗୋଟିକଯାକ ଯେ ମୂଳରୁ ଶେଷଯାଏଁ ମିଥ୍ୟା, ତାହା ହୋଇ ନ ପାରେ । କିନ୍ତୁ ମୂଳରୁ ଶେଷଯାଏଁ ଯେ ସତ୍ୟ ନୁହେଁ, ସେକଥା ବୁଦ୍ଧିର ତାରତମ୍ୟ ହିସାବରେ ବାଛି ନେବାକୁ ପଡ଼ିବ ।

ତେଣୁ ତୁମ ବୁଦ୍ଧିରେ ଏଇଟା ୧୬ ଅଣା ସତ୍ୟ ବୋଲି ଯଦି ଏ ମନେହୁଏ, ମୋ ବୁଦ୍ଧିରେ ହୁଏତ ୧୫ ଅଣା ମିଥ୍ୟା ବୋଲି ମନେ ହୋଇପାରେ । ସେଥିରେ ତ ମୋର କିଛି ଅନ୍ୟାୟ ହେବନି ଦିବାକର !

ଦିବାକର ହାତର ବହିଟି ଆଉଥରେ ନୀରବରେ ଗୁହିଁ ରହିଲା । କିରଣମୟୀଙ୍କର କଥାଗୁଡ଼ାକ ତା ବୁକୁରେ ବେଦନା ଭଳି ବାଜିଲା । କିଛି ସମୟ ଚୁପ୍ ରହିବା ପରେ କହିଲା—ଆଜ୍ଞା ଭାଉଜ, ଯାହାକୁ ଆପଣ ମିଛ ଘଟଣା କହୁଛନ୍ତି, ତାର ହୁଏତ କୌଣସି ଗୂଢ଼ ଅଭିସନ୍ଧି ଥାଇପାରେ······ ସେଥିପାଇଁ·········

—ସେଥିପାଇଁ କ'ଣ ମିଥ୍ୟାର ଅବତାରଣା ? ତୁମେ ଯାହା ଅନ୍ଦାଜ କରୁଚ ତା ହୋଇପାରେ, ମୁଁ ମାନିନେଉଛି— ତଥାପି ସେଇଟା ଅନ୍ଦାଜ ଛଡ଼ା କିଛି ନୁହେଁ । ଆଉ ଅଭିସନ୍ଧି ଯାହା ଥାଉନା କାହିଁକି, ପଥଟା ସାଧୁ ପଥ ନୁହେଁ ।ଏ କଥାଟା ସବୁ ସମୟରେ ମନେରଖିବା ଉଚିତ ଯେ ମିଥ୍ୟାରେ ଭୁଲେଇ ସତ୍ୟର ପ୍ରଚାର ହୁଏନା । ସତ୍ୟକୁ ସତ୍ୟ ଭଳି କରି କହିବାକୁ ପଡ଼ୁଥାଏ । ତାହାହେଲେ ଯାଇ ମଣିଷ ନିଜ ବୁଦ୍ଧିର ପରିମାଣରେ ଯିଏ ଯାହା ବୁଝିପାରେ । ଆଜି ନ ପାରିଲେ କାଲି ପାରେ । ସେ ନ ପାରିଲେ ଆଉ କେହି ପାରେ । ଯଦି କେହି ନ ପାରେ, ତଥାପି ତାକୁ ମିଥ୍ୟାର ଭୂମିକା ଦେଇ, ମୁଖରୋଚକ କରିବା ଭଳି ଚେଷ୍ଟାଠୁ ବଳି ଅନ୍ୟାୟ ଆଉ କିଛି ନାହିଁ ଦିବାକର ! ମିଥ୍ୟା ମାନେ ପାପ; କିନ୍ତୁ ମିଛରେ ସତ ମିଶେଇ କହିବା ଭଳି ପାପ ସଂସାରରେ କମ୍ ।

ଦିବାକର ବିମର୍ଷ, ମଳିନ ମୁଖରେ ଚୁପ୍ ରହିଲା । କିରଣମୟୀ ତାର ମୁହଁ ଦେଖି ମନର ଭାବ ସ୍ପଷ୍ଟ ବୁଝିପାରିଲେ । କୋମଳ ସ୍ୱରରେ କହିଲେ— ଏଥିରେ ଦୁଃଖିତ ହେବାର କିଛି ନାହିଁ ଦିବାକର ! ଯାହା ସତ୍ୟ, ତାକୁ ସବୁ ସମୟରେ, ସବୁ ଅବସ୍ଥାରେ ଗ୍ରହଣ କରିବାକୁ ଚେଷ୍ଟା କରିବ । ସେଥିରେ ବେଦ ମିଥ୍ୟା ହେଉ ବା ଶାସ୍ତ୍ର ମିଥ୍ୟା ହେଉ । ସତ୍ୟଠୁ ତ ଏମାନେ ବଡ଼ ନୁହନ୍ତି, ସତ୍ୟ ତୁଳନାରେ ଏମାନଙ୍କର କୌଣସି ମୂଲ୍ୟ ନାହିଁ । ଜିଦରେ ହେଉ, ମମତାରେ ହେଉ ବା ସୁଦୀର୍ଘ ଦିନର ସଂସ୍କାର ଫଳରେ ହେଉ, ଆଖିବୁଜି ଅସତ୍ୟକୁ ସତ୍ୟ ବୋଲି ବିଶ୍ୱାସ କରିବାର କିଛିହେଲେ ପୌରୁଷ

ନାହିଁ । ଟିକଏ ଚୁପ୍ ରହି କହିଲି—ଅସତ୍ୟକୁ ଆଖିବୁଜି ମାନିନେବାରେ କୌଣସି ଗୌରବ ବଢ଼େନା ।

ଦିବାକର ବନ୍ଧୁ ସମସ୍ତ ମୌନ ରହି କହିଲା—ଆଚ୍ଛା ଭାଉଜ, ଯେଉଁ ବସ୍ତୁ ବୁଦ୍ଧିର ବାହାରେ, ସେ ସମ୍ବନ୍ଧରେ ସତ୍ୟ ମିଥ୍ୟା ବୁଦ୍ଧିପୂର୍ବକ କମିତ ସ୍ଥିର କରିବ ?

କରୁଣାମୟୀ ସଙ୍ଗେ ସଙ୍ଗେ ଉତ୍ତର ଦେଲା—କଦାପି କରିବିନି । ଯାହା ବୁଦ୍ଧିର ବାହାରେ ବୋଲି ମନେକରିବ, ତାହା ବୁଦ୍ଧିର ବାହାରେ ବୋଲି ତ୍ୟାଗ କରିବ । ମୂହଁରେ ଅବ୍ୟକ୍ତ, ଅମେଧ, ଅଜ୍ଞେୟ କହି କଥାରେ ତାକୁ ନମାଗତ ଜାଣିବାର ଚେଷ୍ଟା କଦାପି ମୁଁ କରିବିନି । ତୁମେ ଏସବୁ ବହିଗୁଡ଼ାକ ତ ପଢ଼ିନା, ପଢ଼ିଲେ ଜାଣିବ, ସବୁ ତ ଏଇ ଚେଷ୍ଟା, ଏଇ ଜିଦ୍ । କେବଳ ବଡ଼ ବଡ଼ କଥାର ମାରପେଞ୍ଚ । ନିର୍ଗୁଣ, ନିରାକାର, ନିର୍ଲିପ୍ତ, ନିର୍ବିକାର ଏଗୁଡ଼ାକ ଖାଲି କଥାର କଥା । ଆଉ କୌଣସି ମାନେ ନାହିଁ । ଯେଉଁମାନେ ଏସବୁ କଥା ଆବିଷ୍କାର କରିଛନ୍ତି, ସେମାନେ ପ୍ରକାରାନ୍ତରେ କହିଛନ୍ତି, ଏ ସମ୍ବନ୍ଧରେ ଚିନ୍ତା କରିବେ ନାହିଁ—ଯାହା କରନ୍ତୁ, ସବୁ ନିଷ୍ଫଳ, ସମସ୍ତ ଶ୍ରମ ପଣ୍ଡ ।

ଦିବାକର କହିଲା—ଆଚ୍ଛା ଭାଉଜ, ତୁମେ ଆତ୍ମାକୁ ମାନନି ?

—ନା ।

—କାହିଁକି ?

—ମିଛ ବୋଲି । ମୋ ମନରେ ଏ ଦମ୍ଭ ନାହିଁ ଯେ ସବୁ କିଛି ନଷ୍ଟ ହୋଇଯିବ, କେବଳ ଏହି ମହାମୂଲ୍ୟ 'ମୁଁ'ଟିର କେବେ ଧ୍ୱଂସ ହେବନି । ମୁଁ କେବେ ଇଚ୍ଛା କରିନି ଯେ ମୋର ମୃତ୍ୟୁ ପରେ ମୋର 'ମୁଁ'ଟି ବଞ୍ଚିରହୁ ।

—ଆଚ୍ଛା ଈଶ୍ୱର ! ତାକୁ କ'ଣ ତୁମେ ସ୍ୱୀକାର କରନି ?

କରୁଣାମୟୀ ହସି ହସି କହିଲା— ଏତେ ଭୟରେ କହୁଛ କାହିଁକି ଦିବାକର ? ଏଥିରେ ଭୟ କରିବାର କ'ଣ ଅଛି ? ନା, ମୁଁ ଅସ୍ୱୀକାର କରେନା ।

ଦିବାକର ପ୍ରଗାଢ଼ ଅନ୍ଧକାର ମଧ୍ୟରେ ଯେମିତି ଟିକଏ ଆଲୋକ-ରେଖା ଦେଖିବାକୁ ପାଇଲା । ପଚାରିଲା—ତାକୁ ତୁମେ କେଉଁ ଭାବରେ ଚିନ୍ତା କର ?

କରୁଣାମୟୀ କହିଲେ—ଯେଉଁ ବସ୍ତୁ ଅଜ୍ଞେୟ ବୋଲି ନିଶ୍ଚିତ ଭାବରେ ବୁଝିଛି, ତାକୁ ଚିନ୍ତା କରାଯାଏନା ? ଅଚିନ୍ତ୍ୟମୟଙ୍କୁ କ'ଣ ଦେଇ ଚିନ୍ତା କରିବ ? ଅସମ୍ଭବକୁ ସମ୍ଭବ କରିବାର ଚେଷ୍ଟା ମୁଁ କେବେ କରିନି କି କରି ନ ପାରେ । ଗୋଟାଏ ଜିନିଷକୁ ବଢ଼େଇ ବଢ଼େଇ ବଡ଼ କରା-ଯାଇଥାଏ । ଆହୁରି ବଢ଼େଇଲେ ବଡ଼ ହୁଏ, ତାହା ଜାଣେ; କିନ୍ତୁ ତାକୁ ଟାଣି ଟାଣି ଅନନ୍ତ କରିବା ଭୁଲ ମୁଁ କେବେ କରି ନ ପାରେ ।

—ତେବେ ତାକୁ କ'ଣ ଚିନ୍ତା କରାଯାଏ ନା ?

—ହଁ ହଁ, ଶ୍ରେଷ୍ଠ କରି ଚିନ୍ତା କରା ଯାଇପାରେ । ମଣିଷର ଦୋଷ ଗୁଣକୁ ବଢ଼େଇ, ଶ୍ରେଷ୍ଠ କାଠର ଦେବତା ଗୋଟେ ବାଇଟା କରି, ନରକର ଲୋକେ ଯେମିତି ଭକ୍ତି ଦେଇ ଭାବୁଥାଆନ୍ତି, ସେମିତି ଚିନ୍ତା କରାଯାଇ-ପାରେ; କିନ୍ତୁ ଜ୍ଞାନର ଅନ୍ଧମାନରେ ଭ୍ରମ କରିନେଇ ଯେଉଁମାନେ ଭାବିବାକୁ ଗୁହାଁଥାଆନ୍ତି, ସେମାନେ କେବଳ ନିଜକୁ ଠକେଇ ଥାଆନ୍ତି । କିନ୍ତୁ ଆଜି ଆଉ ବେଳ ନାହିଁ, ସେ କଥା ଆଉ ଆଉ କେବେ ଚର୍ଚ୍ଚା କରିବା । ଉପେନ୍ଦ୍ର ମୁହଁକୁ ଗୁହିଁ କରୁଣାମୟୀ ହସିହସି କହିଲି—କିନ୍ତୁ ତୁମେ ଉପେନ୍ଦ୍ର, ବଡ଼ ଲାଜ କୁଳା । ଆମେ ଦୁଇଜଣ ଗୋଟାଏ ଘଣ୍ଟାକରେ ତର୍କ ବିତର୍କ କରି ନିଜକୁ ଫାଙ୍କା କରି ପକେଇଲୁ, ଅଥଚ ତୁମେ ପଦେ କଥା ନ କହି ତୁନି ହୋଇ ବସିରହିଲ । ମୁଁ ଜାଣେ, ତୁମେ ସବୁକଥା ଜାଣ, ଅଥଚ ନିଜ ମନର ପଦେ କଥା ବି କାହାକୁ ବୁଝିବାକୁ ଦେଲ ନି ।

ଉପେନ୍ଦ୍ର ହସି ପକେଇଲା, କହିଲା—ନା ଭାଉଜ, ମୁଁ ଏ ସମ୍ବନ୍ଧରେ ଏକାବେଳକେ ଅଜ୍ଞ । ମୁଁ ସ୍ତମ୍ଭିତ ହୋଇ ଖାଲି ତୁମ କଥା ଶୁଣୁଥିଲି ।

କରୁଣାମୟୀ ହସି ହସି କହିଲେ -ବିଦ୍ରୂପ କରୁଚ ନା ଉପେନ୍ଦ୍ର !

—ନା ଭାଉଜ, ସତ କଥା କହୁଚି; କିନ୍ତୁ ଭାବୁଚି, ଏତେ କମ୍ ବୟସରେ ତୁମେ ଏତେ ବେଶୀ ପଢ଼ିଲ କମିତି, ଭାବି ପାରୁଛ କମିତି ?

ପ୍ରଶଂସା ଶୁଣି କରୁଣାମୟୀର ଅନ୍ତଃକରଣ ପୁଲକିତ ଓ ଉଚ୍ଛ୍ୱସିତ ହୋଇଉଠିଲା । କିନ୍ତୁ ତାହା ଦମନ କରି ବିନୀତ ସ୍ୱରରେ କହିଲା—ନା ଉପେନ୍ଦ୍ର, ଏଭଳି କଥା କୁହନି, ମୁଁ ମଧ୍ୟ ମହାମୂର୍ଖ, କିଛି ଜାଣେନି । ଜାଣିବାର ଶକ୍ତି ବି ନାହିଁ; ତେଣୁ ଏସବୁ ଶାସ୍ତ୍ରର ଜବରଦସ୍ତି ଦାମ୍ଭିକ ଭକ୍ତି ଦେଖିଲେ ମୋ ଦେହ ଜଳିଉଠେ—ନିଜକୁ କୌଣସି ମତେ ସମ୍ଭାଳି

ପାରେନା । ତୁମର ଗୋହତ୍ୟା, ବ୍ରହ୍ମହତ୍ୟାର ପାତକ ହେବ; ତୁମେ ଉଚ୍ଛନ୍ନ ହେବ, ତୁମର ଚଉଦ ପୁରୁଷ ନରକରେ ପଡ଼ିବେ କାହିଁକି ? କିଏ ତୁମକୁ ଏସବୁ କଥା କହୁଛି ? ଶ୍ରୁତି, ଶାସ୍ତ୍ର, ପୁରାଣ ସବୁଥିରେ ଏଇ ଜବରଦସ୍ତି, ଲାଲ ଆଖି । ଏ ଅନ୍ୟାୟ ପ୍ରକୃତରେ ସହ୍ୟ ହୁଏନା ।

ଉପେନ୍ଦ୍ର କଥା କହିଲେନି । ଦିବାକର ତାର ଶେଷ ଉଦ୍ୟମ କରି କହିଲା – ଯେଉଁମାନେ ଏସବୁ କରିଛନ୍ତି, ସେସବୁ ଆମର ମଙ୍ଗଳ ପାଇଁ ।

କରୁଣାମୟୀ ଉତ୍ତେଜିତ ସ୍ୱରରେ କହିଲେ—ମଙ୍ଗଳ ପାଇଁ ନୁହେଁ ଦିବାକର !

– ଏକଥା ଭାବନି ଯେ ସେମାନେ ଦେଶର ମଣିଷଗୁଡ଼ାକୁ ଗାଈଗୋଠ ପରି ବାଡ଼େଇ ବାଡ଼େଇ ଭଲ ବାଟରେ ଚଡ଼ାଇନେବାକୁ ଚେଷ୍ଟା କରିଛନ୍ତି । ସେମାନେ ଯେଉଁ ବିଧି-ନିଷେଧ କରିଗଲେ, ଅନ୍ତତଃ ବୁଝେଇଦେବା ଉଚିତ ଥିଲା ତ କାହିଁକି ଏଗୁଡ଼ାକ ମଙ୍ଗଳକର ? ଏତେ ଜବରଦସ୍ତି କାହିଁକି, ଆଉ ଏଭଳି ଉପନ୍ୟାସ ଲେଖାଯିବାର ଆବଶ୍ୟକତା କ'ଣ ?

ଉପେନ୍ଦ୍ରର ହଠାତ୍ ମନେପଡ଼ିଲା ସେଇ ପ୍ରଥମ ରାତିର କଥା ! ଏ ସେଇ ମୂର୍ତ୍ତି ! ପିଞ୍ଜରାବଦ୍ଧ ବନ୍ୟପଶୁ ଭଳି ସେ ଯେଉଁ ମର୍ମାନ୍ତିକ ଗର୍ଜନ ! କିନ୍ତୁ ଏଇ ଲୋକଟା ପ୍ରକୃତରେ ଗୁହେଁ କ'ଣ ? ଶାସ୍ତ୍ର ଏବଂ ଶାସ୍ତ୍ରକାରର କେଉଁ ଅନୁଶାସନ ଓ ଶୃଙ୍ଖଳ ଭାଙ୍ଗି ଏ ବିଧବା ମୁକ୍ତି ପ୍ରାର୍ଥନା କରିବାକୁ ଗୁହେଁ ?

ତାକୁ ଶାନ୍ତ କରିବା ପାଇଁ ଉପେନ୍ଦ୍ର ସବିନୟ ହସି ହସି କହିଲା – ଆମେ ଦିଜଣ ତ ତୁମର ଜବାବ ଦେଇପାରିଲୁନି ଭାଉଜ, କିନ୍ତୁ ଜଣେ ଆସିଲେ ତ ପାଖରେ ତୁମେ ନିଶ୍ଚୟ ତର୍କରେ ହାର ମାନିବ ।

କରୁଣାମୟୀ ନିଜର ଉତ୍ତେଜନା ନିଜେ ଉପଲବ୍ଧି କରି ଅବଶେଷରେ ମନେ ମନେ ଲଜ୍ଜାବୋଧ କଲେ । ସେ ବି ହସି ହସି କହିଲେ – ଇମିତି କିଏ ଅଛି ଉପେନ୍ଦ୍ର ?

ଉପେନ୍ଦ୍ର ଗମ୍ଭୀର ହୋଇ କହିଲା – ଅଛି ମନେ କରିବନି । ସତରେ କହୁଛି, ସେଠି ତାକୁ ଜିଣିଆସିବା କଠିନ । ସେ ପଢ଼ାଶୁଣା ବେଶୀ ଯେ କରିଛି ତାହା ନୁହେଁ, କିନ୍ତୁ ତର୍କ ବିତର୍କ ଲାଗି ଯେଉଁ ବୁଦ୍ଧି ଦରକାର, ତାର ସେ ବୁଦ୍ଧି ଅତି ସୂକ୍ଷ୍ମ । ସେ ମଧ୍ୟ ଏସବୁକୁ ବିଶ୍ୱାସ କରେ । ତାକୁ ଯଦି ନିରୁତ୍ତର କରିଦେଇ ପାରିବ, ତାହାହେଲେ ଜାଣିବି— ।

କରଣମୟୀ ଉତ୍ସାହିତ ହୋଇ କହିଲା – ତୁଏତ ପାରି ନ ପାରେ, କିନ୍ତୁ ତାଙ୍କଠୁ ତ କିଛି ଶିଖି ଆସିପାରିବ । କିଏ ସିଏ ? ଆମର ଶ୍ରେଷ୍ଠ ବୋଧହୁଏ ?

ଉପେନ୍ଦ୍ର ହସିବାକୁ ଲାଗିଲା, କହିଲା—ହଁ ସେଇ, ବାସ୍ତବିକ ଭଉଜ, ତାର ବିଚାରଶକ୍ତି ଅତି ଅଦ୍ଭୁତ । ତାର ବୁଦ୍ଧି ଦେଖି ମୁଁ ଥରେ ଥରେ ଅବାକ୍ ହୋଇପଡ଼େ ।

ଉପେନ୍ଦ୍ର ମୁହଁରେ ସୁରବାଳାର ଏଇ ଉଚ୍ଛ୍ୱସିତ ପ୍ରଶଂସା ଶୁଣି କରଣମୟୀର ମୁହଁ ର ଅଧି ମଉଳ ଆସିଲା । ଈର୍ଷାର ବେଦନା ସର୍ବାଙ୍ଗ ଘେରିଯାଇ ମନେହେଲା ଯେମିତି କଣ୍ଠରୋଧ କରି ପକାଉଛି । ସେ ହଠାତ୍ କିଛି କହି ପାରିଲାନି ।

କିନ୍ତୁ ଉପେନ୍ଦ୍ର ଏହା ଲକ୍ଷ୍ୟ କଲା ନାହିଁ । ପଚାରିଲା— ବୋଧହୁଏ ତା ସଙ୍ଗେ ଆପଣଙ୍କର କୌଣସି ଦିନ ଆଲୋଚନା ହୋଇ ନାହିଁ ?

କରଣମୟୀ ମୁଣ୍ଡ ହଲେଇ କହିଲା – ନା, ମୋଟରେ ଦିଟା ଦିନ ତ ସେ ଏଠାକୁ ଆସିଥିଲେ । ସେ ପୁଣି ଇମିତି ସମୟରେ ଯେ···। ଆଜି ଚାଲନା, ତୁମର ସେ ତର୍କବାଗୀଶଙ୍କୁ ଥରେ ଦେଖିଆସିବି ।

—ନା ଭଉଜ, ସେ ଆଦୌ ତାର୍କିକା ନୁହେଁ । ବସ୍ତୁତଃ ଏଇ ଯେଉଁ ସମସ୍ୟାଗୁଡ଼ାକ, ତା ଛଡ଼ା ସେ ଆଉ କୌଣସି ବିଷୟରେ ତର୍କ କରେନା । ଆଉ ଯାହା କହିବ, ସେ ମାନିନେବ । ଆଉ ଦି ତିନି ଦିନ ପରେ ସେ ଗାଁକୁ ଚାଲିଯିବ । କହିବ ଯଦି ତାକୁ ଏଇଠିକି ନେଇଆସିବି ।

କରଣମୟୀ ବ୍ୟସ୍ତ ହୋଇ କହିଲା—ନା ଉପେନ୍ଦ୍ର, ଏଠିକି ଆଣି ମୁଁ ତାଙ୍କୁ କଷ୍ଟ ଦେବାକୁ ଚାହେଁନା । ଯେଉଁଦିନ ସେ କଷ୍ଟ ସ୍ୱୀକାର କରି ଏଠାକୁ ଆସିଥିଲେ, ସେତିକି ମୋର ଭାଗ୍ୟ ! ମତେ ନେଇ ଚାଲ, ମୁଁ ଯିବି ! ଆଚ୍ଛା ଉପେନ୍ଦ୍ର, ଏତେବଡ଼ ତାର୍କିକ ଗୁରୁ ଥାଉ ଥାଉ ତୁମେ ଦି ଜଣ ମୋର ଉତ୍ତର ଦେଇପାରିଲନି କମିତି ?

ଦିବାକର ଚୁପ୍ ରହିଲା । ଉପେନ୍ଦ୍ର କହିଲା—ସେ ସବୁ ତ ଶିଖା ଯାଏନା । କେତେ ଥର ତ ଶୁଣିଛ, କୌଣସିମତେ ଆୟତ୍ତ କରିପାରିଲନି । ଯେଉଁମାନେ ଭଗବାନଙ୍କୁ ମାନନ୍ତି, ସେମାନେ କହିବେ, ଏ ହେଉଛି ସେମାନଙ୍କ ଡାହାଣ ହାତର ସର୍ବଶ୍ରେଷ୍ଠ ଦାନ ।

କରଣମୟୀ ଠିକ୍ ବୁଝିପାରିଲେନି ଏ କ'ଣ ? ତଥାପି ତାର ମୁହଁ ଗୋଟାକ-ଯାକ କଳା ପଡ଼ିଗଲା । କୌଣସିମତେ ତା ମୁହଁରେ ହସ ଫୁଟିଲାନି ।

ହଠାତ୍ ସେ କହିଲା—ଶୁଣ ଉପେନ୍ଦ୍ର, ମୁଁ ଆଜ ତାଙ୍କର ସହିତ ଦେଖା କରି ଆସିବି । ତୁମର ଯାହା ଲାଗି ହିଂସା ହୁଏ, ସେ ଜିନିଷଟିକୁ ନ ଦେଖିବାଯାଏଁ ମୁଁ କୌଣସିମତେ ତୃପ୍ତି ପାଇବିନି ।

କରଣମୟୀର ଆଗ୍ରହାତିଶଯ୍ୟରେ ଉପେନ୍ଦ୍ର କୌଣସିମତେ ହସକୁ ଚାପି ପାରିଲାନି । କରଣମୟୀ ଈର୍ଷାରେ ଏତେ ଆଚ୍ଛନ୍ନ ହୋଇ ପଡ଼ି ନ ଥିଲେ ହୁଏତ ତାର ଏତେବେଳଯାଏଁ ଝିଟ୍କୁ ଗାମ୍ଭୀର୍ଯ୍ୟ ଉପେନ୍ଦ୍ର ଆଖିପଲକରେ ଧରି ପାରିଥାଆନ୍ତା । କିନ୍ତୁ ସେ ଆଡ଼କୁ ତାର ଦୃଷ୍ଟି ଆଦୌ ନ ଥିଲା ।

କରଣମୟୀ କହିଲା—ତୁମ ଗୋଡ଼ ତଳେ ପଡ଼ୁଛି, ମତେ ନେଇଚାଲ ।

ଉପେନ୍ଦ୍ର ବ୍ୟସ୍ତ ହୋଇ ହାତ ମୁଣ୍ଡରେ ଦେଇ କହିଲା— ଛି, ଛି, ଏଭଳି କଥା ମୁହଁରେ କେବେ ଧରିବନି ଭାଉଜ ! ତୁମେ ବୟସରେ ଶ୍ରେଷ୍ଠ ହେଲେ ମଧ୍ୟ ମୋର ପୂଜନୀୟ । ବେଶ୍, ମାଉସୀ ମନ୍ଦିରୁ ଫେରି-ଆସନ୍ତୁ, ତୁମକୁ ନେଇ ତା ପାଖରେ ଭେଟେଇଦେବି ।

## ଛବିଶ

ପ୍ରାୟ ଅପରାହ୍ଣରେ କରଣମୟୀ ଜ୍ୟୋତିଷବାବୁଙ୍କ ଘରେ ଆସି ପହଞ୍ଚିଲେ । ପିନ୍ଧିଛନ୍ତି ଖଣ୍ଡେ ମୋଟା ଥାନ ଲୁଗା; ଦେହରେ ଖଣ୍ଡିଏ ହେଲେ ଅଳଙ୍କାର ନାହିଁ । ସୁଦୀର୍ଘ ରୁକ୍ଷ କେଶରାଶି ବିପର୍ଯ୍ୟସ୍ତ ଭାବେ ମୁଣ୍ଡରେ ଗୁଡ଼ାଆ ହୋଇଛି, ଚକ୍ଷୁରେ ଶ୍ରାନ୍ତ ଉଦାସ ଦୃଷ୍ଟି, ସତେ ଯେମିତି ବୈଧ-ବ୍ୟର ଅଲୌକିକ ଐଶ୍ୱର୍ଯ୍ୟ ତାଙ୍କ ସର୍ବାଙ୍ଗରେ ଘେରିରହିଛି । ସେ ମୁହଁକୁ ଚାହିଁଲେ ଚକ୍ଷୁ ଯେମିତି ନଜେ ନଜେ ତାଙ୍କ ପାଦତଳକୁ ଓହ୍ଲାଇ ଆସେ । ସରୋଜିନୀ ବାହାର ବାରଣ୍ଡାରେ ଗୋଟିଏ ଚୌକିରେ ବସି ବହି ପଢ଼ୁଥିଲା । ଆଖି ଉଠେଇ ଅକସ୍ମାତ୍ ଏଇ ଆଶ୍ଚର୍ଯ୍ୟ ରୂପ ଦେଖି ଏକବାରେ ବିହ୍ୱଳ ହୋଇଗଲା । ସେ କରଣମୟୀଙ୍କୁ କେବେ ଆଖିରେ ଦେଖିନି । ତାଙ୍କ ନାମ ଏବଂ ସୌନ୍ଦର୍ଯ୍ୟର ଖ୍ୟାତି ସୁରବାଳା ମୁହଁରୁ କେବଳ ଶୁଣିଥିଲା । କିନ୍ତୁ ସେ ସୌନ୍ଦର୍ଯ୍ୟ ଯେ ଏଇ ପ୍ରକାର, ତାହା ସେ କଳ୍ପନା କରି ନ ଥିଲା ।

ଉପେନ୍ଦ୍ର ତାଙ୍କର ପରିଚୟ ଦେଲା — ଆମ ଭାଉଜ, ସରୋଜନୀ !

ସରୋଜନୀ ପାଖକୁ ଆସି ନମସ୍କାର କଲା ।

କିରଣମୟୀ ତା ହାତ ଧରି ସହାସ୍ୟେ କହିଲେ—ତୁମ ନାଁ ମୁଁ ସମସ୍ତଙ୍କଠାରୁ ଶୁଣିଛି, ସେଥିପାଇଁ ଆଜ ଆଖିରେ ଥରେ ଦେଖିବି ବୋଲି ଆସିଲି ।

ଏ କଥାରେ ସେ କ'ଣ ଉତ୍ତର ଦେବ, ସରୋଜନୀ କିଛି ଖୋଜି ପାଇଲାନି । ଅପରିଚିତ ଲୋକଙ୍କ ସହିତ ମିଶିବାକୁ ସେ ପିଲାଦିନରୁ ଅଭ୍ୟସ୍ତ; କିନ୍ତୁ ଏଇ ଆଶ୍ଚର୍ଯ୍ୟ ବିଧବା ନାରୀ ଆଗରେ ସେ ନିର୍ବାକ୍ ହୋଇଗଲା ।

ଉପେନ୍ଦ୍ର ଆଡ଼କୁ ଚାହିଁ କିରଣମୟୀ କହିଲେ —ଆଜ ଆଉ ବେଳ ନାହିଁ, ବେଶୀ ସମୟ ରହିପାରିବି ନାହିଁ । ଉପେନ୍ଦ୍ର, ଚାଲ ଥରେ ଟିକିଏ ସ୍ତ୍ରୋଟ ବୋହୂଘରକୁ ଯିବା । ଏହା କହି ସେ ସରୋଜନୀ ହାତକୁ ଥରେ ଚାପିଦେଲେ ।

କିନ୍ତୁ ଯେଉଁ ଝୁଙ୍କରେ କିରଣମୟୀ ଆଜ ଏଇ ଅସମୟରେ ସୁର-ବାଳା ସହିତ ସାକ୍ଷାତ କରିବାକୁ ଆସିଥିଲେ, ସେଇ ଉତ୍ତେଜନାର କାରଣ ଆଉ ତାଙ୍କର ଅଜଣା ନ ଥିଲା । ରାସ୍ତାରେ ଆସିଲାବେଳେ ତାଙ୍କର ବହୁତଥର ମନେ ହୋଇଥିଲା, ଯାହା ସହିତ ମୋଟେ ଦୁଇଟି ଦିନର ପରିଚୟ, ସେଇ ସୁରବାଳାର ବିଶ୍ୱାସ ଏବଂ ବିଦ୍ୟାବୁଦ୍ଧି ଯାହା ବି ହେଉ, ଅକାରଣେ ପର ଘରକୁ ଯାଇ ଆକ୍ରମଣକରିବା ତାଙ୍କର ଉଚିତ ନ ଥିଲା । ସୁତରାଂ ଫେରିଯିବା ଉଚିତ, ଅଥଚ ଫେରିବ କିମିତି ? କ'ଣ ଗୋଟାଏ ଯେମିତି ତାଙ୍କୁ ଏଠାକୁ ଟାଣିଆଣିଚି । ଅନ୍ୟାୟ ! ଅସଙ୍ଗତ ! ଏ କଥା ବି ସେ ମନେ ମନେ ବହୁତ ଥର ଉଚ୍ଚାରଣ କରିଛି; କିନ୍ତୁ ପ୍ରେୟସୀ ଭାର୍ଯ୍ୟାର ଯେଉଁ ଐଶ୍ୱର୍ଯ୍ୟକୁ ଉପେନ୍ଦ୍ର ଈଶ୍ୱରଙ୍କ ସର୍ବଶ୍ରେଷ୍ଠ ଦାନ ବୋଲି ସ୍ୱୀକାର କରିବାକୁ ଲଜ୍ଜା-ବୋଧ କରେନା, ସେ ପୁଣି କିଛି ନୁହେଁ । ତାକୁ ଆଖିର ପଲକମାତ୍ରେ ଯେ ସେ ପରାସ୍ତ କରିଦେଇପାରନ୍ତି, ଏଇଟାକୁ ପ୍ରମାଣ କରିବାର ଅଦମ୍ୟ ଆକାଂକ୍ଷା ତାଙ୍କ ହୃଦୟ ଭିତରେ ପ୍ରତିହିଂସା ପରି ବୁଲୁଥିଲା । କୌଣସି-ମତେ ଏହାକୁ ସେ ନିରସ୍ତ କରିପାରିଲେନି । ସତୀଶଠାରୁ ସେ ଉପେନ୍ଦ୍ରର ଯେଉଁ ପରିଚୟ ପାଇଥିଲେ, ସେଥିରେ ତାଙ୍କ ମନ ବାରମ୍ବାର କହୁଥିଲା, ଇଚ୍ଛା କରିଥିଲେ ଉପେନ୍ଦ୍ର ଜବାବ ଦେଇପାରିଥାନ୍ତା; କିନ୍ତୁ କିଛି ନ କହି ହସିଛି କେବଳ । କାହିଁକି ? ସେ କ'ଣ ସୁରବାଳା ପାଖକୁ ନେଇଯାଇ ତାଙ୍କୁ ତୁଚ୍ଛ

କରିଦେବା ପାଇଁ ? କିନ୍ତୁ ସୁରବାଳା ବି ଯଦି କିଛି ଉତ୍ତର ନ ଦିଏ ? ସ୍ୱାମୀ ଭଳି କେବଳ ହସେ ? ତା' ହେଲେ କେମିତି ସେ ତାର ବିଜୟ-ପତାକା ପ୍ରତିଷ୍ଠା କରିବ ?

ଏମିତି ଭାବି ଭାବି ସେ ଯେତେବେଳେ ସରୋଜିନୀ ସହିତ ସୁରବାଳା ଘରେ ଆସି ପହଞ୍ଚିଲେ, ଦେଖିଲେ ସୁରବାଳା ମହାଭାରତର ଭୀଷ୍ମଙ୍କ ଶର-ଶଯ୍ୟା ବିଷୟଟି ପଢ଼ି କାନ୍ଦି କାନ୍ଦି ବ୍ୟସ୍ତ ହୋଇ ପଡ଼ିଥିଲା । ହଠାତ୍ କିରଣମୟୀଙ୍କୁ ଦେଖି ବ୍ୟସ୍ତ ହୋଇ ବହିଟି ବନ୍ଦକରି ଆଖିର ଲୁହ ପୋଛି ପକାଇଲା ଏବଂ ଉଠିପଡ଼ି କିରଣମୟୀଙ୍କ ହାତ ଦୁଇଟି ଧରି ପକାଇ କହିଲା—ଦିଦି, ଆସ ।

ସେଇଠି କାର୍ପେଟ ଉପରେ ବସାଇ କହିଲା—ମୁଁ କାଲି ତୁମ ଘରକୁ ଯିବାକୁ ବାହାରିଥିଲି ।

କିରଣମୟୀ କହିଲେ—ମୁଁ ସେଇଥିପାଇଁ ତ ଆଜି ଚାଲିଆସିଲି ।

ଉପେନ୍ଦ୍ର ଗୋଟିଏ ଚୌକି ଟାଣିନେଇ ଟିକିଏ ଦୂରରେ ବସିଲା । କହିଲା—କାନ୍ଦୁଥିଲ ବୋଧହୁଏ । ସେଇଟା କ'ଣ ? ମହାଭାରତ !

ସୁରବାଳା ଲଜରେ କେବଳ ଲୁଗାକାନିରେ ଆଖି ପୋଛିବାକୁ ଲାଗିଲା ।

ଉପେନ୍ଦ୍ର କହିଲା—ଜାଣିନି ଯେ ତୁମେ ସେଇ ବହି ଖଣ୍ଡିକ ନେଇ ସମସ୍ତ ନଷ୍ଟ କର, ମୁଁ କିଛି ବୁଝିପାରୁନି । ତା' ଉପରେ ପୁଣି କାନ୍ଦାକଟା, ଆଖିର ପାଣି—କଥାଟା ଶେଷ ହେଲାନି । ସୁରବାଳା ରାଗିଉଠି କହିଲା—ଶହେଥର କହି ତୁମେ କୁହ ଯେ—

ଉପେନ୍ଦ୍ର କହିଲା—କୁହ ଯେ ତାର ମୂଳରୁ ଶେଷ ପର୍ଯ୍ୟନ୍ତ ମିଛ ।

ଏସବୁ ବିଷୟରେ ତାକୁ ରଗାଇବାକୁ ଡେରି ହୁଏ ନାହିଁ । ସେ ତା'ର ଆରକ୍ତ ଆଖି ଦୁଇଟି ସ୍ୱାମୀଙ୍କ ମୁହଁ ଉପରେ ସ୍ଥିର କରି କହିଲା—ମହାଭାରତ ମିଛ ? ଏମିତି କଥା ତୁମେ ମୁହଁକୁ କେବେ ଆଣନି । ଇଏ ତାମସା ନୁହେ । ଏଥିରେ ଅପରାଧ ହୁଏ ବୋଲି ଜାଣ ତ ?

ଉପେନ୍ଦ୍ର କହିଲା—ଜାଣେ, କିଛି ହୁଏନି । ଆଚ୍ଛା, ତାଙ୍କୁ ପଚାର—ସେ ମଧ୍ୟ ବିଶ୍ୱାସ କରନ୍ତିନି ।

ଏଥର ସୁରବାଳା କିରଣମୟୀଙ୍କ ମୁହଁ ଆଡ଼କୁ ଚାହିଁ ଫେଁକିନା ହସି ଉଠିଲା । କହିଲା— ଶୁଣ ଦିଦି, ତୁମେମାନେ ମହାଭାରତକୁ ବିଶ୍ୱାସ

କରନ୍ତି ! ଖାଲି ତାଙ୍କର ସେଇଭଳି କଥା ! ଯାହାହେଲେ ଗୋଟାଏ କିଛି କହିଦେଲେ ଗଲା ।

କିରଣମୟୀ ଚୁପ୍ ରହିଲେ । ସ୍ୱାମୀ ଯୀଙ୍କ ଏଇ ଅଦ୍ଭୁତ ବାକ୍-ବିତଣ୍ଡାର ସେ ଅର୍ଥ ସୁଦ୍ଧା ଗ୍ରହଣ କରିପାରିଲେନି । ତାଙ୍କର ମନେହେଲା—ଏଇଟା ଗୋଟାଏ ଅଭିନୟ ଏବଂ ତାଙ୍କୁ ଉପଲକ୍ଷ୍ୟ କରି କ'ଣ ଗୋଟାଏ ରହସ୍ୟ ପ୍ରଚ୍ଛନ୍ନ ରହିଛି ।

ଉପେନ୍ଦ୍ର ସର୍ବୋଜମାଙ୍କୁ ଲକ୍ଷ୍ୟକରି ପ୍ରଶ୍ନ କଲା—ଆଚ୍ଛା, ଆପଣ ମହାଭାରତର କାହାଣୀଗୁଡ଼ିକୁ ସତ ମନେକରନ୍ତି ?

ସର୍ବୋଜମା କହିଲା—କିଛି ନା କିଛି ସତ୍ୟ ନିଶ୍ଚୟ ଅଛି; କିନ୍ତୁ ମୂଳରୁ ଶେଷଯାଏ ସତ୍ୟ କେହି ମନେକରନ୍ତିନି, ମୁଁ ମଧ୍ୟ କରେନି ।

ସୁରବାଳା ପ୍ରଥମେ ଅବାକ୍ ! ତା'ପରେ ଥଟ୍ଟା ମନେକରି ଏହା ଉଡ଼ାଇ ଦେଲା । କିନ୍ତୁ ସର୍ବୋଜମାର ଆଉ ଦି ଗୁଟିଏ କଥାରେ ଏବଂ ଉପେନ୍ଦ୍ରର ବ୍ୟଙ୍ଗ-ବିଦ୍ରୂପର ଖୋଞ୍ଚାରେ ଅଧିକତର ବିସ୍ମିତ ଓ କ୍ରୁଦ୍ଧ ହୋଇଉଠିଲା । ଦେଖୁ ଦେଖୁ ତିନିଜଣଯାକର ତର୍କ ଉଦ୍ଦାମ ହୋଇଉଠିଲା । କିନ୍ତୁ ସେତେବେଳ-ଯାଏ କିରଣମୟୀ ପଦେହେଲେ କଥା ବି କହିନାହାନ୍ତି । କାରଣ ଏଇ ସମସ୍ତ ବାଦାନୁବାଦ ପରିହାସ ଛଡ଼ା ଯେ ଆଉ କ'ଣ ହୋଇପାରେ, ତାହା ସେ ମନେ ବି କରିପାରିଲେନି । ଯାହା ସହିତ ସେ ଯୁକ୍ତିତର୍କ କରିବାକୁ ଆସିଛନ୍ତି, ସେ ଯେତେବେଳେ ସମଗ୍ର ମହାଭାରତଟା ଅସତ୍ୟ ବୋଲି ପ୍ରମାଣ କରିବାକୁ ଅଣ୍ଟାଭିଡ଼ି ବସିଚି, ଏଭଳି ଅଚିନ୍ତନୀୟ ବ୍ୟାପାର ସତ୍ୟ ବୋଲି ସେ କିଭଳି ବା ମନ ଭିତରେ ଗ୍ରହଣ କରିବ ? ଏଆଡ଼େ ତର୍କ ଏବଂ କଥା କଟାକଟି ଅବିରାମ ଭାବରେ ଚାଲିବାକୁ ଲାଗିଲା । କିନ୍ତୁ କିରଣମୟୀ କେବଳ ତୀକ୍ଷ୍ଣଦୃଷ୍ଟିରେ ସୁରବାଳା ଆଡ଼କୁ ନୀରବରେ ଚାହିଁ ରହିଲେ । ଦେଖୁ ଦେଖୁ ତାଙ୍କ ସନ୍ଦେହର ଜମାଟ ବାଷ୍ପ ଭଳି ମିଳେଇ ଗଲା । ଦେଖିଲେ, ସୁରବାଳାର କଣ୍ଠସ୍ୱର, ଆଖିର ଚାହାଣୀ, ସମଗ୍ର ମୁହଁ, ଏପରି କି ସର୍ବାଙ୍ଗରୁ ସଂଶୟହୀନ ଦୃଢ଼ ପ୍ରତ୍ୟୟ ଯେଉଁଭଳି ବାହିହୋଇ ଯାଇଛି । ଏହି ବିପୁଳ ବିରାଟ ଗ୍ରନ୍ଥଟି ତା' ହୃଦୟରେ ପ୍ରତ୍ୟକ୍ଷ ସତ୍ୟ ! ଇଏ ତ କୌତୁକ ନୁହେଁ, ଜୀବନ୍ତ ବିଶ୍ୱାସ । ତାପରେ କିଛି ସମୟ ଲାଗି କିଏ କ'ଣ କହିବାକୁ ଲାଗିଲେ, ସେଆଡ଼କୁ ତାଙ୍କର ଚେତନା ରହିଲାନି ।

ଯେପରି ମନେହେଲା, ସୁରବାଳା ଭିତରେ ଗୋଟାଏ ଅପରିମିତ ଗର୍ବର ଆକୃତି ଲାଗିରହିଛି । ତାହା ଅଦୃଷ୍ଟପୂର୍ବ ।

କିନ୍ତୁ ଏରୂପ କେତେ ସମୟ ରହେ ବୁଝାଯାଇପାରେନା । ସହସା ସେ ଉପେନ୍ଦ୍ର ଓ ସରୋଜିନୀର ସମବେତ ଉଚ୍ଚ ହସ ଶବ୍ଦରେ ଆତ୍ମସ୍ଥ ହୋଇ-ଉଠିଲେ । ଦେଖିବାକୁ ପାଇଲେ, ହସର ଛଟାରେ ସୁରବାଳା ବିବ୍ରତ ହୋଇ-ପଡ଼ିଛି । ସେ ବିଚାରୀ ଏକା; ତେଣୁ ସେ କିରଣମୟୀଙ୍କୁ ହଠାତ୍ ମଧ୍ୟସ୍ଥ ମାନିନେଇ କ୍ଷୁବ୍ଧ ସ୍ୱରରେ କହିଲା—ଆଚ୍ଛା ଦିଦି, ତୁମେ କହିଲ, ଏ କ'ଣ କେବେ ମିଥ୍ୟା ହୋଇପାରେ ?

ଉପେନ୍ଦ୍ର କିରଣମୟୀଙ୍କୁ ଚାହିଁ ହସକୁ ଦମନ କରି କହିଲେ—ଭାଉଜ, ଏଇ ହେଲା ତର୍କ । ସରୋଜିନୀ କହୁଛି, ଭୀଷ୍ମଙ୍କ ଶରଶଯ୍ୟା ସମୟରେ ଅର୍ଜୁନ ଯେଉଁ ଶର ବିନ୍ଧି ପୃଥିବୀକୁ ବିଦୀର୍ଣ୍ଣ କରି ଗଙ୍ଗା ଆଣିଥିଲେ, ସେ ସବୁ ମିଥ୍ୟା କଥା । ସେ କେବେ ଆଣି ନାହାନ୍ତି ।

ସୁରବାଳା ସ୍ୱାମୀଙ୍କ ଆଡ଼କୁ ତୀବ୍ର ଦୃଷ୍ଟିପାତ କରି କହିଲା—ଯଦି ନ ଆଣିଥାଆନ୍ତି, ତାହାହେଲେ ଶୁଣ କହୁଛି । ଭୀଷ୍ମଦେବ ଶରଶଯ୍ୟାରେ ଶୋଇ ପାଣି ପିଇବାକୁ ଚାହିଁଲେ । ଦୁର୍ଯ୍ୟୋଧନ ସୁବର୍ଣ୍ଣ ପାତ୍ରରେ ପାଣି ଆଣି ଦେଲେ ସତ, କିନ୍ତୁ ସେ ତାହା ସ୍ପର୍ଶ ସୁଦ୍ଧା କଲେ ନାହିଁ । ଇଏ ତ ମିଥ୍ୟା ନୁହେଁ । ଗଙ୍ଗା ଯଦି ନ ଆସିଲେ, ତାହାହେଲେ ତାଙ୍କର ପିପାସା ମେଣ୍ଟିଲା କେଉଁଥିରେ ?

ସରୋଜିନୀ ଅସହିଷ୍ଣୁ ହୋଇଉଠି କହିଲା—କେଉଁଥିରେ ? ଯଦି କହେ ପିପାସା ମେଣ୍ଟିଲା ସେଇ ସୁବର୍ଣ୍ଣ ପାତ୍ରରେ, ତାହାହେଲେ ମୋର ମନେହୁଏ ଭୀଷ୍ମ ସେଇ ଦୁର୍ଯ୍ୟୋଧନଙ୍କ ହାତରୁ ହିଁ ପାଣି ପିଇଥିଲେ ।

ଏଥର ସୁରବାଳା ଭୀଷଣ ଉତ୍ତେଜିତ ଓ ରୁଷ୍ଟ ହୋଇ କହିଲା—ତେବେ ସେ ପିଇ ନାହାନ୍ତି ବୋଲି କିମିତି ଲେଖାଅଛି ? ଧର ସେ ଦୁର୍ଯ୍ୟୋଧନ ହାତରୁ ପାଣି ପିଇଲେ, ତେବେ ଅର୍ଜୁନ ଏତେ କଷ୍ଟରେ ବାଣ ବିନ୍ଧି ପୃଥିବୀକୁ ବିଦୀର୍ଣ୍ଣ କରି ଗଙ୍ଗା ମାତାଙ୍କୁ ଆଣିବାର କ'ଣ ବା ଦରକାର ଥିଲା ? ସେ କଥା କୁହ, ଦିଦି ! ଇଏ ତ କେବେ ମିଥ୍ୟା ହୋଇ-ପାରେନା । ଏହା କହି ସେ କ୍ରୁଦ୍ଧ ଅଥଚ କରୁଣ ଚକ୍ଷୁରେ କିରଣମୟୀଙ୍କୁ

ଆବେଦନ ଜଣାଇଲା । ମୂହୂର୍ତ୍ତିକ ଭିତରେ ଉପେନ୍ଦ୍ରର ଉଚ୍ଚ ହାସ୍ୟ ଘରଟାକୁ ଫାଟିଇ ପକାଇଲା । ସରୋଜିନୀ ଖିଲ ଖିଲ କରି ହସିଉଠିଲା ।

ଉପେନ୍ଦ୍ର କହିଲା—ହଁଅ ଭାଉଜ, କ'ଣ ଉତ୍ତର ଦେଉଚ ଦିଅ । ଗଙ୍ଗା ଯଦି ନ ଆସିଲା, ତାହାହେଲେ ପିପାସା ମେଣ୍ଟିଲା କେଉଁଥିରେ ? ଯଦି ପିପାସା ମେଣ୍ଟିଲା, ତାହାହେଲେ ଗଙ୍ଗା ନ ଆସିବେ କାହିଁକି ? ଏହା କହି ସେ ଆଉଥରେ ଖୁବ୍ ହସିଉଠିଲା ।

କିନ୍ତୁ ବଡ଼ ଆଶ୍ଚର୍ଯ୍ୟ ! କିରଣମୟୀ ଏ ହସରେ ଯୋଗଦେଇ ପାରିଲେନି । ସେ ବିସ୍ମିତ ସ୍ତବ୍ଧ ଚକ୍ଷୁରେ କିଛି ସମୟ ସୁରବାଳା ମୁହଁ ଆଡ଼କୁ ଚାହିଁ ସ୍ଥିରହୋଇ ରହିଲେ । ତାପରେ ଅକସ୍ମାତ୍ ବିପୁଳ ଆବେଗରେ ତାକୁ ବୁକୁ ଭିତରକୁ ଟାଣିନେଇ ଚୁପ୍ ଚୁପ୍ କହିଲେ—ମିଥ୍ୟା ନୁହେଁ ଭଉଣୀ, ଏଥିରେ ତିଳେହେଲେ ମିଥ୍ୟା ନାହିଁ । ଗଙ୍ଗା ଆସିଥିଲେ ନିଶ୍ଚୟ । ତୁମେ ଯାହା ବୁଝିଚ, ଯାହା ପଢ଼ିଚ, ସବୁ ସତ । ସତକୁ ତ ସମସ୍ତେ ଚିହ୍ନି ପାରନ୍ତିନି ଭଉଣୀ, ତେଣୁ ଥଟ୍ଟା କରିଥାଆନ୍ତି । ତାଙ୍କର ଦୁଇ ଚକ୍ଷୁ ଅଶ୍ରୁ-ଜଳରେ ପ୍ଳାବିତ ହୋଇପଡ଼ିଲା ।

ସରୋଜିନୀ ଓ ଉପେନ୍ଦ୍ର ଉଭୟେ ବିସ୍ମୟରେ ହତବୁଦ୍ଧି ହୋଇପଡ଼ି ତାଙ୍କ ମୁହଁ ଆଡ଼କୁ ଚାହିଁରହିଲେ । କିରଣମୟୀ ସେ ଆଡ଼କୁ ଭ୍ରୂକ୍ଷେପ ସୁଦ୍ଧା କଲେ ନାହିଁ । ତାକୁ ସେମିତି ବୁକୁ ଭିତରେ ଚାପି ଧରି ଆଖି ପୋଛି ଧୀରେ ଧୀରେ କହିଲେ—ଭଉଣୀ ! ଯେଉଁମାନେ ଅନେକ ଧର୍ମଗ୍ରନ୍ଥ ପଢ଼ିଛନ୍ତି, ସେମାନେ ଜାଣନ୍ତି, ଆଜି ତୁମେ ଯେଉଁଭଳି ବିଚାର କଲ, ତାଠୁ ଅଧିକ ବିଚାର କୌଣସି ଦିନ କୌଣସି ପଣ୍ଡିତ କରି ନାହିଁ । ସେମାନେ ସମସ୍ତଙ୍କୁ ଏଭଳି ନିଜର ମନ କଥା କହିବାକୁ ପଡ଼ିଚ । ଏ କଥା ଯେ ଜାଣେ, ତାର ସାଧ ନାହିଁ, ଅଥଚ ଆଜି ତୁମ ମୁହଁରୁ କେତୋଟି କଥା ଶୁଣି ହସେ । ଏହା କହି ସେ ତାକୁ ଛାଡ଼ିଦେଇ ସରୋଜିନୀ ଆଡ଼କୁ ଚାହିଁ କହିଲେ—ତୁମେ ବୋଧହୁଏ ମୋର ଏ କାଣ୍ଡ ଦେଖି ଆଶ୍ଚର୍ଯ୍ୟ ହୋଇପଡ଼ିଚ । ହେବା କଥା । ଏହା କହି ଟିକିଏ ହସିଲେ ।

କିନ୍ତୁ ସବୁଠୁ ଅଧିକ ହତବୁଦ୍ଧି ହୋଇ ପଡ଼ିଥିଲା ଉପେନ୍ଦ୍ର ନିଜେ । ବସ୍ତୁତଃ କିରଣମୟୀଙ୍କର ଏ ଅଦ୍ଭୁତ ଭାବ ପରିବର୍ତ୍ତନର ହେତୁ ସେ ଆଦୌ ବୁଝିପାରିନି । ଯିଏ ଏଇ ଅଳ୍ପ କେତେକ ସମୟ ପୂର୍ବରୁ ସ୍ପଷ୍ଟ ଭାବେ

କହିଛନ୍ତି ସେ ବୁଦ୍ଧିକୁ ଅଭିଜ୍ଞତା ଛଡ଼ା ଅନ୍ୟ କୌଣସି ତୁଳା ଦଣ୍ଡରେ ଓଜନ କରାଯାଇ ନ ପାରେ ଏବଂ ଯେଉଁ ବସ୍ତୁ ଏହାର ବାହାରେ, ତାକୁ ଭିତରେ ପ୍ରବେଶ କରାଇବାର କଷ୍ଟହେଲେ ପ୍ରୟୋଜନ ଅନୁଭବ କରେନା, ସେ ସୁରବାଳାର ଏଭଳି ଏକାନ୍ତ ପିଲାଳିଆ ଭାବରେ ବିଚଳିତ ହେଲେ କପରି ? ତାକୁ ବୁକୁ ଉପରକୁ ଟାଣିନେଇ ଯେଉଁସବୁ କଥା ଏହିକ୍ଷଣି କହିଲେ, ସେ ତ ମନଧରିବା କଥା ନୁହେଁ । ତା ଛଡ଼ା ସେ ନିଶ୍ଚୟ ଜାଣେ, ସେ ଯାହା କହୁଛନ୍ତି, ତାର ଯଥାର୍ଥ ତାତ୍ପର୍ଯ୍ୟ ହୃଦୟଙ୍ଗମ କରିବା ସୁରବାଳାର ସାଧ୍ୟ ନୁହେଁ । ସର୍ବାପେକ୍ଷା ବିସ୍ମୟକର ତା'ର ଆକସ୍ମିକ ଉଦ୍‌ଗତ ଅଶ୍ରୁ । ସେ ଆସିଲା କିମିତି ? ଏହାଛଡ଼ା ଆଉ ଗୋଟାଏ କଥା । ଉପେନ୍ଦ୍ର ନିଃସଂଶୟରେ ଜାଣେ, ଏହିଭଳି ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନା ନାରୀ ଆବେଗ ପ୍ରକାଶ କରିବାକୁ ଆଦୌ ଚାହାନ୍ତିନ । କୌଣସି ପ୍ରକାରେ ପ୍ରକାଶ କଲେ ବି ଲଜ୍ଜାର ସୀମା ରହେନା । କିନ୍ତୁ ତିଳେହେଲେ ଲଜ୍ଜା ସେ ଯେ ନିଜର ବ୍ୟବହାରରେ ଅନୁଭବ କରିଛନ୍ତି, ସେ ଲକ୍ଷଣ ତ ସମ୍ପୂର୍ଣ୍ଣ ଅପରିଚିତା ସହେରାଜମା ପାଖରେ ଧରା ପଡ଼ିଲାନି ।

ସନ୍ଧ୍ୟା ହୋଇଆସିଲା । କିରଣମୟୀ ସମସ୍ତଙ୍କ ପାଖରୁ ବିଦାୟ ଗ୍ରହଣ କରି ଧୀରେ ଧୀରେ ଗାଡ଼ିରେ ଆସି ବସିଲେ ।

ଦିବାକର ଘରେ ନ ଥିଲା, ସାନ୍ଧ୍ୟଭ୍ରମଣରେ ବାହାରି ଯାଇଥିଲା । ସୁତରାଂ ଇତସ୍ତତଃ ହୋଇ ପରେ ଉପେନ୍ଦ୍ର ଏକାକୀ ଯାଇ ଗାଡ଼ିରେ ବସିଲା । କିନ୍ତୁ କିରଣମୟୀ ଆଉ ତାକୁ ଯେମିତି ଲକ୍ଷ୍ୟ ବି କଲେନି । ଗାଡ଼ିର ଗୋଟାଏ କୋଣରେ ମୁଣ୍ଡ ରଖି ସ୍ତବ୍ଧ ହୋଇ ବସିରହିଲେ ।

କିଛି ସମୟ ଅତିବାହିତ ହେଲା । ଏଭଳି ଚୁପ୍‌ଚାପ୍ ବସିରହିବା ବି ଅପ୍ରୀତିକର । ତାଛଡ଼ା ଉପେନ୍ଦ୍ର ନିଶ୍ଚୟ ବୁଝିଥିଲା, କିରଣମୟୀ କିଛିନା କିଛି ଭାବୁଛନ୍ତି । କିନ୍ତୁ କ'ଣ ଯେ ଭାବୁଛନ୍ତି, ତାହା ଜାଣିବା ଲାଗି କହିଲା—ଦେଖିଆସିଲେ ତ, ଏଇ ବୁଦ୍ଧିମତୀଟିକି ନେଇ ମତେ ଘରସଂସାର କରିବାକୁ ପଡ଼ୁଛି । କିନ୍ତୁ ସିମିତି ତ ତାକୁ ଶାସନ କରିବାର ଜୁର ନାହିଁ । ପୁଣି ଆପଣ ତାକୁ ଯେମିତି ସାର୍ଟିଫିକେଟ ଦେଇଆସିଲେ, ସେଥିରେ ତାର ଆଉ ଥଳକୂଳ ରହିବନି ।

କରଣମୟୀ ଏହାର କୌଣସି ଉତ୍ତର ଦେଲେନି । ଟିକିଏ ଅପେକ୍ଷା କରିବା ପରେ ଉପେନ୍ଦ୍ର ହସି ହସି କହିଲା—କିନ୍ତୁ ଏଇଠିକରେ ତ ସ୍ଥିର ଶେଷ ନାହିଁ ଭାଉଜ ! ସେ ଏତେ ବଡ଼ ବୋକା ଯେ କେବେହେଲେ ମିଛ ଟିକିଏ କହିପାରେନା ।

କରଣମୟୀ ସେମିତି ନିସ୍ତବ୍ଧ ହୋଇ ରହିଲେ । ଉପେନ୍ଦ୍ର କହିଲା—ଜାଣିଛ କି ଜାଣ ? ଏକେ ତ ୩୩ କୋଟି ଦେବଦେବୀ ତାକୁ ଚତୁର୍ଦ୍ଦିଗ ଘେରି ଦିନରାତି ପହରା ଦେଉଛନ୍ତି । ତା ଛଡ଼ା ଯାହା ଘଟେନି, ସେ ଟିକେ ବୁଦ୍ଧି ଖର୍ଚ୍ଚ କରି ବନେଇ ଚୂନେଇ କହିବ, ସେ କ୍ଷମତା ବି ତାର ନାହିଁ ।

କରଣମୟୀ ରୁଦ୍ଧକଣ୍ଠରେ ସଂକ୍ଷେପରେ କହିଲେ—ଭଲ କଥା ତ ।

ଉପେନ୍ଦ୍ର କହିଲା—ଏତେ ଭଲ ହେବା ଭଲ ନୁହେଁ ଭାଉଜ, ସଂସାର କରିବାକୁ ଗଲେ କେତେଟା ମିଥ୍ୟାର ଆଶ୍ରୟ ନେବା ଦରକାର । ଯେଉଁଥିରେ କାହାର କୌଣସି କ୍ଷତି ଘଟିବନି ଅଥଚ ଗୋଟାଏ ଗୋଟାଏ ଅଶାନ୍ତି ଉପଦ୍ରବରୁ ବାଞ୍ଚି ପାଇବା ସମ୍ଭବ ହେବ, ସେଥିରେ ଦୋଷ କ'ଣ ? ମୁଁ ତ ଭାବେ ବରଂ ଭଲ ।

—ବେଶ୍ ତ ଶିଖାଉନା !

—ଶିଖିବ କମିତି ଭାଉଜ ? ଗୋଟିଏ ଶ୍ରେଷ୍ଠ ମିଛ ଲାଗି ଯୁଧିଷ୍ଠିରଙ୍କ ଯେଉଁ ଦୁର୍ଗତି ହୋଇଥିଲା, ସେ କଥା ତ ମହାଭାରତରେ ଲେଖା ହୋଇଛି । ଦେବଦେବୀମାନେ ଯେଉଁଭଳି ଆଁ କରି ତା ପାଖରେ ବସି ରହିଛନ୍ତି, ସେଥିରେ ଜାଣିଶୁଣି ମିଥ୍ୟା କଥା କହିଲେ ଆଉ କ'ଣ ସେଥିରେ ରକ୍ଷା- ଥାଏ ? ସେମାନେ ଝିଙ୍କି ଝିଙ୍କି ନେଇ ନରକରେ ତାକୁ ଡୁବେଇଦେବେ । ଟିକିଏ ଅଟକିଯାଇ କହିଲା—ଭାଉଜ ! ଠାକୁର ଦେବତାର ଚେହେରା ସେ ଆଖିବୁଜି ଇମିତି ସ୍ପଷ୍ଟ ଦେଖିପାରେ ଯେ ସେ ଏକ ଆଶ୍ଚର୍ଯ୍ୟ ବ୍ୟାପାର । କିଏ ଖଣ୍ଡା ଢାଲ ନେଇ, ଶଙ୍ଖ ଚକ୍ର ଗଦା ପଦ୍ମ ନେଇ, କିଏ ବଂଶୀ ହାତରେ ଧରି ଇମିତି ପ୍ରତ୍ୟକ୍ଷ ରୂପରେ ତା ଆଗରେ ଠିଆହୁଅନ୍ତି ଯେ, ଶୁଣି ମୋ ଦେହ ଶିହରିଉଠେ । ଆଉ କାହା ମୁହଁରେ ଏ କଥା ଶୁଣିଲେ ମିଥ୍ୟା ଗୁଜବ ବୋଲି ମୁଁ ହସରେ ଉଡ଼େଇ ଦିଅନ୍ତି; କିନ୍ତୁ ତା ସମ୍ବନ୍ଧରେ ମୁହଁରେ ଟିକିଏ ହେଲେ ଅପବାଦ ଆଣିବାର ଜୋର ନାହିଁ । ଏହା କହି ଶ୍ରଦ୍ଧା, ପ୍ରେମ ଓ ଗର୍ବବିଚଳିତ ଚିତ୍ତରେ ଉପେନ୍ଦ୍ର ସସ୍ନେହ କୌତୂହଳ ସ୍ୱରରେ

କହିଲା—ତେଣୁ ଦେଖି ଶୁଣି ତାକୁ ମଣିଷ ନ କହି ଗୋଟାଏ ଜନ୍ତୁ କହିଲେ ଚଳେ । କଲିହାରି ତାର ବୁଦ୍ଧି—ଯିଏ ପିଲାଦିନେ ତାର ନାମ ପଶୁରାଜ ରଖିଥିଲେ । ଆରେ ଇଏ କ'ଣ ଗରଜ !

ଗାଡ଼ିର ବାଙ୍କ ଘୂରିଲାବେଳେ ପଥର ଉଜ୍ଜ୍ୱଳ ଗ୍ୟାସ ଆଲୁଅ ସହସା କିରଣମୟୀ ମୁହଁ ଉପରେ ଆସି ପଡ଼ିଲାମାତ୍ରେ ଉପେନ୍ଦ୍ର ଚମକି ଉଠି ଦେଖିଲା, ତାଙ୍କର ସମଗ୍ର ମୁହଁଟା ଆଖିର ଲୋତକରେ ଭାସିଉଠିଛି ।

ଉପେନ୍ଦ୍ର ଲଜ୍ଜାରେ ସ୍ତବ୍ଧ ହୋଇ ଅଧଃବଦନରେ ବସିରହିଲା ।

ପାଥୁରିଘାଟ ଘରେ ଉଭୟେ ଯେତେବେଳେ ଆସି ପହଞ୍ଚିଗଲେ, ସେତେବେଳେ ରାତ୍ର ପହରେ ସମୟ । ପ୍ରାୟ ବାଟ ଗୋଟାକଯାକ କିରଣମୟୀ ତୁନିତାନି ଥିଲେ; କିନ୍ତୁ ଘର ଭିତରେ ପାଦ ପକାଉ ପକାଉ ଅତ୍ୟନ୍ତ ଅନୁତପ୍ତ କଣ୍ଠରେ କହିଉଠିଲେ--ଆହା ମୋର ପୋଡ଼ା କପାଳ· · ଖାଲି ଘାଣ୍ଟି ହେବାଟା ହିଁ ସାର· · ·ଏତେବେଳଯାଏଁ ତୁମେ ମୁନ୍ଦେ ପାଣି ବି ପିଇବାକୁ ପାଇଲନି ଯେ ଉପେନ୍ଦ୍ର, ସେ କଥା ଏ ହତଭାଗିନୀର ଆଖିରେ ମଧ୍ୟ ପଡ଼ିଲାନି । ହାତ ମୁହଁ ଧୋଇବ ? ତେବେ ଥାଉ । ମୋ ସାଙ୍ଗରେ ରୋଷେଇ ଘରକୁ ଆସ । ଦି'ଖଣ୍ଡି ଲୁଚି କରିଦେବାକୁ ୧୦ ମିନିଟରୁ ବେଶୀ ସମୟ ଲାଗିବନି । ଏ ପୁଣ୍ଟି, ତୁ ଚୁଲିଟା ଲଗେଇ ଦେଇ ଘରକୁ ଯା । ଯା ମା ପୁଣ୍ଟି, ମୋ ସୁନାଟା ପରି, ଶୀଘ୍ର ଯା ।

ପୁଣ୍ଟି କବାଟ ଖୋଲିଦେବାକୁ ଆସିଥିଲା ଏବଂ ଘରକୁ ଯିବ ବୋଲି ବାହାରିଥିଲା; କିନ୍ତୁ ଆଦେଶ ପାଳନ କରିବାକୁ ପୁଣି ତାକୁ ଉପରକୁ ଯିବାକୁ ହେଲା । ସାମନା ଦୁଆର ବନ୍ଦ କରିଦେଇ ସେ ଶୀଘ୍ର ଶୀଘ୍ର ଚାଲିଗଲା । କିନ୍ତୁ ଏଇ ଲୁଚି ଭଜା ପ୍ରସ୍ତାବରେ ଉପେନ୍ଦ୍ର ଏକାବେଳକେ ବ୍ୟସ୍ତ ହୋଇଉଠିଲା । ତୀବ୍ର ପ୍ରତିବାଦ କରି କହିଲା—ତା କେବେ ହୋଇ ପାରିବନି ଭାଉଜ ! ଆଜି ଆପଣ ଅତି ଶ୍ରାନ୍ତ ହୋଇପଡ଼ିଛନ୍ତି । ମୁଁ ଫେରି-ଯାଇ ଖାଇବି । ମୋ ଲାଗି କୌଣସି କଷ୍ଟ କରିବା ଦରକାର ନାହିଁ ।

—ପାରିବନି କାହିଁକି ?

ଉପେନ୍ଦ୍ର କହିଲା—ନା ନା, ତା କୌଣସି ପ୍ରକାରେ ହେବନି ।

କିରଣମୟୀ ମୃଦୁହସା ଦେଇ କହିଲେ—ଉପେନ୍ଦ୍ର, ତୁମେ ବଡ଼ ପ୍ରଶଂସାକାଙ୍ଗାଳ । ଏତେ ପ୍ରଶଂସା ନେଇ ରଖିବ କେଉଁଠି କହିଲ ?

ହଠାତ୍ ଉପେନ୍ଦ୍ର ଏହାର କୌଣସି କାରଣ ବୁଝି ନ ପାରି ବିସ୍ମିତ ହେଲା । କରଣମୟୀ କହିଲେ—ତା' ନୁହେଁ କ'ଣ ଉପେନ୍ଦ୍ର ! ତୁମର ପରୋପକାରର ପଣ ଏଭଳି ନିଃସ୍ୱାର୍ଥ, ଏଭଳି ନିର୍ଲିପ୍ତ ହେବା ଆବଶ୍ୟକ । ମୋ ଲାଗି ତୁମେ ଯାହା କରିବ ଉପେନ୍ଦ୍ର, ସେଥିରେ ବୁଢ଼ୀ ଭରି ପାଦ ଧୋଇବାକୁ ଗଲେ ମଧ୍ୟ ତୁମର ଆପତ୍ତି କରିବାଟା ଠିକ୍ ହେବନି । ଆଉ ଏଇ ଦିନ୍କା ଜଳଖିଆ ଲୁଆରି କରିଦେବା କଥାରେ ଏତେ ମୁଣ୍ଡ ଘିଗ୍ରା ! ଛି, ଛି, ମତେ ତୁମେ କ'ଣ ଭାବ ! ମୁଁ କ'ଣ ମଣିଷ ନୁହେଁ ନା ମଣିଷର ରକ୍ତ ମୋ ଦେହରେ ବହୁନି ?

ଉପେନ୍ଦ୍ର ଅତି ଲଜ୍ଜିତ ଓ କୁଣ୍ଠିତ ହୋଇ କହିଲା— କୌଣସି କଥା ଭାବିଚନ୍ତି ମୁଁ ଆପତ୍ତି କରିବାକୁ ଯାଇନି ଭାଉଜ ! ମୁଁ ଖାଲି·········

—ଖାଲି କ'ଣ ଉପେନ୍ଦ୍ର ? ସେବେ ଘରୁ ଫେରିବା ସମୟରେ ମୁଁ ଯାହାସବୁ କହିଲି, ତାହା ବୁଝିବା ଲାଗି ତୁମର ହୋସ ନ ଥିଲା ?

ଉପେନ୍ଦ୍ର ରକ୍ଷା ପାଇଲା । ପରିହାସ ପୁଣି ସହଜ ବାଟକୁ ଫେରି ଆସିବାରେ ସେ ଖୁସିହୋଇ ହସ ହସ ମୁହଁରେ କହିଲା—ଏ ବଦନାମଟା ମୋ' ପକ୍ଷରେ ସତ୍ୟ ଭାଉଜ ! ମୁଁ ତାହା ଅସ୍ୱୀକାର କରିପାରିବିନି; କିନ୍ତୁ ଏବେ ସେଥିଲାଗି ନୁହେଁ । ଯଥାର୍ଥରେ ମୁଁ ଭାବିଥିଲି, ଆପଣ ବଡ଼ କ୍ଲାନ୍ତ ହୋଇପଡ଼ିଛନ୍ତି ।

କ୍ଲାନ୍ତ ? ହେଲି ବା···କହି କରଣମୟୀ ଟିକିଏ ହସିଲେ । ତା'ପରେ ସହସା ଗମ୍ଭୀର ହୋଇ· କହିଲେ—ହାୟରେ ! ଆଜ ମୋର ଯଦି ସେଇ ସତୀଶ ଥାଆନ୍ତା, ତାହାହେଲେ ନିଜ କଥା ଆଉ ନିଜ ମୁହଁରେ କହିବାକୁ ପଡ଼ ନ ଥାନ୍ତା । ସେ ସହସ୍ରମୁଖ ହୋଇ ବକ୍ତୃତା ଆରମ୍ଭ କରିଦିଅନ୍ତା । ନା ଉପେନ୍ଦ୍ର, ମୋର ତ ସେ ସବୁ ଶ୍ରାନ୍ତ ବା କ୍ଲାନ୍ତ ଜିନିଷଗୁଡ଼ିକୁ ଭୋଗ କରିବାର ସଉକ ନାହିଁ । ତା'ଛଡ଼ା ହିନ୍ଦୁଘରେ କୌଣସି ସ୍ତ୍ରୀ ପାଖରେ ଏ ବଦନାମ ଖାଟେନା । ଆତ୍ମୀୟ ହେଉ ବା ନ ହେଉ, ପୁରୁଷ ଖାଇନି ଶୁଣିଲେ ହିନ୍ଦୁ ମହିଳା ମୁମୂର୍ଷୁ ଅବସ୍ଥାରୁ ଉଠି ଠିଆ ହୋଇପଡ଼େ, ତାହା ଜାଣ ?

ଉପେନ୍ଦ୍ର ବି ଏଥର ହସି ହସି କହିଲା—ଜାଣେ ଭାଉଜ, ବେଶ୍ ଜାଣେ । ସ୍ୱୀକାର କରୁଛି, ଅପରାଧ ହୋଇଚି; ଆଉ ହେବନି—ଭୋକ ଲାଗୁଚି—ଚାଲ କ'ଣ ଖାଇବାକୁ ଦେବ—

'ଆସ' କହି କିରଣମୟୀ ବାଟ ଦେଖାଇ ଦେଇ ରୋଷେଇଘର ଆଡ଼କୁ ଚାଲିଲେ ।

ଶାଶୁ ଯେଉଁ ଘରେ ରହନ୍ତି, ସେ ଘର ଆଗକୁ ଆସି ଦ୍ୱାର ଠେଲି ଉଙ୍କିମାରି ଦେଖିଲେ, ଶାଶୁ ଅକାତରରେ ଘୁମଉଛନ୍ତି ।

ରୋଷେଇଘରକୁ ଆସି ସେ ସତୀଶଙ୍କୁ ଯେମିତି ପିଢ଼ାରେ ବସାନ୍ତି, ସେଇମିତି ଉପେନ୍ଦ୍ରଙ୍କୁ ବସେଇଲେ ।

ପୁଣି ଚୁଲି ଲଗେଇ ଦେଇ ଅନ୍ୟ କାମ କରିବାକୁ ବାହାରିପିବା ପରେ କିରଣମୟୀ ତାର ଏଇ ନୂତନ ଅତିଥିଟିକୁ ଚାହିଁ କହିଲେ—ଆଚ୍ଛା ଉପେନ୍ଦ୍ର, ମୋର ନଷ୍ଟ ହେବ ବୋଲି ନ ଖାଇ ଚାଲିପିବ ବୋଲି ଏ ଯେଉଁ ପ୍ରସ୍ତାବଟି କରିଥିଲ, ସେଇଟି ଯଦି ଆଉ କାହା ଆଗରେ କହିବସିଥାଆନ୍ତ, ଆଜି ତାହାହେଲେ ତୁମକୁ କି ଦଣ୍ଡ ଭୋଗ କରିବାକୁ ପଡ଼ିଥାଆନ୍ତା ଜାଣ ?

ଉପେନ୍ଦ୍ର କହିଲା—ଜାଣେ; କିନ୍ତୁ ଏଠି ତ ସେ ଶାସ୍ତି ଭୋଗିବାର ଭୟ ନ ଥିଲା ଭାଉଜ !

ପୁଣି ମଇଦା ଥାଳୀଟା ରଖି ଚାଲିଗଲା । କିରଣମୟୀ ଥାଳୀଟାକୁ ଆଗକୁ ଟାଣିନେଇ ନତମୁଖରେ ମୃଦୁ ସ୍ୱରରେ କହିଲେ—ବୁଝାଯାଏନା ଉପେନ୍ଦ୍ର, କପାଳରେ ଦଣ୍ଡଭୋଗ ଲେଖାଥିଲେ କ'ଣ ଯେ କେତେବେଳେ ଘଟେ, କୋଉଠିକି ଆସି କି ଭୋଗ ଭୋଗିବାକୁ ପଡ଼େ, ଆଗରୁ ତାର କୌଣସି ସୂଚନା ମିଳେନା । ଅଦୃଷ୍ଟ ଲେଖାକୁ କ'ଣ କିଏ ଏଡ଼େଇ ଦେଇପାରେ ? ଯାଏନା ଉପେନ୍ଦ୍ର, ସେଇମାନେ ନିଜେ ନିଜେ ଆସି ବାଡ଼େଇ ହୁଅନ୍ତି ।

ଉପେନ୍ଦ୍ର ରହସ୍ୟଟା ଠିକ୍ ବୁଝିପାରିଲାନି । ଖାଲି କହିଲା—ଅବଶ୍ୟ । କିରଣମୟୀ ସେତେବେଳେ ବି ଆଉ କୌଣସି କଥା କହିଲେନି । ଖାଲି ଉପେନ୍ଦ୍ର ଆଡ଼କୁ ଚାହିଁ ମୁହଁକୁ ନୁଆଁଇ ମଇଦା ଚକଟିବାକୁ ଲାଗିଲେ । ବୋଧ ହେଲା, ସେ ଚୁପ୍ ଚୁପ୍ ହସୁଥିଲେ ।

କିନ୍ତୁ ସମସ୍ତ ନିଃଶବ୍ଦରେ କାମ କରୁ କରୁ ହଠାତ୍ ଥରେ ମୁହଁ ନ ଉଠେଇ କହିଲେ--ଆଚ୍ଛା, ଆଜ ଏତେ ଆଡ଼ମ୍ବରରେ ନିଜ ସ୍ତ୍ରୀକୁ ଦେଖାଇବା ଲାଗି ନେଇଯିବା ମୂଳରେ କି ଅଭିପ୍ରାୟ ଥିଲା କୁହ ଦେଖି !

ଉପେନ୍ଦ୍ର ଟିକିଏ ବିସ୍ମିତ ହୋଇ କହିଲା—ଆଡ଼ମ୍ବର ଫାଡ଼ମ୍ବର ତ କିଛି କରି ନାହିଁ ଭାଉଜ !

କିରଣମୟୀ କହିଲେ—ତାହା ହେଲେ ମୋ କହିବାଟା ଭୁଲ ! ଆଚ୍ଛା, ଏତେ ରକମ ଛଳ ଚାତୁରୀ କରି ଯିବା ହେଲା କାହିଁକି ?

ଉପେନ୍ଦ୍ର କହିଲା—ଛଳ ଚାତୁରୀ କ'ଣ ବା କଲି ?

କିରଣମୟୀ କହିଲା—ଏ ସେମିତି ବୋକା ଫୋକା ନାନାରକମ କଥାର ଜାଲ ବୁଣି ? କିନ୍ତୁ ମିଛରେ କଥାଗୁଡ଼ାକୁ ବାଆଁରେଇଲେ କ'ଣ ହେବ ଉପେନ୍ଦ୍ର ? ଧର ସେ ସ୍ତ୍ରୀଟିକୁ ବୋକା ବୋଲି ତୁମେ ଜାଣ, ତେବେ ଏଇ ଯେଉଁ ସାମନାରେ ମୁଁ ଭାଉଜଟି ବସିଚି, ତାର ତ କିଛିଟା ପରିଚୟ ପାଇଚ ? ଏତେ ସହଜରେ ଭୁଲେଇ ଦେଇପାରିବ ବୋଲି କ'ଣ ମନେକର ?

—ନା, ତା କରେନା ।

କିରଣମୟୀ ମୁହଁ ଉଠେଇ ଚାହିଁଲେ; କାରଣ ଯେମିତି ଲଘୁଭାବରେ ଉପେନ୍ଦ୍ର ଉଡାଇଦେବାକୁ ଚାହିଁଥିଲା, ସେମିତି କରିପାରିନ । ଅନିଚ୍ଛାସତ୍ତ୍ୱେ ତାର କଣ୍ଠସ୍ୱର ଗମ୍ଭୀର ହୋଇ ବାହାରି ଆସିଥିଲା । କିନ୍ତୁ କିରଣମୟୀ ତାହା ଲକ୍ଷ୍ୟ କରିଥିଲା କି ନା ଜାଣିବାକୁ ଦେଲାନି । ସେମିତି ସହଜ ପରିହାସ ସ୍ୱରରେ କହିଲା—ତେବେ ?

ଉପେନ୍ଦ୍ର ନିଜ କଣ୍ଠସ୍ୱରର ଗାମ୍ଭୀର୍ଯ୍ୟ ଅନୁଭବ କରି ମନେ ମନେ ଲଜ୍ଜା ପାଇଥିଲା । ଏହି ଅବକାଶରେ ସେ ନିଜକୁ ସମ୍ଭାଳିନେଲା । ହସି ହସି କହିଲା—ଭାଉଜ, ଆପଣଙ୍କୁ ଫାଙ୍କିଦେବା କ'ଣ ସହଜ ବ୍ୟାପାର ? କିନ୍ତୁ ଛଳ ଚାତୁରୀ ନ କରିଲେ ତ ଆପଣ ଯାଆନ୍ତେ ନାହିଁ । ମୁଁ ଯେ କେତେ ବଡ଼ ନିର୍ବୋଧକୁ ନେଇ ଘରସଂସାର କରୁଚି, ତା ତ ଦେଖିପାରି ନ ଥାଆନ୍ତେ ।

କିରଣମୟୀ କହିଲେ—ତା ଦେଖି ମୋର କ'ଣ ବା ଲାଭ ?

ଉପେନ୍ଦ୍ର କହିଲା – ଲାଭ ଆପଣଙ୍କର ନୁହେଁ, ଲାଭ ମୋର । ସମସ୍ତେ ନିଜର ଦୁଃଖ ଅନ୍ୟକୁ ଜଣାଇ ଲାଘବ କରିବାକୁ ଚାହାଁନ୍ତି—ଏହା ହିଁ ମଣିଷର ସ୍ୱଭାବ । ତେଣୁ ଛଳନାପୂର୍ବକ କରି ଯଦି କିଛି କଷ୍ଟ ଦେଇଥାଏ, ତାହା ଆପଣଙ୍କ ଦୟା ପାଇବା ଲାଗି, ଆଉ କୌଣସି କାରଣରୁ ନୁହେଁ ।

କିରଣମୟୀ କିଛି ସମୟ ଚୁପ୍ ରହିଲେ । ତା ପରେ କଥା କହିଲେ; କିନ୍ତୁ ମୁହଁ ଉଠେଇ ଚାହିଁଲେ ନାହିଁ । କହିଲେ—ଆଉ ପାରୁନି ଉପେନ୍ଦ୍ର, ଏହି ବ୍ୟାଜସ୍ତୁତି ପାଲାଟା ବନ୍ଦ କରନା ! ତୁମର ନିର୍ବୋଧଟିକୁ ନିର୍ବୋଧ ଭାବି ଯଦି କମ୍ ଭଲ ପାଉଥାଆନ୍ତ, ତାହାହେଲେ ମୁଁ କିଛି ସମୟ ଶୁଣିବାକୁ ପ୍ରସ୍ତୁତ ହୁଅନ୍ତି—ମୋତେ ଟିକିଏ ଦୟା ବି ପାଆନ୍ତ । କିନ୍ତୁ ସତୀଶଠାରୁ ଯେ ମୁଁ ସବୁକଥା ଶୁଣିଛି । ବେଶ ତ, ଭଲ ନ ହେଲେ ବି ତାକୁ ଭାରି ଭଲ ପାଅ । କିନ୍ତୁ ତା ବୋଲି କ'ଣ ଇମିତି ଡେଙ୍ଗୁରା ଦେଇ ବୁଲିବାକୁ ହୁଏ ? ଟିକିଏ ବି ବାଧା ବିଘ୍ନ ନାହିଁ ?

ଏହି କଥା ଶୁଣି ଉପେନ୍ଦ୍ର ଯେ କ'ଣ କହିବ, କ'ଣ ଭାବିବ, ଠିକ୍ କରିପାରିଲାନି । ଇଏ କି ପରିହାସଭଙ୍ଗୀ ! ଇଏ କି କଣ୍ଠସ୍ୱର ? ପରିହାସର ଗନ୍ଧ ତ ଏଥିରେ ଟିକିଏ ବି ନାହିଁ । ତାହାହେଲେ କ'ଣ ବିଦ୍ରୂପ ! ଈର୍ଷା ! ବିଦ୍ୱେଷ ! ଇଏ କାହାର ଆଭାସ ? ଏଇ ରାତିରେ ଏ ବିଧବା ରମଣୀ ଏ ନିର୍ଜନ ଘର ଭିତରେ ଆଜି ତାର ସାକ୍ଷାତରେ ଏତେ ବ୍ୟକ୍ତ କରିବାର ପ୍ରୟାସ ? ଆଉ କାହାର ମୁହଁରୁ କଥା ବାହାରିଲା ନାହିଁ । କିଛି ସମୟ ପର୍ଯ୍ୟନ୍ତ ଉଭୟେ ନୀରବରେ ନତମୁଖରେ ବସି ରହିଲେ ।

ପୁଣି ଦୁଆର ଫିଟେଇ ଆସିଲା । ତା ପରେ ଟିକିଏ ମୁହଁ ବଢ଼େଇ କହିଲା—ଆଉ ତ ମୁଁ ରହିପାରିବିନି ମା ! ସାମନା ଦୁଆରଟା ବନ୍ଦ ନ କରିଦେଲେ ତ ଯାଇପାରୁନି ।

କିରଣମୟୀ ମୁହଁ ଉଠେଇ କହିଲେ—ଯିବୁ ? ତେବେ ଟିକିଏ ବସ ଉପେନ୍ଦ୍ର, ମୁଁ ସାମନା ଦୁଆରଟା ବନ୍ଦ କରିଦେଇ ଆସେ । ଏହା କହି ସେ ଚାଲିଯିବା ମାତ୍ରେ ଘର ଭିତରେ ଏକାକୀ ବସି ଉପେନ୍ଦ୍ରର ଅନ୍ତଃକରଣ ଏଭଳି ଏକ ଅଭାବନୀୟ ବିତୃଷ୍ଣାରେ ଭରିଉଠିଲା ଯେ ଯାହା କି ସେ

ଜୀବନରେ କେବେ ଅନୁଭବ କରି ନ ଥିଲା । ତାର ଉଦାର ଉନ୍ମୁକ୍ତ ଚରିତ୍ର ଚିରଦିନ ସ୍ଫଟିକର ସ୍ୱଚ୍ଛପ୍ରବାହ ଭଳି ବହିଯାଉଥିଲା । କେଉଁଠି କେବେ ବାଧା ପାଇନି । କେଉଁଠି କେବେ ସନ୍ଦେହ ବୋଲି କଳଙ୍କ ବାଷ୍ପ ଆସିନି, ଘୃଣା ଘୁଞ୍ଚ ଦେଇ ଯାଇନି; କିନ୍ତୁ ଆଜି ଏ ନିର୍ଜନ କକ୍ଷ ଭିତରେ ସେ ଏକାନ୍ତ ନିର୍ମଳତା ଯେଉଁଭଳି ମଳିନ ହୋଇଉଠିଲା ।

## ସତେଇଶ

ପୁଷ୍ପିକୁ ବିଦାୟ ଦେଇ କିରଣମୟୀ ନିଜ ସ୍ଥାନକୁ ଫେରିଆସି ବସିଲେ । ଉପେନ୍ଦ୍ର ମୁହଁ ବୁଲେଇ ଥରେ ସୁଦ୍ଧା ଚାହିଁପାରିଲା ନାହିଁ । କିରଣମୟୀଙ୍କର ତାହା ଦୃଷ୍ଟିରୁ ଏଡ଼େଇ ଗଲା ନାହିଁ; କିନ୍ତୁ ସେ ବି କୌଣସି କଥା ନ କହି ନୀରବରେ କାମ କରିବାରେ ଲାଗିଲେ ।

ଦଶ ମିନିଟ କାଳ ଏହି ଭାବରେ ଚାଲିଯିବା ପରେ କିରଣମୟୀ ଧୀରେ ଧୀରେ କହିଲେ—ଆଚ୍ଛା ଉପେନ୍ଦ୍ର, କେହି ଯଦି ଆମକୁ ଏହିଭଳି ଚୁପଚାପ ବସି ରହିବାର ଦେଖେ, କ'ଣ ମନେ କରିବ କହିଲ ଦେଖି ? ଏହା କହି ମୁହଁକୁ ଲୁଚେଇ ସେ ମୁରୁକି ମୁରୁକି ହସିବାକୁ ଲାଗିଲେ ।

ଏ ହସ ଉପେନ୍ଦ୍ର ଆଖିରେ ନ ଦେଖିଲେ ମଧ୍ୟ ଅନ୍ତରରେ ଅନୁଭବ କଲା । କହିଲା—ହୁଏତ ଭଲ ମନେକରିବନି ।

—ତେବେ ?

—କ'ଣ କରିବ ଭାଉଜ, କୌଣସି କଥା ତ ଖୋଜି ପାଉନି ।

କିରଣମୟୀ ହସି ହସି କହିଲେ—ପାଉନା ? ଆଚ୍ଛା, ମୁଁ ଖୋଜି ବାହାର କରିଦେଉଛି । କିନ୍ତୁ ମଝିରେ ଗୋଟାଏ କହିରଖୁଛି ଯେ ମୋର ଜଳଖିଆ ତିଆରି କରିବାଠୁ ଆରମ୍ଭ କରି ତୁମକୁ ଖୁଆଇ ବିଦାୟ ଦେବା ପର୍ଯ୍ୟନ୍ତ ଅଧ ଘଣ୍ଟାରୁ ବେଶୀ ଲାଗିବନି । ଏଇ ସମୟ-ଟିକକ ଲାଗି ତୁମେ ଟିକିଏ ପ୍ରସନ୍ନମୁଖରେ କଥା କୁହ । ଇମିତି ମନକୁ ଭାରି କରି ବସିରୁହନା ।

ଉପେନ୍ଦ୍ର ଜୋରରେ ହସି କହିଲା—ବେଶ କୁହ ।

କିରଣମୟୀ ପୁଣି ମୁରୁକି ମୁରୁକି ହସିଲେ । କହିଲେ—ତେବେ ଭଲ, ଭାଉଜ ଶବ୍ଦର ମର୍ଯ୍ୟାଦା ରଖି ଠିକିଏ ହସିଚ । ତୁମକୁ ଦେଖିବା ପର୍ଯ୍ୟନ୍ତ ମୋର ଗୋଟାଏ କଥା ମନେହୁଏ ଉପେନ୍ଦ୍ର ! କିନ୍ତୁ ତା ଶୁଣି ମତେ ଓଲଟା ବୁଝି ମନରେ ରାଗ କରିବନି ତ ?

—ନା, ରାଗ କାହିଁକି କରିବ ?

—ଆଚ୍ଛା ଜାଣ ଉପେନ୍ଦ୍ର, ଭଲ ଭଲ କଥା ପଢ଼ାଯାଏ ତ ? ଆମ ଦେଶର କୁହ ବା ବିଦେଶର କୁହ, ପ୍ରଥମ ଦୃଷ୍ଟିରେ ଗୋଟାଏ ପ୍ରଗାଢ଼ ସ୍ନେହ···ଆଚ୍ଛା, ଏସବୁ କ’ଣ ସମ୍ଭବ ବୋଲି ମନେକର ?

ଉପେନ୍ଦ୍ରର ଆଖି ଓ ମୁହଁ ଲଜ୍ଜାରେ ରଙ୍ଗ ପଡ଼ିଆସିଲା । କହିଲା—ଭଲ ମନ୍ଦ କୌଣସି ସମ୍ବନ୍ଧରେ ମୋର ବିଶେଷ କିଛି ଜ୍ଞାନ ନାହିଁ ଭାଉଜ, ସେସବୁ ମୁଁ ଜାଣେନା ।

କିରଣମୟୀ କହିଲେ—ସେଇଟା ଗୋଟାଏ କଥା ? ଜାଣନା ? ଏତେ ପଢ଼ା ଲେଖା । ଏତେ ଗୁଡ଼ାଏ ପାଠ ପଢ଼ି କେତେ ଟଙ୍କା ରୋଜଗାର କରୁଚ ! ଆଉ ସେ ସମ୍ବନ୍ଧରେ କିଛି ଜାଣନା ? ଶକୁନ୍ତଳା, ରୋମିଓ ଜୁଲିଏଟ ଏ ଦ’ଟା କ’ଣ ତୁମର ପଢ଼ା ହୋଇନି ?

ଉପେନ୍ଦ୍ର କହିଲା—କିନ୍ତୁ ପଢ଼ି ପାଶ୍ କରିବାରେ ତ ସମ୍ଭବ ଅସମ୍ଭବ ସ୍ଥିର କରାଯାଏନା । ବହିରେ ଯାହା ଲେଖାଥିଲା, ମୁଖସ୍ଥ କରି ଲେଖି ଦେଇ ଆସିଥିଲି । ତୁମ ଭଳି ତ କୌଣସି ପରୀକ୍ଷକ ପଢ଼ା ହୋଇଚି କି ନା ପଚାରି ନାହାନ୍ତି । ମତେ କ୍ଷମା କରନ୍ତୁ ଭାଉଜ ! ଏସବୁ ଆଲୋଚନା ତୁମ ସାଥିରେ ମୁଁ କେବେ କରିପାରିବିନି ।

କିରଣମୟୀ ବିସ୍ମିତ ହୋଇ ଗୋଟାଏ ନିଶ୍ୱାସ ଟାଣି କହିଲେ—ତେଣୁ ପଚାରୁଥିଲି, ଶୁଣି ରାଗ କରିବନି ତ ?

—କିନ୍ତୁ ରାଗିନି ତ ?

—ନ କହିଥିଲେ ତ ଭଲ । ଏହା କହି କିରଣମୟୀ ଜ୍ୱଳନ୍ତ ଚୁଲି ଉପରେ ଘିଅ କରେଇଟା ବସେଇଦେଲେ ।

୩।୪ ଖଣ୍ଡି ଲୁଚି ଛାଣିସାରିବା ପରେ କିରଣମୟୀ ହଠାତ୍ କହି ଉଠିଲେ—ଯେଉଁ କଥା ମୁଁ ଜାଣିବାକୁ ଚାହିଁଥିଲି, ସେ କଥା ତ ଆଲୋଚନା

କରବାକୁ ତୁମେ ଗୁହାଁଲନ । ମୋ କପାଳ ! କନ୍ତୁ ଆଉ ଗୋଟାଏ କଥା ପଗ୍ଚରବାକୁ ଗୃହୁଁଚ ଉପେନ୍ଦ୍ର ! ପ୍ରଣୟୁକୁ ଲୋକେ ଅନ୍ଧ କହନ୍ତ କାହିଁକ ?

ଉପେନ୍ଦ୍ର କହଲ—ବୋଧହୁଏ ଆଖି ଥିଲେ ଯେଉଁ ବାଟରେ ମଣିଷ ଯାଏନା, ସେଇ ବାଟକୁ ତାକୁ ନେଇଯାଏ ବୋଲ ।

କରଣମୟୀ ପଗ୍ଚରଲେ—ଆଚ୍ଛା ଏ କଥା ସତ । ଭଲ ପାଇବାଟା ଅନ୍ଧ ?

—ହଁ ସତ୍ୟ ନୁହେଁ ଆଉ କ'ଣ ? ଅନେକର ଅନେକ ତ ପ୍ରବାଦ ବଚନ ।

କରଣମୟୀ କହଲେ—ବେଶ କଥା । ତା ଯଦ ହୁଏ, ଅନ୍ଧ ଖାଲରେ ପଡ଼ଗଲେ ଲୋକେ ଧାଇଁ ଆସି ତାକୁ ଖାଲରୁ ଉଠେଇଦଅନ୍ତ । ତା ଲଗି ଲୋକେ ଦୁଃଖ କରନ୍ତ, ଯଥାସାଧ୍ୟ ତାର ଭଲ ଲଗି ଉଦ୍ୟମ କରନ୍ତ । କନ୍ତୁ ପ୍ରେମାନ୍ଧ ଖାଲରେ ପଡ଼ଗଲେ କେହ୍ତ ତାକୁ ତୋଳ ଧରବାକୁ ଆସନ୍ତନ । ବରଂ ତାର ହାତ ଗୋଡ଼ ଭାଙ୍ଗି ସେଇ ଖାଲ ଭିତରେ ପୋତ ପକାନ୍ତ । ଯେଉଁ ସତ୍ୟ ମଣିଷ ପ୍ରଚ୍ୟର କରଥାଏ, ଦରକାର ସମୟରେ ସେ ସତ୍ୟର କୌଣସି ମର୍ଯ୍ୟାଦା ବ ରଖନ୍ତନ । ମୋ କଥାଟା ବୁଝି ପାରୁଚ ତ ଉପେନ୍ଦ୍ର ?

ଉପେନ୍ଦ୍ର ମୁଣ୍ଡ ହଲାଇ କହଲ—ହଁ ବୁଝିପାରୁନ କାହିଁକ, ବୁଝୁଚ !

କରଣମୟୀ କହଲେ—ବୁଝୁଚ ବୋଲ ତ ତୁମକୁ ପଗ୍ଚରୁଚ । ଅନ୍ୟ କାହାର କଷ୍ଟ କରବାକୁ ଥିଲବେଳେ ମଣିଷ ଅନେକ କଥା ଜାଣି ସୁଦ୍ଧା ଜୋର ଜବରଦସ୍ତି ଭୁଲବାକୁ ଗୃହେଁ । ଅନ୍ଧକୁ ଚକ୍ଷୁଷ୍ମାନର ଶାସ୍ତିଦେଇ ନଜକୁ କୃତକୃତ୍ୟ ମନେକରେ । ପରକୁ ବଚ୍ୟର କରବାବେଳେ ଏ କଥା ତାର ମନରେ ନ ଥାଏ ଯେ ଦୃଷ୍ଟି ହରେଇଲେ ସେ ନଜେ ଖଣାରେ ପଡ଼ବାର ସମ୍ଭାବନା ଏଇ ଲୋକଟାଠାରୁ କମ୍ ନ ଥାଏ !

ଉପେନ୍ଦ୍ର ଟିକଏ ଅପ୍ରସନ୍ନ ସ୍ୱରର ସହତ କହଲ—ତା ହୋଇ ନ ପାରେ; କନ୍ତୁ ମୁଁ ଭାବପାରୁନ ଭାଉଜ, ଏସବୁ ଆଲୋଚନା କାହିଁକ କରୁଚ ? ସତ୍ୟ ହେଉ ବା ମିଥ୍ୟା ହେଉ, ତୁମ ଜୀବନ ସହତ ଏ ମୀମାଂସାର କୌଣସି ସମ୍ବନ୍ଧ ନାହିଁ ।

କିରଣମୟୀ ଉପେନ୍ଦ୍ରର ଅପ୍ରସନ୍ନତା ଲକ୍ଷ୍ୟକରି ହସି କହିଲେ—ଅନ୍ଧ ଆଲୋଚନା କରି ଖଣାରେ ପଡ଼େନା ଉପେନ୍ଦ୍ର, ପଢ଼ିସାରିବା ପରେ ଆଲୋଚନା କରେ । ମୁଁ ଯେ ପଢ଼ିନି କମ୍ବା ପଢ଼ିବା ଲାଗି ସେ ଆଡ଼କୁ ଯାଉନି, ସେ କଥା ବା କମିତି ଜାଣିଲ ?

ଉପେନ୍ଦ୍ର କହିଲ—କିନ୍ତୁ ଆପଣ ତ ଅନ୍ଧ ନୁହନ୍ତି ! ମୁଁ ଯେ ଆପଣଙ୍କର ଦିଟା ବଡ଼ ବଡ଼ ଆଖି ଦେଖିପାରୁଛି ଭାଉଜ !

କିରଣମୟୀ କହିଲେ—ଏଇଠି ତ ମୁସ୍କିଲ ଉପେନ୍ଦ୍ର, ଦି ରକମର ଅନ୍ଧ ଅଛନ୍ତି କନା ! ଯେଉଁମାନେ ଜାଣି ଶୁଣି ଆଖି ବୁଜି ରହିଲନ୍ତି, ସେମାନଙ୍କ କଥା ଛାଡ଼, ସେମାନଙ୍କୁ ଚହ୍ନି ହୁଏ; କିନ୍ତୁ ଯେଉଁମାନେ ଦି ଆଖିରେ ଚାହିଁ ଚାହିଁ ରହିଲନ୍ତି, କିନ୍ତୁ ଦେଖିପାରନ୍ତି ନାହିଁ, ସେଇମାନଙ୍କ ଲାଗି ଏତେ ଗଣ୍ଡଗୋଲ । ସେମାନେ ନିଜେ ଠକନ୍ତି, ପରକୁ ବି ଠକିବାକୁ ଛାଡ଼ନ୍ତିନି ।

ଉପେନ୍ଦ୍ର କୁଣ୍ଠିତ ହୋଇ ବସିରହିଲା । ତା ମୁହଁରୁ କୌଣସି ଉତ୍ତର ନ ପାଇ କିରଣମୟୀ ସହସା ଅତି ଉତ୍ସୁକହୋଇ ପଚାରିଲେ--ଆଚ୍ଛା ଉପେନ୍ଦ୍ର, ତୁମେ ପରା କହୁଥିଲ, ମୋର କୁଆଡ଼େ ଦିଟା ବଡ଼ ବଡ଼ ଆଖି ଦେଖିବାକୁ ପାଇଥିଲ ? ଆଚ୍ଛା, କେବେ ଦେଖିଥିଲ ପଚାରିପାରେ କି ?

ଉପେନ୍ଦ୍ର କହିଲ—ହାରାନ୍‌ଦାଙ୍କ ମୃତ୍ୟୁ ପରେ ପରେ ସେଦିନ ତୁମକୁ ଯେ ଦେଖିଛି, ସେ କେବେ ଭୁଲିପାରିବିନି । କାହିଁକି ଯେ ତୁମେ ନିଜକୁ ଅନ୍ଧ ବୋଲି ତର୍କ କରୁଛ ତାହା ତୁମେ ଜାଣ; କିନ୍ତୁ ମୁଁ ଜାଣେ, ସେ କଥା ସତ ନୁହେଁ । ସେଦିନ ତୁମର ଦିଟା ଆଖିରେ ଯେଉଁ ଜ୍ୟୋତି ମୁଁ ଦେଖିବାକୁ ପାଇଥିଲି, ସେଥିରୁ ମୁଁ ନିଶ୍ଚିତ ଭାବରେ ଜାଣେ, ଯେତେ ଅନ୍ଧକାର ତୁମର ଚାରିପାଖେ ଘେରିଆସୁ ପଛେ, ତୁମକୁ କେହି ଭୁଲେଇ ପାରିବେନି । ତୁମେ ଉଚିତ ପଥରେ ଆଜୀବନ ନିଜକୁ ଚଳେଇ ନେଇପାରିବ ।

କିରଣମୟୀ କିଛି ସମୟ ଚୁପ ରହିବା ପରେ କହିଲେ—କଥାଟା ଯାହାହେଉ, ଏତେ ସମୟ ପରେ ଠିକ ବୁଝିପାରିଛ ଉପେନ୍ଦ୍ର ! ସେଦିନ ଯେମିତି ମୁଁ ଚୈତନ୍ୟ ହରେଇ ତାଙ୍କ ପାଦତଳେ ପଡ଼ି ଯାଇଥିଲି, ତାକୁ ଦେଖି ବୋଧହୁଏ ତୁମର ଏ ଧାରଣା ହୋଇଛି ନା ?

ଉପେନ୍ଦ୍ର ମୁଣ୍ଡ ହଲେଇ କହିଲା—ହୋଇପାରେ, କିନ୍ତୁ ସେ ଦେଖିବାଟାରେ କ'ଣ ମୋର କିଛି ଭୁଲ ହୋଇଥିଲା ଭାଉଜ ?

କିରଣମୟୀ ଟିକିଏ ହସି ତାପରେ ନିଃସଙ୍କୋଚରେ ସହଜ କଣ୍ଠରେ କହିଲେ—ଭୁଲ ବୋଲି ତ ମନେହୁଏ । ମୁଁ ତ ମୋର ସ୍ୱାମୀଙ୍କୁ ଭଲ ପାଉ ନ ଥିଲି । ଉପେନ୍ଦ୍ର ଅବାକ୍ ହୋଇ ଚାହିଁରହିଲା । କିରଣମୟୀ କହିଲେ—ପ୍ରକୃତରେ ମୁଁ ତାଙ୍କୁ କେବେ ଭଲ ପାଉ ନ ଥିଲି । ଖାଲି ମୁଁ ନୁହେଁ, ସିଏ ବି ମତେ କେବେ ଭଲ ପାଉ ନ ଥିଲେ । ତାହାହେଲେ ମୁଁ କ'ଣ ସେ ଦିନ ଛଳନା କରୁଥିଲି ? କିନ୍ତୁ ତା ବି ନୁହେଁ ଉପେନ୍ଦ୍ର, ସେଇଟା ସତ୍ୟ । ସତରେ ସେଦିନ ମୁଁ ମନ ହରେଇ ବସିଥିଲି । କିଛି କିଛି ଉପେନ୍ଦ୍ରର ସ୍ତମ୍ଭିତ ମୁହଁକୁ ଦେଖି ସେ ଟିକିଏ ଅଟକିଗଲେ । କିନ୍ତୁ ପର-କ୍ଷଣରେ କହିଉଠିଲେ—ନା, ଭୟ ପାଇ କିଛି ଲାଭ ନାହିଁ । ତୁମ ପାଖରେ ଆଜି ମତେ ସବୁକଥା ଖୋଲି କହିବାକୁ ହେବ ।

ଉପେନ୍ଦ୍ର ଅତି କଷ୍ଟରେ ମୁହଁକୁ ଉଠେଇ କହିଲା—କାହିଁକି କହିବାକୁ ହେବ ? ମୁଁ ଶୁଣିବାକୁ ଚାହେଁନା; ତଥାପି ମତେ ଶୁଣେଇବାକୁ ହେବ କାହିଁକି ?

କିରଣମୟୀ କହିଲେ—କାହିଁକି ? ତାର କାରଣ ତୁମେ ମୋର ଗୁରୁ । ତୁମ ପାଖରେ ସବୁକଥା ସ୍ୱୀକାର ନ କରି ମୁଁ କୌଣସିମତେ ମନରେ ଶାନ୍ତି ପାଇପାରିବିନି ।

ଉପେନ୍ଦ୍ର ସ୍ଥିର ଚକ୍ଷୁରେ ଚାହିଁରହିଲା । କିରଣମୟୀ ଦୃଢ଼ ଅଥଚ ମୃଦୁ ସ୍ୱରରେ କହିବାକୁ ଲାଗିଲେ—ମୋ ଭିତରେ ଯେଉଁ ଗଭୀର ଅନ୍ତଃଦୃଷ୍ଟି ଦେଖିଥିଲ ଉପେନ୍ଦ୍ର, ତାହା ଭୁଲ ନୁହେଁ, ଠିକ୍ । କିନ୍ତୁ ତାହା କ୍ଷଣିକର । ସ୍ୱାମୀଙ୍କୁ ମୁଁ କୌଣସି ଦିନ ଭଲ ପାଇନି; କିନ୍ତୁ କାୟ-ମନ-ବାକ୍ୟରେ ଭଲ ପାଇବାକୁ ଚେଷ୍ଟା କରୁଥିଲି । କିନ୍ତୁ ସେ ବଞ୍ଚିଲେ ନାହିଁ, ମୋର ଉଦ୍ୟମ ମଧ୍ୟ ସ୍ଥାୟୀ ହୋଇପାରିଲାନି । ବହିରେ ଏସବୁ କଥା ପଢ଼ି ଭାବୁଥିଲି ଏସବୁ ନିହାତି ମିଛ କଥା । କେବେ କେବେ ଭାବେ, ଏସବୁ କବିର କଳ୍ପନା । ଆଉ କେବେ କେବେ ଭାବେ, ହୁଏତ ମୋ ଭିତରେ ଭଲ ପାଇବାର ଶକ୍ତି ନାହିଁ ବୋଲି ଏଭଳି ମନେହୁଏ । ଏ ଶକ୍ତି ମୋ ପାଖରେ ଅଛି କି ନା ଆଜିଯାଏ ଜାଣିନି ଉପେନ୍ଦ୍ର, କିନ୍ତୁ ଭଲ ପାଇବାର

ସଉଜ ଯେ କେତେ, ସେ କଥା ପ୍ରଥମେ ବୁଝିପାରିଲି ତୁମକୁ ଦେଖି । ତେଣୁ ତୁମେ ମୋ ଗୁରୁ । ଟିକିଏ ଅମିଯାଇ ଆମ୍ଭୀୟ ସ୍ୱରରେ କହିଲେ—ଦି ଦିନ ପରେ ତୁମେମାନେ ଚାଲିଯିବ । ପୁଣି ଯେତେବେଳେ ଦେଖାହେବ, ସେତେବେଳେ କଥା କହିବା ଭଳି ମନର ଅବସ୍ଥା ହୁଏତ ନ ଥିବ । ହୁଏତ ଏଇକଥା କହିବା ଲାଗି ସେତେବେଳେ ମୁଁ ଲଜ୍ଜାରେ ମରିଯିବି । ନା ଉପେନ୍ଦ୍ର, ତାହା ହୋଇପାରିବନି । ଆଜି ତୁମକୁ ମୋର ସବୁକଥା କହିଦେଇ ନୀରବ ହେବି ।

ଉପେନ୍ଦ୍ର ବ୍ୟାକୁଳ ହୋଇ କହିଲେ—ଆଜି ନାନା କାରଣରୁ ତୁମ ମନ ଉତ୍ତେଜିତ ହୋଇପଡ଼ିଛି । ଏ ଅବସ୍ଥାରେ କ'ଣ କହିବା ଉଚିତ, ଅନୁଚିତ ଭାବିପାରୁନା । ନା ଭାଉଜ, ଆଉ କେବେ ଆସି ତୁମର ସବୁ କଥା ଶୁଣିଯିବି, କିନ୍ତୁ ଆଜି ନୁହେଁ ।

କିରଣମୟୀ କହିଲେ—ଠିକ ସେଇଥିଲାଗି ତ ମୁଁ ଆଜି ସବୁକଥା ଶୁଣେଇବାକୁ ଚାହେଁ । କାଲେ ସେଦିନ ଲଜ୍ଜା ହୁଏତ ବାଧା ଦେଇପାରେ । ଆଜି ବୁଝି ସୁଝି ସଜେଇ ସାଜେଇ କହିବା ଭଳି ସାଧ ନାହିଁ, ପ୍ରବୃତ୍ତି ବି ନାହିଁ । ଆଜି ତ କହିବାର ଦିନ । ପୂରା ପରେ ହୁଏତ ତୁମେ ଏଇ ଜନ୍ମରେ ମୁହଁ ବି ଦେଖିବାକୁ ପାଇବନି । ତଥାପି ପ୍ରାର୍ଥନା କରେ, ଆଉ କିଛି ସମୟ ଏଇ ଦୁର୍ବୁଦ୍ଧି ଓ ଏଇ ଉନ୍ମାଦ ମନ ଥାଉ, ମୁଁ ଯେମିତି ସବୁ କଥା ତୁମ ଆଗରେ ଖୋଲି କହିପାରିବି ।

ତା ମୁହଁକୁ ଚାହିଁ ଉପେନ୍ଦ୍ରର ନିର୍ମଳ ଶୁଦ୍ଧ ଅନ୍ତଃକରଣ ଅଜ୍ଞାତ ଭୟରେ ତ୍ରସ୍ତ ହୋଇଉଠିଲା । ଶେଷ ଥର ପାଇଁ ବାଧା ଦେଇ କହିଲା—ଭାଉଜ, ମଣିଷ ମାତ୍ରକେ ତାର ଗୋପନୀୟ କଥା ଥାଏ । ସେ ବି କାହା ପାଖରେ ଖୋଲି କହିବାର ନୁହେଁ । ବରଂ ପ୍ରକାଶ କରିବାଦ୍ୱାରା ଅଧିକ ଅମଙ୍ଗଳ । ଖାଲି ତୁମର ମୋର ନୁହେ, ଏ ଅମଙ୍ଗଳ ଆଉ ଦଶ ଜଣଙ୍କର ।

କିରଣମୟୀ କୌଣସି ଉତ୍ତର ଦେଲେନି । ଲୁଚିଗୁଡ଼ାକ ଛଣା ସରିଥିଲା । ଗୋଟିଏ ଥାଳିରେ ସଜେଇ ଦେଇ ଉପେନ୍ଦ୍ର ଆଗରେ ରଖି ଦେଇ କହିଲେ—ତୁମେ ଖାଅ ନି, ମୋର କହିବା ମୁଁ ଶେଷ କରିଦେଉଛି ।

—ନ କହିଲେ ଭାଉଜ ?

କିରଣମୟୀ କହିଲେ—ମୁଁ ହାତ ଯୋଡ଼ି ମିନତି କରୁଚି ଉପେନ୍ଦ୍ର, ମତେ ଆଉ ବାଧା ଦିଅନା । ସବୁ କଥା ଶୁଣି ଯଦି ଇଚ୍ଛାହୁଏ ତ ଶାଶୁଙ୍କ ସମେତ ମୋର ବି ଦାୟିତ୍ୱ ନିଅ, ନଚେତ ଯଦି ଇଚ୍ଛା ନ ହୁଏ ମୋ ଦାୟିତ୍ୱ ମୁଁ ନିଜେ ଗ୍ରହଣ କରିନେବି । ମୁଁ ଅନେକଙ୍କୁ ଠକିଛି ଉପେନ୍ଦ୍ର, କିନ୍ତୁ ତୁମକୁ ଠକେଇବିନି ।

—ତେବେ କୁହ ।

କିରଣମୟୀ କହିଲେ—ତୁମକୁ କହିଚି ତ ଉପେନ୍ଦ୍ର, ସ୍ୱାମୀଙ୍କୁ ମୁଁ କେବେ ଭଲପାଇନି କି ସେ ମୋତେ ଭଲ ପାଆନ୍ତିନି । ସେଥିଲାଗି ମୋର କୌଣସି ଦୁଃଖ ନ ଥିଲା । ଘରେ ସ୍ୱାମୀ ଆଉ ଶାଶୁ । ଜଣେ ଦାର୍ଶନିକ, ସେ ପ୍ରାଣପଣେ ମତେ ପଢ଼େଇବାରେ ହିଁ ତାଙ୍କର ଆନନ୍ଦ । ଆଉ ଜଣେ ଘୋର ସ୍ୱାର୍ଥପର, ସେ ପ୍ରାଣପଣେ ମତେ ଖଟେଇବାରେ ଆନନ୍ଦ ପାଉଥିଲେ । ଏଇମିତି ଦିନ କଟାଉଥିଲି । ବୋଧହୁଏ ଜୀବନଟାଯାକ ଇମିତି କଟି ଯାଇଥାଆନ୍ତା; କିନ୍ତୁ ହଠାତ୍ ସବୁ ଓଲଟପାଲଟ ହୋଇଗଲା । ସ୍ୱାମୀ ଅସୁସ୍ଥ ହୋଇପଡ଼ିଲେ । ତାଙ୍କଠୁ ମୁଁ ବହୁ ପଢ଼ିଚି କହୁଚି । ନାଟକ ଓ ନଭେଲ କମ୍ ପଢ଼ିନି; କିନ୍ତୁ ଦୁଇ ଜଣ ପଢ଼ି ପଢ଼ି ଖାଲି ହସୁ । ଭଲ ପାଇବାର ନାମଗନ୍ଧ ଆମ ପାଖରେ ନ ଥିଲା । ତେଣୁ ଜଣେ ଜଣେ ଲୋକ ଯେମିତି ଥାଆନ୍ତି ଜନ୍ମରୁ ବଧିର ଓ ଜନ୍ମରୁ ଅନ୍ଧ, ମୋର ସ୍ୱାମୀ ବି ଥିଲେ ଜନ୍ମରୁ ନୀରସ । କିନ୍ତୁ ମୋ ଭିତରେ ଯେ କେତେ ରସ ଥିଲା, ତାହା ସେତେବେଳେ ଜାଣି ପାରି ନ ଥିଲି ଅବଶ୍ୟ; କିନ୍ତୁ ଏଇଟା ହଠାତ୍ ଟେର ପାଇଲି ଯେ ଭଲ ପାଇବା ଏବଂ ତାକୁ ଫେରିବାର ତୃଷ୍ଣାଟା ଅନ୍ୟ ସ୍ତ୍ରୀଅଙ୍କଠାରୁ କମ୍···ନା, ନା,—ସ୍ତ୍ରୀ ଭିତରେ ଏଗୁଡ଼ାକ ଇମିତି ଠେଲି ରଖିଲେ ଚଳିବନି ।

—ଚୁଲି ଚଳିବନି—ଉପେନ୍ଦ୍ର ବିରସ ମୁଖରେ କହିଲା—କାହିଁକି କେଜାଣି ଖାଇବାକୁ ଭଲ ଲାଗୁନି ଭାଉଜ !

କିରଣମୟୀ କ୍ଷଣକ ପାଇଁ ମୌନ ରହି କ'ଣ ଯେମିତି ଚିନ୍ତା କରି କହିଲେ—ମୁଁ ଜାଣେ ଉପେନ୍ଦ୍ର, ଆଉ ଟିକିଏ ପରେ ଏଇ ଲୁଚି ତରକାରିର ସ୍ୱାଦ ତୁମ ଜିଭ ଉପରେ ବଢ଼େଇ ଉଠିବ । କିନ୍ତୁ ଏବେ ତ ତାର ସମୟ ଆସିନି, ଆଉ ଗୋଟାଏ ଖାଇପାରନ୍ତ ।

ଉପେନ୍ଦ୍ର ଆହୁରି ମଳିନ ହୋଇପଡ଼ିଲା ।

କିରଣମୟୀ ତା ଆଡ଼କୁ ଚାହିଁ କହିବାକୁ ଲାଗିଲେ—ସତ କହେ, ତୁମର ଏ ନ ଖାଇବାର ଦୁଃଖଟା ମୋର ଏଇ ଡାହାଣ ହାତଟା ନଷ୍ଟ ହେବାଠାରୁ ମୋ ପାଖରେ ଅଧିକ, ସେ କଥା ତୁମେ ବିଶ୍ୱାସ କରି ପାରିବନି; କିନ୍ତୁ କର ବା ନ କର, ମୁଁ ତ ଜାଣେ ଏହା ସତ । ତଥାପି ଅଟକିଯିବାର ଯୁ ନାହିଁ ଉପେନ୍ଦ୍ର, ମତେ କହିବାକୁ ପଡ଼ିବ ।

—ବେଶ କୁହ ।

—କହୁଚି, ମୋର ସ୍ୱାମୀଙ୍କ ପୀଡ଼ାରେ ଖାଲି ମୋର ଗହଣା-ଗୁଡ଼ାକ ବ୍ୟୟିତ ହଉଚି ଯାହା କିଛି ଥିଲା, ଯେତେବେଳେ ସବୁ ଗୋଟିକ ପରେ ଗୋଟିଏ ଗଲା, ସେତେବେଳେ ଆସିଲେ ଜଣେ ଭଟକା ପାଶ୍‌କଲା ଡାକ୍ତର ।

ଆଚ୍ଛା ଉପେନ୍ଦ୍ର, ଅନଙ୍ଗ ଡାକ୍ତରଙ୍କୁ ତୁମେ ଦେଖିଚନା ?

ଉପେନ୍ଦ୍ର କହିଲା—ହଁ ।

—କିରଣମୟୀ ଈଷ ଭଳି ଟିକିଏ ହସି କହିଲେ—ହଁ ସେଇ; ହାୟରେ ପୋଡ଼ା କପାଳ ! ଏ ଘରେ ସ୍ୱାମୀ ମରିବା ଉପରେ, ସେ ଘରକୁ ଚାଲି ଭଲ ପାଇବାର ସ୍ୱାଦ ମେଣ୍ଟେଇବାକୁ ।

ଉପେନ୍ଦ୍ର ମୁଣ୍ଡକୁ ଟେକି ନିଃଶବ୍ଦରେ ବସିରହିଲା । କିରଣ-ମୟୀ କଥା କହିବାକୁ ଚେଷ୍ଟାକଲେ—କିଏ ଯେମିତି ତାଙ୍କର ଗଳା ଚିପି ଧରିଲା ଭଳି ଲାଗିଲା । କିଛି ସମୟ ପ୍ରବଳ ଚେଷ୍ଟା ପରେ ଶୁଷ୍କ ସ୍ୱରରେ କହିଲେ—ଶୁଣି ତୁମର ମୁଣ୍ଡ ଉପରକୁ ଉଠିଗଲା ଉପେନ୍ଦ୍ର ! ତାହାହେଲେ ତୁମେ ଅନଙ୍ଗ ଡାକ୍ତରକୁ ଚହ୍ନିନା । ଚହ୍ନିଲେ ବୁଝିପାରନ୍ତ, କେତେ ବର୍ଷର ଦୁର୍ଦ୍ଦାନ୍ତ ଅନାବୃଷ୍ଟିର ଜ୍ୱାଳା ମୋର ଏଇ ବୁକୁ ଭିତରେ ଜମାଟ ବାନ୍ଧି ରହିଥିଲା ବୋଲି ଏଭଳି ଅସମ୍ଭବ ସମ୍ଭବ ହୋଇ ପାରିଥିଲା । କ'ଣ କହୁଚ ଉପେନ୍ଦ୍ର ? ଯେଉଁ ତୃଷାରେ ମଣିଷ ନର୍ଦ୍ଦମାର ପୂତି ଗନ୍ଧମୟ କୃଷ୍ଣକାୟ ଜଳ ଆଞ୍ଜୁଳା ଆଞ୍ଜୁଳା କରି ମୁହଁରେ ଭର୍ତ୍ତି କରିପକାଏ— ମୋର ବି ଥିଲା ସେଇ ପିପାସା । କିନ୍ତୁ ସେ ଖବର ପାଇଲି, ସେଇ ପାଣି ଗଳାରେ ଢାଳିଦେଇ । ତା ପରେ···ଓଃ, ସେ ଦିନ କି କଷ୍ଟରେ ଦିନ ନ କଟିଚି···କହୁ କହୁ ତାଙ୍କ ଆପାଦମସ୍ତକ ଶିହରିଉଠିଲା । ଗୋଟାଏ

ଉତ୍କଟ ଦୁର୍ଗନ୍ଧମୟ ବିଷାକ୍ତ ଉଦ୍‌ଗାର ଯେମିତି ତାର କଣ୍ଠ ପର୍ଯ୍ୟନ୍ତ ଉଚ୍ଛ୍ୱସିତ ହୋଇଉଠିଲା । କିଛି ସମୟ ସ୍ଥିର ରହି ନିଜକୁ ସମ୍ଭାଳି ନେଇ କିରଣମୟୀ ପୁଣି କହିଲେ—କିନ୍ତୁ ବାନ୍ତି କରିପାରିଲିନି ଉପେନ୍ଦ୍ର, ଶାଶୁ ମୋର ମୁହଁ ଚିପିଧରିଲେ । ଅନଙ୍ଗ ସେତେବେଳେ ଆମ ଘରସଂସାରର ଅର୍ଦ୍ଧେକ ଭାର ନେଇଥିଲା ।

ଉପେନ୍ଦ୍ର ସେଇ ଗୋଟିଏ ଭଙ୍ଗୀରେ ପଥରମୂର୍ତ୍ତି ଭଳି ବସି-ରହିଲା । ତାର ନିର୍ବାକ୍ ନତମୁଖ ପ୍ରତି ହଠାତ୍ ଏକ କଟାକ୍ଷ ପକେଇ କିରଣମୟୀ କହିଲେ—ତାପରେ ଯେ ଗରଳ ଅହରହ ଉଠିବାକୁ ଲାଗିଲା, ଦେବଦାନବର ନିଷ୍ଠୁର ଆକର୍ଷଣରେ ମନ୍ଦାରପୀଡ଼ିତ ବାସୁକୀ ବି ବୋଧହୁଏ ଏତେ ବିଷ ନିର୍ଗତ କରିପାରିନି । ମୋର ମନେହୁଏ, ଏ ଘରର ପ୍ରତ୍ୟେକ ଇଟା ପଥର, ଦୁଆର ଝରକା, କଡ଼ି ବରଗା ପର୍ଯ୍ୟନ୍ତ ବିଷରେ ନୀଳ ହୋଇପଡ଼ିଛି ।

ଟିକିଏ ଥମିଯାଇ ପରେ ସେ କହିଲେ—କେତେଦିନ ପରେ କିଭଳି ଯେ ଏହା ଶେଷ ହୋଇଥାନ୍ତା ଜାଣେନା । କେତେ ଭାବିଛି, କିନ୍ତୁ କେଉଁଠି କୌଣସି କୂଳ କିନାରା ଆଖିରେ ଦେଖିବାକୁ ପାଇନି । କିନ୍ତୁ ଅମୃତ ହାତରେ ତୁମେ ଦେଖାଦେଲ ଉପେନ୍ଦ୍ର । କୁଆଡ଼େ ଗଲା ସେ ବିଷର ଜ୍ୱାଳା ! ଆଉ କୁଆଡ଼େ ରହିଲା ସେ ବିଦ୍ୱେଷ, ବିତୃଷ୍ଣା ! ଆଖିପଲକରେ ଏସବୁ ତୁଚ୍ଛ ହୋଇପଡ଼ିଲା ଯେ ଅନଙ୍ଗକୁ ବିଦାୟ ଦେବାକୁ ମତେ ମିନିଟିଏ ସୁଦ୍ଧା ଲାଗିଲାନି । ତୁମେ ଯେମିତି ଆସି ମୋ କାନେ-କାନେ ଉପାୟ ବତେଇ ଦେଇଗଲ । ଜାଣ ତ ଉପେନ୍ଦ୍ର, ସ୍ତ୍ରୀଲୋକେ ଗହଣାକୁ କେତେ ଭଲପାଆନ୍ତି । ମୋର ଦୁଃଖର ଗହଣାଗୁଡ଼ିକ ଥିଲା ଯେମିତି ମୋ ବୁକୁର ପିଞ୍ଜରା । ଏଇ ଯେଉଁଠି ତୁମେ ମୁଣ୍ଡ ଟେକି ବସିଛ, ଠିକ ଏଇଠି ସେଇ ପଞ୍ଜରାଗୁଡ଼ାକ କାଢ଼ି ତା ପାଦତଳେ ଫୋପାଡ଼ି ଦେଇଥିଲି । ମୋ ପ୍ରତି ତାର ଆସକ୍ତି ଯେତେ ଅଧିକ ହେଉ ପଛେ, ଏତେଗୁଡ଼ାଏ ଗହଣା ହାତରେ ପାଇଲେ ସିଏ ଯେ କେବେ ମୁହଁ ଦେଖାଇବନି, ଜନ୍ମ ଭଳି ହରାଇ ଦେଇ ଚାଲିଯିବ, ଏ ମନ୍ତ୍ରଟା ତୁମେ ଯେପରି ଶିଖେଇ ଦେଇଗଲ । ଓଃ କେତେ ଭୟ, କେତେ ଭାବନା ନ ଥିଲା ମୋର ! କାଳେ ଏ ଦୁର୍ଦ୍ଦିନର ଉପରେ ଦିନେ ନା ଦିନେ ସେ ଗହଣାଗୁଡ଼ାକ ନଷ୍ଟ ହୋଇଯିବ—ସେଇଥିପାଇଁ ତ ଗଲା । କାହିଁ

ସେସବୁକୁ ତ କେହି ଧରି ରଖିପାରିଲାନି । କିନ୍ତୁ ଆହା ସେ କି ତୃପ୍ତି ! ସେ କି ଆଶ୍ଚର୍ଯ୍ୟ ଆନନ୍ଦ ଉପେନ୍ଦ୍ର ! ଏମିତି ଅନ୍ଧକାର ଘଡ଼ିରେ ଯେତେବେଳେ ସେଗୁଡ଼ାକର ଲୋଭରେ ସେ ତାର ବାନ୍ଧିଥିବା ପୁଚ୍ଛପାଖ ମୋର ସର୍ବାଙ୍ଗରୁ ଖୋଲିନେଇ ଗୋଟିଏ ଭଲ ନିଃଶବ୍ଦରେ ଖସିଗଲା, ମନେହେଲା, ବଞ୍ଚିଲି, ମୁଁ ବଞ୍ଚିଗଲି ।

ଉପେନ୍ଦ୍ରର ମନେପଡ଼ିଲା, ତାର ଓ ସତୀଶ ମଝିରେ ଦିନେ ସକାଳେ ଗୋଟିଏ ଭଲ ଅନଙ୍ଗ ଡାକ୍ତର ଖସି ଚାଲି ଯାଇଥିଲା । କିନ୍ତୁ କୌଣସି କଥା ନ କହି ଚୁପ୍ ରହିଲା ସେ ।

କିରଣମୟୀ କହିଚାଲିଲେ—ତୁମର ମନେପଡ଼ୁଛି କି ଉପେନ୍ଦ୍ର, ମୋର ସେ ରାତିର ଉଗ୍ରମୂର୍ତ୍ତି ? ସେଦିନ କେତେ କାଣ୍ଡ କରି ନ ଥିଲି ! ଆଡ଼ୁଆଳରେ ରହି ତୁମର କଥାବାର୍ତ୍ତା ଶୁଣିବା ଏବଂ ତଳକୁ ଯାଇ ଆଖି ଲାଲ ଲାଲ କରି ଭୟ ଦେଖାଇବା । ତାପରେ ତୁମେମାନେ ଚାଲିଗଲ । ନିଜ ବିଷର କି ଜ୍ୱାଳା ! କିନ୍ତୁ ବଦଳରେ ଯେଉଁ ଦୁଇଟି ଜିନିଷ ପାଇଲି ଉପେନ୍ଦ୍ର, ସେ ମୋର ସ୍ୱର୍ଗ, ସେ ମୋର ଅମୃତ । ଶ୍ରୀ ରାମଚନ୍ଦ୍ରଙ୍କ ପାଦସ୍ପର୍ଶରେ ପାଷାଣୀ ଅହଲ୍ୟା ଯେଉଁଳି ଜୀବନ୍ତ ମଣିଷ ଅହଲ୍ୟାରେ ପରିଣତ ହୋଇ-ଥିଲା, ମୁଁ ସେମିତି ବଦଳିଗଲି । ଅହଲ୍ୟା ମଣିଷ ହୋଇ କ'ଣ ପାଇଥିଲେ ଜାଣେନା, କିନ୍ତୁ ମୁଁ ଯାହା ପାଇଲି ତାର ତୁଳନା ନାହିଁ । ମୋର ଘର ନ ଥିଲା । ସତୀଶକ ପାଇଲି ମା ପେଟର ଭାଇ । ଆଉ ପାଇଲି ତୁମକୁ··· ଛି, ଇମିତି ମଳିନ ହୋଇପଡ଼ନି ଉପେନ୍ଦ୍ର ! ପୁରୁଷ ଲୋକ ମୁହଁରେ କ'ଣ ଏଉଳି ଏତେ ଲଜ୍ଜା ସାଜେ !

ଉପେନ୍ଦ୍ର ଜୋରକରି ମୁଣ୍ଡକୁ ସିଧା କରି କହିଲା—ଯାହା ଲଜ୍ଜାର ବସ୍ତୁ, ସ୍ତ୍ରୀ ପୁରୁଷ ଉଭୟଙ୍କର ସମାନ ବର୍ଜନ ! ମୁଁ ଏସବୁ କଥା ଶୁଣିବାକୁ ଚାହେଁନା । ହୁଏତ ତୁମେ ଚୁପ୍ କର, ନଚେତ ମୁଁ ଏହି ମୁହୂର୍ତ୍ତରେ ଉଠି ଚାଲିଯିବି ।

କିରଣମୟୀ କହିଲେ—କ'ଣ ଜବରଦସ୍ତି ଚାଲିଯିବ ?

ଉପେନ୍ଦ୍ର କହିଲା—ହଁ ।

କିରଣମୟୀ କହିଲେ—ତାହାହେଲେ ମୁଁ ଜୋରକରି ଧରି ରଖିବାକୁ ଚେଷ୍ଟା କରିବି; କିନ୍ତୁ କହି ରଖୁଛି ଉପେନ୍ଦ୍ର, "ଏଇ ଶକ୍ତି-ପରୀକ୍ଷାରେ ମୋର ଲାଭ ଛଡ଼ା ଲୋକସାନ ନାହିଁ ।

ଏଇ ଉତ୍ତର ପରେ ଉପେନ୍ଦ୍ର ଉପରମୁହାଁ ହୋଇ ବସିରହିଲା । କରୁଣାମୟୀ ପୁଣି ହସି କହିଲେ--ଭୟ କରନି ମ ! ତୁମ ଅନିଚ୍ଛାରେ ଉପରେ ପଡ଼ି ତୁମର ଦେହରେ ହାତଦେବା ଭଳି ଉନ୍ମାଦ ଏବେ ମୋର ହୋଇନି । ଇଚ୍ଛାହେଲେ ଉଠିଯାଇପାର, ମୁଁ ବାଧା ଦେବିନି ।

ଉପେନ୍ଦ୍ର ଅଧଃମୁଖରେ ସ୍ତବ୍ଧ ହୋଇ ବସିରହିଲା । ମେଘାବୃତ ଚନ୍ଦ୍ର ନିଜ ଆଖିକୁ ଦେଖା ନ ଗଲେ ମଧ୍ୟ ମୃଦୁ ଦଗର ଝାପ୍‌ସା ଜ୍ୟୋତ୍ସ୍ନାର ଇଙ୍ଗିତରେ ଅସ୍ପଷ୍ଟ ବସ୍ତୁଟା ଯେପରି ଜଣାଯାଏ, ଏଇ ଦୁଇଟି ନରନାରୀଙ୍କ ଗୋପନ ସମ୍ବନ୍ଧଟା ମଧ୍ୟ ଏତେବେଳ ଯାଏ ସେଇ ଠିକକ ମାତ୍ର ଆତ୍ମ ଆଳରେ ଥିଲା । କିନ୍ତୁ ସବୁ ବିଫଳ ହୋଇପଡ଼ିଲା । ହଠାତ୍ ଏକ ପବନର ଧକ୍‌କାରେ ସମସ୍ତ ଆବରଣ ଛିନ୍ନ କରି ଯେତେ ଦୂର ଦେଖାଯାଏ ସମସ୍ତ ଆକାଶ ଅନାବୃତ ହୋଇଉଠିଲା ।

କରୁଣାମୟୀ ଧୀରେ ଧୀରେ କହିଲେ—ଯା ହେଉ, ତୁମକୁ ଯେ ଭଲ ପାଏ, ଏତକ ଅନ୍ତତଃ ଜଣେଇପାରିଲି । ଏଥର ତୁମେ ଯାହା କିଛି କର—ମୋର କିଛି ଦରକାର ନାହିଁ । କିନ୍ତୁ ମନେ କରନା ଉପେନ୍ଦ୍ର, ମୁଁ ଅନ୍ଧ ଆଶାରେ ଭୁଲି ଏ କଥା ଜଣେଇଲି । ମୁଁ ତୁମକୁ ଚହ୍ନେ, ଜାଣେ; ମୋର ଏ ଆଶା ନିଷ୍ଫଳ, ଏକାବେଳକେ ନିଷ୍ଫଳ । ରକ୍ଷକ ହେବାକୁ ଆସି ତୁମେ ଭକ୍ଷକ ହୋଇପାରିବନି । କୌଣସି ମତେ ନୁହେଁ । ଏ କଥା ମୁଁ ଜାଣେ ।

ଏତେ ସମୟ ପରେ ଉପେନ୍ଦ୍ର କଥା କହିଲା । ମୃଦୁ କଣ୍ଠରେ ପ୍ରଶ୍ନ କଲା—ଏ ଶ୍ରଦ୍ଧା ଯଦି ମୋ ଉପରେ ଅଛି, ତେବେ ଜଣେଇଲ କାହିଁକି ?

କରୁଣାମୟୀ କହିଲେ – ତାର ଦୁଇଟି କାରଣ ଅଛି । ପ୍ରଥମ କାରଣ ନ ଜଣେଇଲେ ମୁଁ ପାଗଳ ହୋଇଯାଆନ୍ତି । ଦ୍ୱିତୀୟ କାରଣ ତୁମକୁ ସବୁ କଥା ନ ଜଣେଇ ତୁମର ଆଶ୍ରୟ ନେବା ଅସମ୍ଭବ । ତାହାହେଲେ ମୋର କେବଳ ମନେହୁଅନ୍ତା, ସୁରବାଳା ଯେମିତି ଆମକୁ ଖୁଆଉଚି, ପିଆଉଚି; କିନ୍ତୁ ସ୍ୱାପରେ ଯଦି ତୁମେ ଆମର ଦାୟିତ୍ୱ ନିଅ—ମନେ ହେବ, ଯାହା ଖାଉଚି, ପିନ୍ଧୁଚି, ତାହା ତୁମର, ସୁରବାଳାର ନୁହେଁ । ଆଚ୍ଛା, ସୁରବାଳାକୁ ମୁଁ ଯାହାସବୁ କହିଲି କହିବ ତ ?

ଉପେନ୍ଦ୍ର କହିଲେ—ନା ।

କିରଣମୟୀ ପ୍ରଶ୍ନ କଲେ—ନା କାହିଁକି ? ଶୁଣିଲେ ତା ମନରେ କଷ୍ଟ ହେବ ?

ଉପେନ୍ଦ୍ର କହିଲେ—ନା ଭାଉଜ, ତାର କିଛି କଷ୍ଟ ହେବନି । ସେ ଭାରି ବୋକା । ଭଦ୍ରଘରଝିଅ ସ୍ୱାମୀ ଛଡ଼ା ଆଉ କୌଣସି ଲୋକକୁ କୌଣସି ଅବସ୍ଥାରେ ଯେ ଭଲ ପାଇପାରେ, ଏକଥା ହଜାର ଥର କହିଲେ ମଧ୍ୟ ତାର ମୁଣ୍ଡରେ ପଶିବନି । କିନ୍ତୁ ଅନୁମତି ଦେବ ପରା, ଯାଆନ୍ତି ।

କଥାଟା କିରଣମୟୀକୁ ତୀକ୍ଷ୍ଣ ଆଘାତ କଲା । କିନ୍ତୁ ସେ ସହଜ କଣ୍ଠରେ କହିଲେ—ଅନୁମତି ନ ଦେଇ ତ ଉପାୟ ନାହିଁ, ଦେବାକୁ ହିଁ ହେବ । କିନ୍ତୁ ଆଉ ଟିକିଏ । ସେ ତୁମକୁ ଯେ ଭଲ ପାଏ, ସେଇତକ ଖାଲି କୁହାଗଲା । କିନ୍ତୁ ବୁଝିବାକୁ ଯେ ରହିଥିଲା, ଆଜି ସେ କଥାଟା ତ ତୁମେ ଜାଣିବା ଦରକାର । କିନ୍ତୁ ସେଥିରେ କିଏ ମୋର ଗୁରୁ ଜାଣ ? ସେଇ ଯେ ନିର୍ବୋଧମାନଙ୍କ ମଧ୍ୟରେ ଅକର୍ମଣ୍ୟ ମାଇପିଟି ସହଧର୍ମିଣୀ ହୋଇ ତୁମ ଘରେ ଡୁକିଛନ୍ତି—ସେଇ ।

ଉପେନ୍ଦ୍ର ମୁହଁରେ ଟିକିଏ ବିସ୍ମୟର ଆଭାସ ଦେଖି କିରଣମୟୀ କହିଲେ—ହଁ ସେଇ, ତୁମେ ଯାହାକୁ ପଶୁରାଜ କହି ଅଣ୍ଟା କର, ସେଇ ସୁରବାଲା ମୋର ଗୁରୁ । ତୁମେ ଯାହା ଶିଖେଇଲ, ସେ ତାକୁ ଭୁଲେଇ ଦେବାକୁ ରହିଁଲେ । ସେ ମୋର ନମସ୍ୟ ।

ଉପେନ୍ଦ୍ର ମୌନ ହୋଇ ବସିରହିଲା । କିରଣମୟୀ କହିବାକୁ ଲାଗିଲେ—ତୁମକୁ ବାରମ୍ବାର କହୁଚି ଉପେନ୍ଦ୍ର, ଆଜି ଯେ ତୁମର ପାଦତଳେ ମୋର ଲଜ୍ଜା ସରମର ସମସ୍ତ ଜଞ୍ଜାଳ ଜଳାଞ୍ଜଳି ଦେଲି, ତାର ସମସ୍ତ ଫଳାଫଳ ମୁଁ ଜାଣେ । ମୁଁ ଜାଣେ ତୁମର ସୁରବାଲା ଅଛି—ଆଉ ଅଛି ତୁମର ନିଷ୍ଠୁର କଠିନ ପବିତ୍ରତା । ତାହା ସ୍ଫଟିକ ଭଳି ସ୍ୱଚ୍ଛ, ବଜ୍ର ଭଳି ଶକ୍ତ । ସେଥିରେ କଳଙ୍କର ଦାଗ ଦେବାର ସାଧ ମୋର ନାହିଁ । କିନ୍ତୁ ଜାଣ ତ ଉପେନ୍ଦ୍ର, ମଣିଷର ଏଭଳି ପୋଡ଼ା ସ୍ୱଭାବ ଯେ ଯାହା ତାର ସାଧ୍ୟାତୀତ ସେଥିରେ ହିଁ ତାର ସବୁଠାରୁ ବେଶୀ ଲୋଭ । ଭଗବାନଙ୍କୁ ପାଇବା ସମ୍ଭବ ବୋଲି ମଣିଷ ତାଙ୍କୁ ଏତେ ସଉକରେ ଖୋଜେ । ତେଣୁ ମୋର ମନେହୁଏ, ତୁମେ ମୋର ଏପରି ଏତେବଡ଼ ଅପ୍ରାପ୍ୟ ବସ୍ତୁ ନ ହେଲେ ବୋଧହୁଏ ତୁମକୁ ଏତେ ଭୟ ପାଇ ନ ଥାନ୍ତି । କିନ୍ତୁ ଛାଡ଼ ସେ କଥା ।

କିଛି ସମୟ ନୀରବ ରହି ଗୋଟିଏ ଦୀର୍ଘ ନିଶ୍ୱାସ ଟାଣି ସେ କହିଲେ--
ଏକଲବ୍ୟର ଯେପରି ଦ୍ରୋଣ ଗୁରୁ, ମୋର ଗୁରୁ ସେଇଭଳି ସୁରବାଳା ।
କିନ୍ତୁ କିମିତି ସେ ହେଲି, ସେଇକଥା ଜଣେଇ ତୁମକୁ ଛୁଟି ଦେବି । ଏଇ
ଯେଉଁଠି ଖାଇବସିଚ ଉପେନ୍ଦ୍ର, ଦିନେ ରାତିରେ ସତୀଶ ସେଠି ଖାଇ ବସି-
ଥିଲେ । କାହିଁକି କେଜାଣି ହଠାତ୍ ତୁମ କଥା ପଡ଼ିଲା । ଜାଣ ତ ? ଭାଇଟି
ମୋର ତୁମ କଥା ପଡ଼ିଲେ ଏକାବେଳକେ ମାତିଉଠେ । ସେତେବେଳେ
ତାକୁ ସମ୍ଭାଳିବା ମୁସ୍କିଲ । ମୋର ବି ସେତେବେଳେ ସେଇ ଦଶା । ଭଲ
ପାଇବାର ମଦ ସେତେବେଳେ ସେଇକ୍ଷଣି ଖାଇ ତୁମର ନିଶାରେ ମୋର
ହାତ ଗୋଡ଼ ଅବଶ । ଦୁଇ ଆଖି ଢୋଳେଇ ପଡ଼ୁଥାଏ । ଏଇ ସମୟରେ
ସତୀଶ କେତେ ଦୃଷ୍ଟାନ୍ତ ଦେଇ କହିଲା—ତୁମେ ତୁମର ସୁରବାଳାକୁ ଭାରି
ଭଲ ପାଅ । ଥରେ ତାଙ୍କର ମିଳିମିଳା ହୋଇଥିଲା, ତୁମେ କୁଆଡ଼େ ତା
ଲାଗି ଆହାର ନିଦ୍ରା ଛାଡ଼ି ଦେଇଥିଲ । କେବେ ସେ ତୁମର ଟିକିଏ ମୁଣ୍ଡ
ବ୍ୟଥା ଯୋଗୁଁ ସାରା ରାତି ପାଖରେ ବସି କଟାଇଥିଲା—ଏଭଳି କେତେ
ଦିନର କେତେ ବନ୍ଧି କାହାଣୀ । ତା'ଠୁ ସେସବୁ ଶୁଣା କଥା । ହୁଏତ
କେଉଁଟା ମିଛ ହୋଇଥିବ, ନଚେତ୍ ଅତିରଞ୍ଜିତ । କିନ୍ତୁ ସେଥିରେ ଆମ
ଦିଜଣଙ୍କ କାହାର କୌଣସି କ୍ଷତି ହେଲାନି । ତୁମ ସ୍ତ୍ରୀ ପୁରୁଷ ଦୁହିଁଙ୍କ
ମଧ୍ୟରେ ଯେଉଁ ପ୍ରେମଗଙ୍ଗା ବହିଯାଉଚି, ଆମେ ଦୁଇଜଣ ଭାଇଭଉଣୀ
ଦେଖି ଦେଖି ଯେମିତି ସେଥିରେ ବୁଡ଼ି କୋଉ ତଳକୁ ଚାଲିଗଲୁ । ତାପରେ
ବହୁତ ରାତି ହୋଇ ଯାଇଥାଏ । ସତୀଶ ତା ବସାକୁ ଚାଲିଗଲା । ମୁଁ କିନ୍ତୁ
ଏଇ ବେଷେଇଘରେ ବସିରହିଲି । କେତେ ସମୟ ଜାଣେନା—ବାହାରକୁ
ଆସି ଦେଖିଲି ଆଗରେ ଶୁକ୍ର ତାରା । ମୋର ହଠାତ୍ ମନେହେଲା
ସୁରବାଳାର ମୁହଁଟି ଯେମିତି ଏଇ ଶୁକ୍ରତାରା ଭଳି—ଇମିତି ମଧୁର,
ଏଇମିତି ଉଜ୍ଜ୍ୱଳ । ଠିକ ଏଇଭଳି ଧାରରେ ବୋଧହୁଏ ତାର ମୁହଁରୁ
ଦୃଷ୍ଟି ଫେରିଯାଏନା ।

ମନେ ମନେ ତାକୁ କହିଲି—ତୁମକୁ ତ ଦେଖିନି ତୁମେ କିମିତି;
କିନ୍ତୁ ଯେମିତି ହେଉ ଆଜଠୁ ତୁମେ ହେଲ ମୋର ଗୁରୁ । ତୁମରି
ପାଖରୁ କି ମୁଁ ସ୍ୱାମୀପ୍ରେମର ମନ୍ତ୍ର ଘେନିଲି । ଭଲ ପାଇବାର ସ୍ୱାଦ ମୁଁ
ପାଇଚି, ତାକୁ ଆଉ ଛାଡ଼ିପାରିବି ନାହିଁ । ନିଜକୁ ଭଲ ପାଇ ମୁଁ ଭଲ

ପାଇବାକୁ ଚାହେଁ । ତେବେ ଅନ୍ୟକୁ ଭଲ ପାଇ ତାଙ୍କର ନିଜକୁ ବ୍ୟର୍ଥ କରିଦେବ ? ଆଜ ବି ତ ମୋର ସ୍ୱାମୀ ବଞ୍ଚିଛନ୍ତି, ଏବେ ବି ମୁଁ ବିଧବା ହୋଇନି । ତେବେ ତାଙ୍କର ଏ ଭୁଲ ? ତୁମ ଭଳି ଆଉ ମୁଁ ମୋର ସ୍ୱାମୀଙ୍କୁ ଭଲ ପାଇବ—ଆଉ କାହାକୁ ନୁହେଁ । ଏତିକ କହୁ କହୁ ମୋ ମନ ଯେମିତି ତାର ସମସ୍ତ ଶକ୍ତି ଖଟେଇ ହଁ କଲା—ଭଲ ପାଇବାକୁ ଫେରିପାଇବାର ଆଶା ନାହିଁ ସତ, ତଥାପି ତାଙ୍କୁ ତୁ ଭଲ ପାଇବାକୁ ହେବ । କିନ୍ତୁ ମୋର କି ପୋଡ଼ା କପାଳ ଉପେନ୍ଦ୍ର, ସେ ଆଉ ବଞ୍ଚିଲେ ନାହିଁ । ମୋର ସାଧନାର ଫଳ ଅଙ୍କୁର ହେଉ ହେଉ କୁଆଡ଼େ ମରିଗଲା; ତେଣୁ ତାଙ୍କର ମୃତ୍ୟୁବେଳେ ତୁମେ ମୋର ଯେଉଁ ଚେହେରା ଦେଖିଥିଲ, ସେଥିରେ ବିନ୍ଦୁଏ ବି ଛଳନା ନ ଥିଲା-- କହୁ କହୁ ତାର କଣ୍ଠସ୍ୱର ଅତି କରୁଣ ଓ ବିଗଳିତ ହୋଇଉଠିଲା । ଉପେନ୍ଦ୍ର ତାହା ଲକ୍ଷ୍ୟ କରୁଥିଲା; କିନ୍ତୁ ପଦେ ବି କଥା କହି ନ ଥିଲା । କିରଣମୟୀ ନିଜେ କିଛି ସମୟ ମୌନ ରହି କହିଲେ---ଉପେନ୍ଦ୍ର, ଯେଉଁମାନେ ମୂର୍ଖ, ସେମାନେ ବୁଦ୍ଧୁ । ତୁମେ ତ ଜାଣ, ସଂସାରରେ ସବୁ ଜିନିଷର ପ୍ରାକୃତିକ ନିୟମ ରହିଛି । ସେଇ ନିୟମକୁ ଆଗ୍ରାହ୍ୟ କରି ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଥିବା ଶରୀର ମଧୁର ସଂପର୍କ ପାଖରେ ପହଞ୍ଚିପାରେନା । ବିବାହବେଦୀର ମନ୍ତ୍ର କର୍ତ୍ତବ୍ୟ ବୁଦ୍ଧି ଦେଇପାରେ, ଭକ୍ତି ଦେଇପାରେ, ସହମରଣର ପ୍ରବୃତ୍ତି ମଧ୍ୟ ଦେଇପାରେ; କିନ୍ତୁ ମାଧୁର୍ଯ୍ୟ ଦେବାର ଶକ୍ତି ତ ତାର ନାହିଁ । ସେଇ ଶକ୍ତି କେବଳ ଅଛି ଏଇ ପ୍ରକୃତି ହାତରେ । ତାର ଦତ୍ତ ନିୟମ ପାଳନ ଭିତରେ ଯେତେବେଳେ ସମୟ ଥିଲା, ସାମର୍ଥ୍ୟ ଥିଲା, ସେତେବେଳେ ଦୁଇଜଣଯାକ ହିଁପାଦରେ ସେ ନିୟମ ଉପରେ ମାଡ଼ ଯାଇଛନ୍ତି, ତାର କୌଣସି ସମ୍ମାନ ବି ରଖିନାହାନ୍ତି । ଆଜି ଅସମୟରେ ସ୍ୱାମୀ ଯେତେବେଳେ ମୃତକଳ୍ପ, ସେତେବେଳେ ପ୍ରୟୋଜନ ଅଛି ବୋଲି ତା ପାଖକୁ ଯିବ ବା କିମିତି ? ତଥାପି ମୁଁ ଗଲା ହରେଇ ବସିନି ଉପେନ୍ଦ୍ର ! ଆଶା ଥିଲା, ଗୋଟାଏ ବାଟ ସମ୍ଭବତଃ ସେତେବେଳେ ଖୋଲା ଥିଲା—ସେଇଟା ହେଉଛି ତାଙ୍କର ସେବା । ଭାବିଥିଲି, ଆମରଣ ସ୍ୱାମୀ-ସେବା ମାଧ୍ୟମରେ ହୁଏତ ଦିନେ ତାଙ୍କୁ ପାଇବି; କିନ୍ତୁ ଏଭଳି ହତ-ଭାଗିନୀ ମୁଁ ଯେ ସେ ଟିକିକ ଅବସର ବି ମତେ ମିଳିଲାନି । ସେ ଇହଲୋକ ତ୍ୟାଗ କରି ଚାଲିଗଲେ ।

ଉପେନ୍ଦ୍ର ଝରକା ଆଡ଼େ ମୁହଁ କରି ଦେଖିଲା, କିରଣମୟୀଙ୍କ ଦୁଇ ଆଖି ଅଶ୍ରୁଜର୍ଜରିତ । କହିଲା—ଶୁଣିଚି, ଆପଣ ତାଙ୍କର ଯେପରି ସେବା କରିଛନ୍ତି, ଅନ୍ୟ ମଣିଷ ତାହା କରିବା ସମ୍ଭବ ନୁହେ । ସେ ଦିଗରେ ଆପଣଙ୍କର ସ୍ତ୍ରୀ କର୍ତ୍ତବ୍ୟରେ ତିଳେହେଲେ ତ୍ରୁଟି ହୋଇନି ।

କିରଣମୟୀ କହିଲେ—ତା ହୁଏତ ଘଟିନି; କିନ୍ତୁ ମଣିଷ ଯାହା ତାହା କରିପାରେନା, ମୋ ଦେଇ କିମିତି ସମ୍ଭବ ହେଲା ? ତା ନୁହେଁ ଉପେନ୍ଦ୍ର, ଏଭଳି ସେବା ସ୍ତ୍ରୀଲୋକ ମାନେ କରିପାରେ; କିନ୍ତୁ ମୁଁ କର୍ତ୍ତବ୍ୟ ବୋଲି ତ କିଛି କରିନି । ମୋ ଲାଗି ସବୁ ବାଟ ବନ୍ଦ ହୋଇ ଯାଇଥିଲା ବୋଲି ମୁଁ ସ୍ୱଇଚ୍ଛାରେ ଥିଲି ସେବା କରି ତାଙ୍କୁ ପାଇବାକୁ । ତେଣୁ ସେ ଦିଗରୁ ଯେତିକିଟା ପାରିଚି, କେବେ ଅବହେଳା କରିନି । ଭାବିଥିଲି, ଥରେ ଯଦି ତାଙ୍କୁ ବୁକୁ ଭିତରେ ପାଏ, ଯେତେଦିନ ବଞ୍ଚିବି, ଯେତେଦିନ ଯେଉଁଠି ରହିଥିବି, ଭଦ୍ରଭାବରେ ଜୀବନଟାକୁ କଟେଇ ଦେଇପାରିବି । କିନ୍ତୁ ସମସ୍ତ ଚେଷ୍ଟା ମୋର ନିଷ୍ଫଳ ହୋଇପଡ଼ିଲା । ତାଙ୍କୁ ପାଇବାକୁ ଆରମ୍ଭ କରିଥିଲି ସତ, କିନ୍ତୁ ପାଇପାରିଲି ନାହିଁ । ପ୍ରଥମରୁ ସେଇ ଯେ ତୁମେ ମୋ ବୁକୁକୁ ଜାବୁଡ଼ି ରହିଲ, କୌଣସିମତେ ସେଠାରୁ ତୁମକୁ ଆଡ଼େଇ ପାରିଲି ନାହିଁ । ମୋ ସ୍ୱାମୀଙ୍କୁ ବି ମୁଁ ମୋ ଅନ୍ତର ଭିତରେ ପାଇପାରିଲି ନାହିଁ ।

ଉପେନ୍ଦ୍ର ଉଠି ଠିଆହୋଇ କହିଲା—ବହୁତ ରାତି ହୋଇଗଲାଣି ଭାଉଜ, ମୁଁ ଯାଉଚି ।

କିରଣମୟୀ ମଧ୍ୟ ଉଠି ଠିଆହୋଇ କହିଲେ—ଚାଲ, ତୁମକୁ ଦାଣ୍ଡ ଦୁଆରେ ପହଞ୍ଚାଇ ଦେଇ କବାଟଟା ବନ୍ଦ କରିଦେଇ ଆସିବି । କାଲି ଦେଖା ହେବ ତ ?

—ନା, କାଲି ମୁଁ ଘରକୁ ଯିବି ।

—ଆଉ କେବେ ଦେଖାହେବ ?

—ହେବା ତ ସମ୍ଭବ । ନମସ୍କାର ଭାଉଜ !

—ନମସ୍କାର ଉପେନ୍ଦ୍ର ! ଦିବାକରକୁ ଏଠିକି ଟିକିଏ ପଠେଇ ପାରିବ ?

—ପଠେଇବି କ'ଣ ? ତାର ମା ବାପା କେହି ନାହାଁନ୍ତି । ମୁଁ ତାର ଭଲ ମନ୍ଦ ଏପର୍ଯ୍ୟନ୍ତ ଦେଖିଆସିଚି । ଆଜିଠୁ ତାକୁ ମଣିଷ କରିବା ଭାର

ଆପଣ ଯେତେବେଳେ ନେଇନ୍ତୁ, ସେ ଭାର ଆପଣଙ୍କ ହାତରେ ହିଁ ସମର୍ପି ଦେଉଛି । ଆପଣ ଯେ ବଦାକରକୁ କେତେ ଭଲ ପାଆନ୍ତି, ତାହା ମୁଁ ଜାଣେ ।

ଉପେନ୍ଦ୍ର ଦରଜା ବାହାରକୁ ଆସି କହିଲା—ସେଇଥିଲାଗି ତ ଦେଉଛି ଭାଉଜ ! ମୁଁ ଯାକୁ ଭଲ ପାଏ, ତାର ଅମଙ୍ଗଳ ଆପଣଙ୍କଦ୍ୱାରା କେବେ ହେବନି ଏଇ ତ ମୋର ଭରସା । ଏହା କହି ସେ ଦ୍ରୁତପାଦରେ ଅଗ୍ରସର ହେଲା ।

କିରଣମୟୀ ଅନ୍ଧକାର ଗଳି ଭିତରେ ମୁହଁକୁ ବଢ଼େଇ ଉଚ୍ଚ-କଣ୍ଠରେ ପଚାରିଲେ—ମୋର ଗୋଟାଏ କଥା କହିଯାଅ ଉପେନ୍ଦ୍ର, ସତୀଶ କ'ଣ କଲିକତାରେ ନାହିଁ ?

ଉପେନ୍ଦ୍ର ଦୂରରୁ ଜବାବ ଦେଲା—ନା ।

କିରଣମୟୀ ପୁଣି ପ୍ରଶ୍ନକଲେ—ସେ ଯେତେବେଳେ ମତେ କିଛି ନ କହି ଚାଲିଯାଇଛି, ସେତେବେଳେ ସେ ବହୁତ ଦୁଃଖରେ ଯାଇଛି ଉପେନ୍ଦ୍ର ! ତାକୁ କ'ଣ ତୁମେ ଏ ଘରେ ପଶିବାକୁ ମନା କରିଦେଇଛ ?

ଉପେନ୍ଦ୍ର କହିଲା—ଦେବାର ଇଚ୍ଛା ଥିଲା; କିନ୍ତୁ ଦେଇନି ।

କିରଣମୟୀ ପଚାରିଲେ—ଯଦି ଇଚ୍ଛା ଥିଲା, ଦେଲନି କାହିଁକି ?

ଉପେନ୍ଦ୍ର ଚୁପ୍ ରହିଲା ।

ଉତ୍ତର ନ ପାଇ କିରଣମୟୀ କହିଲେ—ଏମିତି ଇଚ୍ଛା କାହିଁକି ହୋଇଥିଲା, ତା କ'ଣ ଜାଣିପାରେ କି ?

ଉପେନ୍ଦ୍ର କହିଲା—ମୋର ଭୁଲ ହୋଇ ଥାଇପାରେ । ଯାହାହେଉ କେଉଁଠି ସେ ଅଛି, ଖୋଜଖାଜ କରି ତୁମ ପାଖକୁ ଆସିବାକୁ ତାକୁ ଚିଠି ଲେଖିବି । ତାକୁ ପଚାରିବେ । ଏହାକହି ଉପେନ୍ଦ୍ର ଦ୍ୱିତୀୟ ପ୍ରଶ୍ନକୁ ଅପେକ୍ଷା ନ କରି ଦ୍ରୁତପାଦରେ ଅନ୍ଧକାର ଗଳି ପାର ହୋଇଗଲା ।

## ଅଠେଇଶି

ଯେଉଁ ପକ୍‌କା ରାସ୍ତାଟା ସାନ୍ତାଳ ପ୍ରଗଣା ଭିତର ଦେଇ ବୈଦ୍ୟନାଥରୁ ଦୁମ୍‌କା ଆଡ଼କୁ ଯାଇଛି, ତାର କଡ଼ରେ ବଗିଚା ଭିତରେ ବୈଦ୍ୟନାଥଠୁ ପ୍ରାୟ ଦଶକୋଶ ଦୂରରେ ଗୋଟାଏ ବଙ୍ଗଳା ଥିଲା । କଲିକତାରୁ ଚାଲିଆସି ସତୀଶ ଏଇ ଘରଟାକୁ ଖୋଜି ତାକୁ ଭଡ଼ା ନେଇ ସେଇଠି ରହୁଥିଲା । ନିଜ ଭିତରେ ଗୋଟାଏ ବୁଝାମଣା କରିଦେବା ଲାଗି ନିରୋଳାରେ ଏଇଠି ଅଜ୍ଞାତବାସ କରିବାକୁ ଆସିଥିଲା । ତେଣୁ ସେ ଯେତେବେଳେ ଦେଖିଲା, ଆଖ ପାଖରେ କୌଣସି ଗାଁ ଗଣ୍ଡା ନାହିଁ, ଲୋକଯାତାୟାତ ମଧ୍ୟ ବିରଳ, ସେତେବେଳେ ଖୁସି ହୋଇ ଉଠି କହୁଥିଲା —ଠିକ ଏଇମିତି ଗୋଟିଏ ଜାଗା ଚାହୁଁଥିଲି । ଏମିତି ନିର୍ଜନ ନୀରବତା ହିଁ ମୋର ଦରକାର । କଲିକତାରୁ ସେ ଯେଉଁ ଅପଯଶ ଓ ଦୁଃଖର ବୋଝ ବୋହି ଆଣିଥିଲା, ନିରୋଳାରେ ବସି ଗୋଟିକ ପରେ ଗୋଟିଏ ହିସାବ ନିକାଶ କରିବା ହିଁ ଥିଲା ତାର ଅଭିପ୍ରାୟ । ପ୍ରଥମ ଦଫାରେ ସାବିତ୍ରୀକୁ ତାର ଇତସ୍ତତଃ ମନ ଯୋଗୁଁ ଘୃଣା କରିବା ଦରକାର । ଦ୍ୱିତୀୟ ଦଫାରେ ପାଥୁରିଆଘାଟର ସେଇ ଭାଉଜକୁ ଭୁଲିବା ଆବଶ୍ୟକ । ତୃତୀୟତଃ ଉପୀନଦା ସହିତ ସମସ୍ତ ସଂପର୍କ ଛିନ୍ନ କରିବା ଉଚିତ । ଏଇ ସମସ୍ତ କଠିନ କାମ ଏଇ ନିକାଞ୍ଚନ ସ୍ଥାନରେ ବସି ଶେଷ କରିବା ତାର ଉଦ୍ଦେଶ୍ୟ । ସାଙ୍ଗରେ ଥିଲା କେବଳ ବେହାରା ଓ ଆଉ ଜଣେ ପୂଜାରୀ । ବେହାରାର କାମ ହେଉଛି, ବାବୁଙ୍କ ସେବା କରି ଅବଶିଷ୍ଟ ସମୟ ପୂଜାରୀ ସହିତ ବାଦାନୁବାଦ କରି ତାକୁ ମୂର୍ଖ ଓ ଅନାଡ଼ୀ ପ୍ରତିପନ୍ନ କରିବା । ଆଉ ପୂଜାରୀର କାମ ଥିଲା, ଭାତଡ଼ାଲି ରନ୍ଧାରନ୍ଧି କରିଦେଇ ବାକି ସମୟ ବେହାରା ସହିତ କଳହ କରି ସେ ଯେ ବଜାରକୁ ଜିନିଷ କିଣିବାକୁ ଯାଇ ଦି ପଇସା ଚୋରି କରେ, ତାହା ସାବ୍ୟସ୍ତ କରିବା । ଏ ଦୁଇ ପକ୍ଷର ଦିନ-ଗୁଡ଼ିକ ଇମିତି କଟିବାବେଳେ ପ୍ରଭୁଙ୍କ କାମ ହେଲା ସବୁବେଳେ ତତ୍ତ୍ୱଚିନ୍ତାରେ ମଗ୍ନ ରହିବା । ସଂସାରରେ କାମିନୀ-କାଞ୍ଚନ ଯେ ଅନର୍ଥର ମୂଳ, ବୈରାଗ୍ୟ ଯେ ପରମ ବସ୍ତୁ, ପକ୍ଷୀର କାକଳି ଯେ ଚରମ ସଂଗୀତ, ଜଙ୍ଗଲ ପାହାଡ଼

ପବତ ଯେ ସୌନ୍ଦର୍ଯ୍ୟର ନଖୁଣ ଆଦର୍ଶ, ଏଇ ସତ୍ୟ ସମ୍ପୂର୍ଣ୍ଣ ହୃଦୟଙ୍ଗମ କରିବା ହିଁ ତାର ସାଧନାର ବସ୍ତୁ । ତେଣୁ ସନ୍ଧ୍ୟାବେଳ ବାରଣ୍ଡାରେ ଗୋଟିଏ ଆରାମ ଚୌକିରେ ବସି ଗଛଡାଳରେ ପକ୍ଷୀମାନଙ୍କ ଚିଁ ଚିଁ ଶବ୍ଦ, ମହୁଲ ଗଛରେ ପବନର ସାଁ ସାଁ ଶବ୍ଦକୁ ରାଗରାଗିଣୀ ଭାବ ଚିନ୍ତା କରିବାକୁ ଲାଗିଥାଏ । ଦୂର ପାହାଡ଼ ଦେହରେ ନିଆଁ ଲାଗିଲେ ତାକୁ ସେ ଚାହିଁଇ ରହେ । ସେ ମାଛ ମାଂସ ଛାଡ଼ିଦେଇ ସାତ୍ତ୍ୱିକ ଆହାର ଗ୍ରହଣ କଲା ଏବଂ କୁଆଡ଼ୁ ଗୋଟାଏ ଶାଳଗ୍ରାମ ଆଣି ଦିନବେଳେ ପୂଜା ଓ ରାତିରେ ଆରତି କରିବା ଆରମ୍ଭ କରିଦେଲା । କିନ୍ତୁ ପ୍ରକୃତରେ ଏଇ ନୂତନ ପ୍ରଣାଳୀର ଜୀବନଯାତ୍ରା ସହିତ ତାର କୌଣସି ସମୟରେ ପରିଚୟ ନ ଥିଲା । ଏହା ପୂର୍ବରୁ ଚିରକାଳ ତାକୁ ପକ୍ଷୀର କାକଳି ଅପେକ୍ଷା ସେତାରର ଶବ୍ଦ ହିଁ ମଧୁର ଲାଗୁଥିଲା । ପବନ ଦେହରେ ରାଗରାଗିଣୀର ଅସ୍ତିତ୍ୱ ସେ କେବେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲା । ଆକାଶ ଦେହରେ ମେଘୋଦୟରେ ସେ କେବେ ବିଚଳିତ ହୋଇ ନ ଥିଲା । ବସ୍ତୁତଃ ପ୍ରକୃତି ଦେବୀଙ୍କ ଏଇ ସମସ୍ତ ଶୋଭାସମ୍ଭାର ଯେତେ ବା ଥାଉ, ତାର ଖବର ଅନ୍ତର ନେବାର ଫୁରୁସତ୍ ତାର କେବେ ନ ଥିଲା । ଯେଉଁଠି ଗାନବାଜଣା, ଥିଏଟର, ସର୍କସ, ଯେଉଁଠି ଫୁଟବଲ, କ୍ରିକେଟ ସନ୍ଧ୍ୟାର ଦିନ କଟେ ସେଇଠି । କେଉଁଠି ମାରପିଟ କରିବାକୁ ହେବ, କେଉଁ ମଣ୍ଡପରେ ଷ୍ଟେଜ ବାନ୍ଧିବାକୁ ହେବ, କାହାର ଶବ ସତ୍କାର ଦରକାର, କାହାର ଦୁଃସମୟରେ ଦଶ ପନ୍ଦର ଟଙ୍କା ଯୋଗାଡ଼ କରିବାକୁ ହେବ, ତାହା ହିଁ ଥିଲା ତାର ପ୍ରଧାନ କାମ ।

ପକ୍ଷୀର ସ୍ୱରରେ ମଧୁରତା ଅଛି କି ନାହିଁ, କୋକିଳ ପଞ୍ଚମ ସ୍ୱରରେ ବୋବାଏ କି ନା, ଆକାଶ ପଟରେ ଯେଉଁ ତୁଳୀର ରଙ୍ଗ ଫୁଟେ, ନଦୀର ଜଳ କୁଳୁ କୁଳୁ ଶବ୍ଦରେ କେଉଁ ବାଣୀ ଶୁଣାଏ, କାମିନୀ-କାଞ୍ଚନ କେତେ-ଦୂର ଅନର୍ଥର ମୂଳ, ଏସବୁ ସୂକ୍ଷ୍ମ ତତ୍ତ୍ୱ କୌଣସି ସମୟରେ ତା ମୁଣ୍ଡରେ ଢୁକିନି ଏବଂ ସେଥିଲାଗି ଦୁଃଖ କରିବା ତାଠି କେବେ କେହି ଦେଖି ନାହିଁ । ସେ ସହଜ ମଣିଷ, ତେଣୁ ସେ ସଂସାରର କାରବାରକୁ ସେହିଭଳି ସହଜ କରିପାରେ । ଯାହାକୁ ଭଲ ପାଏ, ତାକୁ ନିର୍ବିଘ୍ନରେ ଭଲ ପାଏ ଏବଂ ସେଥିରେ ଆଘାତ ଲାଗିଲେ କ'ଣ କରିବାକୁ ହୁଏ, ସେ ଭାବିପାରେନା ।

ପୃଥିବୀରେ ସେ ଦୁଇ ଜଣଙ୍କୁ ସବୁଠାରୁ ଭଲ ପାଇଥିଲା । ଜଣେ ସାବିତ୍ରୀ; ଅନ୍ୟ ଜଣଙ୍କ ଉର୍ମିଳଦା । ସାବିତ୍ରୀ ତାକୁ ଫାଙ୍କି ଦେଇ କଦାଗୃହୀ ବିଶ୍ୱାସ-ଘାତକ ବିପିନ ସାଙ୍ଗରେ କୁଆଡ଼େ ଚାଲିଗଲା । ଉର୍ମିଳଦା କୌଣସି ପଦେ ସୁଦ୍ଧା କଥା ନ କହି ଅନ୍ଧାର ରାତ୍ରୀରେ ତାକୁ ଛାଡ଼ି ଚାଲିଗଲା । ଠିଆ ହେବାର ଏକମାତ୍ର ସ୍ଥାନ ଥିଲା କାରଣମୟୀ ପାଖରେ; କିନ୍ତୁ ସେ ଦ୍ୱାର ମଧ୍ୟ ରୁଦ୍ଧ ଦେଖି ଫେରିଆସିବାରୁ ଆଉ ତାହାର ସାହସ କେବେ ହେଲାନି ।

ସେଇଥିଲାଗି ସେ ଏଠିକି ଆସି ଆକାଶ, ପବନ, ପଶୁପକ୍ଷୀମାନଙ୍କ ସହିତ ଜବରଦସ୍ତି ଗୋଟାଏ ନୂତନ ସଂପର୍କ ପ୍ରତିଷ୍ଠା କରି ନେଇଥିଲା । କିନ୍ତୁ ଚିରକାଳ ଯେଉଁ ମଣିଷ ଆମୋଦ ପ୍ରମୋଦ, ବନ୍ଧୁବାନ୍ଧବଙ୍କୁ ନେଇ ହାଇଚାଇ କରି କାଳ କଟାଏ, ତାର ବୈରାଗ୍ୟସାଧନ ଦେଖି ବେହାରୀ ଆଖିରେ ଲୁହ ଦେଖାଗଲା ।

ସେ ହୁଏତ କେଉଁଦିନ ଆସି କହେ—ବାବୁ, ଦିଜଣ ବଙ୍ଗାଳୀ ଆଗ ରାସ୍ତାଦେଇ ବୋଧହୁଏ କି କେଉଁଠି ଖେଳ ଦେଖିବାକୁ ଯାଉଚନ୍ତି ।

କଥା ଶେଷ ନ ହେଉଣୁ ସଞ୍ଜୀବ 'କାହିଁ' କହିଦେଇ ପୁଣି ସଙ୍ଗେ ସଙ୍ଗେ ହସିଉଠି କହେ—"ଥାଉ ସେ କଥା ।" ସେ ଚେୟାର ଉପରେ ପୁଣି ବସିପଡ଼େ ।

ବେହାରୀ କହେ—ଡାକିବି ବାବୁ ! କଥାବାର୍ତ୍ତା କରନ୍ତେ ।

ସଞ୍ଜୀବ କହେ—କାହିଁକି ? ତା ପରେ ଟିକିଏ ଉଚ୍ଚଧରଣର ଶୁଖିଲା ହସ ହସି କହେ—ମୋର ସେସବୁ ଆଳାପ ଆଲୋଚନା ଦରକାର ନାହିଁ । ଭଲ ବି ଲାଗେନା । ଜାଣୁ ବେହାରୀ, ବଣର ପକ୍ଷୀମାନେ ଆଜକାଲି ଆମକୁ ଗୀତ ଶୁଣାନ୍ତି, ଗଛପତ୍ର କଥା ବି କହୁଚନ୍ତି, ପବନ ସିରି ସିରି କରି ମୋ କାନରେ ରାଜ୍ୟଟାଯାକର ଖବର କହି ଦେଇଯାଏ । ମୋର ଆଉ ବାଜେ ଲୋକଙ୍କ ସହିତ ହସ-ଖୁସି କରିବାକୁ ସମୟ ଅଛି ? ଇଚ୍ଛା ହୁଏନା । ମୋର ଯଥାର୍ଥ ବନ୍ଧୁ ଏଇମାନେ । ବେହାରୀ ନିରୁତ୍ତର ହୋଇ ମ୍ଳାନମୁଖରେ ଫେରିଯାଏ । କିନ୍ତୁ ବହୁକ୍ଷଣ ପର୍ଯ୍ୟନ୍ତ ପ୍ରଭୁଙ୍କର ଏଇ ବେଦନାବଦ୍ଧ କଣ୍ଠସ୍ୱର ତାର କାନ ଭିତରେ ଗୁଣୁ ଗୁଣୁ ହେଉଥାଏ ।

ବେହାରୀର ଗୋଟାଏ ସ୍ୱଭାବ—ସେ କଥାରେ କଥାକୁ ଯାଙ୍ଗି ପାରେନା । ଅନେକ ଭଦ୍ରଲୋକ ଯେଉଁ ଲୋଭ ସମ୍ବନ୍ଧରେ କହିପାରନ୍ତି ନାହିଁ, ଏଇ

ଶ୍ରେଷ୍ଠ ଲୋକ ବେହାଗାର ସେଇ ଶକ୍ତି ଥିଲା । ସେ ମନେ ମନେ ଏକ ପ୍ରକାର ଭାବେ, ସାବିତ୍ରୀ ସେଦିନ ରାତିରେ କ'ଣ ଗୋଟାଏ ଜୁଆଚୋର କରିବାକୁ ଯାଇଥିଲା ? ସିଏ ଯେ ସତ୍ୟଶର ଅଶେଷ ମଙ୍ଗଳାକାଂକ୍ଷିଣୀ ଏବଂ ସତ୍ୟଶକୁ ଯେ ପ୍ରାଣାଧିକ ଭଲ ପାଏ, ବେହାଗାର ସେଥିରେ କୌଣସି ସନ୍ଦେହ ନ ଥିଲା । ତେବେ କାହିଁକି ଯେ ସେ ଯେଉଁ ଦୋଷ କରି ନାହିଁ ତାକୁ ସ୍ୱୀକାର କରି ଏବଂ ଯେଉଁ ପାପ କୌଣସି ଦିନ କରି ନ ଥିଲା ତାର ବୋଝ ସ୍ୱହସ୍ତରେ ନିଜ ମୁଣ୍ଡ ଉପରକୁ ନେଇ ତାର ପ୍ରଭୁଙ୍କୁ ଏତେ ବ୍ୟଥା ଦେଇଗଲା, ଏକଥା ନିରନ୍ତର ଚିନ୍ତା କରି ସୁଦ୍ଧା ସେ ମୀମାଂସା କରିପାରେନା । ସାବିତ୍ରୀ ଉପରେ ବେହାଗାର ଅସୀମ ଭକ୍ତି ଥିଲା । ସେ ତାକୁ ମା କହେ ଏବଂ ଶାପ-ଭ୍ରଷ୍ଟା ଦେବୀ ବୋଲି ମନେକରେ । ତେଣୁ ନିଜ ବୁଦ୍ଧିରେ କୂଳକିନାରା ନ ପାଇ ଏହା କହି ମନକୁ ପ୍ରବୋଧ ଦିଏ ଯେ ଶେଷରେ କିଛି ନା କିଛି ଭଲ ହେବ ।

ଏଇମିତି ଏମାନଙ୍କ ନିର୍ଜନବାସର ଦିନଗୁଡ଼ାକ କଟୁଥିଲା । ବୋଧହୁଏ ଆଉ କିଛି ଦିନ କଟିଥାଆନ୍ତା; କିନ୍ତୁ ହଠାତ୍ ଦିନେ ବାଧା ପଡ଼ିଗଲା ।

ଯାହାକୁ କୁହାଯାଏ କାଳ ବୈଶାଖୀ, ସେଦିନ ସନ୍ଧ୍ୟାଟା ଥିଲା ଠିକ୍ ସେଇଆ । ଦିନତମାମ ଯଦିଓ କିଛି ଦୁର୍ଯୋଗ ନ ଥିଲା, କିନ୍ତୁ ଅପରାହ୍ଣକୁ କୋଡ଼ିଏ ମିନିଟ ଭିତରେ ଆକାଶରେ ପ୍ରବଳ ଝଡ଼ ଦେଖାଦେଲା । କ୍ଷଣକ ଭିତରେ ସତ୍ୟଶ ଘୋଡ଼ାଟାପୁ ଶବ୍ଦ ଶୁଣି ଚକିତ ହୋଇ ମୁହଁକୁ ଉଠେଇ ଦେଖିଲା, ଗୋଟାଏ ଭଲ ଘୋଡ଼ା ପିଠି ଉପରେ ସାଜସଜ୍ଜା ନେଇ ଝଡ଼ ଭିତରେ ଉନ୍ମତ୍ତ ଭାବରେ ଛୁଟି ଚାଲିଯାଉଚି । ସତ୍ୟଶ ଡାକି କହିଲା—ବେହାରା, ଇଏ କାହାର ଘୋଡ଼ା ଛୁଟିଚାଲିଚି କହିପାରିବୁ ?

ବେହାରା ଘର ଭିତରେ ଲଣ୍ଠନ ପୋଛୁ ପୋଛୁ କହିଲା—କୌଣସି ବାବୁଙ୍କର ହୋଇଥିବ ।

ସତ୍ୟଶ ପ୍ରଶ୍ନ କଲା—ଇଆଡ଼େ ବାବୁ ଫାବୁ କିଏ ଅଛି କରେ ?

ବେହାରା କହିଲା—ଇଆଡ଼େ ନ ଥିଲେ ଦେଓଘରଆଡ଼ୁ କୌଣସି ବାବୁଭାୟାର ଗାଡ଼ି ନିକଟ କମ୍ପା ତପୋବନ ଦେଖିବାକୁ ଆସିଥିବେ । ସେହିପରି କାହାର ହେବ । ଝଡ଼ ଭୟରେ ଛୁଟିଚାଲିଚି ଯେ ।

'ତାହାହେଲେ ତ ଭାରି ମୁସ୍କିଲ' କହି ସନ୍ତୋଷ ପୁଣି ଆରାମ ଚଉକିଟା ଉପରେ ଆରାମ କରି ଶୋଇପଡ଼ିଲା । କିନ୍ତୁ ଏ କଥାଟାକୁ ସେ ମନରୁ ଏଡ଼େଇ ପାରିଲା ନାହିଁ । ତାର ମନେ ହେଲା, ଯିଏ ହୁଅନ୍ତୁ, ସାଙ୍ଗରେ ସ୍ତ୍ରୀ-ଲୋକ ଥିଲେ ବିପଦ ତ କମ୍ ନୁହେଁ । ତା ଛଡ଼ା ସନ୍ଧ୍ୟା ହୋଇଆସିଲାଣି, ସମ୍ଭବତଃ ବର୍ଷା ବି ହେବ । ସନ୍ତୋଷ ସ୍ଥିରହୋଇ ରହିପାରିଲାନି । ଘର କୋଣରୁ ବାଡ଼ିଟାକୁ ଟାଣିଆଣି ବାହାରିପଡ଼ିଲା । ରାସ୍ତାକୁ ଆସି ଦେଖିଲା, ଝଡ଼ରେ ବାଲିଗୁଡ଼ାକ ଉଡ଼ିଆସି ଦେହରେ ଛୁଞ୍ଚି ଭଳି ଫୋଡ଼ି ହୋଇ-ଯାଉଚି । ବାଟ ଗୋଟାକଯାକ ଧୂଳି ଝଡ଼ରେ ଅନ୍ଧକାର ଦେଖାଯାଉଚି । ହଠାତ୍ ସେଇ ଅନ୍ଧକାର ଭିତରୁ ଝଡ଼ ମଧ୍ୟରୁ ଗୋଟାଏ ହୋ ହୋ ଚିତ୍କାର ଭାସିଆସିଲା । ହୋଲି ସମୟରେ ଛୁଟିଯାଇ ହିନ୍ଦୁସ୍ଥାନୀ ଦରୱାନମାନେ ଯେଉଁଭଳି ରାସ୍ତାରେ ଚିତ୍କାର କରି ଯାଆନ୍ତି, ଏଇ ଚିତ୍କାର ଠିକ୍ ସେଇଭଳି । ଘଟଣା କ'ଣ ଜାଣିବାଲାଗି ସନ୍ତୋଷ ସେଇ ଧୂଳି ଭିତରେ କିଛି ବାଟ ଆଗକୁ ଯିବା ପରେ ଦେଖିଲା, ବାଟ ଉପରେ ଗୋଟାଏ ଟମ୍‌ଟମ୍ ଏବଂ ସେଇଟାକୁ ଘେରି ଆଠ ନଅ ଜଣ ଆନନ୍ଦଧ୍ୱନିରେ ମସ୍ତ । କାହାର ମୁଣ୍ଡରେ ଟୋପି, କାହାର ମୁଣ୍ଡରେ ପଗଡ଼ି—ସମସ୍ତଙ୍କର ହିନ୍ଦୁସ୍ଥାନୀ ପୋଷାକ ।

ଏ ଆନନ୍ଦ କାହିଁକି ଜାଣିବା ଉଦ୍ଦେଶ୍ୟରେ ସନ୍ତୋଷ ଆଉ କିଛି ବାଟ ଆଗେଇଯିବାରେ ଦେଖିବାକୁ ପାଇଲା, ଟମଟମର ଗୋଟାଏ ହ୍ୟାଣ୍ଡେଲ୍ ଧରି ଗୋଟିଏ ସ୍ତ୍ରୀଲୋକ ମୁଣ୍ଡକୁ ଗୁଞ୍ଜିଦେଇ ଜଡ଼ସଡ଼ ଅବ-ଅବସ୍ଥାରେ ବସିରହିଛି ଏବଂ ତାକୁ ଉଦ୍ଦେଶ୍ୟ କରି ଲୋକଗୁଡ଼ାକ ଯେଉଁ ଭାଷା ପ୍ରୟୋଗ କରୁଛନ୍ତି, ତାହା ହିନ୍ଦୁସ୍ଥାନୀ ଜିହ୍ୱା ଛଡ଼ା ଉଚ୍ଚାରଣ କରି-ପାରିବା ଭଳି ଏଡ଼େ ବଡ଼ ଜିଭ ଅନ୍ୟ କୌଣସି ଜାତିର ହେବନି । ସନ୍ତୋଷର ପ୍ରଥମେ ମନେହେଲା, ଏମାନେ ଏଇଆଡ଼େ କୁଆଡ଼େ ଏଇ ସ୍ତ୍ରୀ-ଲୋକଟିକୁ ଧରିଆଣି ଆମୋଦ କରିବାକୁ ଆସିଥିଲେ—ଏବେ ଘୋଡ଼ା ଚାଲିଯିବାରୁ ବର୍ତ୍ତମାନ ଇଏ ଏକପ୍ରକାରର ଆମୋଦ ଚାଲିଚି । ସେ ଭାବିଲା, ଫେରିଯିବା ଭଲ; କିନ୍ତୁ କାହିଁକି କେଜାଣି ସେ ତାର କୌତୂହଳକୁ ଦମନ କରିପାରିଲା ନାହିଁ । ଠିକ୍ ଏତିକିବେଳେ ତାର ସବିସ୍ମୟ ଦୃଷ୍ଟି ପଡ଼ିଲା ଝିଅଟିର ପୋଷାକ ଉପରେ । ସଂଧ୍ୟା ଓ ଧୂଳି ଝଡ଼ର ଅନ୍ଧାର ମଧ୍ୟରେ ବି ସେ ଠଉରେଇ ପାରିଲା, ଝିଅଟି ଯେମିତି ପୋଷାକ ପିନ୍ଧିଚି, ସେଥିରୁ ମନେ ହେଉଚି ସେ ନିଶ୍ଚୟ କୌଣସି ବଙ୍ଗାଳୀ ଘର ଝିଅ । ପାଦରେ ଯୋତା—

କିନ୍ତୁ ଏ ଜୋଡ଼ା ଲକ୍ଷ୍ନୀ ମଡ଼େଲ ନୁହେଁ—ଇଂରେଜ ମହିଳାମାନଙ୍କ ପିନ୍ଧା ଯୋଡ଼ା ।

ହଠାତ୍ ଉଚ୍ଚ କଣ୍ଠରେ ଝିଅଟି ଡାକି ଉଠିଲା—କିଏ ଅଛ, ମତେ ରକ୍ଷା କର ।

"ରକ୍ଷା କର ?"—ମୁହୂର୍ତ୍ତକ ଭିତରେ ସତୀଶର ବୈରାଗ୍ୟନିଶା କୁଆଡ଼େ ଛୁଟିଗଲା ।

କାମିନୀ-କାଞ୍ଚନ ଯେ ଏକାନ୍ତ ହେୟ, ଏ କଥା କୁଆଡ଼େ ଭୁଲିଗଲା ସେ । ବାଘ ଭଳି ଲମ୍ଫ ଦେଇ ସେ ଏକାବେଳକେ ଝିଅଟି ପାଖରେ ଆସି ଠିଆହେଲା । ପଚାରିଲା—କ'ଣ ହୋଇଚି ?

ଝିଅଟି ଏତେବେଳ ଯାଏଁ ଏକାକୀ ବହୁ ନିର୍ଯ୍ୟାତନା ସହ୍ୟ କରିଥିଲା—ଏଥର ମୁହଁକୁ ଲୁଚେଇ କାନ୍ଦିବାକୁ ଆରମ୍ଭ କଲା ।

ସତୀଶ ବ୍ୟଗ୍ରହୋଇ ପ୍ରଶ୍ନ କଲା—ଘଟଣା କ'ଣ ?

—ଏମାନେ ମତେ ବଡ଼ ଅପମାନିତ କରିଛନ୍ତି ।

—ଅପମାନିତ କରିଛନ୍ତି ! ଏମାନେ କିଏ ?

—ଜାଣେନା ।

—ଜାଣିନା ? ତାହା ହେଲେ ତୁମେ କିଏ ? କୁଆଡ଼ୁ ଏଠିକି ଆସିଲ ? ତୁମ ସାଙ୍ଗ ଲୋକେ କାହାନ୍ତି ? ଏ ଗାଡ଼ି କାହାର ?

ଝିଅଟି ଆଖି ପୋଛି ରୁଦ୍ଧ କଣ୍ଠରେ କହିଲା—ଆମ ସଇସ ଘୋଡ଼ା ପଛେ ପଛେ ଗୋଡ଼େଇଚି । ଆଉ କେହି ନାହାନ୍ତି, ମୁଁ ଏକାକିନୀ । ମୁଁ ନିକୁଞ୍ଜ ଦେଖିବାକୁ ଆସିଥିଲି, ସେଇଠୁ ଏମାନେ ମତେ ଗୋଡ଼େଇ ଗୋଡ଼େଇ ଆସୁଚନ୍ତି ।

ସତୀଶ କ୍ରୁଦ୍ଧକଣ୍ଠରେ କହିଲା—ବେଶ୍ କରିଛନ୍ତି । ଆପଣ କ'ଣ ମେମସାହେବାଣୀ ଯେ ଟମଟମରେ ଏକାକୀ ଏତେଦୂର ଚାଲିଆସିଲେ ! ଆପଣ କ'ଣ ଇଂରେଜ ମହିଳା ଯେ ଏକାକୀ ଯେଉଁଠାକୁ ଇଚ୍ଛା ଗଲେ କୌଣସି ଭୟ ନାହିଁ ! ଆମର ଦେଶୀ ଲୋକେ ଅସହାୟା ଦେଶୀ ଝିଅଙ୍କୁ ପାଇଲେ ଏଇମିତି ଅପମାନିତ କରିଥାଆନ୍ତି । ଏହାହିଁ ଏ ଦେଶର ନିୟମ, ଏକଥା କ'ଣ ଆପଣଙ୍କ ବାପ ମାଆ ଜାଣନ୍ତିନି ? ଏହା କହି ହିନ୍ଦୁସ୍ତାନୀମାନଙ୍କ ମଧ୍ୟରେ ଯେଉଁ ଲୋକଟି ଟିକଏ ଆଗୁଆ, ତା ପ୍ରତି ଅଗ୍ନିଦୃଷ୍ଟି ନିକ୍ଷେପ କରି କହିଲା—ତୁମ୍ ଲୋଗ୍ ଖାଡ଼ା କାହେ ହାୟ ?

ସେ କହିଲା—ତାମାସ୍ତ ଖୁସି !

ତାର ଆଖିକୁ ଚାହିଁଲେ ମନେ ହେଉଥିଲା, ହୁଏତ ସେ ଭାଙ୍ଗ ନଚେତ୍ ଗଞ୍ଜା ନଚେତ ଦୁଇଟିଯାକ ଜିନିଷ ପାନ କରିଛି ।

ସନ୍ତୋଷ ହାତ ଉଠେଇ ସିଧାସଳଖ ରାସ୍ତା ଦେଖେଇଦେଇ ସଂକ୍ଷେପରେ କହିଲା—ଯାଅ କହୁଚି । ତାର ଉତ୍ତରରେ ଲୋକଟା ମୁହଁକୁ ବକ୍ରକରି କହିଲା—ଆରେ ଯା । ପ୍ରତ୍ୟୁତ୍ତରରେ ସନ୍ତୋଷ ତା ଗାଲରେ ଏମିତି ଗୋଟାଏ ଶକ୍ତ ଚାପୁଡ଼ା ବସେଇଲା ଯେ ଲୋକଟା ଆଉ କ'ଣ କହିବାକୁ ଯାଉଥିଲା, ସମ୍ପୂର୍ଣ୍ଣ କରିବାକୁ ଫୁରୁସତ୍ ପାଇଲା ନାହିଁ । ଅଜ୍ଞାନ ଅବସ୍ଥାରେ ତଳେ ଜୋରରେ ପଡ଼ିଗଲା । ସଙ୍ଗେ ସଙ୍ଗେ ଆଉ ଗୋଟାଏ ଲୋକ ଉପରେ ସନ୍ତୋଷର ଲାଠି ପ୍ରହାର । ସେ ମଧ୍ୟ ମୁହଁକୁ ଗୁଞ୍ଜି ଝୋଲାମାରି ବସିପଡ଼ିଲା । ସନ୍ତୋଷ ସମସ୍ତଙ୍କୁ କହିଲା—ହେଲା ତ, ଏଥର ଯାଅ । ସମସ୍ତେ କୁଆଡ଼େ ଗୁଟିପିଟି ହୋଇ ଚାଲିଗଲେ ।

ସନ୍ତୋଷ ଝିଅଟିକୁ ଲକ୍ଷ୍ୟକରି କହିଲା—ଏଥର ଉଠ ।

ଝିଅଟି ନୀରବରେ ଉଠି ଠିଆହେଲା । ସନ୍ତୋଷ କହିଲା—ବର୍ଷା ଆସିଲାଣି ଯେ, ଆସ ମୋ ସାଙ୍ଗରେ ।

ଝିଅଟି ଭୟତ୍ରସ୍ତ ହୋଇ କହିଲା—ମୁଁ କ'ଣ ଟାଉନ ପର୍ଯ୍ୟନ୍ତ ଚାଲି ଚାଲି ଯାଇପାରିବ ?

ସନ୍ତୋଷ କହିଲା—ଟାଉନକୁ ନୁହେଁ, ମୋ ବସାକୁ—ଏଇ ବଗିଚା ଭିତରେ । ବର୍ଷା ଆସୁଚି, ଠିଆ ହୋଇ ରହିଲେ ଚଳିବନି । ଯିବାକୁ ଇଚ୍ଛା ନ ଥିଲେ ଏଇଠି ଠିଆ ହୁଅ; କିନ୍ତୁ ମୁଁ ଚାଲିଲି ।

ଝିଅଟି କହିଲା—ଚାଲନ୍ତୁ । ଆପଣଙ୍କ ସହିତ ତ ଯିବି, ସେଥିରେ ଭାବିବାର କ'ଣ ଅଛି ?

ଟୋପା ଟୋପା ବର୍ଷା ପଡ଼ିବା ଆରମ୍ଭ ହୋଇ ଯାଇଥାଏ । ଦୁଇଜଣଯାକ ନୀରବରେ ବଗିଚାଗେଟ୍ ଆଗରେ ଆସି ପହଞ୍ଚିଲେ । ସନ୍ତୋଷ ପଚାରିଲା—ଆମ ବସାରେ କିନ୍ତୁ କେହି ମାଇପି ଲୋକ ନାହାନ୍ତି, ମୁଁ ଏକା ରହେ ।

ତାହାହେଲେ ଆପଣଙ୍କ ରନ୍ଧାବଢ଼ା, ଘରକରଣା କରେ କିଏ ? ନିଜେ ?

—ନା, ଘରକର ଅଛି; କିନ୍ତୁ ସେମାନେ ବି ସ୍ତ୍ରୀଲୋକ ନୁହନ୍ତି ।

—ନ ଥିଲେ ନାହିଁ; କିନ୍ତୁ ଆପଣ ଠିଆହୋଇ ରହିଲେ କାହିଁକି ? ଚାଲନ୍ତୁ, ଯାଉ ଯାଉ କହିଲେ ହେବନି ?

ସନ୍ତୋଷ କୁଣ୍ଠିତ ହୋଇ କହିଲା—ସେଇଥିପାଇଁ କହୁଚି, ଆମର ଏଠି ସ୍ତ୍ରୀଲୋକ ନାହାନ୍ତି । ଏ ଘରେ ଭିତରକୁ ଯିବା ପୂର୍ବରୁ ଆପଣଙ୍କୁ ଜଣେଇଦେବା ଉଚିତ ।

ଝିଅଟି କହିଲା—ଯଦି ଉଚିତ, ତେବେ ସେଇଠି ଜଣେଇଲ ନାହିଁ କାହିଁକି ? ମୁଁ କିନ୍ତୁ ଆଉ ଠିଆହୋଇ ପାରିବିନି । ମୋ ଦେହ ହାତ କମ୍ପୁଚି, ତା ଛଡ଼ା ଭୀଷଣ ଶୋଷ ହେଲାଣି ।

'ଆସନ୍ତୁ, ଆସନ୍ତୁ' କହି ସନ୍ତୋଷ ସେ ଅନ୍ଧାରୁଆ ବଗିଚା ଭିତରେ ବାଟ ଦେଖେଇ ଦେଖେଇ ଅଗ୍ରସର ହେଲା । ଏଇସବୁ ଖରାପ ଘଟଣା ପରେ ଝିଅଟି ଯେ କିଭଳି ଅବସନ୍ନ ହୋଇପଡ଼ିଚି, ତାହା ଅନୁଭବ କରି ସନ୍ତୋଷ ଲଜ୍ଜାବୋଧ କଲା । ଟିକିଏ ପରେ ସେ ଧୀରେ ଧୀରେ କହିଲା—ଆପଣଙ୍କ କଣ୍ଠ କେଉଁଠି କେବେ ଶୁଣିଲା ଭଳି ମନେହେଉଚି । ଝିଅଟି ତାର କୌଣସି ଜବାବ ଦେଲାନି; କିନ୍ତୁ ବୁଝିପାରିଲା । ସନ୍ତୋଷ ଅନ୍ଧାରରେ ତାର ମୁହଁ ଦେଖିପାରିନି । ବାରଣ୍ଡା ଉପରକୁ ଉଠିବା ମାତ୍ରେ ସନ୍ତୋଷର ସେଇ ଭଙ୍ଗା ଆରାମ ଚେୟାରଟା ଉପରେ ବସି ଝିଅଟି କହିଲା—ସାଙ୍ଗରେ ଚାକର ଅଛି ତ ? ଏତିକି କହି ସଙ୍ଗେ ସଙ୍ଗେ ପାଟି କରି ଡାକିଲା—ବେହେରା, ମୋ ପାଇଁ ଗ୍ଲାସେ ପାଣି ଆଣ ତ ?

ବେହେରା ସେପଟ ଘରେ ଥିଲା । ଡାକ ଶୁଣି ପାଣି ଆଣି ପହଞ୍ଚିଲା । ବାରଣ୍ଡାରେ ମିଞ୍ଜି ମିଞ୍ଜି ହୋଇ ଲ୍ୟାମ୍ପଟା ଜଳୁଥିଲା । ସେଇ କ୍ଷୀଣ ଆଲୁଅ ଭିତରେ ସେ ଝିଅଟିକୁ ଚିହ୍ନି ପାରି କହିଲା—ଦିଦି, ଆପଣ ?

'ସେ ବହୁତ କଥା' କହି ବେହେରା ହାତରୁ ପାଣି ଗ୍ଲାସଟା ଟାଣିନେଇ ପିଇସାରି କହିଲା—ଦାଦାଙ୍କୁ ଖବର ଦେବାକୁ ହେବ ବେହେରା ! ଆଚ୍ଛା ବେହେରା, ଠିକଣା ଦେଲେ ଏତେ ରାତିରେ ତୁ ଘରଟା ଖୋଜି ବାହାର କରିପାରିବୁ ?

ବେହେରା ମୁଣ୍ଡ ହଲାଇ କହିଲା—ନା ଦିଦି, ମୁଁ ସହରର ବାଟ-ଘାଟ କିଛି ଜାଣେନା । ତା ଛଡ଼ା ବୁଢ଼ା ମଣିଷ, ଏଇ ବର୍ଷା ଝଡ଼ରେ ବାଟ ଚାଲିପାରିବିନି ।

—ତାହାହେଲେ କ'ଣ ହେବ ବେହାଣ୍ଣ ! ଘୋଡ଼ାଟା ଯଦି ଯାଇ ଘର ଆଗରେ ହାଜର ହୋଇଥିବ । ଦାଦା ଇଆଡ଼ୁ ସିଆଡ଼ୁ ନାନା କଥା ଭାବି ବ୍ୟସ୍ତ ହୋଇପଡ଼ିବେଣି । କୌଣସିମତେ ତାଙ୍କୁ ଜଣେଇଦେବାକୁ ହେବ ଯେ କୌଣସି ଭୟ ନାହିଁ, ମୁଁ ନିରାପଦରେ ଅଛି । ବେହାଣ୍ଣ ଭାବି ଚିନ୍ତି କହିଲି—ଆମ ପୂଜାରୀ ଏ ଦେଶର ଲୋକ; ବାଟଘାଟ ସବୁ ଜାଣେ । ଜ୍ୟୋତିଷବାବୁଙ୍କ ବସାର ଠିକଣା ଦେଲେ ସେ ନିଶ୍ଚୟ ଯାଇପାରିବ । ତାକୁ ଯାଇ ଡାକିଆଣେ । ଏହା କହି ସେ ଦେବୀଘରର ଆଡ଼କୁ ଗଲା ।

ସନ୍ତୋଷ ଚିହ୍ନି ପାରିଲା ଝିଅଟି କିଏ । କହିଲା—ଦାଦାଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଦିଅ ।

ଝିଅଟି କହିଲା—ହଁ, ଲେଖିବାକୁ ପଡ଼ିବ ତ ।

ସନ୍ତୋଷ କହିଲା—ଏ କଥା ଲେଖିଦେବ, ଭଉଣୀକୁ ମେମସାହେବ କରି ଗଢ଼ିବାର ପରିଣାମ ଆଜି କ'ଣ ହୋଇଥିଲା । ସାହେବ ଭାଇ ଶୁଣିଲେ ହୁଏ ତ ଭାରି ଖୁସି ହେବେ ।

ଠୋକର ପାଇ ସରୋଜନୀ ଟିକିଏ ରାଗିଉଠିଲା । ତାର ଆକାର, ଆଚରଣ ବୈଦେଶ୍ୟ ବିଡ଼ମ୍ବନାରେ ଅତି ଖରାପ ହୋଇପଡ଼ିଥିଲା ସତ, ସେଥିଲାଗି ସେ କମ୍ ଅନୁଶୋଚନା କରିନି; କିନ୍ତୁ ତା ବୋଲି ଅନ୍ୟ ଜଣେ ତାକୁ ବାରମ୍ବାର ମେମସାହେବ ସହିତ ତୁଳନା କରି କହିବା ତା ପକ୍ଷରେ ସହ୍ୟ ହୁଏନା । ସେ ତିକ୍ତ ସ୍ୱରରେ କହିଲା—ଆପଣ ନିଜେ ଦାଦାଙ୍କ ପାଖକୁ ଲେଖିଦିଅନ୍ତୁ—ତାଙ୍କ ଭଉଣୀଙ୍କୁ ଆଜି କିଭଳି ଭାବରେ ଆପଣ ରକ୍ଷା କଲେ ।

ତାର ବିରକ୍ତିର କାରଣ ସନ୍ତୋଷ ବୁଝିପାରିଲା । ତଥାପି ସେ କହିଲା—ହଁ, ସେ କଥା ବି ଲେଖିଦେବା ଉଚିତ । ତେବେ ଯଦି ଆପଣଙ୍କ ସମାଜର ଟିକିଏ ହେଲେ ଚେତନା ହୁଏ···।

ସରୋଜନୀ କହିଲା—ଆମ ସମାଜ ପ୍ରତି ଆପଣଙ୍କର ଭାରି ଘୃଣା, ନା ? ଆପଣଙ୍କ ଧାରଣା, ଆମେସବୁ ମଣିଷ ନୋହୁଁ ।

ସନ୍ତୋଷ କହିଲା—ଆମ ଧାରଣା ଯାହାହେଉ, ଆପଣମାନଙ୍କ ଧାରଣା ଆପଣମାନଙ୍କ ଛଡ଼ା ବଙ୍ଗଳା ଦେଶରେ ଆଉ କେହି ମଣିଷ ନାହାନ୍ତି ! ମୁଁ ଯାହା କହୁଛି କ'ଣ ଠିକ୍ ନୁହେଁ ?

ସଙ୍ଗୋଜମୀ କହିଲା—ଅନ୍ତତଃ ଆମମାନଙ୍କ ଭିତରେ ଯେଉଁମାନଙ୍କର ଏ ଧାରଣା ରହିଛି, ମୁଁ ତାଙ୍କୁ ଦୋଷ ଦେଉନି ।

ସନ୍ତୋଷ କହିଲା—ମୁଁ ତାହା ଜାଣେ । ସେଇଥିଲାଗି ଆପଣଙ୍କୁ ଦଣ୍ଡ ଏହାଠୁ ବେଶୀ ହେବା ଉଚିତ ଥିଲା । ସେଇଠି ଆପଣଙ୍କୁ ଶକ୍ତି ପାଉଥିଲେ ମୁଁ ଚୁପ୍‌ଚାପ୍ ଚାଲି ଆସିଥାଆନ୍ତି । କଥା ବି କହି ନ ଥାଆନ୍ତି ।

ସଙ୍ଗୋଜମୀ କହିଲା—ଦଣ୍ଡ କ'ଣ ଶୁଣେ ? ଅପମାନ, ଆଉ ଅତ୍ୟାଚାର—ଏଇ ତ ।

ସନ୍ତୋଷ କହିଲା—ହଁ, ସେଯା ।

ସଙ୍ଗୋଜମୀ କହିଲା—ତାହାହେଲେ ଏବେ ବୁଝୁଛି, ଅସହାୟା ସ୍ତ୍ରୀଲୋକଙ୍କୁ ଅପମାନିତ କରିବାଟା ଆପଣମାନଙ୍କ ଦେଶୀ ଲୋକଙ୍କ ଚଳନ । ଆପଣଙ୍କ ଉଚିତ ଥିଲା, ମୋ ପ୍ରତି ବାକୀ ଅପମାନଟା ଘରକୁ ଆଣିବା ପରେ କରିବା । ଏବେ ଚହଳା ଲୋକ ବୋଲି ବାଧୁଛି; ତେଣୁ ଏ ରାଗ ।

ସଙ୍ଗୋଜମୀର କଥାର ଭଙ୍ଗୀରେ ସନ୍ତୋଷର ରାଗ ଆସୁଥିଲେ ମଧ୍ୟ ହସିହସି କହିଲା—ହଁ, ଠିକ୍ ସେଯା । ଆପଣଙ୍କୁ ଅପମାନିତ ନ କରିବାରେ ଯେତେ ରାଗ । ଆମ ବଙ୍ଗଳା ଭାଷାରେ କୃତଜ୍ଞତା ବୋଲି ଗୋଟାଏ କଥା ଅଛି । ଆପଣମାନଙ୍କ ସାହେବ ଅଭିଧାନରେ ହୁଏ ତ ସେ କଥା ଲେଖା ନାହିଁ ।

ସଙ୍ଗୋଜମୀର ଓଷ୍ଠାଧରରେ କୃପା ହସର ଛଟା ମେଘାବୃତ୍ତ ବିଦ୍ୟୁତ୍ ଭଳି ଖେଳିଗଲା । ତଥାପି ସେ ରାଗ ରାଗ ସ୍ୱରରେ ଜବାବ ଦେଲା; କିନ୍ତୁ ତାର କଣ୍ଠସ୍ୱର ଏତେ କୃତ୍ରିମ ଯେ ତାହା ଅତି ବଡ଼ ଅମନଯୋଗୀ ଶ୍ରୋତା କାନରେ ବି ଧକ୍କା ଦିଏ ।

ସଙ୍ଗୋଜମୀ କହିଲା—ନା, ନାଇଁ । ଏଇ ସାହେବ ଓ ମେମଗୁଡ଼ାକ ଯେପରି ଅକୃତଜ୍ଞ, ସେଇଭଳି ପାଷାଣ୍ଡ । ଆପଣ ସେ ଦଳକୁ ନ ଆସିଲେ ରକ୍ଷା ନାହିଁ । ଆସିବେ ସେ ଦଳକୁ ?

ପ୍ରତ୍ୟୁତ୍ତରରେ ସନ୍ତୋଷ ମଧ୍ୟ ହସକୁ ଚାପି କ'ଣ କିଛି କହିବାକୁ ଯାଉଥିଲା, ଠିକ୍ ସେଇ ସମୟରେ ବେହାରା ହନୁମାନ୍ ପଣ୍ଡାଙ୍କୁ ଆଣି ହାଜର କଲା । ସଙ୍ଗୋଜମୀ ହାତ ବ୍ୟାଗଟା ଖୋଲି ପାଞ୍ଚଟା ଟଙ୍କା ବାହାର କରି ଚେଆର ହାତ ଉପରେ ରଖିଦେଇ କହିଲା—ଏଇ ତୁମର ବକ୍‌ସିସ ପଣ୍ଡାଜୀ !

ଯଦି ସହରକୁ ଯାଇ ଗୋଟାଏ ଚିଠି ଦେଇ ଆସିପାର···ଏହା କହି ନାମ ଧାମ ସବୁ ବତେଇଦେଲା ।

ପଣ୍ଡା ଜୀ ତାର ଏକ ମାସର ରୋଜଗାର ପ୍ରତି ଲୋଲୁପ ଦୃଷ୍ଟି ପାତ କରି ମୁହୂର୍ତ୍ତକରେ ରାଜି ହୋଇ ଚିଠିଟି ଲାଗି ହାତ ବଢ଼େଇଲା । ତାର ପ୍ରସାରିତ କରକମଳରେ ସରୋଜନୀ ଟଙ୍କା କେତୋଟି ଅର୍ପଣକରି ଚିଠି ଲେଖିବା ଲାଗି ଘର ଭିତରକୁ ଚାଲିଗଲା । ଟେବୁଲଟା ଆଗରେ ଥିଲା । ଟିକକ ପରେ ଚିଠି ଖଣ୍ଡିକ ଧରି ଆସି ପଣ୍ଡା ହାତରେ ଦେଲା । ପଣ୍ଡା ସାବଧାନତା ସହକାରେ ଚିଠିଟି ପକେଟ ଭିତରେ ରଖି ବାଁ ହାତରେ ଲଣ୍ଠନ ଏବଂ ଡାହାଣ ହାତରେ ଲମ୍ବା ବାଉଁଶ ବାଡ଼ିଟି ଧରି ବାହାରେ ମୂଷଳଧାର ବୃଷ୍ଟି ଭିତରେ ଆଖି ପଲକରେ କୁଆଡ଼େ ଅନ୍ତର୍ହିତ ହୋଇଗଲା ।

ବେହାରୀ କୁଣ୍ଠିତ ଭାବରେ କହିଲା—ବାବୁ, ହନୁମାନ ପୂଜାରୀ କେତେବେଳେ ଯେ ଫେରିବ, ତାର ଠିକଣା ନାହିଁ । ରନ୍ଧାରନ୍ଧି କିମିତି ହେବ ?

ସଞ୍ଜୀବ ସରୋଜନୀ ମୁହଁ ଆଡ଼କୁ ଥରେ ଚାହିଁ କଥାଟାକୁ ଚାପିଦେବା ଲାଗି ତାଚ୍ଛଲ୍ୟ ସ୍ୱରରେ କହିଲା—ଓଃ, ସେ ଯେମିତି ହେଲେ ହେବ ।

ବେହାରୀର ଉଦ୍‌ବେଗ ସେଥିରେ କିଛିହେଲେ କମିଲାନି । କହିଲା—କମିତି ଯେ ହେବ ମୁଁ ତ ଠଉରେଇ ପାରୁନି ବାବୁ !

ସଞ୍ଜୀବ ବିବ୍ରତ ହୋଇ କହିଲା—ତତେ ଭାବିବାକୁ ପଡ଼ିବନି ବେହାରୀ ! ତୁ ଯା । ସେସବୁ ମୁଁ ଠିକ କରିଦେବି ଯେ । ତା ଛଡ଼ା ମତେ ଆଜି ଭୋକ ହେଉନି ।

ବେହାରୀର ପାଦେ ବି ଏଣିକି ସେଣିକି ଗଲାନି । ବାବୁଙ୍କ କଥାରେ ତାର ଆଦୌ ବିଶ୍ୱାସ ହେଲାନି । ପ୍ରଥମତଃ ସାଧାରଣ ପାଞ୍ଚ ଜଣ ଅପେକ୍ଷା ମୁନିବଙ୍କ କ୍ଷୁଧାର ପରିମାଣ ବେଶି । ତା ଛଡ଼ା ଏତେଦିନ ଚାକିରୀ ମଧ୍ୟରେ ସେ ତାର ଏଇ ବସ୍ତୁଟାର ଅଭାବ କେବେ ଦେଖି ନାହିଁ । ସଂକ୍ଷେପରେ କହିଲା—ସେ କଥା ହେବନି ବାବୁ !

ସଞ୍ଜୀବ ତିରସ୍କାର କରି କହିଲା—ଏଇଟା ତୋର ଗୋଟାଏ ବଡ଼ ଆତ୍ମଦୋଷ ବେହାରୀ ! ସବୁ କଥାରେ ତର୍କ । କହିଲି, ସେସବୁ ଠିକ ହୋଇଯିବ; ତଥାପି ଶୁଣୁନୁ, ମୁହଁ ଉପରେ ଜବାବ ଦେଉଚୁ ।

ବେହାରା ଷ୍ଟୁଡ଼ିଓ ଭିତରେ ଚାଲି ଯାଉଥିଲା, ସରୋଜିନୀ ତାକୁ ଡାକି ଫେରାଇ କହିଲା—ଆଜି ମୋର ଲାଗି ତୋର ଯେତେ ବିପଦ ବେହାରା, ଉତ୍ତରଣର ଯୋଗାଡ଼ କ'ଣ କିଛି ହେଉନି ?

ବେହାରା କହିଲା—ହେବନି କାହିଁକି ଦିଦି ! କିନ୍ତୁ ରାନ୍ଧିବ କିଏ ? ପଣ୍ଡା ଗୋସେଇଁଙ୍କ ଫେରି ଆସିବାକୁ ଯେ କେତେ ଡେରି ହେବ, ତାର ଠିକଣା ନାହିଁ । ଏହା କହି ସେ ଚାଲିଗଲା ।

ସରୋଜିନୀ କହିଲା—ମୁଁ ମେମସାହେବ ବା ଯାହା ହୁଏ ପଛକେ, ତେବେ ଆପଣଙ୍କ ଜାତିର ତ ! ତା ହାତରୁ ଖାଇଲେ କି କାହାର ଜାତି ଯିବ ?

ଏ ପ୍ରଶ୍ନ ଶୁଣି ସଞ୍ଜୀବ ହସିଲା । କହିଲା—ଜାତି ଯିବ କି ନା କହି ପାରିବନି । କିନ୍ତୁ ମେମସାହେବଙ୍କ ହାତର ରନ୍ଧା ଗଳା ଭିତରେ ଯାଇ-ପାରିବ କି ନା, ସେଇଟା ବଡ଼ କଥା ।

—ଇସ୍, ସତେ ? ମେମସାହେବଙ୍କ ହାତର ରନ୍ଧା ଖାଇଲେ ଯେ ଭୁଲି ପାରିବେନି । ଏହା କହି ସରୋଜିନୀ ହସ ଓ ଏସେନ୍‌ସ ଗନ୍ଧରେ ସ୍ଥାନ ଗୋଟାକ-ଯାକକୁ ତ ରଙ୍ଗିତ କରିଦେଇ ସଙ୍ଗେ ସଙ୍ଗେ ଚେୟାର ଉପରୁ ଉଠିପଡ଼ି ଘର ଭିତରକୁ ଚାଲିଗଲା । ପାଞ୍ଚ ଛଅ ମିନିଟ ପରେ ଯେତେବେଳେ ସେ ବାହାରି ଆସିଲା, ସେତେବେଳେ ତା ଆଡ଼କୁ ଚାହିଁ ସଞ୍ଜୀବ କ୍ଷଣକ ଲାଗି ମୁଗ୍ଧ ହୋଇ ରହିଗଲା ।

ଯୋତା ମୋଜା ପରିବର୍ତ୍ତେ ପାଦ ଦୁଇଟି ଖାଲି । ରେଶମ ଲୁଗା-ପଟା ବଦଳରେ କେବଳ ସେମିଜ ଉପରେ ସଞ୍ଜୀବର ଗୋଟାଏ ସାଦା ବସ୍ତ୍ରପରିହିତା ସରୋଜିନୀ···ଏସବୁ ଦେଖି ସଞ୍ଜୀବ ଏକାବେଳକେ ଅବାକ୍ । ସେ ଉଚ୍ଛ୍ୱସିତ ଆବେଗରେ କହିଉଠିଲା—କି ଚମତ୍କାର ଆପଣଙ୍କୁ ମାନୁଚି ! ଠିକ୍ ଯେଉଁଳି ଲକ୍ଷ୍ମୀ ଠାକୁରାଣୀ ।

ଏତକ ଶୁଣି ସରୋଜିନୀ ପ୍ରାଣ ଭିତରେ ଆନନ୍ଦର ଏକ ଅପୂର୍ବ ଶିହରଣ ଦେଖାଦେଲା । କିନ୍ତୁ ଦାରୁଣ ଲଜ୍ଜାରେ ମୁଣ୍ଡକୁ ତଳେଇ କହିଲା—ଯାଃ, ଥଟ୍ଟା କଲେ ରାନ୍ଧିବନି କହିଦେଉଚି, ଉପାସରେ ରହିବ !

କିନ୍ତୁ ଏଇ ଲଜ୍ଜାର ଅଭିବ୍ୟକ୍ତିକୁ ସେ ତତ୍‌କ୍ଷଣାତ୍ ଦମନ କରିନେଲା । କାରଣ ସେ ଜାଣେ, ଲଜ୍ଜାକୁ ପ୍ରଶ୍ରୟ ଦେଲେ ତାହା ଉତ୍କଟ

ନୋହାଇପଡ଼େ; ତେଣୁ ମୁଣ୍ଡକୁ ଉଠେଇ ହସ ହସ ମୁହଁରେ କହିଲା—ସେ ପ୍ରଶଂସା ପରେ ହେବ – ରନ୍ଧାଘରଟା ଲୁଆଡ଼େ ଦେଖେଇଦେଲ । ଏହାକହି ସେ ନିଜେ ଅଗ୍ରସର ହେଲା ।

ଅଣତିରିଶି

ରନ୍ଧା ଓ ଖିଆପିଆ ଶେଷ ହେଲା । ବାରଣ୍ଡାରେ ଦୁଇଟି ଚେୟାରରେ ଦି ଜଣଯାକ ମୁହାଁମୁହିଁ ବସି ରହିଥିଲେ ।

ସରୋଜିନୀ କହିଲା—ଗୋଟାଏ କଥା ଆମର କାହାରି ମନକୁ ଆସିଲାନି । ଦାଦାଙ୍କ ଘର ଠିକଣା ଯଦି ହନୁମାନ ଖୋଜି ନ ପାଏ, ତାହା-ହେଲେ ନିଜେ ଗୋଟାଏ ଗାଡ଼ି ଡାକିଆଣିବ ବୋଲି କହିଦେଇଥାଆନ୍ତେ, କିନ୍ତୁ ତା ନ ହେଲେ ହେବ କ'ଣ ସନ୍ତୋଷବାବୁ !

ସନ୍ତୋଷ କହିଲା—ଏକଥା ସେତେବେଳେ ମନେପଡ଼ିଥିଲେ ମଧ୍ୟ ବିଶେଷ କିଛି ହୋଇଥାନ୍ତା ବୋଲି ମୋର ମନେହୁଏନା । ଏତେ ରାତିରେ ଏତେ ଦୂରକୁ କୌଣସି ଗାଡ଼ିବାଲା ଆସିବାକୁ ଚାହାନ୍ତେ ନାହିଁ । ହୁଏତ ଆପଣଙ୍କୁ ଏଇଠି ଆଜି ରାତି ବାସ କରିବାକୁ ପଡ଼ିବ, ନଚେତ୍ ଚାଲିଯିବାକୁ ପଡ଼ିବ । ଏହା ଛଡ଼ା ଦ୍ୱିତୀୟ ଉପାୟ ନାହିଁ ।

—ମୁଁ ଚାଲିଯାଇପାରିବି; କିନ୍ତୁ ଆପଣଙ୍କ ଛଡ଼ା ଆଉ କାହା ସାଙ୍ଗରେ ନୁହେଁ ।

—ତାର ଅର୍ଥ, ମୋ ସାଙ୍ଗରେ ଗଲେ କ'ଣ ବିପଦର ସମ୍ଭାବନା ନାହିଁ ?

—ନାହିଁ କାହିଁକି, ଅଛି; କିନ୍ତୁ ସେସବୁର ଭାର ଆପଣଙ୍କ ଉପରେ । ତାର ଜବାବ ଆପଣଙ୍କୁ ହିଁ ଦେବାକୁ ହେବ, ମତେ ନୁହେଁ ।

—ମୋର କି ଅପରାଧ ?

—ଆଉ କାହାକୁ ଜବାବ ଦେବାକୁ ନ ପଡ଼ିଲେ ବି ନିଜକୁ ନିଜେ ତ ଜବାବ ଦେବାକୁ ପଡ଼ିବ । ଏହା କହି ହଠାତ୍ ସରୋଜିନୀ ସ୍ତବ୍ଧ ହୋଇ ରହିଗଲା ।

ସତ୍ୟଶ ଆଜ ତାର ପ୍ରତିବାଦ କଲା ନାହିଁ, କିନ୍ତୁ ସ୍ପଷ୍ଟ ଅନୁଭବ କଲା, ଦୁଇଜଣଯାକର ଖାଲକ ନୀରବତା ମଝିରେ କାହାର ଗୋଟାଏ ଧମକା ପବନ ବହିଗଲା ।

—କିଏ ଆସୁଚି କି ? କହି ସରୋଜନୀ ଚେୟାରରୁ ଉଠିପଡ଼ି କିଛି ସମୟ ପର୍ଯ୍ୟନ୍ତ ବାରଣ୍ଡାର ରେଲିଂରେ ଭରା ଦେଇ ଅନ୍ଧାର ବଗିଚା ଆଡ଼କୁ ଚାହିଁ ଠିଆହୋଇ ରହିଲା ।

କିଛି ସମୟ ପରେ ସେ ଯେତେବେଳେ କେହି ନୁହନ୍ତି ଜାଣି ସ୍ୱସ୍ଥାନକୁ ଫେରିଆସିଲା ଏବଂ ଲୁଗାପଟା ସମ୍ଭାଳି ନେଇ ବସିଲା, ସେତେ-ବେଳେ ସତ୍ୟଶ କୌଣସି କଥା କହିପାରିଲା ନାହିଁ ।

ତାପରେ ଉଭୟେ ଚୁପ୍‌ଚାପ୍ ବସିରହିଲେ । ସେତେବେଳେ ବାହାରେ ଝଡ଼ ଥମି ଯାଇଥିଲେ ମଧ୍ୟ ବର୍ଷା ଥମି ନ ଥିଲା । ମୁଣ୍ଡ ଉପରେ ଅନ୍ଧାର ଆକାଶ ଏବଂ ଚାରିଆଡ଼େ ମହୁଆ ବଣ ଭିତରେ ସେ ଅନ୍ଧକାର ଦଶ ଗୁଣ ଗଭୀର ହୋଇଥିଲା । ସେଥିରେ ଏକାନ୍ତ ସ୍ୱଳ୍ପାଲୋକିତ ବାରଣ୍ଡା ଉପରେ ଏଇ ଦୁଇଟି ତରୁଣବୟସ୍କ ନରନାରୀ ମୁହାଁମୁହିଁ ବସି କଥା ଅଭାବରେ ଯେତେବେଳେ ନୀରବ ରହିଲେ, ସେତେବେଳେ ଗୋଟିଏ ଅନ୍ଧ ଦେବତା ଅଲକ୍ଷ୍ୟରେ ରହି ମୁରୁକି ମୁରୁକି ହସିବାକୁ ଲାଗିଲା ଏବଂ ସେଇ ଚପା ହସର ଯାତ୍ରି କଳା ମେଘର ଆଢୁଆଳରେ ବାହାରି ହୋଇ ଖେଳ ଖେଳିବାକୁ ଲାଗିଲା ।

ବାହାରର ପ୍ରକୃତି ତାର ଆକାଶ, ପବନ, ଆଲୁଅ, ଅନ୍ଧକାରର ଲୀଳାରେ ମଣିଷର ମନୋଭାବ ଓ ହୃଦୟବୃତ୍ତିକୁ ଯେ କିଭଳି ଟାଣି ନେଇ-ପାରେ, ସତ୍ୟଶ କିଛିସମୟ ପୂର୍ବେ ଦିନେ ରାତିରେ ତାର ପରିଚୟ ପାଇଥିଲା । ସେଦିନ ବେହାରୀ ମୁହଁରୁ ବିପିନ ସହିତ ସାବିତ୍ରୀର ଗୃହତ୍ୟାଗର ସମ୍ବାଦ ପାଇ ତାର ସମସ୍ତ ଭବିଷ୍ୟତ ସାଗରରେ ବୁଡ଼ିଯାଇଚି ବୋଲି ସେ ଯେତେ-ବେଳେ ଦିଗ୍‌ବିଦିଗ ଜ୍ଞାନଶୂନ୍ୟ ହୋଇ ଏକାକୀ ଛୁଟିଯାଇ ନୀରବ ପ୍ରାନ୍ତର ଭିତରେ ଶୋଇ ପଡ଼ିଥିଲା, ସେତେବେଳେ ଏଭଳି କଳା ଆକାଶ, ତାର ଶୀତଳ ହସ୍ତରେ ସତ୍ୟଶର ସମସ୍ତ ଜ୍ୱାଳା ପୋଛିପକେଇ ସେଇ ସାବିତ୍ରୀକୁ ହିଁ କ୍ଷମା କରିବାକୁ ଶିଖେଇ ଦେଇଥିଲା । ପୁଣି ଆଜିର ଏଇ ଉଦ୍ଦାମ ଚଞ୍ଚଳ ନୈଶପ୍ରକୃତି ତାର ସମସ୍ତ ସର୍ବାଂଗରେ ସ୍ପର୍ଶ ଦେଇ ସତ୍ୟଶର ନୈରାଶପୀଡ଼ିତ-

ଶକ୍ତିକୁ ଆଜ ପୁଣି ଏକ ବାଟରେ ଦୁର୍ନିବାର ବେଗରେ ଠେଲିବାକୁ ଲାଗିଲା ।

ସରୋଜିନୀ ହଠାତ୍ ପ୍ରଶ୍ନ କଲା—ଆପଣଙ୍କ ଏଇ ବନବାସର ଅର୍ଥ କ'ଣ ?

ସତୀଶ କହିଲା—ଅର୍ଥ ଗୋଟାଏ କିଛି ନିଶ୍ଚୟ ଅଛି ।

—ତା ତ ଅଛି; କିନ୍ତୁ କାହାରିକୁ ନ କହି ପଳେଇ ଆସିଲେ କାହିଁକି ?

—କିନ୍ତୁ ପଳେଇ ଆସିଚି, ଏ ଖବର କିଏ ଦେଲା ?

ସରୋଜିନୀ ଟିକିଏ ହସି କହିଲା—ଏ ଖବର ମୁଁ ନିଜେ ଆବିଷ୍କାର କରିଚି । ଆପଣ ଯେଉଁଦିନ ସକାଳେ ଚାଲିଆସିଲେ, ମୁଁ ନିଜେ ସେଇଦିନ ଆପଣଙ୍କ ବସାକୁ ଯାଇଥିଲି ।

ସତୀଶ ବିସ୍ମିତ ହୋଇ କହିଲା—ବୁଝିଚି । ଉପୀନଦା ସମ୍ଭବତଃ ମତେ ଖୋଜିବାକୁ ଯାଇଥିଲେ, ଆଉ ଆପଣ ତାଙ୍କ ସାଥିରେ ଥିଲେ । ସେ ଯେ ଯିବେ, ତା ମୁଁ ଜାଣେ । କିନ୍ତୁ ମୁଁ ନ ଥିବା ଦେଖି ସେ କ'ଣ କହିଲେ ?

ସରୋଜିନୀ କହିଲା—ନିଶ୍ଚୟ ସେ କିଛି କହିଥିଲେ; କିନ୍ତୁ ମୁଁ ଶୁଣିନି । କାରଣ ସେ ନିଜେ ସେଠାକୁ ଯାଇ ନ ଥିଲେ । ମୋ ହାତରେ ଖଣ୍ଡିଏ ଚିଠି ପଠେଇଥିଲେ ।

ସତୀଶ ପଚାରିଲା—ତା ପରେ ?

ସରୋଜିନୀ କହିଲା—ମୁଁ ଯାଇ ଶୁଣିଲି, ଆପଣ ସକାଳ ଗାଡ଼ିରେ ଚାଲିଯାଇଛନ୍ତି । କ'ଣ ମନେହେଲା କେଜାଣି, ବ୍ରାହ୍ମଣ ପୂଜାରୀକୁ କହି ଦରଜା ଖୋଲି ଘର ଗୋଟାକଯାକ ବୁଲି ବୁଲି ଦେଖିଲି । ବାହାରର ବାରଣ୍ଡାରେ ଖଣ୍ଡିଏ ଶାଢ଼ୀ ଶୁଖୁଥିଲା । ପଚାରି ଶୁଣିଲି, ଏ ଲୁଗା ମା'ଙ୍କର । ତାଙ୍କର ଦେହ ଖରାପ, ଆପଣ ତାଙ୍କୁ ନେଇ ପଶ୍ଚିମକୁ ଚାଲି ଯାଇଛନ୍ତି । ଆଚ୍ଛା, ସେ କିଏ ? କାହିଁ, ଏ ଘରେ ତ ତାଙ୍କୁ ଦେଖୁନି !'

ସତୀଶ ପାଂଶୁ ମୁହଁରେ କିଛି ସମୟ ସ୍ଥିରରହି କହିଲା—ବ୍ରାହ୍ମଣ ଠାକୁର କହିଲେ—ମୁଁ ତାଙ୍କୁ ନେଇ ପଶ୍ଚିମକୁ ଯାଇଚି ? ରାସ୍କେଲ, ମିଥ୍ୟା-ବାଦୀ । ଉପୀନ୍‌ଦା ସେ କଥାରେ ବିଶ୍ୱାସ କଲେ ?

ସତୀଶ ମୁହଁର ଚେହେରାକୁ ଦେଖି ଓ କଣ୍ଠସ୍ୱର ଶୁଣି ସରୋଜିନୀ ଆଶ୍ଚର୍ଯ୍ୟ ହୋଇପଡ଼ିଲା । କହିଲା—ଅବଶ୍ୟ ସେଠାରେ ଉପୀନବାବୁ ନ ଥିଲେ । ତେବେ ବିଶ୍ୱାସ କଲେ ବା ଦୋଷ କ'ଣ ? ଏ ମାଆଟି ଆପଣଙ୍କର କିଏ ସତୀଶବାବୁ ?

ସତୀଶ ରୁକ୍ଷ ସ୍ୱରରେ କହିଲା—ମୋର କିଏ ? କେହି ନୁହେଁ । ମୋର ସେଇ ପୂର୍ବ ବସାର ଦାସୀ, ଚାକରାଣୀ । ସଇତାନ, ବଦମାସ ଝିଅଟା । ବୁଢ଼ୀ ବୟସରେ ରୋଗରେ ପଡ଼ିଛି । ସେଇଥିପାଇଁ ଆସିଥିଲି କିଛି ସାହାଯ୍ୟ ପାଇଁ । ମୁଁ ତାକୁ ନେଇ ପଶ୍ଚିମକୁ ଚାଲିଯାଇଛି ? ହାରାମଜାଦା ବେଟା ! ମୋ ମୁହଁ ଆଗରେ କହିଥିଲେ, ତାର.........।

ସରୋଜିନୀର ବିସ୍ମୟର ସୀମା ରହିଲା ନାହିଁ । ଅଳ୍ପ କାଳ ନୀରବରେ ରହିଁରହି ମୃଦୁ କଣ୍ଠରେ କହିଲା—ଚାକରାଣୀ ! କିନ୍ତୁ ସେଥିରେ ଆପଣ ଏତେ ଉତ୍ତେଜିତ ହୋଇ ପଡ଼ୁଛନ୍ତି କାହିଁକି ?

ସତୀଶ କହିଲା—ଅନ୍ୟାୟରେ ଅପବାଦ ଦେଲେ କିଏ ବା ଉତ୍ତେଜିତ ହେବନି ?

—ସିଏ ସେଦିନ ରାତିରେ ଅଜ୍ଞାନ ହୋଇ ପଡ଼ିଥିଲେ ?

ସତୀଶ ଠିକ୍ ସେମିତି ଉତ୍ତେଜିତ ସ୍ୱରରେ କହିଲା—ହଁ ପଡ଼ିଥିଲା । କିନ୍ତୁ ସେଥିରେ ବା କ'ଣ ଅଛି ? ତାର ଅଜ୍ଞାନ ହେବାଟା କ'ଣ ମୋର ଅପରାଧ ? ଆଉ ଆପଣ ବା ତା ସମ୍ବନ୍ଧରେ ସସମ୍ମାନରେ ଏତେକଥା କହୁଛନ୍ତି କାହିଁକି ? ଆପଣ ଘରର ଚାକରଚାକରାଣୀମାନଙ୍କୁ ଆପଣ, ଆଜ୍ଞା, ହଜୁର କରି କଥା କହନ୍ତି ?

ସରୋଜିନୀ ଏହାର ଉତ୍ତର ଦେଲାନି ଚୁପ୍ ହୋଇ ବସିରହିଲା । ଏପର୍ଯ୍ୟନ୍ତ ତା ହୃଦୟ ଭିତରେ ଯେଉଁ ଆନନ୍ଦର ଚନ୍ଦ୍ର ଉଦୟ ହୋଇଥିଲା, କୁଆଡ଼ୁ କଳାମେଘ ଆସି ତାକୁ ଢାଙ୍କି ପକେଇଲା । ତା ମନରେ ଗୋଟାଏ ପ୍ରଶ୍ନ ଜାଗ୍ରତ ହେଲା । ପ୍ରଶ୍ନଟା ହେଉଛି, ସେଦିନ ରାତିରେ ଉପେନ୍ଦ୍ର ତା ବସାରେ ସସ୍ତ୍ରୀକ ଉପସ୍ଥିତ ହୋଇ ସଙ୍ଗେ ସଙ୍ଗେ ଚାଲି ଯାଇଥିଲା କାହିଁକି ? କିନ୍ତୁ ଏ ପ୍ରଶ୍ନ ସେ ସରୋଜିନୀକୁ ପଚାରି ନ ଥିଲା, ମନେ ମନେ ଏକ ପ୍ରକାର ବୁଝିଥିଲା । ଏଥିରେ ଏଭଳି ଗୋଟାଏ କିଛି ଅଛି, ଯାହା ଉପେନ୍ଦ୍ର ନିଜେ ବି ପ୍ରକାଶ କରିପାରିଲା ନାହିଁ, ସତୀଶ ବି ପାରିବନି ।

କିନ୍ତୁ ଏଇ ସ୍ତବ୍ଧ ନୀରବତା ଜୀବନ୍ତଙ୍କୁ ଯେମିତି ପୀଡ଼ିତ କରିବାକୁ ଲାଗିଲା । ଚୂପ୍ ରହି ନ ପାରି ସରୋଜିନୀ ଧୀରେ ଧୀରେ ପଚାରିଲା—ଆଚ୍ଛା, ଆପଣଙ୍କୁ ଗୋଟାଏ କଥା ପଚାରିପାରେ କି ?

ସତ୍ଯେଶ ଟିକିଏ ଅଭିମାନ ସ୍ୱରରେ କହିଲା— କି କଥା ?

ଆପଣ ଏତେଦିନ ଆମର ଏତେ ପାଖରେ ଥାଇ ସୁଦ୍ଧା କେବେ-ହେଲେ ଦେଖା ଦେଇ ନାହାନ୍ତି କାହିଁକି ?

ସତ୍ଯେଶ ତରଫରୁ ଏ ପ୍ରଶ୍ନର କୌଣସି ଉତ୍ତର ନ ଥିଲା । କହିଲା— ନାନା କାରଣରୁ ସମୟ ପାଇନି ।

କାରଣଟା କ'ଣ ? ପଢ଼ାପଢ଼ି !

ନା, ପଢ଼ାପଢ଼ି ନାମ ମାତ୍ର । ସେସବୁ ମତେ କୌଣସି ଦିନ କେଉଁଠାକୁ ଯିବା ପାଇଁ ବାଧା ଦେଇନି ।

—ତେବେ ?

—ସତ୍ଯେଶ ଟିକିଏ ହସିବାର ଚେଷ୍ଟା କରି କହିଲା—ଦେଖନ୍ତୁ, ସତ କଥାଟା ଆପଣଙ୍କୁ କହିପାରେ । ଆପଣଙ୍କ କଥା ଯେ କୌଣସିଦିନ ମୋର ମନରେ ଆସିନି, ତାହା ନୁହେଁ । କିନ୍ତୁ ଆପଣ ତ ଜାଣନ୍ତି, ଆମର ଯେଉଁଭଳି ସମାଜ, ଯେଉଁଭଳି ସେହି ସମାଜର ଶିକ୍ଷା, ସେଥିରେ ଆପଣମାନଙ୍କ ଭିତରେ ଆତଜାତ କରିବାରେ କମିତି କେଉଁଠି କମିତି କମିତି ବୋଧହୁଏ । ବୋଧହୁଏ ଏଇଥିଲାଗି ଯାଇ ପାରି ନାହିଁ ।

ସରୋଜିନୀ କହିଲା—ବୋଧହୁଏ ! କିନ୍ତୁ ଆପଣଙ୍କ ସମାଜର ଶିକ୍ଷା କମିତି ଜାଣିପାରେ କି ? ଜୀବନବାବୁଙ୍କ ସମାଜ ସହିତ ବୋଧହୁଏ ଆପଣଙ୍କ ସମାଜର ବିଶେଷ କିଛି ସାମଞ୍ଜସ୍ୟ ନାହିଁ । କାରଣ ମିଳାମିଶା କରିବାରେ ତାଙ୍କୁ ବିଶେଷ ବାଧେନା ।

ସତ୍ଯେଶ ବିସାର ସେଇ ଅଜ୍ଞାତ ସ୍ତ୍ରୀଲୋକଟିର କଥା ଉଠିବା ମାତ୍ରେ ତାର ଅନ୍ତର ଭିତରେ ଗୋଟାଏ ଜ୍ୱାଳା ସୃଷ୍ଟି ହୋଇଗଲା । ଏଇ ଇତସ୍ତତଃ କୈଫିୟତରେ ସେ ଈର୍ଷାର ଦାହ ଆହୁରି ବଢ଼ିଗଲା । ସତ୍ଯେଶକୁ ସେ ଲୁଚେଇ ଲୁଚେଇ ଭଲ ନ ପାଉଥିଲେ ସମସ୍ତ ଲୁଚକାଳି ହୁଏତ ତା ପାଖରେ ଲୁଚି ରହିଥାଆନ୍ତା । କିନ୍ତୁ ପ୍ରଣୟର ଅନ୍ତର୍ଦୃଷ୍ଟିକୁ ଏତେ ସହଜରେ ପ୍ରତାରିତ କରି ଯାଇପାରେନା । ଘଟଣାଟା ଠିକ ଭାବରେ ନ ଜାଣି ବି ତା ହୃଦୟ କମିତି

ଯେପରି ଅସଲ କଥା ବୁଝିନେଲା । ସତୀଶ ବ୍ୟଥିତ ବିସ୍ମୟ ସହକାରେ ସରୋଜିନୀ ଆଡ଼କୁ ଚାହିଁଲା । ତା କଣ୍ଠସ୍ୱରରେ କଳହର ଗୃପାସ୍ୱର ସତୀଶ କାନ ଭିତରେ ତୀକ୍ଷ୍ଣ ଭାବରେ ବାଜିବା ମାତ୍ରେ ସାବିତ୍ରୀ କଥା ମନେ ପଡ଼ିଗଲା । କିନ୍ତୁ ଇତି ମଧ୍ୟରେ ସରୋଜିନୀ ଯେ ତାକୁ ଭଲ ପାଇଯାଇପାରେ, ଏଭଳି ସମ୍ଭାବନା ସତୀଶର ମନରେ ସ୍ୱପ୍ନରେ ବି ଉଦୟ ହୋଇନଥିଲା । ସୁତରାଂ ତାହାର ସେ ଉକ୍ତ୍ୟକ୍ତ ପ୍ରଶ୍ନୋତ୍ତରମାଳାର ଯଥାର୍ଥ କାରଣ ସେ ଦେଖି ପାରିଲାନି । ସରୋଜିନୀକୁ ଉଚ୍ଚଶିକ୍ଷିତା ରମଣୀର ନିର୍ମୋକ ଗ୍ରଥିତ ଅଭି-ମାନର ଏକ ପ୍ରତୀକ ଭାବରେ କଳ୍ପନା କରି ସେ ନିଜେ ମନେ ମନେ ଜଳି ଉଠିଲା ଏବଂ ଜବାବ ଦେଲା ସେହିଭଳି । କହିଲା—ଉପୀନଦାର ସମାଜ ଶିକ୍ଷା ଯେ କିପରି, ସେ ବେଶ ଜାଣେ । କିନ୍ତୁ ସିଏ ହୁଏତ ଆପଣଙ୍କ ସହିତ ମିଳାମିଶା କରିପାରନ୍ତି । କିନ୍ତୁ ତାଙ୍କୁ ଯେ ମତେ ଜବାବ ଦେବାକୁ ପଡ଼ିବ, ତାର କୌଣସି ମାନେ ନାହିଁ । ଯାହାହେଉ ମତେ ମାଫ କରିବେ, ଏସବୁ ଆଲୋଚନାରେ ମୁଁ କୌଣସି ସାର୍ଥକତା ଦେଖିପାରୁନି ।

ସରୋଜିନୀ ସ୍ତବ୍ଧ ହୋଇ ରହିଲା ଏବଂ ସତୀଶ ମଧ୍ୟ ନିଃଶବ୍ଦରେ ଅଧୋମୁଖରେ ଚୁପ ରହିଲା ।

ଗୋଟାଏ ଗାଡ଼ି ଆସି ଫାଟକ ଆଗରେ ଠିଆ ହେଲା ଏବଂ ଜ୍ୟୋତିବାବୁ ବଡ଼ ପାଟିରେ ସତୀଶ ନାଁ ଧରି ଡାକ ଡାକି ଜଣେ ଲୋକ ସହିତ ବଗିଚା ଭିତରେ ପ୍ରବେଶ କଲେ ।

ଅସଂଖ୍ୟ ଧନ୍ୟବାଦ, ନିମନ୍ତ୍ରଣ, ଆମନ୍ତ୍ରଣ ଇତ୍ୟାଦି ଯଥାରୀତି ସମ୍ପନ୍ନ କରି ଜ୍ୟୋତିଷ ଯେତେବେଳେ ଭଉଣୀଙ୍କୁ ନେଇ ପ୍ରସ୍ଥାନ ଲାଗି ଉଦ୍ୟତ ହେଲେ, ସେତେବେଳେ ସତୀଶ ସରୋଜିନୀକୁ ପ୍ରଶ୍ନ କଲା—ଗୋଟାଏ କଥା ଆପଣଙ୍କୁ ମୁଁ ପଚାରିପାରେ କି ? ହାରାନବାବୁ ବୋଲି ଉପୀନଦାଙ୍କର ଜଣେ ବନ୍ଧୁ ଥିଲେ, ତାଙ୍କର କ'ଣ ଦଶା କହିପାରିବେ ?

ଜ୍ୟୋତିଷ ଆଶ୍ଚର୍ଯ୍ୟ ହୋଇ ତାର ଜବାବ ଦେଲେ—ବାଃ, ଆପଣ ଶୁଣି ନାହାନ୍ତି ? ସେ ତ ମରିଗଲେଣି ।

ସମ୍ବାଦ ଶୁଣି ସତୀଶ କ୍ଷଣକାଳ ଚୁପଚାପ ଠିଆ ହୋଇ କହିଲା—ତାଙ୍କର ମା ଓ ସ୍ତ୍ରୀ—ଏମାନେ କେଉଁଠି ଅଛନ୍ତି କହିପାରିବେ ?

ସରୋଜିନୀ ତାର ଉତ୍ତର ଦେଇ କହିଲା — ସେମାନେ ସେମାନଙ୍କ ଘରେ ଅଛନ୍ତି । ସ୍ଥିର ହୋଇଛି, ଦିବାକରବାବୁ ତାଙ୍କରି ଘରେ ରହି କଲେଜରେ ପଢ଼ିବେ । ସେ ତାଙ୍କର ଭାର ନେବେ ।

ଜ୍ୟୋତିଷ ହଠାତ୍ ଭଉଣୀକୁ ପ୍ରଶ୍ନ କଲେ—ହାରାନବାବୁଙ୍କ ସ୍ତ୍ରୀ ଆମ ଘରକୁ ଦିନେ ଆସିଥିଲେ ନା ?

ସରୋଜିନୀ କହିଲା—ହଁ, ବହୁତ ସମୟ ଧରି ରହିଥିଲେ । ବହୁତ କଥାବାର୍ତ୍ତା ହୋଇଥିଲା ।

ତାଙ୍କ ନିଜ କଥା କ'ଣ ହୋଇଥିଲା, ସ୍ୱାମୀଙ୍କ ମୃତ୍ୟୁଶୋକ ଭିତରେ କିଭଳି ଗ୍ରହଣ କରିଛନ୍ତି, ନାନା କଥା ଜାଣିବା ଲାଗି ସତୀଶ ସରୋଜିନୀ ମୁହଁକୁ ଗୋଟାଏ ଉତ୍ସୁକ ଦୃଷ୍ଟି ନିକ୍ଷେପ କଲା । କାରଣ ତାର ନିଜ ସମ୍ବନ୍ଧରେ ଆଲୋଚନା ଟିକିଏ ତରତର ହୋଇଗଲା । ସେ କିନ୍ତୁ ସେଇ ଅସ୍ପଷ୍ଟ ଆଲୋକରେ ହୁଏତ ତାର ମୁଖର ଇଙ୍ଗିତ ବୁଝିପାରିଲାନି । କିମ୍ବା ବୁଝି ମଧ୍ୟ ସତୀଶର କୌତୂହଳ ନିବୃତ୍ତ କରିବାର ଆବଶ୍ୟକତା ବୋଧ କଲା ନାହିଁ । ସେ ଦାଦାଙ୍କୁ ଅଗ୍ରସର ହେବା ଲାଗି ଟିକିଏ ପେଲିଦେଇ ମୃଦୁ କଣ୍ଠରେ କହିଲା—ଆଉ ଡେରି କରନି ଦାଦା, ଶୀଘ୍ର ଚାଲ ।

'ହଁ ଚାଲ' କହି ସତୀଶକୁ ନମସ୍କାର କରି କହିଲେ—ଆଉ ଥରେ ଅସଂଖ୍ୟ ଧନ୍ୟବାଦ ସତୀଶବାବୁ ! କାଲି ବା ପଅର ଦିନ ଦିନେ ଯେଭଳି ଗରିବର ଘରେ ପାଦଧୂଳି ପଡ଼େ ।

ସତୀଶ ପ୍ରତିନମସ୍କାର କରି ଅବ୍ୟକ୍ତ ସ୍ୱରରେ ଯାହା କହିଲା ତାହା ବୁଝାଗଲାନି । ସରୋଜିନୀ ଫେରି ଠିଆହୋଇ ସତୀଶକୁ ଗୋଟିଏ ଛୋଟ ନମସ୍କାର କରି ଚାଲିଗଲା ।

ସେଇ ସିଢ଼ି ଉପରେ ଠିଆହୋଇ ଏଥର ସତୀଶ ଆଖିରୁ ଲୁହ ଝରିବାକୁ ଲାଗିଲା । ଠିକ କାହିଁକି ଯେ ଏ ଲୁହ ଝରିଲା, ତାହା ସେ ନିଃସଂଶୟରେ ଅବଧାରଣ କରିପାରିଲାନି । କିନ୍ତୁ କମିତି ଯେଭଳି ଗୋଟାଏ ଅନିର୍ଦ୍ଦିଷ୍ଟ ଅନୁଭୂତି ତାକୁ ବାରମ୍ବାର ଗୋଟିଏ କଥା ଜଣାଇବାକୁ ଲାଗିଲା—ତାର ସାବିତ୍ରୀ, ତାର ଭିତରେ, ତାର ଉପୀନଦା, ସମସ୍ତେ ଗୋଟିଏ ସମୟରେ ତାକୁ ଚିରଦିନ ଲାଗି ବିସର୍ଜନ ଦେଇ ଦେଇଛନ୍ତି । ଏଇ ନିର୍ଜନ କୁଟୀର ଛଡ଼ା ତାର ଯିବାର ସ୍ଥାନ ଆଉ ନାହିଁ ।

ଦୁଇ ମାସ ପୂର୍ବରୁ ନାଗନଙ୍କ ମୃତ୍ୟୁ ସମ୍ପର୍କରେ ଦିବାକର ମାତ୍ର ଦି ଘଣ୍ଟାର ଦିନ ଲାଗି କଲିକତାରେ ବାସ କରି ଫେରିଆସିବାକୁ ବାଧ୍ୟ ହୋଇଥିଲା । ଏଥର କରୁଣାମୟୀର ତତ୍ତ୍ୱାବଧାନରେ ରହି କଲିକତାରେ ପଢ଼ିବା ସ୍ଥିର ହେବା ପରେ ତାର ନୂତନ କଣା ଷ୍ଟିଲ ସିନ୍ଦୁକରେ ବସ୍ତ୍ରପତ୍ର ଭର୍ତ୍ତି କରି ସନ୍ଧ୍ୟାବେଳେ ଦିବାକର ଆସି ପହଞ୍ଚିଲା ନାଗନବାବୁଙ୍କ ସେଇ ପାଥୁରିଘାଟ ଘରେ ।

କରୁଣାମୟୀ ତାକୁ ଅଳ୍ପବୟସ୍କ ଶ୍ରେଷ୍ଠ ଭାଇଟି ଭଳି ଗ୍ରହଣ କଲେ ।

ମାମୁଁ ଘରେ ସୁରବାଳା ଛଡ଼ା ଦିବାକରର ଯତ୍ନ ନେବା ପାଇଁ ଆଉ କେହି ନ ଥିଲେ । ସେଇ ଯତ୍ନ ଭିତରେ ମହେଶ୍ୱରଙ୍କ ଖରଦୃଷ୍ଟି ଶନି ଦୃଷ୍ଟି ଭଳି ଅନେକ ରସ ଅନେକ ସମୟରେ ଶୁଷ୍କ କରିପକାଏ । କିନ୍ତୁ ଏଠି ସେସବୁ କୌଣସି ଉତ୍ପାତ ନ ଥିଲା ।

ସଯତ୍ନପାଳିତ ଟବ୍‌ର ଗଛ ଦୈବାତ୍ ଧରଣୀ କୋଳରେ ଆଶ୍ରୟ ପାଇ ଅପର୍ଯ୍ୟାପ୍ତ ରସର ଆସ୍ୱାଦରେ ତାର ବୁଭୁକ୍ଷୁ ଶୀର୍ଣ୍ଣ ଚେରଗୁଡ଼ିକ ଯେଉଁଭଳି ଭାବରେ ମାଟି ଭିତରେ ସହସ୍ର ବାହୁ ବିସ୍ତାର କରିଥାଏ, କରୁଣାମୟୀର ଆଶ୍ରୟରେ ଦିବାକରର ଅବସ୍ଥା ଠିକ ସେହିଭଳି ହେଲା ।

ମହାନଗରୀର ବିସ୍ତୀର୍ଣ୍ଣ ଓ ବିଚିତ୍ର ଆବହାଓ୍ୱା ଭିତରେ ପଡ଼ି ଦେଖୁ ଦେଖୁ ତାର ସଂକୁଚିତ ଆଶା ଓ ସଂକୀର୍ଣ୍ଣତର ଭବିଷ୍ୟତ ବିସ୍ତାରିତ ହୋଇଉଠିଲା । ନିଜକୁ ସେ ବଡ଼ ଭାବରେ ଅନୁଭବ କଲା । ବି.ଏ. ଫେଲ ହୋଇ ବିଦ୍ୟାଭ୍ୟାସର ପୁରାତନ ବନ୍ଧନ ତାର ଛିନ୍ନ ହୋଇଚି ଅଥଚ ନୂତନ ବନ୍ଧନର ଏବେ ବିଳମ୍ବ ଅଛି, ଏଇ ମଧୁର ଅବକାଶ କାଳ ମଧ୍ୟରେ ସେ ନିରନ୍ତର ସହରର ଘୁରି ଘୁରି ଜ୍ଞାନ ଆହରଣ କରିବାକୁ ଲାଗିଲା ।

ସେ ଥିଏଟର ଦେଖି ଆସି ସ୍ୱପ୍ନ ଦେଖିଲା, ଜୁ ଦେଖି ଅବାକ ହୋଇ-ପଡ଼ିଲା, ମିଉଜିୟମ ଦେଖି ସ୍ତମ୍ଭିତ ହୋଇପଡ଼ିଲା, ଶିବପୁରରେ ସରକାରୀ ବଗିଚା ଦେଖି ପ୍ରବନ୍ଧ ଲେଖିଲା, ପ୍ରାସାଦତୁଲ୍ୟ ସୌଧଶ୍ରେଣୀ ଆଡ଼କୁ ହାଁ କରି ଅନେଇ ରହିଲା, ଅବଶେଷରେ ଗାଡ଼ି ମାଡ଼ପାଇ ପାଦ ମଚକାଇ ଘରକୁ ଫେରିଆସିଲା ।

ଆଘାତ ଅବଶ୍ୟ ସାମାନ୍ୟ । କରଣାମୟୀ ଧଡ଼ମଡ଼ ହୋଇ ଚୂନ ହଳଦୀ ଗରମ କରି ଆଣି ପ୍ରଲେପ ଦେଇ ଦେଉ ମୃଦୁ ହସି କହିଲେ— କ'ଣ ମାଡ଼ଗଲା ଦିବାକର ? ଘୋଡ଼ାଗାଡ଼ି ନା ଶଗଡ଼ଗାଡ଼ି ?

ଦିବାକର ମୁହଁକୁ ରଙ୍ଗକରି କହିଲା—ଘୋଡ଼ାଗାଡ଼ି ।

କରଣାମୟୀ କହିଲେ—ରକ୍ଷା ! ନଇଲେ ଏଇ ଟେଣ୍ଟା ଗୋଡ଼ ନେଇ ପୁଣି ଜୋରିମାନା ଦେବାକୁ ଥାନାକୁ ଯିବାକୁ ପଡ଼ଥାନ୍ତା ।

ଦିବାକର ଲଜ୍ଜିତ ମୁହଁରେ କହିଲା—ନା, ବେଶୀ କିଛି ହୋଇନି । କାଲି ସକାଳେ ଠିକ ହୋଇଯିବ ।

କରଣାମୟୀ କହିଲେ—ତା ତ ନିଶ୍ଚୟ ! କିନ୍ତୁ ଆଉ ବେଶୀ ଦୂରକୁ ଯିବନି । ଶୁଣୁଚି କୁଆଡ଼ୁ ଦଳେ ପିଲାଧରା କଲିକତାକୁ ଆସିଛନ୍ତି ।

ଏଇମିତି ଦିନ କଟୁଥିଲା । ଅଘୋରମୟୀ ନାନା ତୀର୍ଥସ୍ଥାନରେ ବୁଲି ଘୁରି ଘରକୁ ଫେରିଆସିଲେ । ଇତି ପୂର୍ବରୁ ଯେଉଁ ଦିନେ ଦୁଇ ଦିନ ପାଇଁ ଦିବାକରକୁ ଦେଖିଥିଲେ, ସେତେବେଳେ ପୁତ୍ରଶୋକରେ ହୃଦୟମନ ଏମିତି ମୁହ୍ୟମାନ ଥିଲା ଯେ ଦିବାକରର ମୁହଁଟାକୁ ସେ ଭଲ ଭାବରେ ଦେଖି ନ ଥିଲେ । ଆଜି ଏଇ ଶୁଶ୍ରୂଷା ସ୍ୱହୀନ ଅଧରକାନ୍ତ ଗୁରୁ ଦର୍ଶନ ପିଲାଟି ଆଡ଼କୁ ଚାହିଁବାମାତ୍ରେ ତାଙ୍କର ମା ପ୍ରାଣ ବିଗଳିତ ହୋଇଉଠିଲା । କହିଲେ—ଦିବୁ, ମୁଁ ସମ୍ପର୍କରେ ତୋର ମାଉସୀମା; ମତେ ମାଉସୀମା ଡାକିବୁ ବାବା !

ତାର ବାପ ମା କେହି ବଞ୍ଚି ନାହାନ୍ତି ଶୁଣି ତାଙ୍କର ଦି ଆଖି ଛଳ ଛଳ ହୋଇଉଠିଲା ଏବଂ ବଡ଼ ବଡ଼ ଦି ବୁନ୍ଦା ଜଳ ଆଖିରୁ ଲୁଗାକାନିରେ ପୋଛି ପକେଇ କହିଲେ—ଭଗବାନ ମୋର ହାରାନ୍‌କୁ କାଢ଼ିନେଇ ଯଦି ହତଭାଗିମାକୁ ବଞ୍ଚେଇ ରଖିଲେ, ତେବେ ଯେଉଁ କେଇଟା ଦିନ ବଞ୍ଚିରହିବି ତୁ ବାବା ମତେ ଛାଡ଼ି କୁଆଡ଼କୁ ଯାଆନି । ଏହା କହି ହାତରେ ତାର ମୁଣ୍ଡକୁ ଆଉଁସି ନିଜ ଆଙ୍ଗୁଳି ପ୍ରାନ୍ତକୁ ଚୁମ୍ବନ ଦେଲେ । ତାଙ୍କ କଥା ଶୁଣି ଏବଂ ଆଖିର ଜଳ ଦେଖି ନିଜ ଆଖି ପାଣିକୁ ଲୁଚେଇ ଦିବାକର ଆଗରୁ ଚାଲିଗଲା । ଏହାର ଅଳ୍ପ କେତେକ ଦିନ ମଧ୍ୟରେ ତାଙ୍କର ଦିବାକର ପ୍ରତି ଅପତ୍ୟ-ସ୍ନେହ ଯାଦୁ-କରର ମାୟାତରୁ ଭଳି ଶାଖାରୁ ପଲ୍ଲବ ଆକାର ଧାରଣ କଲା । ଅସଲ କଥା ହେଉଚି, ଏଇ ପୁତ୍ରହୀନା ଜନନୀ କିଛି ସମୟ ପ୍ରବାସ ଯାପନ ପରେ ଘରକୁ

ଫେରିଆସି ପୁତ୍ରର ଅଭାବ ସଂପୂର୍ଣ୍ଣ ଭାବରେ ପୂର୍ଣ୍ଣ କରିନେବାକୁ ଚାହିଁଲେ । ଏହାରେ କେତେକ ମାସ ପୂର୍ବରୁ ଯେତେବେଳେ ତାଙ୍କର ପୁଅ ମରିଯାଇଥିଲା, ସେତେବେଳେ ସେହି ସର୍ବଗ୍ରାସୀ ନିଷ୍ଠୁର ଶୋକ ହିଁ ମାତୃତ୍ୱର ଖୋରାକ ଯୋଗାଇ କୌଣସିମତେ ତାଙ୍କୁ ବଞ୍ଚାଇ ରଖିଥିଲା । ସେଇ ଶୋକ ଅପେକ୍ଷାକୃତ ଶାନ୍ତ ହେବାରେ ତାଙ୍କର କ୍ଷୁଧାତୁର ମାତୃହୃଦୟ ସନ୍ତାନ ଅଭାବରେ ଏକାବେଳକେ ଭାଙ୍ଗି ପଡ଼ିଥିଲା । ସନ୍ତାନପରିତ୍ୟକ୍ତ ସେଇ ଶୂନ୍ୟ ସିଂହାସନରେ ଦିବାକରକୁ ସେ ମହାସମାରୋହରେ ଅଭିଷିକ୍ତ କରିନେଲେ ।

ଏକ ଦିଗରେ ସେ ଏବଂ ଅନ୍ୟ ଦିଗରେ କରୁଣାମୟୀ ଏଇ ଦୁଇ ଜଣଙ୍କ ମଝିରେ ପଡ଼ି ଏ ଘରେ ଦିବାକରର ଯତ୍ନ ଓ ଆଦରର ସୀମା ରହିଲାନି ।

ସ୍ନେହ ନ ଥିଲେ ଯେଉଁ କୈଫିୟତ ଦେବାକୁ ହୁଏ, ସାମାନ୍ୟ ଦେହ ଖରାପ ହେଲେ କ'ଣ ହେଇଚି ଆଦି ଗୁଡ଼ାଏ ପ୍ରଶ୍ନର ଯେଉଁ ଉତ୍ତର ଦେବାକୁ ପଡ଼େ, ସ୍ନେହର ଏଇ ନିଗୂଢ଼ ରହସ୍ୟ ତାର ଏଇ ବିଂଶବର୍ଷବ୍ୟାପୀ ଜୀବନରେ ଆଦୌ ଜଣା ନ ଥିଲା । ଜୀବନର ଏଇ ଆକସ୍ମିକ ପରିବର୍ତ୍ତନର ପ୍ରଥମ କେଇଟା ଦିନ ତାକୁ ଟିକିଏ କମିତି କମିତି ଲାଗୁଥିଲା । ଚିରାଭ୍ୟସ୍ତ ଅନଧିକାରର ସଂକୋଚ ଏକାବେଳକେ କଟିବା ସମ୍ଭବ ନୁହେଁ; ତଥାପି ଅଳ୍ପଦିନ ପରେ ତାର ବିଶୀର୍ଣ୍ଣ ମନ ଏଇ ଦୁଇଟି ନାରୀର ଅପରିମିତ ସ୍ନେହରେ ଅପରିମିତ ଭାବରେ ପ୍ରସାରିତ ହୋଇପଡ଼ିଲା । ଅବଶେଷରେ ଦିନେ ଯେ ତାର କ୍ଲେଶାର୍ଜିତ ସଦୁଃଖ ଅଭ୍ୟାସଗୁଡ଼ିକ ଶୁଷ୍କ ତ୍ୱକ୍ ଭଳି ଦେହରୁ ଅଜ୍ଞାତସାରରେ ଝଡ଼ି ପଡ଼ିଗଲାଣି, ତାହା ସେ ମୋଟେ ଜାଣି ପାରିଲା ନାହିଁ ।

ଏ ଦିଗରେ ଯାହା କ୍ରମଶଃ ଦେଖିବାର ଥିଲା, ଦେଖା ହୋଇଗଲା । ପୁଣି ଗାଡ଼ିଚାପା ପଡ଼ିବାର ଯେତେବେଳେ ସମ୍ଭାବନା ରହିଲା ନାହିଁ, ସେତେବେଳେ ସେ ସଭାସମିତିରେ ଯୋଗଦେବା ଆରମ୍ଭ କରିଦେଲା ଏବଂ ଅଳ୍ପଦିନ ଭିତରେ ଏକ ମାସିକ ପତ୍ରିକାର ଉତ୍ସାହୀ ଓ ମାନ୍ୟ ଲେଖକ ହୋଇଉଠିଲା । ଆଗେ 'ହାସ୍ୟ', 'ଆଞ୍ଚିଲ' ପ୍ରଭୃତି ଛଦ୍ମନାମ ଦେଇ କବିତା ଲେଖୁଥିଲା; ଏଥର ପୁରାପୁରି ଦିବାକର ବନ୍ଦୋପାଧ୍ୟାୟ ନାମ ଦେଇ କବିତା ଲେଖିଲା । କେତେକ କଲେଜ ପିଲା ଏକାଠି ହୋଇ 'ଚନ୍ଦ୍ରୋଦୟ' ନାମ

ଦେଇ ଏକ ମାସିକ ପତ୍ରିକା ବାହାର କରୁଥିଲେ । ଏଥିରେ ଦିବାକର ମାତି ଉଠିଲା ।

ଏଥର ସେ ଯେତେବେଳେ ସେତେବେଳେ ଘରୁ ବାହାରେନା । ତାର ବହୁତ କାମ । ଭଙ୍ଗା ଘରର ଏକ ନିର୍ଜନ କୋଣରେ ସେ ଖାତା ପେନ୍‌ସିଲ ନେଇ ଗମ୍ଭୀର ମୁଖରେ ବସିରହେ । ସ୍ନାନାହାର କଥା ମନେ ରହେନା । ବହୁତ ଡାକଡ଼ୁକ କଲେ ଯାଇ ଟିକିଏ ଖାଏ । ତାର ମାନସିକ ରାଜ୍ୟର ଏଇ ଉତ୍‌ପାତଗୁଡ଼ିକୁ ଦେଖି ଅଘୋରମୟୀଙ୍କ ମନରେ ଭାରି ରାଗ ହୁଏ । ସେ ଥରେ ଦିବାକରକୁ କହିଲେ—ଏଇଟା ଏଇ ଘରର ଦୋଷ ! ହାରାନ୍ ମୋର ଇମିତି ପଢ଼ି ପଢ଼ି ହିଁ ଜୀବନଟାକୁ ହରେଇଦେଲା । ଯୁଆଡ଼େ ବି ଦେଖୁଛି ସେଇ ରୋଗ ଧରିଛି । ନା ବାପା, ତୁ ପର ଘରର—

କିରଣମୟୀ ଏସବୁ ଲକ୍ଷ୍ୟ କରୁଥିଲେ । ହସି ହସି କହିଲେ—ସେ ଚିନ୍ତା କରନ୍ତୁ ନା ମା ! ସେ ଯେଉଁ ଲେଖାପଢ଼ାରେ ମନ ଦେଇଛନ୍ତି, ସେଥିରେ ପରମାୟୁ କମେନା, ବରଂ ବଢ଼େ ।

ଏହାର କିଛିଦିନ ପରେ ଉକ୍ତ 'ଚନ୍ଦ୍ରୋଦୟ'ରେ 'ବିଷର ଛୁରି' ଗଳ୍ପ ପ୍ରକାଶ ପାଇଲା । 'ସୂର୍ଯ୍ୟୋଦୟ' ପତ୍ରିକା ତାର ସମାଲୋଚନା କରି କହିଲା – ବଙ୍ଗଳାର ଗୌରବ, ସୁପ୍ରସିଦ୍ଧ ନବୀନ ଲେଖକ ଶ୍ରୀଯୁକ୍ତ ଦିବାକର ବନ୍ଦୋପାଧ୍ୟାୟଙ୍କ ଲିଖିତ ଗୋଟିଏ ପ୍ରେମର ନିଖୁଣ ଚିତ୍ର । ଏଣୁ ଏଇ ନିଖୁଣ ଚିତ୍ରରେ କ'ଣ କ'ଣ ଅଛି ଏବଂ ସମାଲୋଚକ ମହାଶୟ କିଭଳି ପଢ଼ୁ ପଢ଼ୁ ଅଶ୍ରୁ ସମ୍ବରଣ କରିପାରିଲେ ନାହିଁ ଏବଂ ଏଇଭଳି ଆଉ ଏକ ଗଳ୍ପ ଦେଖିବା ଆଶାରେ କିଭଳି ଉଦ୍‌ଗ୍ରୀବ ହୋଇ ରହିଛନ୍ତି, ଉପସଂହାରରେ ତାର ଆଭାସ ବି ଦେଇଛନ୍ତି ।

ଏହି ନିର୍ଲଜ୍ଜ ଧୃଷ୍ଟତାକୁ ନିରପେକ୍ଷ ଭାବରେ ସତ୍ୟ ବୋଲି ଗ୍ରହଣ କରିବାକୁ ଦିବାକର ଟିକେ ବି କୁଣ୍ଠାବୋଧ କଲା ନାହିଁ । ତାର କାରଣ ହେଉଛି, ମଣିଷ-ଜୀବନର ଯେଉଁ ସମୟରେ ଆଶା ଓ ଆକାଶ କୁସୁମ କଳ୍ପନାର ମାତୃକୋଡ଼ ଛାଡ଼ି ପୃଥକ୍ ହୋଇ ଠିଆ ହୋଇ ନାହିଁ, ଏଇଟା ତାର ସେଇ ଅବସ୍ଥା । ପ୍ରଥମ ଯୌବନ, ଇତି ମଧ୍ୟରେ ସେ ଦି ଚାରିଜଣ ଭକ୍ତ ବନ୍ଧୁବାନ୍ଧବ ସାହାଯ୍ୟରେ ସାହିତ୍ୟର ଜରିଟୋପି ମୁଣ୍ଡରେ ଲଗେଇ ବସି ରହିଛି । 'ସୂର୍ଯ୍ୟୋଦୟ'ର ସମ୍ପାଦକ ଏହି ଟୋପି ଚାରିପାଖରେ ମୋତିର ମାଳା ଲମ୍ବେଇଦେଲେ ।

ଏହି ଅପରୂପ ସାହିତ୍ୟର ଜଗତ ମୁଗ୍ଧରେ ପିନ୍ଧ ଏଇ ଦିବାକର ଦିନେ ସକାଳେ ଗର୍ବୋଜ୍ଜ୍ୱଳ ମୁହଁରେ ଗେଟ୍‌ଘରଧରେ ଆସି ଉପସ୍ଥିତ ହେଲା । ହାତରେ ତାର ସେଇ 'ସୂର୍ଯ୍ୟୋଦୟ' ପତ୍ରିକାଟି । କହିଲା—ଭଉଜ, ଘର ବ୍ୟସ୍ତ ଦେଖୁଚ ।

କରଣମୟୀ ବାନ୍ଧୁଥିଲେ, କହିଲେ— ନା, ଆଉ ବେଶୀ କିଛି କାମ ନାହିଁ । ସବୁ ଆସିଲାଣି । ତୁମ ହାତରେ ସେ କ ପତ୍ରିକା ?

—ଓଃ ଏଇଟା ? ଏଇଟା ମାସିକ ପତ୍ରିକା 'ସୂର୍ଯ୍ୟୋଦୟ', ନୂଆ ହୋଇ ବାହାରିଚ । କିନ୍ତୁ ଯାହା କୁହ ଭଉଜ, ବଢ଼ିଆ ଲେଖିଚ ।

କରଣମୟୀ 'ସୂର୍ଯ୍ୟୋଦୟ' ବୋଲି ଗୋଟାଏ ପତ୍ରିକା ବାହାରେ ବୋଲି ଆଗରୁ ଆଦୌ ଜାଣି ନ ଥିଲେ । ଆଗ୍ରହ ସହକାରେ କହିଲେ— ସତେ ? ତାହାହେଲେ ଦିଅ ଥରେ ଦେଖେ ।

—ଏହିକ୍ଷଣି ଦେଖିବ ?

—ନା, ଏହିକ୍ଷଣି ନୁହେଁ, ମୋ ଶେଯ ଉପରେ ରଖିଦିଅ, ଦି'ପହରେ ଦେଖିବ ।

ଦି'ପହରେ କାମଦାମ, ଖିଆପିଆ ଶେଷ ହେବା ପରେ କରଣମୟୀ 'ସୂର୍ଯ୍ୟୋଦୟ' ଖୋଲି ବସିଲେ । ଇଆଡ଼େ ସିଆଡ଼େ ଗୁହୁଁ ଗୁହୁଁ ଠିକ୍ ଜାଗାଟାରେ ଆଖି ପଡ଼ିଗଲା । ଦିବାକର ପାଖଘରେ ଥିଲା । ଉଠି ତାକୁ କହିଲେ--କାହିଁ ଦିବାକର ! 'ବିଷର ଛୁରୀ' କାହିଁ ? ସମାଲୋଚନା ତ ଦେଖେଇଲ, ଏଥର ଅସଲ ଜିନିଷ ବାହାର କର ।

ଦିବାକର ସଲଜ୍ଜ ଅଥଚ ବିଜୟ ସହକାରେ କହିବାକୁ ଲାଗିଲା— ଓ, ସେଇ ଗଳ୍ପଟା······ସେଇଟା କିଛି ନୁହେଁ—ତରବରରେ ଗୋଟାଏ ଲେଖି ପକେଇଥିଲି··

କରଣମୟୀ ହସି ହସି କହିଲେ—ଯାହାହେଉ, ଦିଅ ପଢ଼େ, ତାପରେ··· ଏହାକହି ନିଜେ ଖୋଜି ଖୋଜି 'ଚନ୍ଦ୍ରୋଦୟ' ପତ୍ରିକାଟିକୁ ଟାଣିଆଣି ସେଇଠି ସେଇଟିକୁ ଖୋଲି ଗୋଟାଏ ଚୌକି ଉପରେ ବସି ପଡିଲେ । କିନ୍ତୁ ଦିବାକର ଆଶା ଓ ଆକାଂକ୍ଷାରେ ତୀବ୍ର ଉତ୍ତେଜନାକୁ ଗୋପନ କରି ମିଛମିଛିକା ଗୋଟାଏ ବହିର ପୃଷ୍ଠା ଲେଉଟାଇବାରେ ଲାଗିଲା । ତାର 'ବିଷର ଛୁରୀ' ଗଳ୍ପର ନାୟିକା ଅସାମାନ୍ୟା ସୁନ୍ଦରୀ ଓ ଷୋଡ଼ଶୀ । ଧନବାନ ଜମିଦାରକନ୍ୟା

ହୋଇ ମଧ୍ୟ ଦୈବଚକ୍ରରେ ଜଣେ ରୂପବାନ ଯୁବକକୁ ଭଲ ପାଇଥିଲା । ଜମିଦାର ଏ ଘଟଣା ଜାଣି ତାର ନାୟକ 'ବଜୟେନ୍ଦ୍ରକୁମାର'ଙ୍କୁ ରାଜ୍ୟରୁ ତଡ଼ିଦେଇଛ; କିନ୍ତୁ ନଗେନ୍ଦ୍ରନନ୍ଦିନୀ କିଛିହେଲେ ଜାଣେନା । ବସନ୍ତ ସନ୍ଧ୍ୟାରେ ମାଳତୀକୁଞ୍ଜରେ ବସି ମନଖୁସିରେ ମାଳା ଗୁନ୍ଥି ଚାଲିଥାଏ । ଏଆଡ଼େ ରୂପମୁଗ୍ଧ ପୂର୍ଣ୍ଣଚନ୍ଦ୍ର ଗଛ ଆଡ଼ୁଆଳରେ ଉଙ୍କି ମାରୁଥାଏ । କିନ୍ତୁ ଆକାଶକୁ ଉଠିବାକୁ ସାହସ କରିପାରୁନି । ପ୍ରଭାତକୁ କଳ୍ପନା କରି ମଝି ମଝିରେ କୋକିଳ କୁହୁ କୁହୁ କରି ଚାଲିଥାଏ । ଉପରେ ଲୁବ୍ଧ ଭ୍ରମର ଗୁଣୁ ଗୁଣୁ କରି ନିଦ୍ରାଳସା ମାଳତୀର ନିଦ୍ରାଭଙ୍ଗ କରି ଚାଲିଥାଏ । ଏଭଳି ସମୟରେ ଧୀରେ ଧୀରେ କିଏ ଇଏ ଆସେ ? ବଜୟେନ୍ଦ୍ର ଠିକ ? ହଁ, ସେଇ ନିଷ୍ଠୁର ! କିନ୍ତୁ ଇଏ କି ବେଶ ! ଗେରୁଆ ବସ୍ତ୍ର, କପାଳରେ ବିଭୂତି, କଣ୍ଠରେ ରୁଦ୍ରାକ୍ଷମାଳା ! ନଗେନ୍ଦ୍ରନନ୍ଦିନୀର ହାତରୁ ମାଳତୀମାଳା ଖସିପଡ଼ିଲା । ନିକଟକୁ ଆସି ବଜୟେନ୍ଦ୍ର ଗଦ୍‌ଗଦ୍ କଣ୍ଠରେ କହିଲା—ବିଦାୟ ! ଚାଲିଲି ମୁଁ ।

ନଗେନ୍ଦ୍ରନନ୍ଦିନୀ ମସ୍ତକରେ ଯେମିତି ସହସା ବଜ୍ରପାତ ହେଲା । ବକ୍ଷଦେଶରେ ଲକ୍ଷ ଲକ୍ଷ ବୃଶ୍ଚିକ ଦଂଶନ କରି ଚାଲିଲା । ମନେହେଲା, ହୃତ୍‌ପିଣ୍ଡ ଯେପରି ଶତଧା ବିଦୀର୍ଣ୍ଣ ହୋଇଉଠୁଛି । ତା ଆଖିରେ ପୃଥ୍ବୀର ଆଲୋକ ମସୀବର୍ଣ୍ଣ ହୋଇଉଠିଲା । କର୍ଣ୍ଣବିବରରେ କୁହୁଧ୍ୱନି ପେଚକ-ଚିତ୍କାରରେ ପରିଣତ ହେଲା । ଯୁବତୀ ଆଉ ଠିଆହୋଇ ପାରିଲା ନାହିଁ, ଭୂତଳରେ ମୂର୍ଚ୍ଛିତା ହୋଇ ପଡ଼ିଲା ।

ଏପର୍ଯ୍ୟନ୍ତ ପଢ଼ି କିରଣମୟୀ ସହସା ମୁହଁ ଉଠେଇ କହିଲେ—ଦିବାକର, ନିଷ୍ଠୁର ତୁମେ କାହାକୁ ଭଲ ପାଅ । ନା !

—ଦିବାକର ଆଶ୍ଚର୍ଯ୍ୟ ହୋଇ କହିଲା—ମୁଁ !

— ହଁ ହଁ, ତୁମେ । ନିଷ୍ଠୁର ତୁମେ ଲୁଚି ଲୁଚି କାହାକୁ ଭଲ ପାଅ ।

—ଏଇ ଆକସ୍ମିକ ଅପବାଦର ପ୍ରବଳ ଲଜ୍ଜାରେ ଦିବାକର ହତବୁଦ୍ଧି ହୋଇପଡ଼ିଲା । ମୁହୂର୍ତ୍ତିକ ପରେ କୁଣ୍ଠିତ ଓ ବ୍ୟସ୍ତ ହୋଇ ପ୍ରତିବାଦ ଜଣେଇ କହିଲା—ମୁଁ ? ଛି, ରାମ ରାମ, କେବେ ନୁହେଁ ।

—ନା ? ତୁମକୁ କୌଣସି ଦିନ ବୃଶ୍ଚିକ ଦଂଶନ କରିନି ?

—ନା, କୌଣସି ଦିନ ନୁହେଁ ।

କରଣମୟୀ କହିଲେ— ଆଶ୍ଚର୍ଯ୍ୟ ! କାହାକୁ କେବେ ଦଂଶନ କରିବା ବି ଦେଖିନା ?

—ନା, ତା ବି ଦେଖିନି ।

—କରଣମୟୀ ଅଧିକ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ—ହୃଦୟ ଯେ ତୁମର କେଉଁଣସି ଦିନ ଶତଧା ବିଦୀର୍ଣ୍ଣ ହୋଇଛି, ତା ବି ମନେହେଉନି ? କେବେ ଭଲ ପାଇନ, ଶ୍ରେଷ୍ଠ ଗୋଟିଏ ହେଲେ ବୃଷ୍ଟିକ କେବେ ଦେଖିନା, ବଜ୍ରାଘାତର ବ୍ୟଥା ଯେ କଭଳି ତା ବି ଜାଣନି—ତେବେ ବନ୍ଧୁ ସ୍ନେ ଏଭଳି ଭୟାନକ ଜାଣିଲ କମିତି ?

କରଣମୟୀ ଯେ ତାକୁ କୋଉ ଆଡ଼କୁ ଠେଲୁଥିଲେ, ଦିବାକର ନମଶଃ ତାହା ବୁଝି ପାରୁଥିଲା । ମୁହଁକୁ ଲାଲକରି କହିଲା—ତା କ'ଣ ଜଣାଯାଏ ନା ?

କରଣମୟୀ କହିଲେ—କମିତି ବୁଝାଯାଏ ମୁଁ ତ ଜାଣେନା । ଶୁଣି ଶୁଣି ନଚେତ୍ ପରର ବହିରୁ ଚୋରିକରି ଲେଖାଯାଏ········ସେ କଥା ଠିକ୍ ।

ଦିବାକର ଉତ୍ତେଜିତ ହୋଇଉଠିଲା । କହିଲା—ମୁଁ କ'ଣ ଚୋରି କରିଛି ବୋଲି କହିବାକୁ ଚାହଁ ?

କରଣମୟୀ ହସ ହସ ମୁହଁରେ କହିଲେ – ହଁ, ତା ଚାହେଁ । ଚୋରି କରିଛ ତ ନିଶ୍ଚୟ, ତା ଛଡ଼ା ଚୋରି କରି ତାର ସନ୍ଧାନ ପାଇନା; ସେଭଳି ଜଣେ ତୁମେ ନିହାତି ଅନ୍ଧ । ଗରିବ ଦିବାକର, କିନ୍ତୁ ଏକ ତାଆଁଶ, ଆଉ ବଜ୍ରାଘାତ ଛଡ଼ା ହାତରେ ତୁମର ଆଉ କୌଣସି ସମ୍ବଳ ନାହିଁ । ଏଇ ଟିକିକମାତ୍ର ପୁଞ୍ଜି ନେଇ ଏଇ ସମୁଦ୍ର ପାର ହୋଇପାରିବ ? ନଭେଲ୍ ଲେଖା ଏତେ ଶ୍ରେଷ୍ଠ କଥା ନୁହେଁ । ତେବେ ଯଦି ଲମ୍ଫ ଦେଇ ସମୁଦ୍ର ପାରହେବାକୁ ଚାହଁ, ସେଥିରେ ବି ଦେବତାର ଆଶୀର୍ବାଦ ଆବଶ୍ୟକ । ଇମିତି ହୁଏନା ଏହା କହି ସେ ହସିବାକୁ ଲାଗିଲେ ।

ଏଇ ଅପ୍ରତ୍ୟାଶିତ ରୂଢ଼ କଥାରେ ଦିବାକର ସ୍ତମ୍ଭିତ ହୋଇ-ପଡ଼ିଲା । ଏତେଦିନଯାଏଁ ଯାହାଙ୍କ ପାଖରୁ କେବଳ ଭଲ କଥା ଓ ଖଟାମିଠା ପରିହାସ ପାଇଆସିଛି, ତାଙ୍କର ପାଖରେ ଏଇ ତାଚ୍ଛଲ୍ୟ ଓ ଶୁଷ୍କ ବ୍ୟଙ୍ଗର ପ୍ରତ୍ୟୁତ୍ତର ସେ କ'ଣ ଦେବ ଭାବିପାରିଲାନି ।

କିଛି ସମୟ ଚୁପ୍ ରହିବା ପରେ ଆସ୍ତେ ଆସ୍ତେ କହିଲା—ତେବେ ଏତେ ଲୋକ ଯେ ଲେଖୁଛନ୍ତି, ସମସ୍ତେ କ'ଣ ପ୍ରେମ କରିଛନ୍ତି ନା ବିଚ୍ଛେଦର ଜ୍ୱାଳା ସହିଛନ୍ତି ? କେବେ ଜ୍ୱାଳା ସହିବାକୁ ପାଇବି, ସେଇ ଆଶାରେ ବସିରହିଲେ ତ ଦେଖୁଛି ସାହିତ୍ୟଚର୍ଚ୍ଚା ବିଲକୁଲ ଛାଡ଼ି ଦେବାକୁ ପଡ଼ିବ ।

ତାର ଉତ୍ତାପ ଦେଖି କିରଣମୟୀ ହସ ହସ ମୁହଁରେ କହିଲେ—ସ୍ୱାକୁ କ'ଣ ସାହିତ୍ୟଚର୍ଚ୍ଚା କୁହାଯାଏ ? ସ୍ୱାକୁ କୁହାଯାଏ ଅନଧିକାର ଚର୍ଚ୍ଚା । କହୁ କହୁ ତାଙ୍କର ମୁହଁର ହସ ଅକସ୍ମାତ୍ ଅତ୍ୟନ୍ତ କଠିନ ହୋଇଆସିଲା ଏବଂ ତାଙ୍କର ନଜର କଥାଗୁଡ଼ାକ ଯେଭଳି ଅନ୍ତସ୍ଥଳରେ ବାଧି ହୋଇ ରକ୍ତାକ୍ତ ହୋଇଆସିଲା । ମ୍ଲାନ ମୁଖରେ କହିଲେ—ମୋ କଥା ଆଜ ତୁମେ ବୁଝି ବନି ଦିବାକର ! ଆଶୀର୍ବାଦ କରୁଚି, କୌଣସି ଦିନ ଯେପରି ତୁମକୁ ବୁଝିବାକୁ ନ ପଡ଼େ । କିନ୍ତୁ ମୁଁ ତ ତୁମଠୁ ବୟସରେ ବଡ଼ । ଏଇ କଥାଟି ମୋର ଶୁଣ ଦିବାକର, ଯାହା ନିଜେ ବୁଝନି, ତା ପରକୁ ବୁଝାଇବାରେ ମିଥ୍ୟା ଉଦ୍ୟମ କରନି । ଯାହାକୁ ଚିହ୍ନନି, ତାର ଯାହା ତାହା ପରିଚୟ ଅନ୍ୟ ପାଖରେ ଦିଅନି ।

ଦିବାକର କୌଣସି କଥା କହିଲାନି । କିରଣମୟୀ କିଛି ସମୟ ମୌନରହି ଖରଗ୍ରାନ୍ତ କଣ୍ଠଟାକୁ ପରିଷ୍କାର କରି କହିଲେ—ଇଏ ରାଗ ଅଭିମାନର କଥା ନୁହେଁ ଦିବାକର, ଇଏ ଦଇବର କଥା । ଇଏ ଅତି ଦୁର୍ଭାଗ୍ୟର କଥା । ଏ ସଂସାରରେ ଯେଉଁ ଦି'ଚାରିଜଣ ହତଭାଗ୍ୟର ଏଇ ନିଗୂଢ଼ ରହସ୍ୟର ପରିଚୟ ଦେବାର ପ୍ରକୃତ ଅଭିମାନ ଜନ୍ମେ, ଏ ଗୁରୁଭାର ସେଇମାନଙ୍କ ହାତରେ ଛାଡ଼ିଦେଇ ଯଦି ଅନ୍ୟ କାମରେ ମନ ଦିଅ, ସେଥିରେ କାମ ହୁଏତ ହୁଏ, ଅକାମର ପରିମାଣ ମଧ୍ୟ କମେ । ଅନର୍ଥକ ଘରର କୋଣରେ ମୁହଁ ଗୁଞ୍ଜି କରି ବସି ବସି କଳ୍ପନା କରି କୌଣସି ଲାଭ ନାହିଁ । ଏକଥା ତୁମକୁ ମୁଁ ନିଶ୍ଚୟ କହୁଚି । ଗିଲ୍ଟି ଦେଇ ତୁମ ଭଳି ଅନାଡ଼ିକୁ ମଧ୍ୟ ଭୁଲେଇ ଦିଆଯାଇପାରେ । ଯେଉଁ ଲୋକ କିନ୍ତୁ ପୋଡ଼ି ପୋଡ଼ି ସୁନାର ରଙ୍ଗ ଚିହ୍ନିଚି, ଏ ଦୁଃଖ କାରବାରରେ ଯେଉଁ ଲୋକ ଉବେଇ ଟୁବେଇ ହୋଇ ବାହାରକୁ ଆସିପାରିଚି, ତାକୁ କିଭଳି ଫାଙ୍କି ଦେଇପାରିବ ଦିବାକର !

ଦିବାକର ନରମ ହୋଇ କହିଲା—ତେବେ କଳ୍ପନା କ'ଣ ନିରର୍ଥକ ?

କିରଣମୟୀ କହିଲେ— କିଛି ନୁହେଁ, ଏ କଥା କହୁନି । କିନ୍ତୁ ନିଛକ କଳ୍ପନା ଯଦିବା ଗଢ଼ିପାରି, ପ୍ରାଣ ଦେଇପାରନା; ବହି ଯାଇ-ପାରି, ବାଟ ଦେଖେଇପାରନା । ସେହିପରି ଦେଖାଇବାର ଆଲୋକର ସନ୍ଧାନ ତୁମେ ଯେତେଦିନ ନ ପାଇଚ, ଯେତେଦିନ ତୁମର ସୃଷ୍ଟି କେବଳ ତୁମକୁ ଦଂଶନ କରିବ । ଆଉ କାହା ଦେହରେ କୌଣସି ଆଘାତ ଦେଇପାରିବନି ।

ତାଙ୍କର ଶେଷ କଥା ଟିକକରେ ଦିବାକର ମନେ ମନେ ଜଳି ଉଠିଲା । ମୁହଁକୁ ଭାରି କରି ବସିରହିବା ଦେଖି କିରଣମୟୀ ପୁଣି ମୃଦୁ ହସ ହସି କହିଲେ – କିନ୍ତୁ ମୁଁ କ'ଣ ଭାବୁଚି ଜାଣ ଦିବାକର ? ମୁଁ ଭାବୁଚି, ତୁମର ଏଇ 'ସୂର୍ଯ୍ୟୋଦୟ' ମହାଶୟଙ୍କ ଅଶ୍ରୁ ସମ୍ବରଣ ନ କରିପାରିବାର ହେତୁଟା କ'ଣ ? ନଗେନ୍ଦ୍ର ନଳିନୀ ଶେଷରେ ବିଷ ଖାଇ ମଲା ନାଇଁ ତ ?

ନୁହଁ ଦିବାକର କୌଣସି ଜବାବ ଦେଲାନି ।

କିରଣମୟୀ ଗଳ୍ପର ଶେଷ ଆଡ଼କୁ କ୍ଷଣକରେ ଆଖିକୁ ବୁଲେଇ ନେଇ କହିଉଠିଲେ—ଏଇ ଯେ !.........କହି ବଡ଼ ପାଟିରେ ପଢ଼ିବାକୁ ଲାଗିଲେ—'କିନ୍ତୁ ଶ୍ମଶାନକୁ ଇଏ କାହା ଶବ ନେବାକୁ ହେଉଚି ? କାହା ପଛରେ ଏ ଅସଂଖ୍ୟ ଲୋକ ବକ୍ଷରେ କରାଘାତ କରି ଅଗ୍ରସର ହେଉଚନ୍ତି ? କାହା ଶୋକରେ ନୃପତିତୁଲ୍ୟ ଦୁର୍ଦ୍ଧର୍ଷ ପ୍ରତାପୀ ଜମିଦାର ଉନ୍ମତ୍ତବତ୍ ହୋଇଛନ୍ତି ? ଓଃ ! ଇଏ କି କରୁଣ ହୃଦୟବିଦାରକ ଦୃଶ୍ୟ ! ବିଜୟେନ୍ଦ୍ର ସେ ଆଡ଼କୁ ଧୀରେ ଧୀରେ ଅଗ୍ରସର ହେବାକୁ ଲାଗିଲା ।" କିରଣମୟୀ ଆଉ ପଢ଼ିପାରିଲେନି । ହସି ହସି ବହି ଖଣ୍ଡିକ ଦିବାକର ଉପରକୁ ଫୋପାଡ଼ି ଦେଇ କହିଲେ— ବେଳ ଗଲା, ଯାଏ, ତୁମର ଜଳଖିଆ ତିଆରି କରେଁ । ଏହା କହି ହସି ହସି ସେ ଚାଲିଗଲେ ।

ପାଞ୍ଚ ଛଅ ଦିନ ପରେ ଦିନେ ଦି'ପହର ସମୟରେ ଦିବାକର କରଣମୟୀଙ୍କ ଘରେ ପଶି ହଠାତ୍ ଆଶ୍ଚର୍ଯ୍ୟ ହୋଇପଡ଼ି ଦେଖିଲା, ସେ ଅନ୍ତନିବିଷ୍ଟ ଚିତ୍ତରେ ଚୌକି ଉପରେ ବସି ଗୋଟିଏ ହାତଲେଖା ମୂଳ ସଂସ୍କୃତ ରାମାୟଣ ପଢ଼ୁଛନ୍ତି । କରଣମୟୀ ସାଧାରଣ ଗୃହସ୍ଥଘର ଝିଅଙ୍କ ଅପେକ୍ଷା ଯେ ବେଶୀ କିଛି ପଢ଼ାପଢ଼ି କରିଛନ୍ତି ଏବଂ ବଙ୍ଗଳା, ଇଂରାଜୀ ଉଭୟ କିଛି କିଛି ଜାଣନ୍ତି, ଦିବାକର ସେ କଥା ଜାଣେ । କିନ୍ତୁ ତା ବୋଲି ଯେ ହାତ-ଲେଖା ପୋଥି ପଢ଼ିବା ଭଳି ଶକ୍ତି କରଣମୟୀଙ୍କର ଅଛି, ଦିବାକର ସେକଥା କଳ୍ପନା ସୁଦ୍ଧା କରି ପାରି ନ ଥିଲା । ଆଖିପଲକରେ ବିସ୍ମୟ ଓ ଶ୍ରଦ୍ଧାରେ ତା ମୁଣ୍ଡ ସ୍ୱତଃ ତଳକୁ ନଇଁଆସିଲା । ସେ ଆଉ ବେଶୀ ଦୂର ଆଗେଇ ପାରିଲାନି, ସେଇଠି ବସିପଡ଼ିଲା । କରଣମୟୀ ତାଳପତ୍ର ପୋଥିଟା ଯଥା ସ୍ଥାନରେ ରଖିଦେଇ ମୁହଁ ଉଠେଇ କହିଲେ—ହଠାତ୍ ଏଭଳି ଅସମୟରେ ?

ଦିବାକର ଟିକିଏ କୁଣ୍ଠିତ ହୋଇ କହିଲା—ତୁମେ ପଢ଼ୁଥିଲ ବୋଲି ମୁଁ ମନେକରିନି ଭାଉଜ ! ମୁଁ ଭାବୁଥିଲି······

—ଘୁମଉଛ, ନା ? ସେଇଥିପାଇଁ କ'ଣ ଉଠେଇବାକୁ ଆସିଥିଲ ?

ଦିବାକର ଲଜ୍ଜାରେ ନାଲି ହୋଇଉଠିଲା । କହିଲା—ଯେତେବେଳେ ସେତେବେଳେ ଇମିତି ଥଟ୍ଟାକଲେ ଏ ଘର ଛାଡ଼ି ଚାଲିଯିବି କହିଦେଉଛି ଭାଉଜ !

କରଣମୟୀ ହସି ହସି କହିଲେ—ପଳେଇବ ବୋଲି କହିଦେଲେ କ'ଣ କିଏ ପଳେଇଯାଏ ? ଗୋଲକଧନ୍ଦାର ବାଟ ଜାଣିବା ଦରକାର । ଆଚ୍ଛା ବସ, ଗଗନ ! ମୁଁ କ'ଣ ମନେକରେ ଜାଣ, ମୁଁ ମନେକରୁଛି, ତୁମେ ଦୁଆର ଦେଇ ଘରେ ବସି ବସି 'ବିଷର ଛୁରି' ପରେ ଆଉଗୋଟେ କ'ଣ ତିଆରି କରୁଛ । ସେଇଥିପାଇଁ ମୁଁ ମଧ୍ୟ ତୁମକୁ ଡାକେନି । ନଇଲେ ଦି'ପହରେ ଇମିତି ରାମାୟଣ ପଢ଼ିବା କ'ଣ ଭାବିଛ ମତେ ଭଲ ଲାଗେ ?

ଦିବାକର ପଚାରିଲା—ରାମାୟଣକୁ ତୁମେ ବିଶ୍ୱାସ କର ?

କରଣମୟୀ କହିଲେ—ହଁ, କରେ ।

ଦିବାକର ଅତି ବିସ୍ମୟାପନ୍ନ ହୋଇ କହିଲା—କିନ୍ତୁ ବହୁ ଲୋକଙ୍କର ଯୁକ୍ତି ଉପରେ ବିଶ୍ୱାସ ନାହିଁ । ବାସ୍ତବିକ୍ ଯୁକ୍ତି ଭିତରେ ଏତେ ମିଛ, ଅସମ୍ଭବ ଏବଂ ପ୍ରକ୍ଷିପ୍ତ ଘଟଣା ଅଛି ଯେ ସେ କଥା କୌଣସିମତେ ଅସ୍ୱୀକାର କରାଯାଏନା ।

କରଣମୟୀ ଟିକଏ ହସି ପୋଥିଟାକୁ ହାତରେ ଠେଲିଦେଇ କହିଲେ—ଇଏ ତ ମୂଳଗ୍ରନ୍ଥ । କାହିଁ କେଉଁଠି ପ୍ରକ୍ଷିପ୍ତ ଘଟଣାସବୁ ଅଛି, ବାହାର କରି ଦିଅ ତ ଦେଖି !

ଦିବାକର ଅପ୍ରତିଭ ହୋଇ କହିଲା—ମୁଁ କିମିତି ବାହାର କରିବି ଭାଉଜ ! ମୁଁ ତ ସଂସ୍କୃତ ଜାଣେନା ।

କରଣମୟୀ କହିଲେ—ଜାଣନା ବୋଲି ତ ଏଭଳି କଥା ଚଟ୍‌କରି ତୁମ ମୁହଁରୁ ବାହାରିପଡ଼ିଲା । ବିଦ୍ୟା ନ ଥିଲେ ଅବିଦ୍ୟା ଆସି ଜୁଟେ । ତା ଫଳରେ ମଣିଷ ଯାହା ଜାଣେନା, ତାକୁ ଅନ୍ୟକୁ ବେଶୀକରି ଜଣାଇବାକୁ ଚାହେଁ । ଯାହା ବୁଝେନା, ଅନ୍ୟକୁ ତା'ଠୁ ବେଶୀ ବୁଝାଇବାକୁ ଚାହେଁ । ଏଇ ବଦଭ୍ୟାସଟା ଛାଡ଼ିଲ ଆରେ ।

ଦିବାକର ନିତାନ୍ତ କୁଣ୍ଠିତ ହୋଇପଡ଼ିଲା । କଥାଟା କହିବାରେ ତାର ବିଶେଷ କୌଣସି ଉଦ୍ଦେଶ୍ୟ ନ ଥିଲା । ସେ ଭାବିଥିଲା, ଧର୍ମଗ୍ରନ୍ଥରେ ଅଶ୍ରଦ୍ଧା ଓ ଅବିଶ୍ୱାସ ଦେଖାଇଲେ ଭାଉଜ ଖୁସିହେବେ ।

କରଣମୟୀ ଟିକଏ ହସି କହିଲେ—ଲେଖାଲେଖି କିମିତି କରୁଚ ?

ଦିବାକର କହିଲା—ମୁଁ ତ ଆଉ ଲେଖାଲେଖି କରୁନି ।

କରଣମୟୀ ଅତି ବିସ୍ମୟ ଭାବ ଦେଖାଇ କହିଲେ—ଲେଖୁ ନାହଁ, କ'ଣ କହୁଚ ଦିବାକର ? କିନ୍ତୁ ଯାହା ଲେଖିଥିଲ, ସେ ତ ମନ୍ଦ ହୋଇନି । କାହିଁକି ଛାଡ଼ିଲ କହିଲ ଦେଖି ?

ଦିବାକର କହିଲା—ବୃଥା ଲଜ୍ଜା ଦେଉଚ କାହିଁକି ଭାଉଜ ! ମୁଁ ତା ପରେ ବହୁତ ଭାବି ଦେଖିଚି, ତୁମ କଥା ବିଲକୁଲ୍ ସତ୍ୟ । ମୋର ସେ ଲେଖା ପର ଲେଖାରୁ ଚୋରି ନ ହେଉ ପଛକେ, କିନ୍ତୁ ଅନୁକରଣ ।

ପ୍ରକୃତ କଥା, ଭଲ ପାଇବା ନ ପାଇବା ନେଇ ମୁଁ ବା କ'ଣ ଜାଣେ ଯେ ଲେଖିବି । ତେଣୁ ଏବେ ମୁଁ ଆଉ ବହି ଲେଖୁନି, ଖାଲି ଭାବୁଛି ।

—ଭାବ ! ଗତ ଦିନ କ'ଣ ଭାବ କହିଲ ଦେଖି ? ମୋତେ ନୁହେଁ ତ ?

ଦିବାକର କଥାଟାକୁ କାନକୁ ନ ନେଇ କହିଲା—ଅଥଚ ଦେଖୁଛି ନଭେଲ୍ ଲେଖା ଝଞ୍ଜଟରୁ ମୁଁ ନିଜକୁ ଟାଣିନେଇ ପାରୁନି । ସେଇ-କଥା ମନେକରି ତୁମ ପାଖରୁ କିଛିଟା ଶିଖିବି ବୋଲି ତୁମ ପାଖକୁ ଆସିଥିଲି ।

କରୁଣାମୟୀ କହିଲେ—ମୋ ପାଖରୁ କ'ଣ ଶିଖିବ ଦିବାକର ? ଭଲ ପାଇବା ?

ଦିବାକର ପ୍ରବଳ ଲଜ୍ଜା କୌଣସିମତେ ଦମନ କରି ଗମ୍ଭୀରହୋଇ କହିଲା—ସବୁ ଶିଖିବି । ଦରକାର ହେଲେ ତା' ବି ଶିଖିବି ।

କରୁଣାମୟୀ ମୁହଁଟାକୁ କୃତ୍ରିମ ଗାମ୍ଭୀର୍ଯ୍ୟରେ ପରିପୂର୍ଣ୍ଣ କରି କହିଲେ—ସେଥିରେ ବି ଟିକିଏ ଖଟ୍‌କା ଅଛି ଦିବାକର ! ମତେ ଧରି ଭଲପାଇବା ଶିଖିବାକୁ ଗଲେ ଲୋକେ କ'ଣ କହିବେ ?

ଦିବାକର ଚଟ୍‌କରି ଉଠିପଡ଼ି କହିଲା—ଯାଉଛି ଏଥର, ତୁମର ଖାଲି ସେଇ ଥଟ୍ଟା ।

କରୁଣାମୟୀ ଖପ୍‌କରି ଦିବାକର ହାତକୁ ଧରିପକାଇ ମୁରୁକି ହସି କହିଲେ—ସେଥିପାଇଁ ମୁଁ କହୁଚି, ତୁମେ ପରିଷ୍କାର କରି କୁହ, ତୁମେ ଥଟ୍ଟା ବୁଝ ନା ସତରେ ବୁଝ !

ଦିବାକର ହାତଟାକୁ ଟାଣିନେଇ ଦ୍ରୁତପଦରେ ଚାଲିଗଲା ।

କରୁଣାମୟୀ ମନେ ମନେ ହସି ହସି ପୋଥି ବନ୍ଦ କରିଦେଲେ । ଯଥାସ୍ଥାନରେ ରଖିଦେଇ କିଛି ସମୟ ପରେ ଦିବାକର ରହୁଥିବା ଘରେ ଯାଇ ପହଞ୍ଚିଲେ ।

ଦିବାକର ମୁହଁକୁ ଭାରି କରି ଚୁପ୍‌ଚାପ୍ ବସିରହିଥିଲା । କରୁଣାମୟୀ କହିଲେ—ରାଗିରୁଗି ପଳେଇ ଆସିଲ କାହିଁକି କୁହ ତ ?

ଦିବାକର ମୁହଁକୁ ନ ଫେରେଇ କହିଲା— ଏସବୁ ଥଟ୍ଟା ଟାପରା ମତେ ଭଲ ଲାଗେନି ।

କିରଣମୟୀ ଟିକିଏ ଚୁପ୍ ରହି ସ୍ନିଗ୍ଧ କଣ୍ଠରେ କହିଲେ—ତୁମେ ଯେ ମୋର ଦିଅର । ଦିଅର ଭାଉଜଙ୍କ ଭିତରେ ଥଟ୍ଟା ଠାପରା କ'ଣ ନୂଆ କଥା ? ଏସବୁ ନ କଲେ ବଞ୍ଚିବା କିମିତି କହିଲ ?

ଏଇ ସସ୍ନେହ ସ୍ୱରରେ ଦିବାକରର କ୍ରୋଧ ବରଫଠାରୁ ଆହୁରି ଥଣ୍ଡା ହୋଇଆସିଲା । ତାର ମନେହେଲା, ସତେ ତ ! ଲାଜ କରିବାର କୌଣସି କାରଣ ନାହିଁ । ଅନ୍ୟ ଭିତରର ସମ୍ପର୍କ ତ ଥଟ୍ଟା ପରିହାସର ସମ୍ପର୍କ !

ଏକଥା ଆଦୌ ମିଛ ନୁହେଁ । ବଙ୍ଗାଳୀ ସମାଜରେ ଦିଅର ଭାଉଜ ପରିହାସ ସବୁଠାରେ ସ୍ୱୀକୃତ; କିନ୍ତୁ ଏହାର ସୀମାରେଖା ଯେ କେଉଁଠି, ତାହା ସମସ୍ତଙ୍କ ଆଖିରେ ପଡ଼େନ, ପଡ଼ିବାର କୌଣସି ଆବଶ୍ୟକତା ଅଛି ବୋଲି ମଧ୍ୟ କେହି ମନେକରନ୍ତିନ । କିନ୍ତୁ ଏଇ ନିର୍ଦ୍ଦୋଷ ହସ ପରିହାସର ଆଡ଼ଶଯ୍ୟରେ କେତେ ସମୟରେ କେତେ ଯେ ବିଷର ବୀଜ ଝରିପଡ଼ିଥାଏ ଏବଂ ଅଲକ୍ଷ୍ୟରେ, ଅଜ୍ଞାତସାରରେ ତାହା ବିଷ ବୃକ୍ଷରେ ପରିଣତ ହୋଇ ସମସ୍ତ ପାରିବାରିକ ବନ୍ଧନକୁ କଳୁଷିତ କରିପକାଏ, ସେ ହିସାବ ବା କେତେଜଣ ରଖନ୍ତି ?

ଦିବାକର ମୁହଁ ଫେରାଇ ଅଭିମାନ ସ୍ୱରରେ କହିଲା—ମୁଁ ଗଲି ଶିଖିବାକୁ, ଆଉ ତୁମେ ଥଟ୍ଟା ବିଦ୍ରୂପ କରି ମୋତେ ଘରୁ ତଡ଼ିବା ପର୍ଯ୍ୟନ୍ତ ଗଲ ।

କିରଣମୟୀ ବିଛଣାର ଗୋଟିଏ ପାଖରେ ବସି କହିଲେ— କ'ଣ ଶିଖିବାକୁ ଯାଇଥିଲ ?

ଦିବାକର କହିଲା—ଏଇ ତ କହୁଥିଲି, ଗଳ୍ପ ଲେଖିବାର ଝୁଙ୍କ ମୁଁ କଦାପି ଛାଡ଼ିପାରିବି ନାହିଁ । ତେଣୁ ମନେ କରିଥିଲି, ତୁମେ ଶିଖେଇ-ଦେବ, କହିଦେବ, ମୁଁ ଲେଖିଯିବି ।

କିରଣମୟୀ କହିଲେ— ତାହାହେଲେ ସେଇଟା ମୋର ଲେଖିବା ହେବ ।

—ହେଲେ ହେଉ, କିନ୍ତୁ ମୋର ଶିଖିବା ହେବ । ଖାଲି ଜାଣିଲେ ତ ହୁଏନା; ବ୍ୟକ୍ତ କରିବାର କ୍ଷମତା ତ ରହିବା ଦରକାର ।

—ହଁ, ତା ତ ଦରକାର; କିନ୍ତୁ ବ୍ୟକ୍ତ କିଏ କରିବ ଶୁଣେ ?

—ସେକଥା ତ ତୁମେ କହିଦେବ ଭାଉଜ !

କିରଣମୟୀ ପୁଣି ହସି କହିଲେ—ତେବେ ଅନ୍ୟ କାହାରିକୁ ଧର, ଏ କାମ ମୋ ଦେଇ ହିବନି । ଜଳର ମାଛ ଯଦି ବୁଝିବାକୁ ଚାହେଁ ମରୁଭୂମିରେ ମଣିଷ କିମିତି ଶୋଷରେ ମରନ୍ତି, ତାହାହେଲେ ଅନ୍ୟ ଲୋକ ଦରକାର ଦିବାକର ! ମୋ ବିଦ୍ୟା ବୁଦ୍ଧିରେ ତା ହେବନି ।

ଦିବାକର ଟିକିଏ ନୀରବ ରହିବା ପରେ କହିଲା— ମରୁଭୂମିର ତୃଷା ମତେ ଜଣା ନାହିଁ ସତ, କିନ୍ତୁ ମୁଁ ଜଳଚର ନୁହେଁ । ତୁମ ଭଳି ଡାଙ୍ଗା ଉପରେ ଯେତେବେଳେ ମୋର ବାସ, ସେତେବେଳେ ପିପାସାର ଧାରଣାଟା ନିଶ୍ଚୟ ଅଛି । ଥରେ କୁହ ତ ଦେଖି, ବୁଝିପାରୁଛି କି ନା !

କିରଣମୟୀ କିଛି କହିଲେ ନାହିଁ, ଖାଲି ହସ ହସ ମୁହଁରେ ଚାହିଁ ରହିଲେ ।

ଦିବାକର ମିନିଟିଏ ଖଣ୍ଡେ ସ୍ଥିର ରହି କହିଲା—ଏଇ ଯେ ଏତେବେଳଯାଏଁ ରାମାୟଣ ପଢ଼ୁଥିଲ, ମୁଁ ତାରି କଥା କହୁଛି । ସୀତାର ଯେଉଁ ରୂପ-ଅନଳରେ ରାବଣର ସପରିବାର ଧ୍ୱଂସ ହୋଇଗଲା, ନାରୀର ଏଇ ରୂପ ଜିନିଷଟା କ'ଣ ? ଆଉ ଏକା ରାବଣ ତ ନୁହେଁ, ଏଭଳି ଅନେକ ରାବଣଙ୍କ ଇତିହାସ ତ ଅଛି । କବିମାନେ କହନ୍ତି, ରୂପର ପିପାସା । ତୁମେ ବି ସେହିଭଳି ଉପମା ଦେଲ । ମନେକରନି ଭାଉଜ, ମୁଁ ତୁମ ସାଥିରେ ତର୍କ କରୁଛି । ମୁଁ ଜାଣେ, ତୁମ ପାଦତଳେ ବସି ମୁଁ ବହୁ କଥା ଶିଖିପାରେ । ମୁଁ ଖାଲି ଜାଣିବାକୁ ଚାହେଁ, ଯାହାକୁ ପିପାସା ବୋଲି ଲୋକେ କାହିଁକି କହନ୍ତି ? ପାଣି ଦେଖିଲେ ତ ମଣିଷକୁ ଶୋଷ ଦେଖାଏନା, ତେବେ ରୂପ ଦେଖିଲେ ମଣିଷ ତାକୁ ଆକଣ୍ଠ ପାନ କରିବା ପାଇଁ କାହିଁକି ବ୍ୟାକୁଳ ହୋଇଉଠେ ?

କିରଣମୟୀ ମୁହଁକୁ ଟେକି ହଠାତ୍ ହସିଉଠି କହିଲେ—କ'ଣ ତୁମକୁ ସେ ଶୋଷ ହେଉଛି ?

ଏଇ ହସ ଓ ପ୍ରଶ୍ନର ଯଥାର୍ଥ ତାତ୍ପର୍ଯ୍ୟ ଧରି ନ ପାରି ଦିବାକର ହଠାତ୍ ହତବୁଦ୍ଧି ହୋଇପଡ଼ିଲା । କିନ୍ତୁ ପର କ୍ଷଣରେ ନିଜକୁ ସମ୍ଭାଳି ନେଇ କହିଲା—ନିଶ୍ଚୟ ହେଉଛି ।

ତାର ସଂକୁଚିତ ଓ କୁଣ୍ଠିତ ସାହସ ଅନୁକ୍ଷଣ ରହସ୍ୟାଳାପ ଭିତର ଦେଇ ଇତି ମଧ୍ୟରେ ଯେ କେତେଦୂର ଦୃଢ଼ତର ହୋଇ ଆସିଥିଲା, ତାହା

ସେ ନିଜେ ବି ଜାଣି ପାରି ନ ଥିଲା । କହିଲା—ମୋ ଶୋଧ ନ ପାଇଲେ ବଡ଼ ବଡ଼ କବିମାନେ ଶକୁନ୍ତଳା ଲେଖନ୍ତେନି କି ମେଘଦୂତ ଜାତିଆଟ ଲେଖି ପାରନ୍ତେନି । ତେଣୁ ମୁଁ ଜାଣିବାକୁ ଚାହେଁ ଭାଉଜ, ନାରୀର ଏଇ ରୂପ ଜିନିଷଟା କ'ଣ ? ଆଉ ଭଲ ପାଇବାଟା ବା ମହତ ଏଇମିତି ଜଡ଼ି ରହିଥାଏ କାହିଁକି ?

କିରଣମୟୀ ଗମ୍ଭୀର ହୋଇ କହିଲେ—ତୁମ ଅବସ୍ଥା ସେତେ ଖରାପ ନୁହେଁ ।

ଦିବାକର ଦୁଃଖିତ ହୋଇ କହିଲା—ସବୁକଥା ଯଦି ହସରେ ଉଡ଼େଇଦେବ ଭାଉଜ, ତେବେ ଥାଉ ସେସବୁ । ମୁଁ ଆଉ କିଛିହେଲେ ପଚାରିବନି ।

ତାର ମୁହଁକୁ ଦେଖି କିରଣମୟୀ ଦୁଃଖିତ ହେଲା ଭଳି ବାହାନା କରି କହିଲେ—ମୁଁ ନିହାତି ମୂର୍ଖ ଲୋକ ଦିବାକର ! ଏସବୁ ବଡ଼ ବଡ଼ କଥା ମୁଁ କ'ଣ ବା ଜାଣେ କହିଲ ? ତୁଚ୍ଛା ଗପୁଚ !

ଦିବାକର ଆଉ ଦିନକର କଥା ସ୍ମରଣ କଲା, ଯେଉଁଦିନ ବେଦକୁ ତାଚ୍ଛଲ୍ୟ ସହକାରେ ଉଲ୍ଲେଖ କରିବା ଶୁଣି ସେ କାନରେ ଆଙ୍ଗୁଠି ଦେଇ ଦେଇଥିଲା । କହିଲା—ମୁଁ ଜାଣେ ଭାଉଜ, ତୁମେ ଜଣେ ମହା-ପଣ୍ଡିତ । ତୁମେ ଇଚ୍ଛାକଲେ ସବୁ କଥା ବୁଝାଇ ଦେଇପାର ।

କିରଣମୟୀ କହିଲେ—ପାରେ ? ଆଚ୍ଛା, ମୁଁ ଯଦି କହେ ରମଣୀର ରୂପ ଗୋଟାଏ ଭ୍ରମ ମାତ୍ର, ପ୍ରକୃତରେ ଏଇଟା କିଛି ନୁହେଁ, ମରୀଚିକା ଭଳି ମିଥ୍ୟା, କ'ଣ ବିଶ୍ୱାସ କରିବ ?

ଦିବାକର କହିଲା—ନା । ତାର କାରଣ ମରୀଚିକା ମଧ୍ୟ ମିଥ୍ୟା ନୁହେଁ । ସେ ଯାହା ତାହା । ଛାଇକୁ ମଣିଷ କହେ ଧରିବାକୁ ଯିବା ଗୋଟାଏ ଭ୍ରମ । କିନ୍ତୁ ରୂପ ତ ସେଭଳି କୌଣସି ଜିନିଷର ଛାୟା ନୁହେଁ । ସାପକୁ ଦଉଡ଼ି ବୋଲି ଧରିବାକୁ ଗଲେ ସେଇଟା ଭୁଲ । କିନ୍ତୁ ରୂପ ପଛରେ ମଣିଷ ଯେ ରୂପର ତୃଷ୍ଣାରେ ହିଁ ଧାଏଁ ।

କିରଣମୟୀ କହିଲେ—ବର୍ତ୍ତମାନ ତ ଦର୍ପଣରେ ଛାଇ ଦେଖିବାର ଗୋଟାଏ ଉପମା ଦେଲ । ଯେଉଁଦିନ ବୁଝିବ ରୂପଟା ମଣିଷର ଛାୟା, ମଣିଷ ନୁହେଁ—ସେଇଦିନ ତୁମେ ଭଲ ପାଇବାର ସନ୍ଧାନ ପାଇପାରିବ ।

କିନ୍ତୁ ସେ କଥା ଥାଉ । ମୁଁ ପଚାରୁଛି, ରୂପ ପଛରେ ବା ମଣିଷ ଛୁଟିଯାଏ କାହିଁକି ?

—ତା ଜାଣେନା । ଭ୍ରମରକୁ ଛାଡ଼ ଗୋବିନ୍ଦଲାଲ ରୋହିଣୀ ପଛରେ ଛୁଟିଥିଲେ, ଏଇ କଥାଟା ମତେ ବଡ଼ ଅଦ୍ଭୁତ ବୋଧହୁଏ ।

--କିନ୍ତୁ ତାର ଫଳ କ'ଣ ହେଲା ?

—ଫଳ ଯାହାହେଉ ଭାଉଜ, ତାର ବିଚାର କରିବା ଦାୟିତ୍ୱ ମଣିଷ ହାତରେ ନାହିଁ । ରୋହିଣୀଙ୍କ ରୂପ ଥିଲା, ଗୁଣ ନ ଥିଲା । କିନ୍ତୁ ରୂପ ସହିତ ଗୁଣ ଥିଲେ ଗୋବିନ୍ଦଲାଲର କ'ଣ ହୋଇଥାଆନ୍ତା, କୁହାଯାଇ ପାରେନା ।

କିରଣମୟୀ ଚୁପ ରହିଲେ । ଏଇ ବି.ଏ. ଫେଲ ପିଲାଟି ଉପରେ ମନେ ମନେ ତାଙ୍କର ଶ୍ରଦ୍ଧା ନ ଥିଲା । ଖାଲି ଫେଲ କରିଥିବା ଯୋଗୁଁ ନୁହେଁ, ପାଶ କରିଥିଲେ ମଧ୍ୟ ସେ ମନେକରିଥାଆନ୍ତେ, ପିଲାଟା ଘୋଷି ଘୋଷି ପାଶ କରିପାରେ, ଆଉ କିଛି କରିପାରେନା । କିନ୍ତୁ ଦରକାର ହେଲେ ଏଇଭଳି ପିଲାଙ୍କର ଶିକ୍ଷିତ ମନ ଯେ ତର୍କ ବିତର୍କ କରିବାକୁ ସକ୍ଷମ, ଏ ଧାରଣା ତାଙ୍କର ନ ଥିଲା । କହିଲେ—ରୂପ ଯେ ଛୋଟ୍ଟା ନୁହେଁ, ଏକଥା ଏତେ ନିଃସଂଶୟରେ ସ୍ଥିର କରି ରଖନ । ଯାହାହେଉ ଦିବାକର, ଏସବୁ କଥା ନିଜେ ଭାବି କହୁଛ ନା କାହାର ଭାବନା କଥା ଶୁଣି ଶୁଣି ଏଠି ଆସି କହୁଛ ?

ଦିବାକର ମୁରୁକି ହସି କହିଲା—ନା ଭାଉଜ, ଇଏ ମୋର ନିଜକଥା । ପିଲାଦିନୁଁ ଭଗବାନ ମତେ ଅନେକ କଥା ଭାବିବାର ସୁବିଧା ଦେଇଛନ୍ତି ।

କିରଣମୟୀ ଟିକିଏ ମୌନ ରହି କହିଲେ—ଏତେ ସୁବିଧାରେ ବି ରୂପର ତତ୍ତ୍ୱ ଖୋଜି ପାଇଲନି । କିନ୍ତୁ ଆଶ୍ଚର୍ଯ୍ୟର କଥା ଏଇ ଯେ ଦିବାକର, ଦିନେ ଆଉ ଜଣେ ମତେ ଏଇକଥା ପଚାରିଥିଲା, ଆଜି ତୁମେ ସେଇକଥା ପଚାରୁଛ । ମୁଁ ଭାବୁଛି, ବୋଧହୁଏ ମୋ ରୂପ ଦେଖି ତୁମମାନଙ୍କର ଏଇ ପ୍ରଶ୍ନ ମନରେ ଉଠୁଛି ।

ହଠାତ୍ ଦିବାକର ଚମକି ଉଠିଲା । ଲଜ୍ଜାରେ ତା ମୁଣ୍ଡଟା କଟିଗଲା ଭଳି ଲାଗିଲା । ସେ ମୁଣ୍ଡକୁ ନୁଆଇଁ ଦେଇ କହିଲା—ମାଫ୍ କର ଭାଉଜ, ମୁଁ ଆଦୌ ଜାଣି ନ ଥିଲି ।

କରୁଣାମୟୀ ମୃଦୁ ହସ ମୁହଁରେ କହିଲେ—ଥରେ ଅଧେ ନୁହେଁ, ଶହେଥର ତୁମକୁ ମାଫ କରୁଛି । କିଛି ସମୟ ନୀରବରେ ରହି ସେ ଯେଭଳି ନିଜର ଗୋଟାଏ ଆଗନ୍ତୁକ ଦ୍ୱିଧାକୁ ସବଳେ ଠେଲିଦେଲେ । ଅତୁଳ ସୁନ୍ଦର ଗ୍ରୀବାକୁ ଈଷତ୍ ଉନ୍ନତ କରି କିଛି ଯେମିତି ଗୋଟାଏ ମୃଦୁ କରୁଣ ସ୍ୱରରେ କହିବାକୁ ଲାଗିଲେ—ଦିବାକର, ଆଜି ଯେତେକଥା ମତେ ପଚାରୁଛ, ତାର ସତ ସତ ଉତ୍ତର ଯଦି ଦେବାକୁ ଯାଏ, କଥାଗୁଡ଼ାକ ମୋ ଦାନ୍ତ ଭଲ ଶୁଭିବ । କିନ୍ତୁ ତୁମେ ସେକଥା ଭୁଲିଯିବାକୁ ପଡ଼ିବ, ନଚେତ୍ ନିଜ ଭୁଲରେ ମତେ ଭୁଲ ବୁଝି ସବୁ ଗୋଳମାଳ କରି ପକାଇବ । ମୋ କଥା ବୁଝିପାରୁଛ ତ ଦିବାକର ?

ଦିବାକର ନୀରବରେ ମୁଣ୍ଡ ହଲାଇଲା ।

କରୁଣାମୟୀ କିଛି ସମୟ ସ୍ଥିର ରହିବା ପରେ କହିବାକୁ ଲାଗିଲେ—ମୋ ଏ ଦେହର ରୂପ କେବଳ ତୁମ ପୁରୁଷମାନଙ୍କ ଆଖିରେ ନୁହେଁ, ମୋ ନିଜ ଆଖିରେ ବି ଗୋଟାଏ ଅଦ୍ଭୁତ ଜିନିଷ । ତେଣୁ ଏ ବିଷୟରେ ମୁଁ ବହୁତ ଭାବିଛି । ଯାହା ଭାବିଛି ହୁଏତ ତା ଠିକ୍ ବା ଭୁଲ । କିନ୍ତୁ ସେ ଯାହାହେଉ, ଏ ମନୋଭାବ ଗୋଟିଏ ଝିଅରକୁ କହିବାରେ ଯେତେବେଳେ ଲଜ୍ଜାବୋଧ କରିନି, ସେତେବେଳେ ତୁମକୁ କହିବାକୁ ପଛେଇବିନି । ନିଜକୁ ଦେଖି ମୋର ମନେହୁଏ କ'ଣ ଜାଣ ? ମନେହୁଏ ସନ୍ତାନଧାରଣ ଲାଗି ଯେଉଁ ସମସ୍ତ ଲକ୍ଷଣ ସବୁଠାରୁ ଅଧିକ ଉପଯୋଗୀ, ତାହା ହିଁ ନାରୀର ରୂପ । ଜଗତର ସମସ୍ତ ସାହିତ୍ୟରେ, କାବ୍ୟ କବିତାରେ ଏଇ ବର୍ଣ୍ଣନା, ଏଇ ନାରୀର ରୂପବର୍ଣ୍ଣନା ।

ଦିବାକର ନିସ୍ତବ୍ଧ ଭାବରେ ଶୁଣିରହିଲା । କରୁଣାମୟୀ ତାର ସ୍ତବ୍ଧ ମୁଖ ଉପରେ ନବୀନ ଯୌବନର ଗୋଟାଏ ସଦ୍ୟ ଜାଗ୍ରତ କ୍ଷୁଧାର ମୂର୍ତ୍ତି ଅକସ୍ମାତ ଅନୁଭବ କରି ସଂକୋଚ ଭାବରେ ଅଟକିଗଲେ । କିନ୍ତୁ ପରକ୍ଷଣରେ ତାକୁ ସମ୍ପୂର୍ଣ୍ଣ ଅତିକ୍ରମ କରି କହିଲେ—ବାସ୍ତବିକ ଦିବାକର, ଏଇଠି ରୂପର ଗୋଟାଏ କୂଳ କିନାରା ମିଳେ । ଏଇଥିଲାଗି ନାରୀର ବାଲ୍ୟରୂପ ଯଦିଓ ମଣିଷକୁ ଆକୃଷ୍ଟ କରେ, ତାକୁ ମାତାଲ କରେନା । ଆଉ ଯେଉଁଦିନ ସେ ସନ୍ତାନଧାରଣର ବୟସ ପାର ହୋଇଯାଏ, ସେତେବେଳେ ଠିକ୍ ସେୟା । ଭାବିଦେଖ ଦିବାକର, ଖାଲି ନାରୀ ନୁହେଁ, ପୁରୁଷର ବି ଏଇ

ଦଶା । ନେମସର୍ଜନ ନେ ସୃଷ୍ଟି କରିପାରେ. ସେଇ ସର୍ଜନ ହିଁ ତାର ରୂପ । ଏଇ ସୃଷ୍ଟି କରିବାର କ୍ଷମତା ହିଁ ତାର ରୂପ, ଯୌବନ । ଏଇ ସୃଷ୍ଟି କରିବାର ଇଚ୍ଛା ହିଁ ତାର ପ୍ରେମ ।

ଦିବାକର ଧୀରେ ଧୀରେ କହିଲା—କିନ୍ତୁ···

କିରଣମୟୀ ବାଧାଦେଇ କହିଉଠିଲେ—ନା, କିନ୍ତୁର କୌଣସି ସ୍ଥାନ ଏଥି ଭିତରେ ନାହିଁ । ବିଶ୍ୱ ଚରାଚର ଯେଉଁ ଆଡ଼କୁ ଚାହିଁ ଦେଖ, ଏଇ ଗୋଟିଏ କଥା ଦିବାକର ! ସୃଷ୍ଟିତତ୍ତ୍ୱର ମୂଳକଥା ତୁମର ସୃଷ୍ଟି କର୍ତ୍ତା ଲାଗି ଥାଉ । କାମ ଆଡ଼କୁ ଥରେ ଚାହିଁ ଦେଖ ଦେଖିବାକୁ ପାଇବ, ଏହାର ପ୍ରତି ଅଣୁ ପରମାଣୁ ନିରନ୍ତର ନିଜକୁ ନୂତନ କରି ସୃଷ୍ଟି କରିବାକୁ ଚାହେଁ । କିଭଳି ସେ ନିଜକୁ ବିକାଶ କରିବ, କୁଆଡ଼େ ଗଲେ, କାହା ସହିତ ମିଶିଲେ କ'ଣ କଲେ ସେ ଆହୁରି ସବଳ, ଆହୁରି ଉନ୍ନତ ହେବ, ଏଇ ତାର ଅକ୍ଳାନ୍ତ ଉଦ୍ୟମ । ଦୃଶ୍ୟ, ଅଦୃଶ୍ୟ, ଅନ୍ତର, ବାହାରେ ପ୍ରକୃତିର ଏଇ ନିତ୍ୟ ପରିବର୍ତ୍ତନ । ଏଇଥିଲାଗି ନାରୀ ଭିତରେ ପୁରୁଷ ଯେତେବେଳେ ଏଭଳି କିଛି ଦେଖିବାକୁ ପାଏ, ସେତେବେଳେ ଜ୍ଞାତରେ ହେଉ ବା ଅଜ୍ଞାତରେ ହେଉ, ଯେଉଁଠି ସେ ନିଜକୁ ଆହୁରି ସାର୍ଥକ, ଆହୁରି ସୁନ୍ଦର କରି ଗଢ଼ିପାରିବ, ସେଇଠି ସେହି ଲୋଭକୁ ସେ କୌଣସିମତେ ରୋକି ପାରେନା ।

ଦିବାକର ଆସ୍ତେ ଆସ୍ତେ କହିଲା—ତାହେଲେ ତ ଘରଆଡ଼େ ହଟୋକଟା ହୋଇଯାଆନ୍ତା ।

କିରଣମୟୀ କହିଲେ—ମଝି ମଝିରେ ହୁଏ, ନ ହୁଏ ଇମିତି କିଛି ନୁହେଁ । କିନ୍ତୁ ମଣିଷର ଲୋଭ ଦମନ କରିବା ଭଳି ଶକ୍ତି, ସ୍ୱାର୍ଥତ୍ୟାଗର ଶକ୍ତି, ସମାଜର ଶାସନ ଶକ୍ତି, ଏତେଗୁଡ଼ାଏ ବିରୋଧ ଶକ୍ତି ଅଛି ବୋଲି ଚତୁର୍ଦ୍ଦିଗରେ ଏକା ସାଙ୍ଗରେ ନିଆଁ ଲାଗିଯାଇ ପାରେନା । ଅଥଚ ଏଇ ସାମାଜିକ ମଣିଷ ଏଭଳି ଦିନ ଥିଲା, ଯେତେବେଳେ ସେ ପ୍ରକୃତି ଛଡ଼ା ଆଉ କାହାର ଶାସନ ମାନୁ ନ ଥିଲା । ରୂପର ଆକର୍ଷଣରେ ତାର ସେହି ଦୁର୍ଦ୍ଦାନ୍ତ ପ୍ରବୃତ୍ତିର ତାଡ଼ନା ହିଁ ତାର ପ୍ରେମ । ଏମିତି ଅବାକ୍ ହୋଇପଡ଼ନା ଦିବାକର ! ଏଥିକୁ ସୌଖିନ ଲୁଗାପଟା ପିନ୍ଧେଇ ସଜାସଜି କରି ଦିଆ କରିପାରିଲେ ଉପନ୍ୟାସର "ନିଖୁଣ ଭଲ ପାଇବା" ତିଆରି ହୋଇପାରେ ।

ଦିବାକର ସ୍ତମ୍ଭିତ ହୋଇ କହିଲା—ପାଶବିକ ପ୍ରବୃତ୍ତିର ତାଡ଼ନା ଆଉ ସ୍ୱର୍ଗୀୟ ପ୍ରେମର ଆକର୍ଷଣ—ସେ ତ ଆକାଶ ପାତାଳ ପ୍ରଭେଦ । ଯେଉଁ ଲୋକ ପଶୁପ୍ରବୃତ୍ତିରେ ପରିପୂର୍ଣ୍ଣ, ସେ କ୍ଷୁଦ୍ର ନିର୍ମଳ ପବିତ୍ର ପ୍ରଣୟର କ'ଣ ବା ମର୍ଯ୍ୟାଦା ବୁଝେ ? ଏସବୁ ସେ ପାଇବ କେଉଁଠୁ ? ତୁମେ କାହା ସହିତ କାହାର ତୁଳନା କରୁଚ ଭାଉଜ !

—ତୁଳନା କରୁନି ଦିବାକର ! ଦୁଇଟାଯାକ ଯେ ଗୋଟାଏ ଜିନିଷ, ସେଇ କଥା ହିଁ କହୁଚି । ଆଚ୍ଛା ଦିବାକର, ଇଞ୍ଜିନର ଯେଉଁ ଜିନିଷଟା ତାକୁ ଆଗକୁ ଆଗକୁ ଠେଲେ, ସେଇ ଜିନିଷଟା ହିଁ ତାକୁ ପଛକୁ ଠେଲିପାରେ, ଅନ୍ୟ କେହି ପାରେନା । ଯିଏ ଭଲ ପାଇପାରେ, ସେଇ କେବଳ ସୁନ୍ଦର, ଅସୁନ୍ଦର ସବୁ ଭଲ ପାଇବାରେ ନିଜକୁ ଡୁବେଇ ଦେଇ-ପାରେ, ଅନ୍ୟ କେହି ପାରେନା । ତୁମେ ଗୋବିନ୍ଦଲାଲ କଥା କହୁଥିଲ । ତାର ଯେଉଁ ବସ୍ତୁଟା ଭ୍ରମରକୁ ଭଲ ପାଉଥିଲା, ଠିକ୍ ସେଇ ବସ୍ତୁଟା ହିଁ ତାକୁ ରୋହିଣୀ ଆଡ଼କୁ ଟାଣିନେଇ ଯାଇଥିଲା; କିନ୍ତୁ ହରଲାଲ ତା ପାରିଲାନି । ସେ ସାଂସାରିକ ଭଲ ମନ୍ଦ, କର୍ତ୍ତବ୍ୟ ଅକର୍ତ୍ତବ୍ୟ, ସୁବିଧା ଅସୁବିଧା ଚିନ୍ତାକରି ଆତ୍ମସଂଯମ କରିଥିଲା; କିନ୍ତୁ ଗୋବିନ୍ଦଲାଲ ପାରିଲା ନାହିଁ । ଅଥଚ ହରଲାଲ ଲୋକଟା ଗୋବିନ୍ଦଲାଲଠୁ ଭଲ ନ ଥିଲା, ବହୁତ ମନ୍ଦ ଥିଲା । ତେବେ ସେ ଯାହାକୁ ଘୃଣାରେ ତ୍ୟାଗ କରିଥିଲା, ଆଉ ଜଣେ ତାକୁ ମୁଣ୍ଡ ଉପରକୁ ନେଇଗଲା ।

ନେବାଟା ନାନା କାରଣରୁ ବ୍ୟର୍ଥ, ନିଷ୍ଫଳ ହୋଇପାରେ; କିନ୍ତୁ ସମସ୍ତ ଦୁଃଖ, ଗ୍ଳାନି, ଲଜ୍ଜାର ଅନ୍ତରାଳରୁ ଗୋଟାଏ ବୃହତ୍ତର ସାର୍ଥକତାର ଇଙ୍ଗିତ ଯେ ଜଣକୁ ଅନ୍ୟ ଏକ ଜଣଙ୍କ ପାଖକୁ ଟାଣିନେଇ ଯାଏନି, ଏଭଳି କଥା ତ ଜୋରକରି କେହି କହିପାରେନା ଦିବାକର !

ଦିବାକର କ୍ଷୋଭ ସହକାରେ କହିଲା—ତୁମର ସବୁ କଥା ଯଦିଓ ମୁଁ ବୁଝିପାରିନି, କିନ୍ତୁ ପବିତ୍ର ପ୍ରଣୟ ଯେ ସ୍ୱର୍ଗୀୟ ନୁହେଁ, ଏଭଳି ଅଦ୍ଭୁତ କଥା ମୁଁ କୌଣସିମତେ ମାନିପାରିବିନି ଭାଉଜ !

କିରଣମୟୀ କହିଲେ— ତୁମର ମାନିବା ନ ମାନିବା ଉପରେ ତ କୌଣସି କଥା ନିର୍ଭର କରେନା ଦିବାକର ! ଆମର ଏହି ଦେହଟି କି ନିତାନ୍ତ ନଶ୍ୱର, ଏକାବେଳକେ ପାର୍ଥିବ ବସ୍ତୁ । କିନ୍ତୁ ସେଥିରେ ତ

କୌଣସି ଦୁଃଖର କାରଣ ଦେଖିବାକୁ ପାଉନା । ଶିଶୁ ଭୂମିଷ୍ଠ ହେବା ମରଠାରୁ ହିଁ ଯେତେଦିନ ତାର ସେଇ ଜଡ଼ ଦେହଟା ଭିତରେ ସୃଷ୍ଟି ଶକ୍ତି ସଞ୍ଚୟ କରି ନ ଥାଏ, ସେତେଦିନଯାଏଁ ତାର ପ୍ରେମର ସିଂହଦ୍ୱାର ତା ଆଗରେ ବନ୍ଦ ରହିଥାଏ । ସେ ସିଂହଦ୍ୱାର ସେ ପ୍ରବୃତ୍ତି ତାଡ଼ନାରେ ହିଁ ଖୋଲିଯାଏ । ତା ପୂର୍ବରୁ ସେ ତା ବାପ ମା, ଭାଇ ଭଉଣୀଙ୍କୁ ଭଲ ପାଏ । ବନ୍ଧୁ ବାନ୍ଧବଙ୍କୁ ବି ଭଲ ପାଏ । କିନ୍ତୁ ତାର ପଞ୍ଚଭୂତ ଦେହଟା ବଡ଼ ନ ହେବା ପର୍ଯ୍ୟନ୍ତ ତୁମର ସ୍ୱର୍ଗୀୟ ପ୍ରେମର କୌଣସି ସଂବାଦ ରଖିବାର ଅଧିକାର ଜନ୍ମେନା । ସେତେଦିନ ପର୍ଯ୍ୟନ୍ତ ସ୍ୱର୍ଗୀୟ ଆକର୍ଷଣ ତାକୁ ଦିନେ ବି ଇଆଡ଼େ ସିଆଡ଼େ କରିପାରେନା । ପୃଥିବୀର ଆକର୍ଷଣ ତ ଚିରଦିନ ରହିଛି । କିନ୍ତୁ ସେ ଆକର୍ଷଣରେ ଆତ୍ମସମର୍ପଣ କରିବାକୁ ଗଛର ପାଚିଲା ଫଳଟି ହିଁ ପାରେ, କଞ୍ଚା ପାରେନା । ତାର ନିଶ୍ୱାସ ପ୍ରଶ୍ୱାସ ପୃଥିବୀର ରସରେ ହିଁ ଭିଆରି ହୁଏ, ସ୍ୱର୍ଗର ରସରେ ହୁଏନା । ସୁନ୍ଦର ଫୁଲ ରୂପ ଦିଏ, ଗନ୍ଧ ଦିଏ, ମଧୁ ଦିଏ, ମହୁମାଛି ଟାଣି ଆଣି ଫଳରେ ପରିଣତ ହୁଏ । ସେଇ ଫଳ ପୁଣି ମାଟିରେ ପଡ଼ି ଅଙ୍କୁରରେ ପରିଣତ ହୁଏ । ଏଇ ତାର ପ୍ରବୃତ୍ତି, ଏଇ ତାର ସ୍ୱର୍ଗୀୟ ପ୍ରେମ । ବିଶ୍ୱବ୍ୟାପକ ଏଇ ଯେଉଁ ଅବିଚ୍ଛିନ୍ନ ସୃଷ୍ଟି ଓ ରୂପର ଖେଳ ଚାଲିଛି, ସ୍ୱର୍ଗୀୟ ନୁହେଁ ବୋଲି ଦୁଃଖ କରିବା ବା ଲଜ୍ଜା ପାଇବାର ତ କୌଣସି କାରଣ ନାହିଁ ।

ଟିକିଏ ରହିଯିବା ପରେ କରୁଣାମୟୀ କହିଲେ—ଅବଶ୍ୟ ଅନ୍ଧକାରରେ ଭୂତ ଭୟରେ ଆଖିବୁଜି ଯଦି ଆରାମ ପାଅ, ତାହାହେଲେ ମୁଁ ଆଖିଖୋଲି ଚାହିଁବାକୁ କହୁନି; କିନ୍ତୁ ପ୍ରବୃତ୍ତିର ତାଡ଼ନା ଚାହିଁନ ଅଥଚ ସ୍ୱର୍ଗୀୟ ପ୍ରେମ ଉପଭୋଗ କରିବ ! ପ୍ରେମର ବ୍ୟବସାୟ ଏତେ ସହଜ ନୁହେଁ ।

ଦିବାକର ପ୍ରଶ୍ନ କଲା—ପୃଥିବୀରେ ତେବେ ପବିତ୍ର ପ୍ରେମ ଓ ଘୃଣିତ ପ୍ରେମ ଏ ଦୁଇଟା କଥା ଅଛି କି ନା ?

କରୁଣାମୟୀ ହସିଉଠି କହିଲେ— ତୁମର ତର୍କ ଠିକ୍ ସଜ୍ଜଣଙ୍କ ଭଳି ହେଲା । ସଂସାରରେ ଏ ଦୁଇଟା କଥା ରହିବା କଥା ବୋଲି ତ ରହିଛି । ମଣିଷର ପ୍ରବୃତ୍ତି ଜିନିଷଟା ଯୁକ୍ତ ନୁହେଁ ବୋଲି ଅଛି । ଯାହାକୁ ଘୃଣିତ କହୁଚ, ସେଇଟା ପ୍ରକୃତରେ ସୁବୁଦ୍ଧିର ଅଭାବ; ଅର୍ଥାତ୍ ଯାହାକୁ

ଭଲପାଇବା ଉଚିତ ନ ଥିଲା, ତାକୁ ହିଁ ଭଲପାଇବା । ଅସାବଧାନରେ ଗଛରୁ ପଡ଼ି ହାତଗୋଡ଼ ଭାଙ୍ଗିବାର ଅପରାଧକୁ ମାଧ୍ୟାକର୍ଷଣ ଉପରେ ଲଦିଦେବା ଯାହା, ପ୍ରେମକୁ କୁତ୍ସିତ, ଘୃଣିତ ବୋଲି କହିବା ତାହା । ବୁଝିଲ ଦିବାକର, ଏଭଳି ଭାବେ ସଂସାରରେ ଜଣକର ଅପରାଧ ଅନ୍ୟ ଜଣକ ମୁଣ୍ଡରେ ଚାପି ଦିଆଯାଏ । ଏହା କହି ସହସା ରୂପ୍‌ଭାବେ କରୁଣାମୟୀ ନିଜ ଅନ୍ତର ଭିତରେ କ'ଣ ଯେମିତି ଖୋଜିଲେଇ ଦେଖିବାରେ ଲାଗିଲେ । ପର-କ୍ଷଣରେ କହିଲେ—ତୁମକୁ ପୂର୍ବରୁ କହିଚି, ଜୀବନରେ ପ୍ରତି ଅଣୁ ପରମାଣୁ, ପ୍ରତି ରକ୍ତକଣା ନିଜକୁ ଉତ୍କୃଷ୍ଟତର ପରିଣତି ମଧ୍ୟରେ ବିକାଶ କରିବାର ଲୋଭ କୌଣସିମତେ ସମ୍ବରଣ କରିପାରେନା । ଯେଉଁ ଦେହରେ ତାର ଜନ୍ମ, ସେଇ ଦେହ ଭିତରେ ଯେତେବେଳେ ପରିଣତିର ନିର୍ଦ୍ଦିଷ୍ଟ ସୀମା ଶେଷ ହୋଇଯାଏ, ସେତେବେଳେ ତାର ଯୌବନ ଫୁଟିଉଠେ । ତା ପରେ ସେ ଅନ୍ୟ ଦେହର ସଂଯୋଗରେ ଅଧିକତର ସାର୍ଥକ ହେବା-ଲାଗି ଶିରା ଉପଶିରାରେ ଯେଉଁ ତାଣ୍ଡବ ସୃଷ୍ଟି କରେ, ତାକୁ ହିଁ ପଣ୍ଡିତମାନଙ୍କର ମତଶାସ୍ତ୍ରରେ ପାଶବିକ ବୋଲି ଗ୍ଲାନି କରାହୁଏ । ତାତ୍ପର୍ଯ୍ୟ ନ ବୁଝିପାରି ହତବୁଦ୍ଧି ବଙ୍କଦଳ ଏହାକୁ ଘୃଣିତ କହିଥାଆନ୍ତି, ଗୀଭତ୍ସ ବୋଲି ସାନ୍ତ୍ୱନା ଲଭ କରନ୍ତି । କିନ୍ତୁ ଆଜି ତୁମକୁ ମୁଁ ନିଶ୍ଚୟ କହୁଚି ଦିବାକର, ଏତେବଡ଼ ଆକର୍ଷଣ କୌଣସିମତେ ଏତେ ଶ୍ରେଷ୍ଠ ହୋଇପାରେନା । ଏହା ସତ୍ୟ, ସୁବର୍ଣ୍ଣ ଭଳି ସତ୍ୟ, ବ୍ରହ୍ମାଣ୍ଡର ଆକର୍ଷଣ ଭଳି ସତ୍ୟ । କୌଣସି ପ୍ରେମ କୌଣସି ଦିନ ଘୃଣାର ବସ୍ତୁ ହୋଇପାରେନା ।

ଏ କଥା ଶୁଣି ଯଥାର୍ଥରେ ଦିବାକର ବିହ୍ୱଳ ହୋଇଉଠିଲା । ତାର ବୁକୁ ଭିତରଟା କମିତି ଶିହରି ଉଠିଲା । ଏଭଳି ଉତ୍ତ୍ୟକ୍ତ, ତୀବ୍ର କଣ୍ଠସ୍ୱର ତ ସେ କୌଣସି ଦିନ ଶୁଣିନି । ଆଖିରେ ଏଭଳି ଉତ୍କଟ ଭିକ୍ଷାଣୀ ବ ସେ କୌଣସି ଦିନ ଲକ୍ଷ୍ୟ କରିନି ।

ଭୟରେ ଡାକିଲା—ଭଉଜ !

—କାହିଁକି ଦିବାକର ?

—ମୋ ଭଳି ନିର୍ବୋଧକୁ ଉପଦେଶ ଦେବାକୁ ତୁମର ବୋଧହୁଏ ଧୈର୍ଯ୍ୟ ରହେନା ।

— ସିଏ କ'ଣ ଦିବାକର, ମତେ ତ ବେଶ ଭଲ ଲାଗୁଚି ।

ଦିବାକର ଟିକିଏ ହସିବାର ପ୍ରୟାସ କରି କହିଲା—ଭଲ ଲାଗିଲେ ତୁମର ମୁହଁ ଦେଇ ଏଭଳି ଓଲଟପାଲଟ କଥା ବାହାର ହେବ କାହିଁକି ? ଏଇ ତ ତୁମେ ନିଜେ କହିଲ, ଯାହାକୁ ଭଲ ପାଇବା ଉଚିତ ନ ଥିଲା, ତାକୁଇ ଭଲ ପାଇବାର ନାମ କୁତ୍ସିତ ପ୍ରେମ । ପୁଣି କହୁଚ, ଏହାର ତାତ୍ପର୍ଯ୍ୟ ବୁଝି ନ ପାରି ବଙ୍କ ପଣ୍ଡିତମାନେ ଏହାକୁ ମନ୍ଦ ଆଖ୍ୟା ଦେଇ-ଥାଆନ୍ତି । ତେବେ କେଉଁଟା ସତ ?

କରୁଣାମୟୀ ସଙ୍ଗେ ସଙ୍ଗେ କହିଲେ—ଦୁଇଟାଯାକ ସତ ।

ବିଧବା ରୋହିଣୀକୁ ଭଲ ପାଇବା କ'ଣ ଗୋବିନ୍ଦଲାଲ ପକ୍ଷରେ ଭଲ କାମ ? ମନ୍ଦ ନୁହେଁ ?

—ଭଲ ପାଇବା କ'ଣ ଇମିତି ଗୋଟାଏ କଥା ଯେ ତାର ପୁଣି ଗୋଟାଏ ଭଲ ମନ୍ଦ ବିଚାର ! ସ୍ତ୍ରୀକୁ ଛାଡ଼ିଦେଇ ଚାଲିଯିବାଟା ତ ତାର ମନ୍ଦ କାମ ହୋଇଥିଲା ।

ଦିବାକର ପୁଣି ଥରେ ଉତ୍ତେଜିତ ହୋଇଉଠି କହିଲା—ଛାଡ଼ି ଚାଲିଯିବା ତ ନିଶ୍ଚୟ ମନ୍ଦ କାମ, ଥରେ ନୁହେଁ ସହସ୍ରବାର ମନ୍ଦ । କିନ୍ତୁ ସ୍ତ୍ରୀକୁ ଛାଡ଼ି ଅନ୍ୟ ଜଣକୁ ମନେ ମନେ ଭଲ ପାଇବା କ'ଣ ନିତାନ୍ତ ଅନ୍ୟାୟ ନୁହେଁ ?

ତାର ଉତ୍ତେଜନା ଦେଖି କରୁଣାମୟୀ ହସିଉଠି କହିଲେ—ଦିବାକର, ନିଜକୁ ଏଭଳି ଶକ୍ତିବାନ ବୋଲି ମନେକରନି । ଗର୍ବ ପରିମାଣ ଟିକିଏ କମ୍ ରହିବା ଭଲ । ତୁମେ କ'ଣ ଭାବ, ମଣିଷ ଇଚ୍ଛା-କଲେ ଯାହା ଇଚ୍ଛା ତାହା କରି ଦେଇପାରେ । ଗୋବିନ୍ଦଲାଲ ଇଚ୍ଛା କରିଥିଲେ ରୋହିଣୀକୁ ଭଲ ପାଇପାରିଥାଆନ୍ତା ବା ଭଲ ପାଇପାରି ନ ଥାଆନ୍ତା, ଇଏ କ'ଣ ତୁମ ଧାରଣା ?

—ନା, ତାହା ମୋ ଧାରଣା ନୁହେଁ । ଇଚ୍ଛା ସହିତ ଚେଷ୍ଟା ରହିବା ଆବଶ୍ୟକ ।

କରୁଣାମୟୀ କହିଲେ—ପୁଣି ତା ସହିତ କ୍ଷମତା କିମ୍ବା ଅକ୍ଷମତା ରହିବା ଉଚିତ । ଖାଲି ତ ଚେଷ୍ଟାକଲେ ହୋଇଯାଏନା । ଏ ଘରକଣରେ ବସି ଯଦି ତୁମ ମୁଣ୍ଡରେ ଗଛ ଗଜୁରିଉଠେ, ତେବେ ତୁମେ କାଳିଦାସ ଭଳି ଆଉ ଗୋଟାଏ ମେଘଦୂତ କ'ଣ ଲେଖିଦେଇପାରିବ ? ମେଘ

ଦେଖି ତୁମର ଝଡ଼ ଆସିବାର ଆଶଙ୍କା ହେବ, ଶାନ୍ତି ନ ହେବା ଭିତରେ ବ୍ୟାକୁଳ ହୋଇଉଠିବ; କିନ୍ତୁ ବରହୀର ଦୁଃଖ ବୁଝିବା ଲାଗି ଧୈର୍ଯ୍ୟ ପାଇବନି, ହଜାର ଚେଷ୍ଟାକଲେ ମଧ୍ୟ ପାରିବନି । ଏହି ଅକ୍ଷମତା ଅସ୍ଥି ମଜ୍ଜାଗତ; ଏହାକୁ ଅତିକ୍ରମ କରିବା ମୁସ୍କିଲ । ଏତିକି କହି ସେ ଚୁପ୍ ରହିଲେ ।

ଦିବାକର ମଧ୍ୟ କୌଣସି ଜବାବ ଦେଲାନି, ମୁଣ୍ଡ ପୋତି ବସି ରହିଲା । ବହୁସମୟ ଯାଏଁ କାହାରି ତୁଣ୍ଡରୁ ପଦେ ବି କଥା ବାହାରିଲାନି । ନିସ୍ତବ୍ଧ ଘରର କୋଣରୁ କେବଳ ଗୋଟାଏ ପ୍ରାଚୀନ ଧୂଳି-ମଳିନ ଘଡ଼ିର ଟିକ୍ ଟିକ୍ ଶବ୍ଦ ଆସୁଥାଏ ।

ବହୁ ସମୟ ଧରି ନୀରବ ରହିବା ପରେ କିରଣମୟୀ ହଠାତ୍ ଖୁବ୍ ମିଠା ଗଳାରେ କଥା କହିବା ଆରମ୍ଭ କଲେ । କହିଲେ—ତୁମକୁ ଆଉ ଦି ତିନୋଟି କଥା କହିବାକୁ ଚାହେଁ । ସେଦିନ ତୁମର 'ବିଷର ଛୁରୀ' ନେଇ କେତେକ କଥା କହିଚି ଦିବାକର ! ମୁଁ ଏକଥା ମଧ୍ୟ ଦେଖୁଥିଲି ଯେ ତୁମ ଭିତରେ ଏଭଳି ଏକ ଜିନିଷ ଅଛି, ଯାହାକୁ ଯଥାର୍ଥରେ ପ୍ରେମିକ ଓ ଯଥାର୍ଥରେ କବି କୁହାଯାଇପାରେ । ଏଇ ଜିନିଷଟିକୁ ଯଦି ମାଟି ନଷ୍ଟ କରିଦେବା ପାଇଁ ନ ଚାହଁ ତ ପରକୁ ଅପରାଧୀ କରିବାର ସୁଖରୁ ନିଜକୁ ବଞ୍ଚିତ କରିବାକୁ ହେବ । ଏକଥା କୌଣସି ଦିନ ଭୁଲିଯିବନି ଯେ କବି-ମାନେ ବିଚାରକ ନୁହନ୍ତି । ନୀତି ଶାସ୍ତ୍ରର ମତ ସହିତ ଯଦି ତୁମର ମତ ଠିକେ ଠିକେ ନ ମିଳେ, ସେଥିରେ ଲଜ୍ଜିତ ହୋଇପଡ଼ନା । ମୁଁ ଜାଣେ, ମଣିଷ ପରର ଅକ୍ଷମତା ଓ ଅପରାଧକୁ ଗୋଟିଏ ତୁଳାଦଣ୍ଡରେ ଓଜନକରି ନିଜକୁ ଶାସ୍ତି ଦିଏ । କିନ୍ତୁ ବିଚାରକ ଧାର କରିଆଣି ତୁମର କାମ ଚଳିବନି । ତୁମେ ବାରମ୍ବାର ଗୋବିନ୍ଦଲାଲ କଥା ବଖାଣୁଚ; କିନ୍ତୁ ସେଇ ଗୋବିନ୍ଦଲାଲ ଯେ କେତେ ବଡ଼ ଶାସ୍ତିର ସମ୍ମୁଖରେ ପରାସ୍ତ ହୋଇ ସର୍ବସ୍ୱ ତ୍ୟାଗକରି ଯାଇଥିଲା ତୁମେ ଜାଣ ? ଏ ସଂସାରରେ ଯେଉଁମାନେ ଭଲମନ୍ଦ ବିଚାର କରିବାର ଭାର ନେଇଛନ୍ତି, ଏ ପ୍ରଶ୍ନ ସେମାନଙ୍କର ନୁହେଁ, ଏ ପ୍ରଶ୍ନ ତୁମର । ଶୁଣ, ଅପରାଧରେ ଜଜସାହେବ ଯେତେବେଳେ ହତଭାଗ୍ୟର ପ୍ରାଣଦଣ୍ଡ ଆଦେଶ କରିଥାଆନ୍ତି, ସେତେବେଳେ ସେ ବିଚାରକ; କିନ୍ତୁ ଅପରାଧୀ ଅନ୍ତରର ଦୁର୍ବଳତା ଅନୁଭବ କରି ସେ ଯେତେବେଳେ ଦଣ୍ଡର ଲାଘବ

କରିଥାଆନ୍ତି, ସେତେବେଳେ ସେ କବି । ଆଚ୍ଛା ଦିବାକର, ଏହିଭଳି ହିଁ ସଂସାରର ସାମଞ୍ଜସ୍ୟ ରକ୍ଷା କରାଯାଇଥାଏ । ଏହିଭଳି ହିଁ ସଂସାରର ଭୁଲଭ୍ରାନ୍ତି, ଅପରାଧ ଦୁର୍ବିସହ ହୋଇଉଠେନା । କବି ଯେ ଖାଲି ସୃଷ୍ଟି କରିଥାଏ ତାହା ନୁହେଁ, କବି ସୃଷ୍ଟି ରକ୍ଷା ବି କରିଥାଏ । ଯାହା ସ୍ୱଭାବତଃ ସୁନ୍ଦର, ତାକୁ ଆହୁରି ସୁନ୍ଦର କରି ପ୍ରକାଶ କରିବା'ତାର ଗୋଟାଏ କାମ । ଯାହା ସୁନ୍ଦର ନୁହେଁ, ତାକୁ ସେଭଳି ଅସୁନ୍ଦର ହାତରୁ ରକ୍ଷା କରିବା ତାର ଆଉ ଗୋଟାଏ କାମ ବା କର୍ତ୍ତବ୍ୟ ।

ଦିବାକର ଚିକିଏ ଭାବିସାରି କହିଲା – ତାହାହେଲେ କ'ଣ ଅନ୍ୟାୟକୁ ପ୍ରଶ୍ରୟ ଦେବା ହେବନି ?

କରୁଣାମୟୀ କହିଲେ—ଠିକ୍ ଜାଣେନା, ହୋଇ ବି ପାରେ । ଶୁଣିଚ, ମନ ଭିତରେ ଅତ୍ୟନ୍ତ ଘୃଣା ଜାଗ୍ରତ କରିବା କୁଆଡ଼େ କବିର କାମ । କିନ୍ତୁ ଭଲ ଉପରେ ଅତ୍ୟନ୍ତ ଲୋଭ ଜାଗ୍ରତ କରିବା କ'ଣ ତାଠୁ ଢେର୍ ବେଶୀ କାମ ନୁହେଁ ? ତା ଛଡ଼ା ପାପକୁ ଯେତେ ଦିନ ଧରି ସଂସାରରୁ ସମ୍ପୂର୍ଣ୍ଣ ବିସର୍ଜନ ନ କରାଯାଇଚି, ଯେତେଦିନ ଧରି ମଣିଷହୃଦୟ ପଥରରେ ରୂପାନ୍ତରିତ ନ ହୋଇଚି, ସେତେଦିନଯାଏ ଏଇ ପୃଥିବୀରେ ଅନ୍ୟାୟ, ଭୁଲଭ୍ରାନ୍ତି ରହିଥିବ ଏବଂ ତାକୁ କ୍ଷମାକରି ପ୍ରଶ୍ରୟ ମଧ୍ୟ ଦେବାକୁ ପଡ଼ିବ, ସେତେଦିନଯାଏ ପାପ ଦୂର କରିବାର ସାଧ କାହାର ନାହିଁ, ସହ୍ୟ କରିବାର କ୍ଷମତା ମଧ୍ୟ ଯିବ । ସେଥିରେ ବା କ'ଣ ସୁବିଧା ହେବ ଦିବାକର ?

ଦିବାକର ଉତ୍ତର ଦେଲା--ସୁବିଧା ତ ସବୁଠି ସବୁବେଳେ ହୋଇ ଯାଇ ନ ଥାଏ । ଅସୁବିଧା ଭିତରେ ନ୍ୟାୟ ଧର୍ମ ପାଳନ କରିବା ଉଚିତ । ଯାହା ଶୁଭ, ଯାହା ସୂର୍ଯ୍ୟାଲୋକ ଭଳି ନିର୍ମଳ, ତାକୁ ତ ସମସ୍ତଙ୍କ ଉପରେ ସ୍ଥାନ ଦେବା ଦରକାର ।

କରୁଣାମୟୀ କହିଲେ—ନା, ପାପ ଯଦି ମଣିଷ ରକ୍ତରେ ଜଡ଼ି ନ ରହିଥାଆନ୍ତା, ତାହାହେଲେ ତୁମ କଥା ସତ ହୁଅନ୍ତା । ଗୋଟିଏ ମାତ୍ର ଜିନିଷ ନ୍ୟାୟ ଛଡ଼ା ସଂସାରରେ ଆଉ କିଛି ରହନ୍ତା ନାହିଁ । ଦୟା, ମାୟା, କ୍ଷମା ପ୍ରଭୃତି ହୃଦୟବୃତ୍ତିର ନାମଗୁଡ଼ିକ କାହାରିକୁ ଜଣା ନ ଥାନ୍ତା । ତୁମେ ସୂର୍ଯ୍ୟାଲୋକର ସଫେଦ ରଙ୍ଗ ସହିତ ନ୍ୟାୟକୁ ତୁଳନା କରୁଥିଲ;

କିନ୍ତୁ ସଫେଦ ରଙ୍ଗ କ'ଣ ସବୁଗୁଡ଼ିକ ରଙ୍ଗର ମିଶ୍ରଣରେ ଜନ୍ମେନା ? ଏହି ସଫେଦ ଆଲୋକ ଯେଉଁଭଳି ବଙ୍କା କାଚ ଭିତରେ ଦେଇ ରଙ୍ଗୀନ୍ ହୋଇଉଠେ, ନ୍ୟାୟ ବି ସେହିଭଳି ଅନ୍ୟାୟ, ଅଧର୍ମ, ପାପତାପର ବଙ୍କା ବଙ୍କା ବାଟ ଦେଇ ଦୟା, ମାୟା, କ୍ଷମା ଭିତରେ ବିଚିତ୍ରହୋଇ ଦେଖାଦିଏ । ଅନ୍ୟାୟକୁ କ୍ଷମାକଲେ ଅଧର୍ମକୁ ଯେ ପ୍ରଶ୍ରୟ ଦେବାକୁ ହୁଏ, ସେକଥା ମାନୁଚି; କିନ୍ତୁ ଅଧର୍ମ ଯେ ତାର ଗୋଟାଏ ରୂପ ନୁହେଁ, ଏକଥା ମୁଁ ସ୍ୱୀକାର କରିପାରୁନି । ତର୍କ କରି ହୁଏତ ମୋ କଥା ତୁମକୁ ବୁଝେଇପାରିବିନି ଦିବାକର ! କିନ୍ତୁ ଯେଉଁ କ୍ଷମା ଭଲ ପାଇବା ଭିତରେ ଜନ୍ମଲାଭ କରେ, ସେ ଭଲପାଇବାର ଧର୍ମ ଯଦି କେବେ ପାଅ, ସେତେବେଳେ ଯାଇ ବୁଝିବ ଅନ୍ୟାୟ, ଅଧର୍ମ, ଅକ୍ଷମଣକୁ କ୍ଷମା କରି ପ୍ରଶ୍ରୟ ଦେବା ଧର୍ମର ହିଁ ଅନୁଶାସନ । କିନ୍ତୁ ସମୟ ଯେ ହୋଇଗଲାଣି ଦିବାକର ! ତୁମକୁ କ'ଣ ଆଜି ଭୋକଶୋଷ ହେଉନି ! ଏହା କହିଦେଇ ସେ ଯନ୍ତ୍ର ଚରିତର ହୋଇ ବାହାରିଗଲେ ।

ସଂଧ୍ୟା ପରେ ଦିବାକର ଖାଇବାକୁ ବସିଲାବେଳେ ଆସ୍ତେ ଆସ୍ତେ କହିଲା—ଆଜି ଦିପହର ଗୋଟାକଯାକ ମୋର ବଡ଼ ଆନନ୍ଦରେ କଟିଛି । କେତେ ନୂଆ ନୂଆ କଥା ଯେ ଶିଖିଲି, ଆଉ କହିହେବନି ।

କିରଣମୟୀ ହସି ହସି କହିଲେ—ବହୁତ କଥା ଶିଖିଛ ? ସତେ ତାହାହେଲେ ତୁମେ ଗୁରୁ ବୋଲି ମାନିବା ଉଚିତ ।

ଦିବାକର ଉଦ୍ଦୀପ୍ତ କଣ୍ଠରେ କହିଉଠିଲା—ନିଶ୍ଚୟ, ନିଶ୍ଚୟ, ଶହେ ଥର ତୁମକୁ ଗୁରୁ ବୋଲି ସ୍ୱୀକାର କରୁଚି । ସତ କହୁଚି ଭାଉଜ, ଏଭଳି ଯଦି ଚିରକାଳ ତୁମ ପାଖରେ ରହିବାକୁ ହୁଅନ୍ତା, ତାହାହେଲେ ମୁଁ ଆଉ କିଛି ଚାହାନ୍ତିନି ।

--ସତେ ! ସ୍ଥା ଭିତରେ ଏତେ ଠାଣି ?

ଦିବାକରର ଚିତ୍ତ ଅନ୍ୟଆଡ଼େ ମଗ୍ନ ହୋଇ ରହିଥିଲା । ସରଳ ମନରେ କହିଲା—ତୁମକୁ ଗୁରୁ ବିନେହେଲେ କେଉଁଠି ରହିପାରିବିନି ଭାଉଜ !

କିରଣମୟୀ ହସିଉଠି କହିଲେ—ଆସ୍ତେ ଆସ୍ତେ କୁହ, କିଏ ଯଦି ଶୁଣିବାକୁ ପାଏ ତ ଅବାକ୍ ହୋଇଉଠିବ ।

ଦିବାକର ସଚେତନ ହୋଇ ନିଦାରୁଣ ଲଜ୍ଜାରେ ଏକାବେଳକେ ଲାଲ ପଡ଼ିଗଲା ।

## ବଡଣି

ଶେଯ ସଜାଡ଼ୁ ସଜାଡ଼ୁ କିରଣମୟୀ ଶେଯର ଗୋଟିଏ ପାଖରେ ବସିପଡ଼ି ମ୍ଳାନ ଏବଂ କରୁଣ ସ୍ୱରରେ କହିଲେ - ଦିବାକର, ଇଏ ତୁମ ଚାକିରି ନୁହେଁ କି ବ୍ୟବସାୟ ନୁହେଁ ଯେ ମନିବର ମର୍ଜି ଉପରେ କିମ୍ବା ଦୋକାନର କିଣାବିକା ଉପରେ ସଫଳତା ବିଫଳତା ନିର୍ଭର କରିବ । ଇଏ ଯେ ନିଜ ହୃଦୟର ଧନ । ଯାକୁ ବିଫଳ କରିବାର ସାଧ୍ୟ କାହାର ନାହିଁ । ଏତିକି କହିଦେଇ ମୁହୂର୍ତ୍ତିକ ପାଇଁ ଆଖି ବୁଜି ପଡ଼ିରହିଲେ । ଦିବାକର ଉକ୍ରନତ ଶଉରେ ସେଇ ସୁନ୍ଦର ମୁହଁ ପ୍ରତି ଚାହିଁ ଧୀରେ ଧୀରେ କହିଲା—ଆଚ୍ଛା ଭାଉଜ, ତୁମେ କ'ଣ ଆଖି ବୁଜିଦେଲେ ତୁମ ସ୍ୱାମୀଙ୍କ ମୁହଁକୁ ଦେଖିବାକୁ ପାଅ ?

କିରଣମୟୀ ଆଖି ଖୋଲି ଟିକିଏ କିମିତି ଚକିତ ହେଲା ପରି କହିଲେ—ସ୍ୱାମୀଙ୍କର ? ହଁ, ଦେଖିବାକୁ ପାଏନା କାହିଁକି ? ଯିଏ ମୋର ଯଥାର୍ଥ ସ୍ୱାମୀ ସେ ଦିନରାତି ମୋର ଏଇଠି ଅଛନ୍ତି କହି ଆଙ୍ଗୁଠିଦ୍ୱାରା ନିଜ ଅନ୍ତଃସ୍ଥଳକୁ ନିର୍ଦ୍ଦେଶ କଲେ ।

ଦିବାକର କଥାଟାକୁ ସରଳ ଭାବରେ ଗ୍ରହଣକରି ବିନମ୍ର କଣ୍ଠରେ କହିଲା--କିନ୍ତୁ ତାଙ୍କୁ ଦେଖି ଲାଭ କ'ଣ ଭାଉଜ ? ତୁମେ ତ ଦିଅଁ ଦେବତାଙ୍କୁ ମାନନ୍ତି, ଇହକାଳ ପରକାଳକୁ ବି ସ୍ୱୀକାର କରନ୍ତି; ମରଣ ପରେ କିମିତି ଭଲା ତୁମେ ତାଙ୍କ ପାଖକୁ ଯିବ ?

କିରଣମୟୀ କହିଲେ—ମରଣ ପରେ ମୁଁ କାହାରି ପାଖକୁ ଯିବାକୁ ଚାହେଁନି ଦିବାକର !

କେଉଁଠିକି, କାହାରି ପାଖକୁ ନୁହେଁ ? ଏକାବେଳକେ ଏକା ରହିବାକୁ ଚାହଁ ? ଏହା କହି ଦିବାକର ଯେଉଁଭଳି ହତବୁଦ୍ଧି ହୋଇ ଚାହିଁ-ରହିଲା ଏବଂ ତା ପ୍ରଶ୍ନ ଶୁଣି କିରଣମୟୀ ମଧ୍ୟ କ୍ଷଣକ ପାଇଁ ନିର୍ବାକ ହୋଇ-ପଡ଼ିଲେ । କିନ୍ତୁ ପରକ୍ଷଣରେ ଜୋର ସହକାରେ ହସିଉଠି କହିଲେ--ତୁମେ ଯେତେବେଳେ ସେତେବେଳେ ମୋ ନିଜ କଥା ଏତେ ଶୁଣିବାକୁ ଚାହଁ କାହିଁକି କହିଲ ?

--କେଜାଣି ଭାଉଜ, ଶୁଣିବାକୁ ଭାରି ଇଚ୍ଛାହୁଏ ।

କିରଣମୟୀ ବିଛଣା ଚଦରଟା ଶେଯ ଉପରେ ପକେଇବା ଛଳରେ ମୁହଁ ଫେରେଇନେଇ କହିଲେ—ମୁଁ ଜଣଙ୍କ ପାଖକୁ ଯିବାକୁ ଚାହେଁ; କିନ୍ତୁ ସେ ମରଣର ସେପାରିରେ ନାହାନ୍ତି, ଏ ପାରିରେ ।

ଦିବାକର କହିଲା—କିନ୍ତୁ ସେ ତ ମରଣର ସେପାରିକି ଚାଲି ଯାଇଛନ୍ତି, ଏପାରିରେ କିଭଳି ବା ତାଙ୍କୁ ପାଇପାରିବ ?

କିରଣମୟୀ ହସି ହସି କହିଲେ—ଯିଏ ମୋର ବର୍ତ୍ତମାନ ଏ ପାରିରେ ଅଛନ୍ତି । ତାଙ୍କ ପାଖକୁ ଚାଲିଯାଇ ପାରନ୍ତିଣି···ଖାଲି···

—ଖାଲି କ’ଣ ଭାଉଜ ?

—ଖାଲି ସେ ଯଦି ଜଣାନ୍ତେ, ସେ ମତେ ଚାହାନ୍ତି କି ନାହିଁ ?

ଦିବାକର ପୁଣି ଥରେ ବିସ୍ମୟାପନ୍ନ ହୋଇ କହିଲା - ସେ ଜଣକ କିଏ, ଯିଏ ଏପାରିରେ ଅଛନ୍ତି ? କିଏ ବା ଜଣାଇବ ସେ ତୁମକୁ ଚାହାନ୍ତି କି ନାହିଁ ? କ’ଣ ସେସବୁ ତୁମେ [illegible] ଭାଉଜ ?

କିରଣମୟୀଙ୍କର ମୁହଁ ଉପରେ ଆଖିପଲକରେ ଏକ ମ୍ଳାନ ଛାୟା ଭାସିଉଠିଲା । କିନ୍ତୁ କ୍ଷଣକରେ ତାହା ଅପସରିଯାଇ ମୁହଁ ଗୋଟାକଯାକ ଉଜ୍ଜ୍ୱଳ ହୋଇଉଠିଲା । ସେ କୃତ୍ରିମ କ୍ରୋଧ-ସ୍ୱରରେ କହିଲେ— ତୁମେ ତ ବଡ଼ ଦୁଷ୍ଟ ଦେଖୁଚି ଦିବାକର ! କେବଳ ମୋର ମୁହଁରୁ ତୁମେ ବାରମ୍ବାର ଶୁଣିବାକୁ ଚାହଁ···ନା, ମୁଁ ତାଙ୍କର ଖବର ଦେଇପାରିବିନି । ଏହାକହି ମୁହଁକୁ ଅନ୍ୟ ଆଡ଼କୁ ବୁଲେଇ ନେଇ ମୁରୁକି ମୁରୁକି ହସିବାକୁ ଲାଗିଲେ । ଏ ହସକୁ ଦେଖି ଏକ ଅଜ୍ଞାତ ଆବେଗଭାରେ ଦିବାକରର ହୃତ୍ସ୍ପନ୍ଦନ ଦ୍ରୁତତର ହେବାକୁ ଲାଗିଲା । ନିଜକୁ ଟିକିଏ ସମ୍ଭାଳି ନେଇ କହିଲା— ମୋର ବା କ’[illegible] କଥା ଅଛି ଯେ ଭାଉଜ, ମୁହଁ ଖୋଲି କହିବି !

କିରଣମୟୀ ଚୁଲପଡ଼ି ଠିଆହୋଇ କହିଲେ—ଏତେଦିନ ଧରି ଏତେ କଥା ଯାହା ଶିଖେଇଲି, ସବୁ କ’ଣ ବ୍ୟର୍ଥ ହେଲା ? ଥରେ ନିଜ ବୁକୁରେ ହାତ ଦେଇ ଦେଖିଲ, ଗୋଟାଏ ଭୟାନକ କଥା ଆଲୋଡ଼ିତ ହେଉଚି କି ନା ? ସତ କହିଲ ?

ଦିବାକର ମନ୍ତ୍ରମୁଗ୍ଧ ଭଳି କହିଲା—କି କଥା ? କ’ଣ ବା ଶିଖାଇଲ ତୁମେ ?

କିରଣମୟୀ କହିଲେ—ତୁମ କଥା ଶୁଣି ଅବାକ୍ ହେବାକୁ ପଡ଼ୁଚି ଦିବାକର ! ଏ ବୟସରେ କ’ଣ ଖାଲି ଅଭିନୟ କରିବା ଶିଖିଚ ? କିନ୍ତୁ ତୁମେ ମୁହଁଖୋଲି ନ କହିଲେ ଜାଣ ମୁଁ କିଛୁ କହୁନି । ଏଥିରେ ମୋ ବୁକୁ ଫାଟିବା ତୁମର ବୁକୁ ଫାଟି ମେଳ ହୋଇଯାଉ । ଏହା କହି ହଠାତ୍ ଉପରକୁ ମୁହଁ ଉଠେଇ ଦିବାକର ଦାଢ଼ୀକୁ ଟିକିଏ ଝିଙ୍କିଦେଇ ଘରୁ ଦ୍ରୁତପଦରେ ବାହାରିଗଲେ ।

ଦିବାକର ସ୍ତବ୍ଧଭାବରେ ବସିରହିଲା । କିରଣମୟୀ ଏପର୍ଯ୍ୟନ୍ତ ତାକୁ କେତେ ଥର କେତେ ପ୍ରକାର ପରିହାସ କରିଛନ୍ତି ସହସ୍ରବାର ସହସ୍ର ଛଳ କୌତୁକରେ ସ୍ପର୍ଶ ବି କରିଛନ୍ତି; କିନ୍ତୁ ଆଜିର ଏ ପରିହାସ, ଏ ସ୍ପର୍ଶଟା କାନ ଭିତର ଦେଇ ସର୍ବାଙ୍ଗ ସ୍ନାୟୁଶିରାରେ ଯେପରି ତଡ଼ିତ୍ ପ୍ରବାହ ସଂଗୃରିତ କରିଦେଇଗଲା । ନିଜ ଦେହର ପ୍ରତ୍ୟେକ ରକ୍ତବିନ୍ଦୁର ଏଭଳି ପ୍ରଖର ଗତି ସେ କେବେହେଲେ ଅନୁଭବ କରି ନ ଥିଲା ।

## ତେତିଶି

ବହୁଦିନ ପରେ ଆଜ ପୁଣି ସକାଳବେଳା ଅଘୋରମୟୀ କେତେ-ଜଣ ବର୍ଷୀୟସୀ ରମଣୀଙ୍କ ସହିତ କାଳୀଘାଟକୁ କାଳୀ ଦର୍ଶନ କରିବାକୁ ଯାଇଥିଲେ । କଥା ଥିଲା, ଠାକୁରାଣୀଙ୍କ ଆରତି ସରିଗଲେ ଯାଇ ଆସିବେ । ଟିକିଏ ରାତି ହୋଇଯାଇପାରେ ।

ରାତି ପ୍ରାୟ ଆଠଟା । ଦିବାକର ଚୁପ୍‌ଚାପ୍ ତା ଶେଯରେ ଶୋଇଥିଲା । ମୁଣ୍ଡ ଉପରେ ଗୋଟାଏ ମାଟି ଦୀପ ମିଞ୍ଜି ମିଞ୍ଜି ହୋଇ ଜଳୁଥିଲା । ଏଇ ଅଳ୍ପ ଆଲୁଅରେ ସେ "ଦୁର୍ଗେଶନନ୍ଦିନୀ" ବହିଟିକ ଧରି ପଢ଼ୁଥିଲା—ଟିକିଏ ଟିକିଏ ପଢ଼ୁ ପଢ଼ୁ ‘ଆୟେସା’ ସମ୍ପର୍କରେ ସେ କ’ଣ କିଛି ଚିନ୍ତା କରୁ-ଥାଏ । ହଠାତ୍ ସେତିକିବେଳେ କିରଣମୟୀ ଘର ଭିତରକୁ ପଶିଆସି କହିଲେ—ଦିବାକର ! ଘୁମଉଚ ନା କ’ଣ ?

ଦିବାକର କହିଲା—ନା, ଟିକିଏ ମୁଣ୍ଡ ବଥଉଚି ।

କିରଣମୟୀ କହିଲେ—ଆଖିବୁଜି ଅନ୍ଧମୁସାକୁ ଖୋଜିଲେ ବହି ଶେଷ ହୋଇଯିବନି ଦିବାକର, ଆଖି ଖୋଲି ପଢ଼ିବାକୁ ହେବ । ନଚେତ୍ ଆସ ଖାଇ ପିଇ ପଢ଼ିବସିବ—ଭାତ ଶୁଖିଯାଉଚି ।

ଦିବାକରର ଉଠିବାକୁ ଇଚ୍ଛା ନ ଥିଲା । ସେ ଶ୍ରାନ୍ତ ଅନୁନୟ ସ୍ୱରରେ କହିଲା--ଏବେ ଥାଉ ଭାଉଜ ! ମାଉସୀ ଆସନ୍ତୁ, ତାପରେ ଖିଆହେବ ।

କିରଣମୟୀ କହିଲେ--ସେମାନେ କେତେବେଳେ ଯାଇ ଫେରିବେ, କ'ଣ ତାର କିଛି ଠିକ୍ ଠିକଣା ଅଛି ? ଆଜି ମୋ ଦେହ ବି ଭଲ ନାହିଁ । ଭାବୁଚି, ତାଙ୍କ ଘରେ ଭାତ, ଡାଲି ରଖିଦେଇ ଟିକିଏ ଶୋଇବି । ଉଠ ତୁମକୁ ଖାଇବାକୁ ଦେଇଦିଏ । ଏତିକି କହିଦେଇ ଦିବାକରର ପାଖକୁ ଆସି ତା ମୁହଁରୁ ବହିଟିକୁ କାଢ଼ି ନେଇଗଲେ ।

ଟିକିଏ ଦୂରରେ ଦିବାକରର ସିନ୍ଦୁକଟା ଥିଲା । କିରଣମୟୀ ଫେରିଆସି ତା ଉପରେ ବସି ପୁଣି କହିଲେ—ଉଠନା ଦିବାକର !

—ଉଠିବାକୁ ଇଚ୍ଛା ହେଉନି ଭାଉଜ ! ବରଂ ଗୋଟାଏ ଗଳ୍ପ କୁହ, ଶୁଣିବି ।

ଖାଲି ଗଳ୍ପ ଶୁଣି ତ ପେଟ ଭରେନା । ଠିକ୍ ସମୟରେ ଖାଇବାକୁ ମଧ୍ୟ ହୁଏ--କ'ଣ କହୁଚ ?

ଦିବାକର କିଛି ସମୟ ଚୁପ୍ ରହିବା ପରେ କହିଲା---ଆଚ୍ଛା ଭାଉଜ, ମୋର ଖିଆପିଆ, ଶୁଆ ଆଦି ନେଇ ତୁମର ଏତେ ମୁଣ୍ଡବଥା କାହିଁକି ?

କିରଣମୟୀ ହସି ହସି କହିଲେ—କାହିଁକି ଜାଣନା ?

--ନ କହିଲେ କିମିତି ବା ଜାଣିବି ?

—ଏଇଟା କିନ୍ତୁ ତୁମର ମିଛ କଥା ଦିବାକର ! ନ କହିଲେ ବି ଜଣାଯାଏ । ଆଉ ତୁମେ, ତୁମେ ଠିକ୍ ଜାଣ ।

ଦିବାକରର ଆଖି କାନ ଲଜ୍ଜାରେ ଲାଲ ହୋଇଉଠିଲା । ସେ କିଛି ସମୟ ଚୁପ୍ ରହିବା ପରେ ସହସା କିଭଳି ଗୋଟାଏ ଉଦାସ, କରୁଣ ସ୍ୱରରେ କହିଲା--ଆଚ୍ଛା ଭାଉଜ, ଗୋଟାଏ କଥା ତୁମକୁ ପଚାରିବି ।

--ଗୋଟାଏ କାହିଁକି, ଶହେଟା ପଚାର । କିନ୍ତୁ ଆଗେ ଖାଇଦେଇ ମତେ ଛୁଟି ଦିଅ--ତାପରେ ଯେଉଁ ଗୃହଁ ଗାଉଥାଅ ତୁମ କଥାର ଜବାବ

ଦେବ । କ'ଣ ରାଜି ? କହିଦେଇ ମେ ହସିବାକୁ ଲାଗିଲେ । ଦିବାକର ଏହି ଉତ୍ତରର ପ୍ରତ୍ୟୁତ୍ତର ଦେବାକୁ ଚେଷ୍ଟାକରି କୃତ୍ରିମ ସହାନୁଭୂତି ସ୍ୱରରେ କହିଲା--ବେଶ ତ ଭାଉଜ, ମନେ ହେଉଚି ତୁମେ ଏଇ ସିନ୍ଦୁକଟା ଉପରେ ସାରା ରାତି ବସି ମୋ କଥାର ଜବାବ୍ ଦେବ ।

କିରଣମୟୀ ମୃଦୁକି ହସି କହିଲେ—ଏଇଟା ଉପରେ ବସିଲେ ଯଦି ତୁମକୁ କଷ୍ଟ ଲାଗେ ଦିବାକର, ତାହାହେଲେ ତୁମର ନରମ ଶେଯ ଉପରେ ଯାଇ ବସିବି, କ'ଣ ହେବ ? ତାହାହେଲେ ତ ଆଉ କୌଣସି କ୍ଷୋଭ ରହିବନି !

ପୁଣି ଦିବାକରର କର୍ଣ୍ଣମୂଳ ଆରକ୍ତ ହୋଇଉଠିଲା । ସେ ଲଜ୍ଜାରେ କଡ଼ ଲେଉଟାଇ ଶୋଇଲା ।

କିରଣମୟୀ ଉଠିଆସି କହିଲେ--ନା, ଉଠ; ମତେ ଛୁଟି ଦିଅ । ଆଉ କଡ଼ ଲେଉଟାଇ ଶୋଇବାକୁ ହେବନି ।

ରୋଷେଇଘର ଭିତରୁ ଗୃହକର୍ତ୍ତ୍ରୀର ପାଟି ଶୁଣାଗଲା । "ମୁଁ ଏଇଠୁ ଶୁଣିବାକୁ ପାଉଚି ବୋହୂମା--ଆଉ ତୁମେ········ ମା ଯେ ତଳେ ଡାକ ପକେଇଛନ୍ତି ।"

କିରଣମୟୀ ଫେରିଆସି ପୁଣି ସେଇ ସିନ୍ଦୁକଟା ଉପରେ ବସିଲେ । ରାଗ ରାଗ କଣ୍ଠରେ କହିଲେ— ଆଶ୍ଚର୍ଯ୍ୟ ତ ଦେଖୁଚି କମ୍ ନୁହେଁ ତୋର, ମୁଁ ଯାଇ ଦୁଆର ଖୋଲିଦେବି, ଆଉ ତୁ କ'ଣ ପାରିବୁନି ?

— ମୋ ହାତ ବନ୍ଦ । ସେଇଥିପାଇଁ ତ କହୁଚି ! ଗୃହକର୍ତ୍ତ୍ରୀ ଏହା କହି କହି ଗୋଡ଼କୁ ଦୁମ୍ ଦୁମ୍ କରି ଗଲା ଦୁଆର ଖୋଲିବାକୁ ।

ଦୁଆର ଖୋଲୁ ଖୋଲୁ ଅଘୋରମୟୀ ବକିଚାଲିଲେ---ତୁମ-ମାନଙ୍କ କାନରେ କ'ଣ ପଥର ପଡ଼ିଚି ? ଅଧଘଣ୍ଟାଏ ଧରି ଆମେ ଶିକୁଳି ଖଡ଼ ଖଡ଼ କରି ଚାଲିଚୁ । ତୁ କେଉଁଠି ଥିଲୁ ?

ଏଥର ଗୃହକର୍ତ୍ତ୍ରୀ ବି ଗର୍ଜିଉଠି କହିଲା— କାନ ଆଉ ମୁଣ୍ଡରେ ପଥର ନ ପଡ଼ିଲେ କ'ଣ କିଏ ତୁମ ଘରକୁ ଗୃହକର୍ମ କରିବାକୁ ଆସେ ମା' ! ଏଥର ଆଖି, ମୁଣ୍ଡ, କାନବାଲା କାହାକୁ ରଖ, ଇମିତି କଥା ମତେ ଆଉ କେବେ କହିବନି । ରୋଷେଇଘରୁ ମୁଁ ଆଗ ଦୁଆରର ପାଟି ଶୁଣି ପାରିବନି ।

ଅଘୋରମୟୀ ଧୀର ନମ୍ର କଣ୍ଠରେ କହିଲେ – ବୋଉ, କେଉଁଠି ?

ଗୃହଗୃହିଣୀ ଅସ୍ଫୁଟ ସ୍ୱରରେ କହିଲା–ବଉଅରକୁ ନେଇ ସାରାଦିନ ସୁଆଗ ହେଉଛି, ଆଜ କ'ଣ ହେବ ? ଏଇ ତ ଦୁଆର ଖୋଲ ବୋଲି କହିଦେଲି ଯେ ଯା ଇଚ୍ଛା ତା ମତେ ବକିଗଲେ । ଆଲୋ ମା, ଏଇ ତ ବଡ଼ବାବୁ ! ଗୃହଗୃହିଣୀ ସାଙ୍ଗେ ସାଙ୍ଗେ ବାଟ ଛାଡ଼ିଦେଇ ଦୂରରେ ଯାଇ ଠିଆହେଲା ।

ଅଘୋରମୟୀ ମୁହଁ ଫେରେଇ କହିଲେ—ଉପୀନ, ଆ ବାପା, ଉପରକୁ ଆ ।

--ଚାଲ ମାଉସୀ, ମୁଁ ଯାଉଛି । ଏହା କହି ଉପେନ୍ଦ୍ର ଅଘୋରମୟୀ ପଛେ ପଛେ ଉପରକୁ ଉଠିବାକୁ ଲାଗିଲା । କିନ୍ତୁ ସବୁକଥା ତା କାନରେ ପଡ଼ିଥିଲା ।

ଉପରକୁ ଆସି ଅଘୋରମୟୀ ଉଚ୍ଚକଣ୍ଠରେ ପାଟିକରି ଡାକିଲେ-- କେଉଁଠି ଅଛୁ, ବାହାରକୁ ଆସ ବୋହୂ, ଉପୀନ ଆସିଛି ଯେ ।

ଅନ୍ଧକାର ଘର ଭିତରେ ବସି କିରଣମୟୀଙ୍କର ବୁକୁ ଭିତରଟା ଧଡ଼ାସ୍ କରିଉଠିଲା । ବିଛଣା ଉପରେ ଢଳାକରର ସର୍ବାଙ୍ଗ ଶିଥିଳ-ହିମ ପାଲଟିଗଲା ।

ଅଘୋରମୟୀ ପୁଣି ଥରେ ଡାକିଲେ—ଆଲୋ ଗଲୁ କୁଆଡେ଼ ? ସପଫପ ଗୋଟେ ଆଣି ପକେଇଦେଲୁ ଯା ମା ! ଉପୀନ କ'ଣ ଠିଆ-ହୋଇ ରହିବ ନା କ'ଣ ?

କିରଣମୟୀ ବାହାରକୁ ଆସି ଗୋଟାଏ ସପ ବିଛେଇଦେଲେ । ତା ମୁହଁରୁ ପଦେହେଲେ କଥା ବାହାରିଲା ନାହିଁ ।

ଉପେନ୍ଦ୍ର ପାଖକୁ ଆସି ନମସ୍କାର କରି କହିଲା – ଭଲ ଅଛ ଭାଉଜ ?

କିରଣମୟୀ ନିଜକୁ ସମ୍ଭାଳିନେଲେ । ମୁଣ୍ଡ ହଲେଇ କହିଲେ– ହଁ । ତୁମେ କିମିତି ଅଛ ? ଶ୍ରୀମତୀ ଭଲ ଅଛନ୍ତି ? ଖବର ନ ଦେଇ ଇମିତି ହଠାତ୍···କିନ୍ତୁ ଏ ପ୍ରକାର କଣ୍ଠସ୍ୱର ଶୁଣି ଉପେନ୍ଦ୍ର ଆଶ୍ଚର୍ଯ୍ୟ ହୋଇଉଠିଲା । ଗଳାରେ ମନେହେଲା ଟିକିଏ ବୋଲି ରସ ନାହିଁ—ନିତାନ୍ତ ଶୁଷ୍କ, ନୀରସ ।

ଉପେନ୍ଦ୍ର କହିଲା—ମହାକାଳଙ୍କ ଶଇସାରେ ଆସିବାକୁ ହେଲା ଭାଉଜ ! ମତେ କାଲି କିମ୍ବା ପଅରଦିନ ଫେରିଯିବାକୁ ପଡ଼ିବ । କାଲୀ-

ଘାଟରେ କାମ ସାରି ଆସିଲାବେଳେ ମାଉସୀଙ୍କ ସହିତ ଭେଟ ହେଲା । ତାଙ୍କର ସାଥିରେ ସେତିକବେଳୁ ବୁଲୁଚି ତ ବୁଲୁଚି । ଦିବାକରର ଖବର କ'ଣ କହିଲ ? ସେ ଏଠି ରହିବା ଦିନୁ ଚଠିଖଣ୍ଡେ ଦେଇନ, କାହା ହାତରେ ଟିକିଏ ଖବର ବି ଦେଇନ । କୁଆଡ଼େ ଯାଇଚି ନା କ'ଣ ?

କରୁଣାମୟୀ କହିଲେ--ମୁଣ୍ଡ ବଥାଉଚି ବୋଲି ଶୋଇଛନ୍ତି । କେଜାଣି ଦୁଏ ତ ଶୋଇ ପଡ଼ିଥିବେ ।

ଅଘୋରମୟୀଙ୍କ ମିଜାସ ଆଜି ଭଲ ନ ଥିଲା । ଏକେ ତ ବୋହୂର ଦୋଷ ଦେଖେଇବା ଭଳି ସୁଯୋଗ ସେ କେବେ ଛାଡ଼ନ୍ତିନ, ସେଥିରେ ପୁଣି ଦିବାକର ପ୍ରତି ମଧ୍ୟ ତାଙ୍କର ଚିତ୍ତ ସେଭଳି ପ୍ରସନ୍ନ ନ ଥିଲା । ସକାଳେ ତାକୁ ସାଙ୍ଗରେ ଧରି କାଳୀଘାଟ ଯିବାକୁ ଚାହିଁଥିଲେ; କିନ୍ତୁ କାମ ବାହାନାରେ ଦିବାକର ନାହିଁ କରିଦେଇଥିଲା । ତେଣୁ ଶ୍ଳେଷ ଭାବରେ କହିଲେ—ଏଇ ତ ତୁ ତାର ଘରୁ ବାହାରିଲୁ, ସେ ଶୋଇଚି କି ଚେଇଁଚି ତୁ ଜାଣୁନା ?

—ନା, ଜାଣେନା । ଏହା କହି କରୁଣାମୟୀ ଶାଶୁ ପ୍ରତି ଏକ ବକ୍ରଦୃଷ୍ଟି ନିକ୍ଷେପ କଲେ ।

ଉପେନ୍ଦ୍ର ବଡ଼ ପାଟିରେ ଡାକିଲେ—ଦିବାକର !

କୌଣସି ଉତ୍ତର ମିଳିଲାନି ।

ପୁଣି ଡାକିଲେ—ଦିବାକର, ତୁ କ'ଣ ଶୋଇଚୁ ?

ସେ ଚେଇଁଥିଲା । ଏ ଆହ୍ୱାନକୁ ସେ ଉପେକ୍ଷା କରିପାରିଲାନି । ଯାଉଚି, ଏହା କହି ଧୀରେ ଧୀରେ ବାହାରେ ଆସି ଠିଆହେଲା । ପ୍ରଣାମ କରି ଅବ୍ୟକ୍ତ ସ୍ୱରରେ କହିଲା—କେବେ ଆସିଲ ଭାଇନା ?

--ସକାଳେ । ତୋ ମୁଣ୍ଡ ବଥାଉଚି ଶୁଣିଲି ।

—ସାମାନ୍ୟ ।

ଅଘୋରମୟୀ ରାଗିଯାଇ କହିଲେ--ମୁଣ୍ଡ ବଥେଇବନି କାହିଁକି ? ପ୍ରଥମେ ପ୍ରଥମେ ସେ ଯାହାହେଉ ଟିକିଏ ବାହାରେ ବୁଲାବୁଲି କରିଆସେ । ଏବେ କିନ୍ତୁ ଟିକିଏ ହେଲେ ଘରୁ ବାହାରୁନି । ସକାଳେ କହିଲି, "ଦିବୁ, ଆଜି ଟିକିଏ ମୋ ସାଙ୍ଗରେ କାଳୀବାଡ଼ି ଯିବୁ ତ !" କହିଲା କ'ଣ ନା "ନା, ମାଉସୀ, ମୋର ବହୁତ କାମ ।" କି କାମ ଥିଲା କହିଲୁ ଦେଖି !

ଦିବାକର ଚୁପ୍‌ଚାପ୍ ଠିଆହୋଇ ରହିଲା ।

ଉପେନ୍ଦ୍ର ପଚାରିଲା--ଚିଠିପତ୍ର ତ ଆଦୌ ଦେଉନୁ । କୋଉ କଲେଜରେ ନାଁ ଲେଖେଇଲୁ ?

ଦିବାକର ମୃଦୁ ସ୍ୱରରେ କହିଲା--କଲେଜ ଖୋଲିଲେ ଯାଇ ସିନା, ଏବେ ତ ଖୋଲିନି ।

ଖୋଲିଲେ ଯାଇ ନାଁ ଲେଖେଇବୁ; ଏବେ ହୋଇନି ? ଅସହ୍ୟ କ୍ରୋଧରେ ଉପେନ୍ଦ୍ରର ଦୁଇଚକ୍ଷୁ ନିଆଁ ଭଳି ଜଳିଉଠିଲା । ୧୬।୧୭ ଦିନରୁ ବେଶୀ ହେବ ସବୁ କଲେଜ ଖୋଲିଗଲାଣି । ତୁ ତାର ଖବର ଆଦୌ ରଖିନୁ ?

ଦିବାକରର ମୁହଁଟା କାଗଜ ଭଳି ସାଦା ହୋଇଗଲା । ସେ କାଷ୍ଠ ପୁତ୍ତଳିକା ଭଳି ଠିଆହୋଇ ରହିଲା ।

ଅଘୋରମୟୀ ଅତି ବିରକ୍ତ ହୋଇ କହିବାକୁ ଲାଗିଲେ— କିଭଳି ବା ଖବର ରଖିବ ଉପୀନ୍ ? ଦି ଜଣଙ୍କର କ'ଣ ଦିନ ରାତି ଫୁସ୍‌ଫାସ, ଥଟ୍ଟା ପରିହାସ, ଗଳ୍ପଗୁଜବ ହୁଏ, ସେକଥା ତାଙ୍କୁ ହିଁ ପଚାର, ସେଇମାନେ କହିବେ । ମୁଁ ବାରମ୍ବାର କହୁଚି, ବୋହୂ, ସିଏ ପରଘରର ପିଲା, ପଢ଼ା-ପଢ଼ି କରିବାକୁ ଆସିଚି, ତା ସାଥିରେ ଅଷ୍ଟପ୍ରହର ଏତେଟା କାହିଁକି ? ହେଉ ବା ସିଏ ତୋର ଦିଅର, ଭୁଆଷୁଣୀ ମାଇପିଙ୍କର ଯୁଆନ ପିଲାଙ୍କ ପାଖରେ ଟିକିଏ ଲଜ୍ଜା ତ ରହିବା କଥା, ସେତକ ବି ନାହିଁ । କହୁଚି ସିନା, ସେମାନେ କ'ଣ ମୋ କଥା ଶୁଣୁଚନ୍ତି ? ଉପେନ୍ଦ୍ର ଆଡ଼କୁ ଚାହିଁ କହିଲେ— ତୁ ବସିଚୁ ଉପୀନ, ସେଇଥିପାଇଁ ନଇଲେ ସିଏ କ'ଣ ଆଉ ମତେ ରଖନ୍ତା ! ମୋ ଚୁଟି ଝିଙ୍କି ମତେ ନାକେଦମ୍ କରି ସାରନ୍ତାଣି । ବୁଝିଲୁ, ଇମିତି କଥା, ଏଇ ମୋର ଲକ୍ଷ୍ମୀ ବୋହୂ । ମୁଁ ରାଣ ପକେଇ କହୁଚି ଉପୀନ, ସବୁ ଦୋଷ ଏଇ ହତଭାଗିମାର !

କିରଣମୟୀ ନୀରବରେ ପାଖରେ ଠିଆହୋଇ ରହିଥିଲେ । କୌଣସି କଥାର ଜବାବ ଦେଲେନି । ଧୀରେ ଧୀରେ ଘୋଷେଇ ଘର ଆଡ଼କୁ ଚାଲିଗଲେ ।

ଅଘୋରମୟୀ ସେଇମିତି କ୍ରୁଦ୍ଧସ୍ୱରରେ କହିଲେ—ଆଲୋ, ଏ ବଡ଼ଲୋକି ଝିଅ ! ଉପୀନ ମୋର ଦିନସାକ କିଛି ଖାଇନି । କିଛି

ଖାଇବାକୁ ଦେବାର ଯୋଗାଡ଼ କର । ଇମିତ ତମ୍‌ତମ୍‌ ହୋଇ ଗୃହଲେ ତ ଚଳିବନି ।

କରଣମୟୀ ଫେରିଆସି ସହଜ ସ୍ୱରରେ କହିଲେ— ସେଇଥିପାଇଁ ତ ଯାଉଛି ମା ! ଉପେନ୍ଦ୍ରକୁ ଲକ୍ଷ୍ୟକରି କହିଲେ— ପଳେଇ ଯାଅନି ଉପୀନ ! ଏଇ ୧୦ ମିନିଟ ଭିତରେ ଲୁଚି ଭାଜି ନେଇ ଆଣୁଛି । ସ୍ତବ୍‌ଧମୂର୍ଚ୍ଛିତ ପ୍ରାୟ ଦିବାକରକୁ କହିଲେ—ଦିବାକର, ତୁମେ ଆସ ଖାଇ ପକେଇବ । ମା, ଗୃହକର୍ତ୍ତ୍ରୀଙ୍କୁ ଟିକିଏ ଦୋକାନକୁ ପଠେଇଦିଅ । ଉପେନ୍ଦ୍ର ଲାଗି କିଛି ମିଠା କିଣିଆଣିବ ।

ଅଘୋରମୟୀ କିମ୍ବା ଉପେନ୍ଦ୍ର କେହିହେଲେ ତାର ଜବାବ ଦେଇ-ପାରିଲେନି । ଏଇ ବୋହୂଟିର ଅପରିମେୟ ସଂଯମ ଏବଂ ଅସୀମ ଅହଂକାର ଯେଉଁଭଳି ଏହି ସମୟରେ ବୁଦ୍ଧିର ଅଗୋଚର ହୋଇ ଏମାନଙ୍କୁ କିଛି ସମୟ ଲାଗି ନିର୍ବାକ୍‌ ବଜ୍ରାହତ ପ୍ରାୟ କରି ରଖିଲା ।

ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ କଥାବାର୍ତ୍ତା କରିବା ପରେ ଅଘୋରମୟୀ ତାଙ୍କର ଜପତପ ଶେଷ କରି ଉଠିଗଲେ । କରଣମୟୀ ପାଖକୁ ଆସି କହିଲେ—ମୋ ଘରେ ତୁମର ଖାଇବାର ଯୋଗାଡ଼ କରିଦେଇଛି ଉପେନ୍ଦ୍ର, ଏଥର ଉଠ ।

ଉପେନ୍ଦ୍ର ତୁନି ତାନି ଉଠିଆସି ନିର୍ଦ୍ଦିଷ୍ଟ ଆସନରେ ବସିବା ପରେ କରଣମୟୀ ନିକଟ ଖଟ ଉପରେ ବସିପଡ଼ି କହିଲେ—ଆଜି ଘ୍ୟାକୁଇ ଲଗେଇ ଦିଅଟା କ'ଣ ଖାଇନିଅ ଉପୀନ୍‌ ! ବେଶୀ କିଛି କରିବାକୁ ଗଲେ ବହୁତ ରାତି ହୋଇ ଯାଇଥାଆନ୍ତା ।

ଉପେନ୍ଦ୍ର ମୁହଁ ଉଠେଇ ଚାହିଁଲା । କ୍ଷୀଣ ଦୀପାଲୋକରେ ତାର ମୁହଁଟା ପଥର ଭଳି କଠିନ ଦେଖାଯାଉଥିଲା । ଖାଦ୍ୟ ରଖା ହୋଇଥିବା ଥାଳିଟା ଗୋଟାଏ ପାଖକୁ ଠେଲିଦେଇ କହିଲା—ଭାଉଜ, ଖାଇବା ପକ୍ଷରେ ଏହା ହିଁ ଯଥେଷ୍ଟ । କିନ୍ତୁ ମୁଁ ତ ଖାଇବାକୁ ଆସିନି । ତୁମ ସହିତ ନିଭୃତରେ କେତେକ କଥାବାର୍ତ୍ତା କରିବାକୁ ଆସିଛି ।

କରଣମୟୀ କହିଲେ—ମୋର ବହୁ ଭାଗ୍ୟ; କିନ୍ତୁ ଖାଇବନି କାହିଁକି ?

ଉପେନ୍ଦ୍ର କିଛି ସମୟ ଏକଦୃଷ୍ଟିରେ ଚାହିଁରହିଲା । ତାର କଠିନ ମୁଖ ଯେଉଁଭଳି କଠିନତର ଦେଖାଗଲା । କହିଲା—ତୁମେ ଯେଉଁ ଖାଦ୍ୟକୁ ଛୁଇଁଛ,

ତାକୁ ଖାଇବାକୁ କାହିଁକି କେଜାଣି ଆଜି ବଡ଼ ଘୃଣା ବୋଧ ହେଉଛି ।

କିରଣମୟୀ ନିଃଶବ୍ଦରେ ମଥାନତ କରି ବସିରହିଲେ । ବହୁସମୟ ପରେ ମୁହଁ ଉଠେଇ ଧୀରେ ଧୀରେ କହିଲେ— ତାହାହେଲେ ଖାଇବା ଉଚିତ ନୁହେ କହି କିନ୍ତୁ ସମସ୍ତ ମୁଣ୍ଡ ଉଠେଇ ଟିକିଏ ହସିଲେ । କହିଲେ— ଘୃଣା ହେବା କଥା ଅବଶ୍ୟ; କିନ୍ତୁ ତୁମ ମୁହଁରୁ ଏକଥା ଶୁଣିବି, ଏକଥା ମୁଁ କଳ୍ପନା ସୁଦ୍ଧା କରି ନ ଥିଲି । ସେ କେବଳ ଗୋଟିଏ ଲୋକ ଥିଲା ସିଏ ଘୃଣାରେ ଥାଳକୁ ଆଡ଼େଇ ଦେଇପାରନ୍ତା ।······ସେ ସତୀଶ ! କିନ୍ତୁ ତୁମେ ନୁହଁ ଉପେନ୍ଦ୍ର !

ଉପେନ୍ଦ୍ର କ୍ରୋଧ, ଘୃଣା ଓ ବିସ୍ମୟରେ ନିର୍ବାକ୍ ଭାବରେ ଗୁହିଁ-ରହିଲା । କିରଣମୟୀ ସେଭଳି ଶାନ୍ତ କଠୋର ଭାବରେ କହିବାକୁ ଲାଗିଲେ— ତୁମର ରାଗ ହେଉ ବା ଘୃଣା ହେଉ, ସବୁ ସେଇ ହବାକରକୁ ନେଇ ତ ! କିନ୍ତୁ ବିଧବା ପାଖରେ ସେ ଯାହା, ତୁମେ ବି ସେୟା । ତା ସହିତ ମୋର ସମ୍ପର୍କ କେତେଦୂର କ'ଣ ଯେ ହୋଇଛି, ସେଇଟା ଖାଲି ତୁମର ଅନୁମାନ ମାତ୍ର । କିନ୍ତୁ ସେଦିନ ଯେତେବେଳେ ନିଜ ମୁହଁରେ ଭଲ ପାଇବା କଥା ଜଣାଇଥିଲି, ସେତେବେଳେ ତ ତୁମେ ଘୃଣାରେ ମୁଁ ଦେଇଥିବା ଖାଦ୍ୟ-ପୂର୍ଣ୍ଣ ଥାଳିଟା ଏଭଳି ଆଡ଼େଇ ଦେଇ ନ ଥିଲ । ନିଜର ସ୍ୱାର୍ଥ ଦୃଷ୍ଟିରୁ ତାହାହେଲେ କ'ଣ କୁଳଟା ହାତର ମିଷ୍ଟାନ୍ନରେ ଭଲ ପାଇବାର ମଧୁ ବେଶୀ ମିଠା ଲାଗେ ?

ଉପେନ୍ଦ୍ର ଭିତରର ଦୁର୍ନିବାର କ୍ରୋଧକୁ ପ୍ରାଣପଣେ ସମ୍ବରଣ କରି କହିଲା— ଭାଉଜ, ତୁମକୁ ସ୍ମରଣ କରେଇଦେଉଛି ଯେ ଏବେ ବି ମୋର ସୁରବାଳା ବଞ୍ଚିରହିଛି । ସେ କହେ, ମଣିଷ ଯିଏ ଥରେ ଭଲ ପାଇଛି, ତାର ସାଧ୍ୟ ନାହିଁ ଆଉ କାହାରିକୁ ଭଲ ପାଇବାକୁ । ମୁଁ ଏଇ ଭରସାରେ ହିଁ ଦିବାକୁ ତୁମ ହାତରେ ସମର୍ପି ଦେଇଥିଲି । ଭାବିଥିଲି, ଏସବୁ ବିଷୟରେ ସୁରବାଳାର କେବେ ଭୁଲ ହୁଏନା ।

କଥାଟା ଶେଷ ନ ହେଉଣୁ କିରଣମୟୀ ଅକସ୍ମାତ ଦି' ହାତ ଉଠେଇ କହିଲେ—ବନ୍ଦ କର ଉପେନ୍ଦ୍ର, ତାର ଯେ ଭୁଲ ହେଉଛି, ତୁମର ହେଉନି, ଏକଥା ତୁମେ ନିଃସଂଶୟରେ କିଭଳି ବା ବିଶ୍ୱାସ କରୁଛ ?

ଉପେନ୍ଦ୍ର ହଠାତ୍ ଉଠି ଠିଆହୋଇ କହିଲା--ରାତି ବେଶୀ ହୋଇଯାଉଛି, ତର୍କ କରିବା ଭଳି ସମୟ ମୋ ହାତରେ ନାହିଁ । ମୁଁ ତୁମକୁ ଚହେଁ । କିନ୍ତୁ ଏ କଥା ନିଶ୍ଚୟ ଜାଣିରଖିବ ଯେ, ତୁମେ କାହାରିକୁ ଭଲ ପାଇପାରିବନି । ସେ କ୍ଷମତା ବି ନାହିଁ ତୁମର । ଖାଲି ତୁମେ ଅନ୍ୟ ଜୀବନର ସର୍ବନାଶ କରିଜାଣ । ତାକୁଇ କରିପାରିବ । ଛି···ଛି···ଶେଷରେ ଦିବାକୁ········ ।

ଘୃଣାରେ ତାର କଣ୍ଠରୋଧ ହୋଇପଡ଼ିଲା; କିନ୍ତୁ ସମ୍ମୁଖରେ ଚାହିଁ ଦେଖିଲା, କିରଣମୟୀର ଗୋଟାକଯାକ ମୁହଁ ଏଭଳି ବିବର୍ଣ୍ଣ ହୋଇ-ପଡ଼ିଛି, ଠିକ୍ ଯେଉଁଭଳି ତା ବୁକୁ ମଝିରେ କିଏ ଗୁଳି ମାରିଦେଇଛି ।

ଦ୍ୱାର ବାହାରେ ଠିଆହୋଇ ଅଘୋରମୟୀ ପଚାରିଲେ—ଖିଆ ସରିଲା ବାପା ଉପୀନ !

--ନା ମାଉସୀ, ଖାଇଲିନି । ଘର ଖରାପ ଲାଗୁଛି ।

—ଖରାପ ଲାଗୁଛି ? ସେ କ'ଣ ? ତାହାହେଲେ ତୁ ଏଇଠି ଶୋଇପଡ଼, ଆଜି କୁଆଡ଼କୁ ଯାଆନା ବାପା !

—ନା ମାଉସୀ, ମତେ ଯିବାକୁ ହିଁ ପଡ଼ିବ । ଉପେନ୍ଦ୍ର ଏତକ କହି ଦେଇ ବାହାରକୁ ଚାଲିଆସିଲା । ଦିବାକର ଘର ଆଗରେ ଆସି ଡାକିଲା ଦିବା !

ଦିବାକର ଘର ଲଗେଇ ଦେଇ ଶୋଇ ପଡ଼ିଥିଲା । ତାର ଅନ୍ତର କଥା କେବଳ ଅନ୍ତର୍ଯ୍ୟାମୀଙ୍କୁ ହିଁ ଜଣାଇଲା । ଅବ୍ୟକ୍ତ କଣ୍ଠରେ ଆଜ୍ଞା କହି କମ୍ପିତ ପଦରେ ବାହାରେ ଆସି ଠିଆହେଲା । ଉପେନ୍ଦ୍ର କହିଲା— ତୋ ବାକ୍ସ ଠିକ୍ କରିନେ, ମୋ ସାଥିରେ ଯିବାକୁ ହେବ ।

ଅଘୋରମୟୀ ବିସ୍ମିତ ଓ ବ୍ୟସ୍ତ ହୋଇ କହିଲେ—ସେ କ'ଣ ଉପୀନ ? ରାତିରେ ପିଲାଟା କୁଆଡ଼େ ଯିବ ?

—ମୋ ସାଥିରେ ଯିବ, ସେଥିରେ ଚିନ୍ତା କରିବାର କ'ଣ ଅଛି ? ଯା ଶୀଘ୍ର ସଜ ହୋ, ମୁଁ ଗାଡ଼ି ଡାକିଆଣୁଛି ।

ଅଘୋରମୟୀ ଉପେନ୍ଦ୍ରର ହାତ ଧରି ମିନତି କରିବାକୁ ଲାଗିଲେ – ନା ବାପା ! ଆଜି ଅମାବାସ୍ୟା, ଘର ଛାଡ଼ି କୌଣସିମତେ ରାତିରେ ଯିବା ହୋଇପାରିବନି । ପିଲାଲୋକ, ଅନ୍ୟାୟ କରି ପକେଇଛି । ଏଇଠି

ତାଙ୍କୁ ନ ରଖ ପଛନ୍ତ, କାଲି କମ୍ପା ପଥରଦାନ ଦିବ । କିନ୍ତୁ ଆଜି ରାତ୍ରିରେ ମୁଁ ତାଙ୍କୁ କୌଣସିମତେ ଛାଡ଼ିବିନି ।

ବାଧା ପାଇ ଉପେନ୍ଦ୍ର ହତାଶ ହୋଇ କହିଲା—କିନ୍ତୁ ଗୋଟାଏ ରାତି ବି ତାଙ୍କୁ ଏଠି ରଖିବାକୁ ଇଚ୍ଛା ହେଉନି ମାଉସୀ ! ଆଚ୍ଛା, ଆଜି ଅମାବାସ୍ୟା ରାତ୍ରିଟା ଯାଉ ପଛେ, କିନ୍ତୁ କାଲି ସକାଳେ ବାଧା ଦେବନି । ଦିନ ଦଶଟା ବେଳକୁ ଯାଇ ଯିମିତି ହେଲେ ସେ ଜ୍ୟୋତିଷ ଘରେ ପହଞ୍ଚିବ । ଉପେନ୍ଦ୍ର ଏତିକ କହି ଦେଇ ଅଘୋରମୟୀଙ୍କୁ ନମସ୍କାର କରି ଦ୍ରୁତ ପଦରେ ଅଗ୍ରସର ହେଲା ।

ସଦର ଦରଜା ପାଖରେ ଅନ୍ଧକାରରେ ପଛରୁ କିଏ ଜଣେ ଚାଦରକୁ ଟାଣି ପକେଇଲା । ମୁହଁ ଫେରେଇବାମାତ୍ରେ କିରଣମୟୀ ଆଖି ପଲକରେ ଆସି ଆଗରେ ଠିଆହୋଇ ହାତ ଦେଇ ତାର ପାଦ ଚାପି ଧରି କହିଲେ—"ମୋ ବୁକୁ ଫାଟିଯାଉଚି ଉପେନ୍ଦ୍ର, ସବୁକଥା ମିଛ । ତୁ···ତୁ···ଏତେ ଶ୍ରେଷ୍ଠ ବୋଲି ମତେ ତୁମେ ଭାବିପାରିଲ ?"

—ଚୁପ୍ କର । ଅନେକ ଅଭିନୟ ଦେଖିଚି, ଆଉ ଦେଖି ପାରିବିନି···କହି ଉପେନ୍ଦ୍ର ଅସହ୍ୟ ଘୃଣାରେ ତାଙ୍କର ମୁଣ୍ଡଟାକୁ ଜୋରରେ ଠେଲି ଦେଉ ଦେଉ କିରଣମୟୀ ପାଦ ଛାଡ଼ିଦେଇ ଚିତ୍ ହୋଇ ପଡ଼ିଗଲେ ।

ନାସ୍ତିକ, ଅପବିତ୍ର କହି ଉପେନ୍ଦ୍ର ଭ୍ରୂକ୍ଷେପ ନ କରି ଦ୍ରୁତ ବେଗରେ ବାହାରିଗଲା ।

କିରଣମୟୀ ବିଦ୍ୟୁତ୍‌ବେଗରେ ଉଠି ବସିଲେ । କିଏ ଯେମିତି ତାଙ୍କୁ ଚିତ୍କାର କରି କହିବାକୁ ଲାଗିଲା; କିନ୍ତୁ ପାଟିରୁ ସ୍ୱର ବାହାରିଲା ନାହିଁ । କେବଳ ଉନ୍ମୁକ୍ତ ଦୁଆର ବାହାରେ ଅନ୍ଧକାର ଭିତରେ ଚାହିଁରହିଲେ ଏବଂ ଆଖିରୁ ଯେମିତି ତାଙ୍କର ନିଆଁ ଗୁଡ଼ାଏ ଝଡ଼ିପଡ଼ିଲା ଭଳି ଲାଗିଲା ।

ଅନେକ ଦିନ ପୂର୍ବେ ଠିକ୍ ଏଇଠି ଠିଆହୋଇ ତାଙ୍କ ଦି'ଆଖିରେ ଏଇମିତି ଉନ୍ମତ୍ତ ଚାହାଣୀ, ଏଭଳି ପ୍ରଜ୍ୱଳିତ ବହ୍ନିଶିଖା ଦେଖା ଦେଇଥିଲା—ଯେଉଁଦିନ ସତୀଶକୁ ସାଙ୍ଗରେ ଧରି ଆସି ଉପେନ୍ଦ୍ର ବାହାରି ହୋଇ

ଯାଇଥିଲା । ପୁଣି ଆଜ ଶେଷ ବିଦାୟ ଦିନରେ ତା ବିରୁଦ୍ଧରେ ସେଇ ଦୁଇ ଆଖିରେ ସେଭଳି ନିଆଁ ଜଳିବାକୁ ଲାଗିଲା ।

—ଏ ମା, ଏଇ ତ ମା ! ଏଇଠି ଏଭଳି ବସିଛ କାହିଁକି ମା !

—ତୁ ଘରକୁ ଯାଉନୁ ନା···କହି କରୁଣାମୟୀ ଧଡ଼ପଡ଼ କରି ଉଠି ଠିଆହୋଇ ତା ହାତ ଧରି କହିଲେ—ଆସିଲୁ ଟିକିଏ ମୋ ଘରକୁ, ତୋ ସାଙ୍ଗରେ କଥା ଅଛି । ଏହାକହି ତାକୁ ଜୋର କରି ନିଜ ଘରକୁ ଟାଣି ଆଣିଲେ । ଘପଟାକୁ ତେଜେଇ ଦେଇ ବାକ୍‌ସ ଖୋଲି ହଳେ ରୂପାର ମୋଟା ତାଡ଼ ଗୁଲବାଣୀ ହାତରେ ଦେଇ କହିଲେ—ତୋ ଝିଅକୁ ପିନ୍ଧିବା ଲାଗି ଦେଲି, ଏଁ······ନା, ନା ମୋ ରାଣ, ତତେ ନେବାକୁ ହିଁ ପଡ଼ିବ । ଆଉ କେବେ ଯଦି ଦେଖା ନ ହୁଏ···କହି କହୁ ସେ କଳି କଳି ହୋଇ କାନ୍ଦିବାକୁ ଲାଗିଲେ ।

—ଏସବୁ କି କାଣ୍ଡ ମା ! କହି ସେ ବିହ୍ୱଳ ଦୃଷ୍ଟିରେ ଗୁହିଁ-ରହିଲା । କରୁଣାମୟୀ ଆଖି ପୋଛୁ ପୋଛୁ କହିଲେ—ତୋ ଛଡ଼ା ମୋର ଆପଣାର ବୋଲି କେହି ନାହିଁ । ମତେ ତୁ ରକ୍ଷା କର । ମତେ ଏଇଠୁ ମୁକ୍ତି ଦେ ମା ! ଏଇଠି ରହିଲେ ମୋ ବୁକୁ ଫାଟିଯିବ ।

ଗୁଲବାଣୀ ନିଃଶବ୍ଦରେ କରୁଣାମୟୀର ଆପାଦମସ୍ତକ ବାରମ୍ବାର ନିରୀକ୍ଷଣ କରି କହିଲା—ସବୁ କଥା ବୁଝୁଚି ମା, ମୁଁ ତ ବି ସେଇ ମାଇପି ଲୋକ । ମୋର ମିଣିପ ଯେଉଁଦିନ ପୋଖରୀତୁଠରେ କାନ୍ଦି କାନ୍ଦି କହିଥିଲା, ଗୁଲାଲ ମୁକ୍ତା, ଆଉ ଦେଖା ହୋଇ ନ ପାରେ, ସେତେବେଳେ ମୁଁ ବି ତା ପାଦତଳେ ପଡ଼ି କାନ୍ଦି କାନ୍ଦି କହିଥିଲି—ଆନେ୍ହ, ମତେ ସାଙ୍ଗରେ ନିଅ । ଛାଡ଼ିଦେଇ ଗଲେ ମୋ ବୁକୁ ଫାଟିଯିବ । ତାହାହେଲେ କ'ଣ କାଲି ସକାଳେ ହବାବାବୁ ଏ ଘର ଛାଡ଼ି ଗୁଲିଯିବେ ନା ?

କରୁଣାମୟୀ କହିଲେ—ହୁଁ । କିନ୍ତୁ କଲିକତାରେ ଆଉ ରହିହେବ ନି । କୁଆଡ଼କୁ ଗଲେ ଭଲ ହେବ କହିଲୁ ଦେଖି !

ମୁକ୍ତା ଗୁଲବାଣୀ ଟିକେହେଲେ ଚିନ୍ତା ନ କରି କହିଲା—ତେବେ ଆରକାନ ଯାଅ ମା, ସୁଖରେ ରହିବ । ମୋ ···ାନ ଭଉଣୀ ବି ସେଇଠି । ମୋ ନାଁ । କହିଲେ ତୁମକୁ ସେ ମୁଣ୍ଡରେ ମୁଣ୍ଡେଇ ରଖିବ । ଆଜି ତ ମଙ୍ଗଳବାର, କାଲି ଭୋରରୁ ଜାହାଜ ଛାଡ଼ିବ । ଯିବ ମା ସେଇଠିକି ?

କିରଣମୟୀ ମୁକ୍ତାର ହାତ ଧରି କହିଲେ—ହଁ, ଯିବି ।

ମୁକ୍ତା ଭରସା ଦେଇ କହିଲା—ତାହାହେଲେ ତୁମେ ସଜ ହୋଇ ରହିଥା । ସକାଳୁ ଗାଡ଼ି ଆଣି ନେଇଯିବି । କେହି ହେଲେ ଜାଣିପାରିବେନି ତୁମେ କେଉଁଠିକି ଗଲ ବୋଲି । ଯାଅ ମା ଯାଅ, ଦିବାବାବୁଙ୍କୁ ଛାଡ଼ି ତୁମେ ବଞ୍ଚିବନି ।

ଦିବାକର !

ରାତି ସେତେବେଳକୁ ପାହି ଆସିଥାଏ । ଦିବାକର ଚମକି ଉଠି ବସିଲା । ଠିକ୍ ଆଗରାରେ କିରଣମୟୀ ଠିଆ ।

—ଦିବାକର ଚମକି କହିଲା—ଏଇ କ'ଣ ଭାଉଜ, ତୁମେ ?

—ହଁ ଦିବାକର, ମୁଁ । କହି କିରଣମୟୀ ବହୁତ ଦିବାକରର ବୁକୁ ଉପରେ ଆକସ୍ମାତ୍ ଛେଚି ହୋଇ ପଡ଼ିଗଲେ । କହିଲେ—ଦିବାକର, ମତେ ଛାଡ଼ି କୁଆଡ଼େ ଚାଲିଯିବ ? କାହିଁ ଗଲ ଦେଖି !

ପ୍ରତ୍ୟୁତ୍ତରରେ ଦିବାକର ପଦେ କଥା ବି କହିପାରିଲାନି କେବଳ ତା ଦି' ଆଖିରେ ଜଳ ଭରିଉଠିଲା ।

କିରଣମୟୀ ଉଠି ବସି ଲୁଗାକାନିରେ ତାର ଲୁହ ପୋଛିଦେଇ କହିଲେ—ଛି, କାନ୍ଦୁଚ ?

—ଭାଉଜ, ମୁଁ କରୁଥାଏ ! ଭାଇନା ଯେ ଆଜ ସକାଳେ ମତେ ଚାଲିଯିବାକୁ କହିଛନ୍ତି !

ଉପେନ୍ଦ୍ର ନାଁ ପଡ଼ିଲାମାତ୍ରେ କିରଣମୟୀ କ୍ରୋଧରେ ଜଳିଉଠି କହିଲେ—ଭାଇନା ? କିଏ ସେ ଭାଇନା ? ସେ କ'ଣ ମୋଠୁ ବଳି ବେଶୀ ନିଜର ? ତୁମକୁ ଦେଖିବାକୁ ନ ପାଇଲେ କ'ଣ ତାର ବୁକୁ ଫାଟିଯାଏ ? ନା ଦିବାକର, ସଂସାରରେ କାହାର ସାଧ ନାହିଁ ଆମ ଦୁହିଁଙ୍କୁ ଅଲଗା କରି ରଖିବାକୁ । ବାହାରେ ଗାଡ଼ି ଠିଆ ହୋଇଛି, ଚାଲ ।

—କୁଆଡ଼େ ?

—ମୁଁ ଯେଉଁଠିକି ନେଇଯିବି ସେଇଠିକୁ ।

—ଆଚ୍ଛା ଚାଲ··· କହି ଦିବାକର ଉଠିବାକୁ ଉଦ୍ୟତ ହେଲା । ତାର ମନେହେଲା, ସେ ଚେଇଁନି, ନିଦରେ ସ୍ୱପ୍ନ ଦେଖୁଛି । ପରକ୍ଷଣରେ କିରଣମୟୀ ପଛେ ପଛେ ଯାଇ ଘର ବାହାରେ ଆସି ଠିଆହେଲା ।

## ଚଉତିରିଶି

ମାଙ୍କଡ଼ସା ଯେଉଁଳି ପତଙ୍ଗକୁ ଟାଣିଆଣେ, ସେହିଭଳି ଦୁର୍ନିବାର ଯାଦୁମନ୍ତ୍ରରେ କିରଣମୟୀ ଅର୍ଦ୍ଧସଚେତନ ବିମୂଢ଼ଚିତ୍ତ ହତଭାଗ୍ୟ ଦିବାକରକୁ ଜାହାଜଘାଟକୁ ଟାଣିନେଇ ଆସିଥିଲେ । ଦୁହେଁ ଟିକେଟ କିଣି ଗୋଟିଏ ଯାତ୍ରୀଜାହାଜରେ ଯାଇ ବସିଲେ । ଏ ଜାହାଜରେ ଭିଡ଼ ନ ଥିବା ହେତୁ ଜାହାଜ କର୍ତ୍ତୃପକ୍ଷ ସ୍ୱାମୀ ସ୍ତ୍ରୀ ମନେକରି ଗୋଟାଏ କ୍ୟାବିନ ଭିତରେ ଦିବାକର ଓ କିରଣମୟୀ ପାଇଁ ରହିବା ବ୍ୟବସ୍ଥା କରିଦେଲେ । ଏଇଠି କିରଣମୟୀଙ୍କୁ ବସେଇଦେଇ ଦିବାକର ଡେକ୍‌ର ଏକ ନିଭୃତ ଅଂଶରେ ରେଲିଂ ଧରି ନୀରବରେ ଠିଆହୋଇ ରହିଲା । କ୍ରମେ ଡେକ୍‌ରେ ପାସେଞ୍ଜରଙ୍କ ଭିଡ଼ କମିଯିବାରେ କୁଲିମାନଙ୍କ ଗୋଳମାଳ ବନ୍ଦ ହୋଇଆସିଲା । ନଙ୍ଗର ଉଠେଇବାର କର୍କଶ ଶବ୍ଦରେ ଜାହାଜର ସମ୍ମୁଖ ଅଂଶଟା ଭଳି ଦିବାକରର ବୁକୁ ଭିତରଟା ମଧ୍ୟ କମ୍ପିବାକୁ ଲାଗିଲା । କିଛି ସମୟ ଭିତରେ ଜାହାଜ ଭାଗୀରଥୀ ବା ଗଙ୍ଗା ମଝିକୁ ଚାଲିଆସିଲା ଏବଂ ଅକୂଳ ସମୁଦ୍ର ଭିତରେ ପ୍ରବେଶ କରିବା ଉଦ୍ଦେଶ୍ୟରେ ଧୀରେ ଧୀରେ ଗତି ସଞ୍ଚୟ କରିବାକୁ ଲାଗିଲା । ଯେତେବେଳେ ଠିକ୍ ବୁଝାଗଲା ଜାହାଜ ଚାଲିଚି, ସେତେବେଳେ ଦିବାକରର ଦି'ଆଖି ଜଳରେ ଭରିଉଠିଲା ଏବଂ ସେ ତାର ଦି'ହାତ ଜୋରରେ ଚାପି ଧରି କୌଣସିମତେ ଉଚ୍ଛ୍ୱସିତ କ୍ରନ୍ଦନ ରୁଦ୍ଧ କରି ଲଜ୍ଜା ନିବାରଣ କଲା । ପୂର୍ବ ଦିଗର ଆକାଶଟା ସେତେବେଳେ ତରୁଣ ସୂର୍ଯ୍ୟ ଆଭାରେ ରକ୍ତାଭ ହୋଇ ଉଠିଥିଲା । ସେତେବେଳେ ହୁଏତ ତାର ଉପୀନ୍‌ଦା ଜ୍ୟୋତିଷ ଘରେ ଶଯ୍ୟା ତ୍ୟାଗ କରି ନ ଥିବେ । ପଳେଇଯିବା ଉଦ୍ଦେଶ୍ୟରେ ଘରୁ ବାହାରହେବା ପର୍ଯ୍ୟନ୍ତ ଯେଉଁ ଭୀଷଣ ଅବ୍ୟକ୍ତ ଗ୍ଲାନି ଦିବାକର ହୃଦୟ ଭିତରେ ପୁଞ୍ଜିଭୂତ ହୋଇ ଆସିଥିଲା, ତାର ଶେଷ ଆଡ଼ଟା ଯେ କେତେ କୁତ୍ସିତ ଓ ନିଦାରୁଣ, ବର୍ତ୍ତମାନ ସବୁ କଥା ତା ଆଖିରେ ଗୋଟି ଗୋଟି ହୋଇ ଫୁଟିଉଠିଲା । ଜଣେ ଭଦ୍ର ଗୃହସ୍ଥ ବୋହୂକୁ କେଉଁ ଏକ ଅଜଣା ଦେଶକୁ ଯେ ସେ ଧରି ଚାଲିଯାଉଚି, ଏଭଳି ଅସମ୍ଭବ କାଣ୍ଡ ତା ଅନ୍ତର

ଭିତରେ ଏପର୍ଯ୍ୟନ୍ତ ସ୍ଥାନ ପାଇନି । ତାର ଶିକ୍ଷା, ସଂସ୍କାର, ଚରିତ୍ର, ସ୍କୁଲ, କଲେଜ, ଦେଶ, ବନ୍ଧୁବାନ୍ଧବ ଏବଂ ସର୍ବୋପରି ତା ପିତୃପ୍ରତିମ ଉପୀନ୍ ଭାଇନା । ଏସବୁରୁ ଯେ ସେ କିଭଳି ବିଚ୍ଛିନ୍ନ ହୋଇପଡ଼ୁଛି, ବର୍ତ୍ତମାନ ନିଃସନ୍ଦେହରେ ଉପଲବ୍ଧି କଲା ଯେତେବେଳେ ସେ ଦେଖିଲା, ଜାହାଜଟା ସତରେ ଆଗକୁ ଚାଲୁଛି । ଉପୀନ୍ ଭାଇନାଙ୍କ ପାଖରେ ଆଜି ବି ସେ ଶ୍ରେଷ୍ଠ ପିଲାଟାଏ । ସେଇ ଉପୀନ୍ ଭାଇନାର ମନୋଭାବ ଏହି ସଂବାଦରେ କ'ଣ ଯେ ହୋଇପଡ଼ିବ, ତାହା କଳ୍ପନା କରି ତାର ହୃତ୍ସ୍ପନ୍ଦନ ଯେପରି ମନେହେଲା ବନ୍ଦ ହୋଇଯାଉଛି । ସେଇଠି ଦୁଇଜଣଙ୍କ ଭିତରେ ମୁହଁକୁ ଢାଙ୍କି ସେ ବସିପଡ଼ିଲା ଏବଂ ନିମିଷକେ ମଧ୍ୟରେ ତାର ଅଦମ୍ୟ ଆଖି ପାଣି ଝରଝର ହୋଇ ଝରି ପଡ଼ିବାକୁ ଲାଗିଲା । ଏଭଳି ସମୟରେ କିରଣମୟୀ ତା ପାଖରେ ଆସି ଠିଆହେଲେ ଏବଂ ମୁଣ୍ଡରେ ହାତ ରଖି ସ୍ନେହାର୍ଦ୍ର କଣ୍ଠରେ କହିଲେ—ଦିବାକର, ଟିକିଏ ଘରକୁ ଆସ ।

ବହୁ ଚେଷ୍ଟା ଓ ବହୁ ସମୟ ପରେ ଦିବାକର ତାର ଆଖିପାଣି ଆଖିରେ ମାରିଦେଇ ମୁହଁକୁ ତଳକୁ କରି ଠିଆ ହେଲା ଏବଂ ଧୀରେ ଧୀରେ କିରଣମୟୀଙ୍କର ଅନୁସରଣ କରି କ୍ୟାବିନ ଭିତରେ ଆସି ଉପସ୍ଥିତ ହେଲା । କିରଣମୟୀ ଦୁଆର ବନ୍ଦ କରିଦେଇ ଦିବାକରକୁ ନିଜ ପାଖରେ ବସେଇ ତାର ଦି'ହାତ ନିଜ ହାତରେ ଟାଣିନେଇ କହିଲେ—କାନ୍ଦୁଛ କାହିଁକି କହିଲ ଦିବାକର ?

ଏଇ ପ୍ରଶ୍ନରେ ଦିବାକର ଆଖିରେ ଆହୁରି ଜଳ ଭରିଆସିଲା ।

କିରଣମୟୀ ଲୁଗାକାନିରେ ତାକୁ ପୋଛିଦେଇ କହିଲେ—ସତ କହିଲ ଦିବାକର, ତୁମେ ମତେ ଭଲ ପାଅ କି ନା ?

ଦିବାକର କିଛି ହେଲେ କହିପାରିଲା ନାହିଁ । ନିତାନ୍ତ ପିଲାଙ୍କ ଭଳି ଆକୁଳ ଭାବରେ କାନ୍ଦିବାକୁ ଲାଗିଲା ।

କିରଣମୟୀ ତାର ଅଶ୍ରୁସିକ୍ତ ମୁଖ ନିଜ ବକ୍ଷ ଉପରକୁ ଟାଣି ନେଇ ଚାପି ରଖିଲେ ଏବଂ ଧୀରେ ଧୀରେ ତା ମୁଣ୍ଡରେ ଅଙ୍ଗୁଳି ଚାଳନା କରି ନିଃଶବ୍ଦରେ ସାନ୍ତ୍ୱନା ଦେବାକୁ ଲାଗିଲେ ।

ଏହିଭଳି ବହୁ ସମୟ କଟିଗଲା । ଦିବାକରର ଅଶ୍ରୁଧାରା ଆପେ ଆପେ ନିଃଶେଷ ହୋଇଗଲା । ସେ ଅପେକ୍ଷାକୃତ ସୁସ୍ଥ ହୋଇ ଉଠି ବସିବା

ପରେ କୌଣସି କଥା ନ କହି ଆସ୍ତେ ଆସ୍ତେ ବାହାରକୁ ଚାଲିଗଲା । ଜାହାଜ ସେତେବେଳେ ନଦୀ ଅତିକ୍ରମ କରି ସମୁଦ୍ର ଅଭିମୁଖେ ଯାତ୍ରା ଆରମ୍ଭ କରିବା ପାଇଁ ଉଦ୍ୟତ ହେଉଥାଏ ।

ଦିବାକର ରେଲିଂ ପାଖକୁ ଗୋଟାଏ ଚୌକି ଟାଣିଆଣି ପୁଣିବସି ପଡ଼ିଲା । ଦୂର ଅଦୂରରେ ଜଳସ୍ଥଳରେ ଯାହା ଯେତେ ଦୃଶ୍ୟ ତା ଆଖିରେ ପଡିଲା, ସେମାନଙ୍କ ପାଖରୁ ମନେ ମନେ ଅତି ବେଦନାର ସହିତ ଚିର ବିଦାୟ ଗ୍ରହଣ କରୁ କରୁ ଅନ୍ତରର ଅସହ୍ୟ ଦୁଃଖ ଅନ୍ତର୍ଯ୍ୟାମୀଙ୍କୁ ନିବେଦନ କରିବାକୁ ଲାଗିଲା ।

କିଛି ସମୟ ପରେ ପୁଣି କ୍ୟାବିନ ଭିତରୁ ଡାକ ପଡ଼ିଲା ।

କିରଣମୟୀ କହିଲେ—ସମୟ ବହୁତ ହୋଇଗଲାଣି, ଗାଧୋଇ ଆସ । ମୁଁ ତୁମ ପାଇଁ ଜଳଖିଆ ଠିକ କରି ରଖୁଛି । ସେ ଅଳ୍ପ ଟିକିକ ତଳେ ଗାଧୁଆଁ ସାରି ଦେଇଥିଲା । ପିଠି ଉପରେ ଓଦା ବାଳଗୁଡ଼ାକ ବିଛେଇଦେଇ କ୍ୟାବିନର ଚୌକିରେ ବସି ହାଣ୍ଡି ମୁହଁ ଖୋଲି କ'ଣ ଗୁଡ଼ାଏ ଆହାର୍ଯ୍ୟ ସାମଗ୍ରୀର ଜମାଖର୍ଚ୍ଚର ହିସାବ କରୁଥିଲା । ରାତିରେ ଗୃହସ୍ୱାମୀ ମୁକ୍ତା ସାହାଯ୍ୟରେ ସେ ଏସବୁ ସଂଗ୍ରହ କରିଥିଲା ।

ଦିବାକର ଜବାବ ଦେଲା—ତୁମେ ଖାଇନିଅ, ମତେ ଭୋକ ହେଉନି ।

କିରଣମୟୀ ମୁହଁ ଉଠେଇ ଚାହିଁଲେ । କହିଲେ – ସେ କଥା ହେବନି । ଏବେ ତୁମେ ମୋର ସର୍ବସ୍ୱ, ତୁମକୁ ନ ଖୁଆଇ ମୁଁ କିଛି ହେଲେ ସ୍ପର୍ଶ କରି ନ ପାରେ । ଏକଥା ଶୁଣି ଦିବାକର ଲଜ୍ଜାରେ ଯେମିତି ମରିଗଲା । କୌଣସି କଥା ନ କହି ସେ ବାହାରକୁ ଯିବାକୁ ଉଦ୍ୟତ ହେବାମାତ୍ରେ କିରଣମୟୀ ତାକୁ ଧରି ପକେଇ କହିଲେ—ଯାଉଚ କୁଆଡ଼େ ? ଇଏ ଯେ ସପ୍ତରଥୀର ବ୍ୟୂହ । ପଶିଯିବାକୁ ବାଟ ଅଛି; କିନ୍ତୁ ବାହାର ହେବା ଲାଗି ବାଟ କ'ଣ ସମସ୍ତଙ୍କୁ ଜଣାଥାଏ ? ଯଦି ବାହାରିଯିବାକୁ ଇଚ୍ଛା ଥିଲା, ତାହାହେଲେ ଏ ବିଦ୍ୟା ତୁମେ ତୁମ ଉପୀନ୍ ଭାଇନା ପାଖରୁ ଶିଖିନେଲନି କାହିଁକି ?

ଟିକିଏ ନୀରବ ରହିବା ପରେ ପୁଣି କହିଲେ—ତାମସା ଛାଡ଼ି ଦିବାକର ! ଅବାଧ୍ୟ ହୁଅନି, ଗାଧୋଇ ଆସି କିଛି ଖାଇନିଅ । ତାପରେ

ବାହାରେ ରେଲିଂ ଧରି ଯେତେ ଇଚ୍ଛା ନେତ୍ର କାନ୍ଦୁଥାଅ, ମୁଁ କୌଣସି ବାଧା ଦେବ ନାହିଁ । କିନ୍ତୁ ଏକଥା କିନ୍ତୁ ନିଶ୍ଚିତ ଦିବାକର, ଭବିଷ୍ୟତକୁ ଏଇ ଆଖିର ଲୁହ ବହୁତ ଦରକାର ହେବ । ଏଭଳି ଅନାବଶ୍ୟକ ଭାବରେ ବାଜେ ଖରଚ କରିଦେଇ ପରେ ଅନୁଶୋଚ ଯେମିତି ନ କର ।

ଦିବାକର କୌଣସି ଜବାବ ଦେଲନି । ଆଗନ୍ତୁକ ଦିନର ଏଇ ନିଷ୍ଠୁରତମ ପରିଣାମର ଇଙ୍ଗିତ ନତଶିରରେ ବହନ କରି ଗାଧୋଇବା ଲାଗି ସେ ଚୁପ୍‌ଚାପ୍ ବାହାରିପଡ଼ିଲା । ଶୂନ୍ୟ କକ୍ଷରେ କରୁଣାମୟୀ ସ୍ତବ୍‌ଧ ଚିତ୍ତରେ ବସିରହିଲେ । ତାଙ୍କ ବିଦ୍ରୂପ କଣ୍ଠ ଖାଲି ଦିବାକରକୁ ବିଦ୍ଧ କଲା ନାହିଁ, ତାହା ସହସ୍ରଗୁଣିତ ହୋଇ ନିଜ ବକ୍ଷ ଭିତରକୁ ଫେରି ଆସିଲା ।

ବାହାରକୁ ଆସି ଦିବାକର ଇତସ୍ତତଃ ବୁଲି ବୁଲି ଜାହାଜର ଯେଉଁ ଅଂଶରେ ତୃତୀୟ ଶ୍ରେଣୀର ଯାତ୍ରୀମାନେ ଖୁନ୍ଦାଖୁନ୍ଦି ହୋଇ ବସି-ଥିଲେ, ତ.ର ତଳକୁ ନଇଁ ଆସିଲା । ବିଭିନ୍ନ ପ୍ରଦେଶର ନାନା ବର୍ଣ୍ଣର ଯାତ୍ରୀମାନଙ୍କ ଭିତରେ ନିଜ ମନକୁ ଭୁଲାଇବାକୁ ସେ ଉଦ୍ୟମ କଲା । ଏଇ ଭାରତବର୍ଷ ଭିତରେ କେତେ ବିଭିନ୍ନ ଜାତି, କେତେ ବିଚିତ୍ର ପୋଷାକ-ପରିଚ୍ଛଦ, କେତେ ଅଜ୍ଞାତ ଭାଷା ଯେ ପ୍ରଚଳିତ, ଦିବାକର ଏଇ ପ୍ରଥମ କରି ଦେଖି ବିସ୍ମିତ ହୋଇପଡ଼ିଲା । ଜାହାଜ ଭିତରେ ସେହି ଜନତା ଓ ନାନା-ବିଧ ଭାଷାର ସମ୍ମିଶ୍ରଣରେ ଯେଉଁ ଅପରୂପ ଶବ୍ଦରାଶି ଉତ୍ଥିତ ହେଉଛି, ତାହା ଶୁଣିବାକୁ, ଦେଖିବାକୁ ବଡ଼ ବିଚିତ୍ର ବୋଧହେଲା ତାକୁ । ସେ ସ୍ତବ୍‌ଧ, ବିସ୍ମିତ ଓ ଚକିତ ହୋଇପଡ଼ିଲା ।

ଅଳ୍ପଟିକିଏ ସ୍ଥାନ ଲାଗି ଯାତ୍ରୀମାନଙ୍କ ଭିତରେ ଯେଉଁ ପାଟିତୁଣ୍ଡ, ଯେଉଁ ଠେଲାପେଲା, ତାହା ସେତେବେଳକୁ ବନ୍ଦ ହୋଇ ଆସିଥିଲା । ଯାତ୍ରୀମାନେ ନିଜ ନିଜର ସ୍ଥାନ ଟିକକ ଉପରେ ଶେଯ ବିଛେଇ ଦେଇ ଜିନିଷପତ୍ରକୁ ଯଥାସ୍ଥାନରେ ରଖି ଯଥାସାଧ୍ୟ ନିରାପଦ ହେବା ପରେ ପ୍ରତିବେଶୀ ସାଥିରେ କଥାବାର୍ତ୍ତା ଆରମ୍ଭ କରି ଦେଇଥାଆନ୍ତି । ପ୍ରତ୍ୟେକେ ପ୍ରତ୍ୟେକର ସନ୍ତୋଷଜନକ ପରିଚୟ ଗ୍ରହଣ ଲାଗି ଉତ୍ସୁକ ।

ଗୋଟିଏ ଅଂଶରେ ଦିବାକର ପ୍ରତି ଦୃଷ୍ଟି ପଡ଼ିବା ମାତ୍ରେ ଜଣେ ବଙ୍ଗାଳୀ ଠିଆହୋଇ ପାଟିକରି ଡାକିବାକୁ ଲାଗିଲା— ବାବୁ ମହାଶୟ,

ଇଆଡ଼େ ଟିକିଏ ଆସନ୍ତୁ । ଲୋକଟି ପାଖରେ ଜଣେ ବର୍ଷୀୟସୀ ସ୍ତ୍ରୀଲୋକ ବସିଥିଲା । ସେ ମଧ୍ୟ ଏହି ସଂବୋଧନକୁ ସମର୍ଥନ କଲା ।

ଦିବାକର ବହୁ ପରିଶ୍ରମରେ ବହୁ ଲୋକଙ୍କ ତିରସ୍କାର ଓ ଗାଳି ଆଦି ସହ୍ୟକରି ଭିଡ଼ ଭିତରେ ସାବଧାନରେ ପାଦ ପକେଇ ଉପସ୍ଥିତ ହେବାମାତ୍ରେ ଲୋକଟି ସିନ୍ଦୁକ ଉପରେ ବସିବାକୁ କହିଦେଇ ସଙ୍ଗେ ସଙ୍ଗେ କହିଲା—ଏଇଟା ମୋର ଟିଣ ସୁଟ୍‌କେଶ ନୁହେଁ ମଜଭୁତ ଲୁହାର; ଆପଣ ନିଶ୍ଚିନ୍ତରେ ବସନ୍ତୁ । ଆପଣଙ୍କ ଜାତି ?

—ବ୍ରାହ୍ମଣ ।

—ତତ୍‌କ୍ଷଣାତ୍ ଲୋକଟି ଦୁଇ ହାତ ପ୍ରସାରିତ କରି ଦିବାକର ଜୋତା ଉପରୁ ପଦଧୂଳି ସଂଗ୍ରହ କରି ନେଇ ଜିହ୍ୱା, ମସ୍ତକ ଓ କଣ୍ଠଦେଶରେ ସ୍ଥାପନ କରି କହିଲା—ଭାବୁଥିଲି, ଏଇ କେଇଟାଦିନ ସମ୍ଭବତଃ ବୃଥାରେ କଟିଯିବ । ଯାହାହେଉ ଆପଣ ଅଛନ୍ତି ତ । ଆଚ୍ଛା, କେଉଁଠି ରହୁଛନ୍ତି ?

ଦିବାକର ଅଙ୍ଗୁଳି ନିର୍ଦ୍ଦେଶ କରି ଉପରକୁ ଦେଖାଇଦେବାରେ ସେ କହିଲା—କ୍ୟାବିନରେ ଅଛନ୍ତି ? ଯେଉଁଠି ରହିଥାଆନ୍ତୁ ପଛକେ, ଦିନାନ୍ତରେ କଞ୍ଚିତ୍ ପଦଧୂଳିରୁ ବଞ୍ଚିତ କରିବେନି । ଯିବେ କେଉଁଠିକି ? ରେଙ୍ଗୁନ ?

ଦିବାକର ମୁଣ୍ଡ ହଲେଇ କହିଲା—ନା, ଆରାକାନ ।

ଆରାକାନରେ ତ ମୁଁ ରହେ । ମୁଁ ତ ବହୁ ବର୍ଷ ଧରି ରହିଛି, ଆପଣଙ୍କୁ ତ କେବେ ଦେଖିନି । ଏ କ'ଣ ପ୍ରଥମେ ଯାଉଛନ୍ତି ? ସେଠି କ'ଣ କେହି ଆତ୍ମୀୟ ଅଛନ୍ତି ? ନାହାନ୍ତି ? ଯାହାହେଉ କୌଣସି ଚିନ୍ତା କରିବେନି । ଆପଣଙ୍କ ବାପା ମାଆଙ୍କ ଆଶୀର୍ବାଦରେ ମୁଁ ସେଠି ଜଣେ ଘରବାଲା । ବହୁତଗୁଡ଼ିଏ ଘର ମୋର ଖାଲି ପଡ଼ିଛି । ମୋରି ସାଥିରେ ଚାଲନ୍ତୁ । ପାଖରେ ବସିଥିବା ମାଇପିଟିକି ଦେଖେଇଦେଇ କହିଲା— ଏ ହେଉଛନ୍ତି ଘରବାଲୀ ।

ଘରବାଲୀ ଏତେବେଳଯାଏଁ ଅପଲକ ଚକ୍ଷୁରେ ଦିବାକରକୁ ଚାହିଁଥିଲା । ଅତ୍ୟନ୍ତ ଭାରି ଓ ମୋଟା ଗଳାରେ ପଚାରିଲା— ଆପଣଙ୍କ ପିଲାପିଲି ସାଙ୍ଗରେ ଅଛନ୍ତି ବୋଧହୁଏ ।

ଦିବାକର ମୁହଁକୁ ନାଲି କରି ମୁଣ୍ଡ ହଲେଇ କୌଣସିମତେ ଜଣେଇଦେଲା—ହଁ ଅଛନ୍ତି ।

ସ୍ତ୍ରୀଲୋକଟିର କଥା ବଙ୍କା ବଙ୍କା । କପାଳରେ ମଥାମଣି, ସୀମନ୍ତରେ ଏକ ଓସାରିଆ ସିନ୍ଦୁର ଦାଗ, ନାକରେ ନୋଥ, କାନରେ ୨୦।୩୦ଟା ମାକ୍‌ଡ଼ି । ମୁଣ୍ଡରେ ଯେଉଁ ଟିକିଏ ଓଢ଼ଣା ଦିଆ ଯାଇଥିଲା, ଉତ୍ସାହର ଆବେଗରେ ସେତକ ମଧ୍ୟ ଖସିଆସିଲା । କହିଲା—ଯାହାହେଉ ଭଲ ହେଲା ।

ଆରାକାନ ବଡ଼ ଖରାପ ଜାଗା ବାବୁ ! କିନ୍ତୁ ଆମ ଘର ଭିତରକୁ ପାଦ ଦେବାର ଜୁ କାହାର ନାହିଁ । ମୁଁ ସେମିତି ଘରବାଲୀ ନୁହେଁ—କାନମାକୁ ନ ଡରିବା ଲୋକ ଏ ଦେଶରେ ବିରଳ । ନାଁ ଶୁଣିଲେ ସମସ୍ତେ ଥରହର । ଆମରି ଘରେ ରହିବେ, କୌଣସି ଭୟ ନାହିଁ । ଭଡ଼ା ୫ ଟଙ୍କା କରି; କିନ୍ତୁ ଆପଣ ଚାରି ଟଙ୍କା କରି ଦେବେ । ଆଚ୍ଛା ଘରବାଲି, ତୁମରି ସେଇ ଅଫିସରେ (ବାଁଖଲେ) ଗୋଟିଏ କାମ ଜୁଟିବନି ?

ଘରବାଲି ଟିକିଏ ବିବ୍ରତ ହେଲା ଭଳି କହିଲା—ତା···ହଁ ଜୁଟିବନି କାହିଁକି ?

ଦିବାକର ପଚାରିଲା—ଆପଣଙ୍କ ନାମ ?

ହରିଣ ଭଟ୍ଟାଚାର୍ଯ୍ୟ । ନା, ନା ସେମିତି ଆପଣ ଫାପଣ ଡାକିବେନି, ଅପରାଧ ହେବ । ମୁଁ ବ୍ରାହ୍ମଣ ନୁହେଁ, କୈବର୍ତ୍ତ । ଟିକିଏ ଶାସ୍ତ୍ର ଫାସ୍ତ୍ର ଜାଣେ ବୋଲି ଲୋକେ ଶ୍ରଦ୍ଧାରେ ଭଟ୍ଟାଚାର୍ଯ୍ୟ ବୋଲି ଡାକନ୍ତି । ବିକଣ୍ଠି ମାଳା ଧାରଣ କରିଛି, ମାଛମାଂସ ପରିତ୍ୟାଗ କରିଛି । ଆଉ କାହିଁକି ବାବୁ, ବହୁ ତୀର୍ଥ କରି ଦେଖିଲି । ଏଥର ଦୁଇ ଚାରି ହଜାର ଖର୍ଚ୍ଚ କରି ଚାରି ଧାମ ବୁଲିଆସିଲି । ଚାରି ବର୍ଷ ମା'ଙ୍କୁ ଆଣି ଘରେ ରଖିଲି, ଆଉ କାହିଁକି ? ତେଣୁ ଘରବାଲୀଙ୍କୁ ମଝି ମଝିରେ କହେ, ଘରବାଲୀ ! ଆରାକାନରେ ଯାହା କିଛି ଅଛି ବିକ୍ରୀବାକି କରି କେଉଁଠି ଏକ ତୀର୍ଥ ଧାମରେ ଯାଇ ରହିବା ଚାଲ । ଏହା କହି ଲୋକଟି ଉଦାସ ମୁଖରେ ଉପରକୁ ଚାହିଁ ଚୁପ୍ ରହିଲା । ଘରବାଲୀ ବି ତାର ସ୍ୱାଭାବିକ ମୋଟାଗଳାରେ ପ୍ରତ୍ୟୁତ୍ତର କଲା—ମୁଁ ତ ବି ସେଇକଥା କହୁଛି । କଞ୍ଚା ବୟସରେ ଅଦୃଷ୍ଟର ତାଡ଼ନାରେ ଯାହା କରିଛି, ତା ତ କରିସାରିଛି । ସେସବୁ ମୋ ଦେହରେ ଲେଖା ରହି ନାହିଁ । ମୁଁ ବି କହେ,

ଆରେ ଏ ଘରବାଲା, ଯାହା ହେବାର ତ ହେଲା, ଏଥର ଗୃହ୍‌ ! କହିଦେଇ ସେ ମଧ୍ୟ ଊର୍ଦ୍ଧ୍ୱ ନେତ୍ରରେ ସ୍ତବ୍‌ଧହୋଇ ବସିରହିଲା । ହିବାକର ସେଭଳି ପରିପକ୍ୱ ମସ୍ତିଷ୍କର ଲୋକ ନୁହେଁ । ଏହିସବୁ ଇତିହାସର ନିଗୂଢ଼ ତତ୍ତ୍ୱ ହୃଦୟଙ୍ଗମ କରି ନ ପାରି ଚୁପ୍‌ହୋଇ ବସିରହିଲା ।

ଘରବାଲା କହିବା ଆରମ୍ଭ କଲା—ଆଚ୍ଛା ଘରବାଲା, ଏଥର ତାହାହେଲେ ଚୂଡ଼ାଗୁଡ଼ାକୁ ଭଜେଇ ଦେଉଚି ।

ଘରବାଲାର ଧ୍ୟାନ ଭଙ୍ଗହେଲା । ଧୀରେ ଧୀରେ କହିଲା—ଦେ ଭଜେଇ ଦେ ।

ସଂସାର-ଅନଭିଜ୍ଞ ହିବାକରର ଏହି ଇଙ୍ଗିତର ତାତ୍ପର୍ଯ୍ୟ ଏବେ ଯାଇ ବୁଝିପାରିଲା । ଉଠି ଠିଆହୋଇ କହିଲା—ଏଥର ମୁଁ ଯାଉଚି, ପୁଣି ଆସିବ ।

ହିସାଣ ପାଖରୁ ବିଦାୟ ନେଇ ହିବାକର ଅସ୍ନାତ, ଅଭୁକ୍ତ ଅବସ୍ଥାରେ ଡେକ୍‌ର ଏକ ଆରାମ ଚୌକି ଉପରେ ଶୋଇ ପଡ଼ିଥିଲେ । କେତେବେଳେ ଯେ ଜାହାଜ ନଦୀର ଗୋଳିଆ ପାଣି ପାର ହୋଇଗଲା । କେତେବେଳେ ଯେ ଅଗାଧ କୃଷ୍ଣବର୍ଣ୍ଣ ଲବଣାମ୍ବୁରାଶି ଭିତରେ ଭାସିବା ଆରମ୍ଭ କଲା, ତା ସେ ଜାଣିସୁଦ୍ଧା ପାରିଲା ନାହିଁ । ଅକସ୍ମାତ୍‌ କୋଳାହଳରେ ନିଦ ଭାଙ୍ଗିଯିବା ପରେ ସମ୍ମୁଖରେ ଦେଖିଲା ରଙ୍ଗୀନ ସୂର୍ଯ୍ୟ ଅସ୍ତପ୍ରାପ୍ତ । ବହୁ ଲୋକ ତର୍କ ବିତର୍କ କରୁ କରୁ ସେପ୍ଟା ଦେଖୁଚନ୍ତି । ଯେଉଁ ସୂର୍ଯ୍ୟାସ୍ତର ବିବରଣ ସେ ଇଂରେଜୀ, ବଙ୍ଗଳାର ଅନେକ ପୁସ୍ତକରେ ଅନେକ ବାର ପଢ଼ିଚି, ଏଇ ସେଇ ସୂର୍ଯ୍ୟାସ୍ତ । ଏଇ ସେଇ ବାସ୍ତବ ସମୁଦ୍ର । ଚତୁର୍ଦ୍ଦିଗକୁ ଚାହିଁ ସେ ସେଇ ଅନନ୍ତ ଜଳରାଶିକୁ ଦେଖିବାକୁ ଲାଗିଲା ଏବଂ ପରକ୍ଷଣରେ ଅସ୍ତଗାମୀ ସୂର୍ଯ୍ୟଦେବଙ୍କୁ ପ୍ରଣାମ କରୁ କରୁ ତା ଚକ୍ଷୁ ଜଳପୂର୍ଣ୍ଣ ହୋଇ-ଆସିଲା । ସୂର୍ଯ୍ୟ ଅସ୍ତଗଲା, ସେ ଚାହିଁରହିଲା; ଆକାଶ ମ୍ଳାନ ହୋଇଆସିଲା, ସେ ଚାହିଁରହିଲା; ଅନ୍ଧାର ଅନ୍ଧକାର ନଇଁଆସିଲା, ସେ ଚାହିଁରହିଲା, କ୍ରମେ ଆକାଶ ଓ ଜଳ ଗାଢ଼ କୃଷ୍ଣମୂର୍ତ୍ତି ଧାରଣ କଲା । ତଥାପି ହିବାକର ଠିକ୍‌ ସେଇଭଳି ଚେୟାର ଉପରେ ପଡ଼ିରହି ନିଃଶବ୍ଦରେ ଚାହିଁରହିଲା ।

ନୈଶ ଶୀତଳ ବାୟୁ ଜୋରରେ ବହିଚାଲିଚି, ଉପରେ ଡେକ୍‌ ପ୍ରାୟ ଜନଶୂନ୍ୟ । ମୁଣ୍ଡ ଉପରେ କୃଷ୍ଣ ପକ୍ଷର ଗମ୍ଭୀର କଳା ଆକାଶ,

ଅତଳ ସାଗରର ସେହିଭଳି ଗଭୀର କଳାପାଣି । ତାରି ମଝିରେ ଦିବାକର ନିଜ ଅନ୍ତରର ସୁଗଭୀର କାଳିମାକୁ ନିୟୋଜିତ କରିନେଇ କିଛି ସମୟ ଲାଗି ତୃପ୍ତିବୋଧ କରୁଥିଲା । ଏଇ ସମୟରେ କାହାର କୋମଳ ହସ୍ତସ୍ପର୍ଶ ତାର ଚମକ ଭାଙ୍ଗିଦେଲା । ମୁହଁ ଫେରାଇ ଦେଖିଲା, କିରଣମୟୀ ।

କିରଣମୟୀ କହିଲେ—କ'ଣ ହେଉଛି ଦିବାକର ! ତୁମେ କ'ଣ ଆମରଣ ଅନଶନବ୍ରତ କରିଛ ?

ଦିବାକର ଜବାବ ଦେଲାନି, ଚୁପ୍ ରହିଲା ।

କିରଣମୟୀ ଟିକକ ପାଇଁ ଉତ୍ତରକୁ ଅପେକ୍ଷା କରି ଘରକୁ ଆସ କହି ଜୋର୍‌କରି ତାକୁ କ୍ୟାବିନ ଭିତରକୁ ଟାଣି ନେଇଗଲେ । ଖଟ ଉପରେ ପକା ହୋଇଥିବା ବିଛଣା ଉପରେ ବସେଇଦେଇ କହିଲେ—ଯଦିବା କିଛି ନ ବୁଝ, ଏକଥା ଅନ୍ତତଃ ବୁଝିପାରୁଛ ତ ଯେ କାନ୍ଦି କାନ୍ଦି ଫାଟିଗଲେ ବି ଜାହାଜ ତୁମକୁ ଆଉ କଲିକତା ଫେରେଇ ନେଇଯିବନି । ତୁମେ ନ ଖାଇ ନ ପିଇ ଶୁଖି ଶୁଖି ମରିଯାଅ, ନଇଲେ କାନ୍ଦି କାନ୍ଦି ସମୁଦ୍ରରେ ଝାସଦିଅ, ଆରାକାନ ତୁମକୁ ଯିବାକୁ ହିଁ ପଡ଼ିବ । ତେଣୁ ବୃଥାରେ ତୁମେ ନିଜେ ଶୁଖି ମତେ ଶୁଖାଉଛ କାହିଁକି ? ଯାହା ଦେବି, ଯାହା ପାଇବ ଖାଅ । ଆରାକାନରେ ଓହ୍ଲେଇଯିବା ପରେ ଯୋଉଠିକି ଯାଅ, ନଚେତ୍ ପୁଣି ଏ ଜାହାଜରେ ଫେରିଆସ । ତୁମ ରାଣ ପକେଇ କହୁଛି ଦିବାକର, ମୁଁ କେବେ ବାଧା ଦେବିନି । ଏହା କହୁ କହୁ କିରଣମୟୀଙ୍କର କଣ୍ଠସ୍ୱର ଉଗ୍ର ଓ କ୍ଷୁତ୍-ପିପାସାତୁର ଦୁଇ ଚକ୍ଷୁ ନିଆଁ ଭଳି ଜଳିଉଠିଲା । ଦିବାକର ମୁହଁ ଉଠେଇ ମୁଗ୍ଧ ଚକିତ ଭାବରେ ଚାହିଁରହିଲା । ଆଜି ଏତେଦିନ ପରେ ତାର ମନେ ହେଲା ଯବନିକା ଅନ୍ତରାଳରେ ପ୍ରକୃତ ବସ୍ତୁଟିକୁ ସେ ଯେମିତି ଦେଖିବାକୁ ପାଇଲା । କିରଣମୟୀଙ୍କର ସୁନ୍ଦର ଦୁଇ ଚକ୍ଷୁର ବାସନାଦୀପ୍ତ ବୁଭୁକ୍ଷୁ ଦୃଷ୍ଟି ମଝିରେ ଆଉ ଯାହା ବା ଥାଉ, ବନ୍ଧୁଏ ହେଲେ ସ୍ନେହ ଶ୍ରଦ୍ଧା ନାହିଁ । ତଥାପି ସେ ପଦେ ହେଲେ କହିଲା ନାହିଁ । ନୀରବରେ ଦୃଷ୍ଟି ଆନତ କରି କରି ଉଚ୍ଛ୍ୱସିତ ଦୁଇ ଆଣ୍ଠୁ ଭିତରେ ମୁହଁକୁ ଗୁଞ୍ଜି ପଥର ଭଳି ବସି-ରହିଲା ।

କ୍ଷଣିକ ପରେ କିରଣମୟୀ ଉଠିଗଲେ ଏବଂ ଝାଙ୍କି ଭିତରୁ କେତୋଟି ମିଠା ଗୋଟାଏ ପାତ୍ରରେ ଆଣି ଦିବାକରର ଆଗକୁ ଆସି ଅଣ୍ଟୁମାଡ଼ିକୋଳ

କରି ତା ମୁହଁକୁ ଧରି ଆଁ କରି କହ୍ନ ଟୋଟିକ ପରେ ଗୋଟିଏ ଗିଳେଇ ଦେଲେ । ଏହିଭଳି ଭାବରେ ସବୁଗୁଡ଼ିକୁ ଖୁଆଇଦେଇ କିରଣମୟୀ ମୁହୂର୍ତ୍ତିକ ପାଇଁ କ'ଣ ଭାବିଲେ, ପରକ୍ଷଣରେ ନଇଁଆସି ହିବାକରର ଅଶ୍ରୁସିକ୍ତ ଓଷ୍ଠ ଚୁମ୍ବନକରି ଖିଲ୍ ଖିଲ୍ ହସି ଉଠିଲେ ।

ଏଇ ହଠାତ୍ ଚୁମ୍ବନ, ଏଇ ନିଷ୍ଠୁର ହସକୁ ହିବାକର ତାର ସମସ୍ତ ଶକ୍ତିକୁ ଠୁଳକରି ସହ୍ୟ କରିନେଲା ସତ, କିନ୍ତୁ ରାତିରେ ଯେତେବେଳେ ଗୋଟିଏ ଶଯ୍ୟାରେ ଶୋଇବା ଲାଗି ଆୟୋଜନ ହେଲା, ସେତେବେଳେ କୌଣସିମତେ ସ୍ଥିର ହୋଇ ରହିପାରିଲା ନାହିଁ । ଠିଆହୋଇ କହିଲା— ସେକଥା ହେବନି ଭାଉଜ; କୌଣସିମତେ ପାରିବିନି । ମତେ କ୍ଷମାକରିଅ ଭାଉଜ, ବାହାରେ ଯେଉଁଠି ହେଲେ ମୁଁ ମୋର ଶୋଇବାର ଜାଗା କରିନେବି । କିନ୍ତୁ ତୁମ ହୁକୁମ ପାଳନ କରିବା ଲାଗି ମୁଁ କୌଣସିମତେ ଏ ଘରେ ରାତ୍ରୀଯାପନ କରି ପାରିବିନି ।

କିରଣମୟୀ ସେତେବେଳେ ଶେଯ ପକାଉଥିଲେ—ଫେରି ଚାହିଁଲେ । ହିବାକର ପୁଣି ଦୃଢ଼କଣ୍ଠରେ କହିବାକୁ ଲାଗିଲା ତା କୌଣସି ମତେ ହେବନି ।

କିରଣମୟୀ ପ୍ରଥମେ ହସିବାକୁ ଚେଷ୍ଟାକଲେ; କିନ୍ତୁ ହସି ପାରିଲେନି । କହିଲେ—ଶୋଇଲେ କ'ଣ ହୋଇଯିବ ? ଶୁଅନା ।

ଦୁଇ ଚକ୍ଷୁ ତାଙ୍କର ଶରବିଦ୍ଧ ବ୍ୟାଘ୍ରୀ ଭଳି ଜଳିଉଠିଲା । ସେ ଦାନ୍ତ ଉପରେ ଦାନ୍ତକୁ ଚାପି ଆସ୍ତେ ଆସ୍ତେ କହିଲେ—ତୁମେ କ'ଣ ମନେ କରୁଚ, ସବୁ ଅପରାଧ ମୋ ମୁଣ୍ଡ ଉପରେ ଚାପିଦେଇ ହିବ୍ୟ ଭଲ ମଣିଷଟିଏ ଭଳି ଦେଶକୁ ଫେରିଯାଇ ତୁମ ଉପୀନ୍ ଭାଇନାଙ୍କ ପାଦ ଛୁଇଁ ଶପଥ କରି କହିବ, ତୁମେ ଗୋଟାସୁଦ୍ଧା ସାଧୁ ! ଆଉ ତୁମ ଉପୀନ୍ ଭାଇନା ମୁଣ୍ଡକୁ ଉନ୍ନତ କରି ଚାଲିବେ ? ସେକଥା ହେଇପାରିବନି ହିବାକର ! ସବୁକଥା ମୁଁ ବୁଝିପାରିବନି, ବୁଝିବାର କୌଣସି ଦରକାର ବି ନାହିଁ । ତୁମେ ସାଧୁ ହୁଅ ବା ନ ହୁଅ, ସେଥିଲାଗି ମୋର କୌଣସି ଚିନ୍ତା ନାହିଁ କିନ୍ତୁ ଅପରାଧ ଭାରରେ ମୋ ମୁଣ୍ଡ ଯେତେବେଳେ ନଇଁପଡ଼ିବ ସେତେବେଳେ ତୁମ ଉପୀନ୍ ଭାଇନାଙ୍କ ଉନ୍ନତ ମୁଣ୍ଡକୁ ହଲେଇ ଚାହିଁବାର ଗର୍ବକୁ ବି ମୁଁ ଖର୍ବ କରିଦେଇପାରେ, ଏ କଥା ତ ତୁମେ ଜାଣ ! ଏହା

କହି ପୁଣି ମେ ଶେଯ ଯତ୍ନକଇବାରେ ଲାଗିଲେ । ନିକଟରେ ଦିବାକର ଗୋଟିଏ ବେଞ୍ଚ ଉପରେ ମୁଣ୍ଡକୁ ନୁଆଇଁ ବସି ରହିଥାଏ ।

ରାତିରେ ଉଭୟେ ପାଖାପାଖି ହୋଇ ଶୋଇଲେ । ଯାଗ୍ୟନ୍ତେ ସର୍ବସ୍ୱ ଦାନ କରି ହରିଶ୍ଚନ୍ଦ୍ର ଯେଉଁଭଳି ଚଣ୍ଡାଳ ହାତରେ ନିଜକୁ ସମର୍ପଣ କରି ଦେଇଥିଲେ, ସେହିଭଳି ଘୃଣାରେ ଦିବାକର କିରଣମୟୀଙ୍କ ଶେଯ ପାଖରେ ଆତ୍ମସମର୍ପଣ କରିଦେଲା; କିନ୍ତୁ ଏ ବିଡ଼ମ୍ବନା କିରଣମୟୀଙ୍କର ଅଗୋଚର ନ ଥିଲା ।

ରାତିସାରା ତାର ତନ୍ଦ୍ରାଚ୍ଛନ୍ନ ଦୁ' କାନ ଭିତରେ କେଉଁଆଡ଼ୁ ଅସ୍ପଷ୍ଟ ରୋଦନ ପ୍ରବାହ ଭଳି ଆସି ବାଜିଲା । ମଝି ମଝିରେ ତାହାର ରୁଦ୍ଧ ଦୀର୍ଘଶ୍ୱାସ ରହି ରହି ଗର୍ଜିଉଠିଲା ଭଳି ମନେହେଲା । ପାହାନ୍ତା ପହର ବେଳକୁ ସେ ଚେଇଁ ଉଠିଲାମାତ୍ରେ ବୁଝିବାକୁ ପାଇଲା, ବାହାରେ ପ୍ରବଳ ବେଗରେ ପବନ ବହିଯାଉଛି ଏବଂ ଜାହାଜ ପଡ଼ୁଛି, ଉଠୁଛି । ଆଖି ଖୋଲି ଦେଖିଲା, ତା ବୁକୁ ଉପରେ କିରଣମୟୀଙ୍କର କୋମଳ ବାମହସ୍ତ ନିଦ୍ରିତ କାଳସର୍ପ ଭଳି ପଡ଼ିଛି । ଏଇ କାଳସର୍ପ ପରେ ହୁଏତ ସଜାଗ ହୋଇ ଦଂଶନ କରିବ, ଏଇ ଆଶଙ୍କାରେ ସେ ଉଠିବାକୁ ସାହାସ କରିପାରିଲା ନାହିଁ ପୁଣି ଆଖିବୁଜି ପଡ଼ିରହିଲା । ପବନ ଓ ଜାହାଜର ଦୋଳନ କ୍ରମଶଃ ବଢ଼ିବାକୁ ଲଗିଲା ଏବଂ କିରଣମୟୀଙ୍କର ନିଦ ଭାଙ୍ଗିଗଲା । ଦିବାକରର ଶିଥିଳ ହସ୍ତ ଈଷତ୍ ଚିପିଧରି ଆସ୍ତେ ଆସ୍ତେ ସେ ପଚାରିଲେ—ବାହାରେ ଇଏ କ'ଣ ଝଡ଼ ବୋଧହୁଏ ।

ଦିବାକର କହିଲା—ହଁ ।

ତାହାହେଲେ ଉପାୟ ?

ଦିବାକର କିଛି କହିଲେ ନାହିଁ ।

କିରଣମୟୀ କହିଲେ—ଜାହାଜ ଯେମିତି ବୁଡ଼ିଯାଆନ୍ତା ବୋଧହୁଏ ଏଇ ପ୍ରାର୍ଥନା ଭଗବାନଙ୍କ ପାଖରେ କରୁଚ ନା କଣ ଦିବାକର ?

ଦିବାକର କହିଲା—ନା ।

—ଶ୍ରେଷ୍ଠ ଗୋଟିଏ 'ନା'; ତୁମେ ମଣିଷ ନା ପଥରର ଦିବାକର । ଏହା କହି ସେ ଜୋରରେ ଦିବାକରକୁ ବୁକୁ ଉପରେ ଚିପି ଧରିଲେ । କହିଲେ—ଜାହାଜ ଯଦି ବୁଡ଼ିଯାଏ, ଆମେ ଯେମିତି ଏଇଭଳି ଅବସ୍ଥାରେ ମରିଯିବା···

ନୁହେଁ ଇମିତି କୂଳରେ ଭାସି ଭାସି ଯାଇ ଲଗିବା, ଲୋକେ ଦେଖିବେ, ଖବର କାଗଜରେ ଛପାହିବ, ତୁମ ଜୀବନ ଘଟଣା ପଢ଼ିବେ—ମେ କମିତି ହେବ ଦିବାକର !

ଏଇ କାଳ୍ପନିକ ଶବର ଘୃଣିତ ଚିତ୍ରକଳ୍ପନା ଦିବାକରକୁ ଚୋକା ପକେଇଲା । ଚରଣମୟୀଙ୍କ ବନ୍ଧନ-ପାଶରୁ ନିଜକୁ ବଳାତ୍କାରରେ ମୁକ୍ତ କରିନେଇ ଟଳି ଟଳି ସେ ଘର ଭିତରୁ ବାହାରକୁ ଚାଲିଗଲା ।

## ପଞ୍ଚ ଚଳିଶି

ଡେକ୍ ଉପରେ ଖଣ୍ଡିଏ ଚୌକି ଉପରେ ବସିପଡ଼ି ସେ ଏକ-ଦୃଷ୍ଟିରେ ଚାହିଁରହିଲା । ବୁକୁ ଭିତରଟା ତାର କିଭଳି ଘାଣ୍ଟି ଚକଟି ହେବାକୁ ଲାଗିଲା । ସ୍ପଷ୍ଟ ଭାବରେ ଅନୁଭବ କରିବା ଛଡ଼ା ବୁଝିସୁଝି ହୃଦୟଙ୍ଗମ କରିବାର ଶକ୍ତି ତାର ନ ଥିଲା । ଜାହାଜ ଦେହରେ ଉଦ୍ଦାମ ତରଙ୍ଗ ଉନ୍ମାଦ ଭଳି ଝାମ୍ପି ପଡ଼ୁଚି, ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇ କୁଆଡ଼େ ଯେ ମିଳେଇ ଯାଉଚି—ଏଇମିତି ଆଘାତ-ଅଭିଘାତର ବିସ୍ମୟାତ୍ମକ ଖେଳ ଦିବାକର ଆତ୍ମବିସ୍ମୃତ ହୋଇ ଦେଖିବାକୁ ଲାଗିଥାଏ । ଉପରେ ପୂର୍ବଦିଗ ଆକାଶର ଦିଗନ୍ତରୁ ଧୂସର ମେଘ ପାହାଡ଼ ଭଳି ଜମାଟ ବାନ୍ଧି ଉଠୁଥିଲା ଏବଂ ତାରି ପଛରେ ତରୁଣ ସୂର୍ଯ୍ୟ ଉଠିଲା କି ନା, ରଶ୍ମିର ଗୋଟିଏ ରେଖା ବି ସେ ସମ୍ବାଦ ତଳକୁ ବହନ କରି ଆଣିବାର ବାଟ ପାଇଲା ନାହିଁ । ପରକ୍ଷଣରେ ହିଁ ଡେକ୍ ଉପରେ ଖଲାସୀମାନେ ବ୍ୟସ୍ତହୋଇ ଯିବା ଆସିବା କରିବାକୁ ଲାଗିଲେ ଏବଂ ଉପରେ କାପ୍ତାନଙ୍କ ଘଣ୍ଟା ଘନ ଘନ ଶବ୍ଦିତ ହେବାକୁ ଲାଗିଲା । ଝଡ଼ର ବେଗ ଯେ ଉତ୍ତରୋତ୍ତର ବଢ଼ିବାକୁ ଲାଗିଚି ଏବଂ ଭବିଷ୍ୟତରେ ଆହୁରି ବଢ଼ିବ, ଏ ଇଙ୍ଗିତ ଆକାଶର ମେଘ ଏବଂ ସିନ୍ଧୁର ତରଙ୍ଗ ବ୍ରିଜର୍ କାପ୍ତାନଠାରୁ ଆରମ୍ଭ କରି ତଳେ ଥିବା କାମିନୀ ଘରବାଲୀ ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ସୁସ୍ପଷ୍ଟ ଭାଷାରେ ଘୋଷଣା କରିଦେଲା । ଏଇମିତି ସମୟରେ ଜଣେ ଖଲାସୀ ଆସି କହିଲା—ବାବୁ, ବର୍ଷା ପଡ଼ିବାକୁ ଆଉ ଡେରି ନାହିଁ, ତନ୍ତ ତନ୍ତ ବୃଥାରେ କାହିଁକି କଷ୍ଟ ପାଇବେ, ଭିତରକୁ ଯାଆନ୍ତୁ । ଭିତରେ କ'ଣ ହେବଣି ଦେଖନ୍ତୁ ।

ଦିବାକର ଉଦ୍‌ବିଗ୍ନ ହୋଇ ପଚାରିଲା—କ'ଣ ହେଉଛି ସେଠି ?

ଖଲାସୀ ଚଣ୍ଡଗ୍ରାମବାସୀ ମୁସଲମାନ । ହସ ହସ ମୁହଁରେ ଦୁର୍ବୋଧ ଉଚ୍ଚାରଣରେ କହିଲା—କିଛି ନୁହେଁ । ଜାହାଜ ଘର ହଲୁଚି ନା, ସେଥିପାଇଁ କହୁଚି ଯାଇ ଦେଖନ୍ତୁ, ପିଲାପିଲି କ'ଣ କରୁଥିବେ । ଏତେ ଦୋଳନ ସହ୍ୟ କରିବା ବଡ଼ କଷ୍ଟକର । ଦିବାକର ଉଠି ଠିଆହୋଇ ଦେଖିଲା, ଖଲାସୀ କଥା ସତ । ସେ ଟଳି ପଡୁଥିଲା, ଖଲାସୀ ଧରି ପକେଇ କହିଲା—ଚାଲନ୍ତୁ ବାବୁ, ପହଞ୍ଚେଇ ଦେଇ ଆସିବି । ତାର ସାହାଯ୍ୟରେ ଦିବାକର କୌଣସିମତେ କ୍ୟାବିନ ଦୁଆର ପାଖରେ ଆସି ପହଞ୍ଚିଲା । ହାତ ଠେଲି ଭିତରକୁ ଯାଇ ଦେଖିଲା, କିରଣମୟୀ ବିଛଣା ଛାଡ଼ି ପାଖ ଲମ୍ବା ବେଞ୍ଚ ଉପରେ ମୁହଁମାଡ଼ି ପଡ଼ି ତାର ଗୋଟିଏ ପାଖକୁ ଜୋରରେ ଭିଡ଼ି ଧରିଛନ୍ତି । ଦିବାକର ପାଖରେ ଯାଇ ବସି କହିଲା—କଷ୍ଟ ହେଉଚି ଖୁଡ଼ୀ !

କିରଣମୟୀ କୌଣସି କଥା କହିଲେନି—ମୁଣ୍ଡ ବି ଉଠେଇଲେନି । ଖାଲି ନିଃଶବ୍ଦରେ ଦିବାକର କୋଳ ଉପରେ ଡାହାଣ ହାତଟି ରଖି ଚୁପ୍‌ଚାପ୍ ବସିରହିଲେ । ଜାହାଜ ଓଲଟ ପାଲଟ ହେବାକୁ ଲାଗିଲା, ବାହାରେ କ୍ରୁଦ୍ଧ ପବନ ସିଁ ସିଁ କରି ଚିତ୍କାର କରିବାକୁ ଲାଗିଲା ଏବଂ ଉତ୍ତାଳ ତରଙ୍ଗର ଉଚ୍ଛ୍ୱସିତ ଜଳକଣା ପ୍ରବଳ ବେଗରେ ଗ୍ଲେଜ ଝରକାର ମୋଟା କାଚ ଉପରେ ବାରମ୍ବାର ବାଡ଼େଇ ହେବାକୁ ଲାଗିଲା ।

ତାର ମଥା ଘୂରିବାକୁ ଲାଗିଲା ଏବଂ ବସିରହିବା ଅସମ୍ଭବ ଭାବି ସେଇ ସଂକୀର୍ଣ୍ଣ ବେଞ୍ଚ ଉପରେ ହିଁ କିରଣମୟୀଙ୍କ ମୁଣ୍ଡ ଉପରେ ମୁଣ୍ଡ ରଖି ମୂର୍ଚ୍ଛାଗ୍ରସ୍ତ ରୋଗୀ ଭଳି ଶୋଇରହିଲା ।

କିରଣମୟୀ ହାତ ବୁଲେଇ ତାର ମସ୍ତକ ସ୍ପର୍ଶକରି ମୃଦୁ ସ୍ୱରରେ କହିଲେ—ଶୋଇପଡ଼ିଲ, ମୁଣ୍ଡ ଘୂରୁଚି ନା କ'ଣ ?

ଦିବାକର କହିଲା—ହଁ ।

କିରଣମୟୀ କ୍ଷଣକାଳ ମୌନରହି ପଚାରିଲେ—ଆଚ୍ଛା ଦିବାକର, ଝଡ଼ ତ କ୍ରମଶଃ ବଢ଼ୁଚି, ଜାହାଜ ବୁଡ଼ିଯିବ ବୋଲି କ'ଣ ତୁମର ମନେ ହେଉଚି ?

ଦିବାକର କହିଲା—ନା ।

କିରଣମୟୀ କହିଲେ—ହଁ, ନଟେତ୍ ନା । ତୁମେ କ'ଣ ଅଦାଲତରେ ସାକ୍ଷୀ ଦେଉଚ ଦିବାକର ? ଏହା କହି ସେ ଅନେକ ସମୟ ପର୍ଯ୍ୟନ୍ତ ଚୁପ୍

ରହିଲେ । ବହୁକ୍ଷଣ ପରେ ଆସ୍ତେ ଆସ୍ତେ କହିଲେ— ବୁଡ଼ିଗଲେ ଭଲ ହୁଅନ୍ତା । ଯଦିବା ନ ବୁଡ଼ିବେ, ତାହାହେଲେ ଇମିତି ଆମେ କେତେ ଦିନ ଭଲି ବୁଲିବା ?

ଦିବାକର କୌଣସି ଉତ୍ତର ନ ଦେବା ଦେଖି କିରଣମୟୀ ଦିବାକରର ମୁଣ୍ଡଟା ହାତରେ ହଲେଇଦେଇ କହିଲେ—ଶୁଣିପାରୁଚ ତ ?

—ପାରୁଛି, ଯେତେ ଦିନ ପାରେ ବୁଲୁ ।

—ତା' ପରେ ?

ତା' ପରେ ସମୁଦ୍ର ଭଳି ଜଳ ଥିବ, ଗଳାରେ ଦେବା ଭଳି ଦଉଡ଼ି ମଧ୍ୟ ଜୁଟିବ । ଯାହାହେଉ ଗୋଟାଏ ବାଛିନେଲେ ହେଲା ।

ଏତେ ସମୟ ପରେ ଦିବାକର ମୁହଁରେ ଗୋଟାଏ କଠିନ କଥା ଶୁଣି କିରଣମୟୀ ବହୁ ସମୟ ପର୍ଯ୍ୟନ୍ତ ଚୁପ୍‌କରି ରହିଲେ । ତାପରେ ସହଜ ଗଳାରେ କହିଲେ—ନା, ତା କରନି; ଘରକୁ ଫେରିଯାଅ । ତୁମେ ପୁରୁଷ ଲୋକ, ଫେରିଯାଇ ଯାହା କିଛି କହିଦେଲେ ଗଲା । ସମ୍ଭବତଃ କିଛି କୈଫିୟତ ଦେବା ଦରକାର ହେବନି । ତୁମ ନିଜର ଲୋକେ ଏଥିଲାଗି ଏତେ ମୁଣ୍ଡ ଖେଳେଇବେନି ।

ଦିବାକର ତୁନି ରହିଲା । ଏଭଳି ପ୍ରସ୍ତାବ ଯେତେ ବା ଶୋଭନୀୟ ହେଉ, ସେ ମନ ଭିତରେ ଗ୍ରହଣ କରିପାରିଲା ନାହିଁ । ବହୁ ସମୟ ମୌନ ରହି କହିଲା—ଆଉ ତୁମେ ?

କିରଣମୟୀ ପୂର୍ବଭଳି ସହଜ ଶାନ୍ତ ସ୍ୱରରେ କହିଲେ—ମୁଁ ! ଯେଉଁଠିକି ଯାଉଚ, ସେଇଠି ରହିବାକୁ ପଡ଼ିବ ।

ଦିବାକର କହିଲା—କିମିତି ରହିବ ? ସେଠି କିଏ ତୁମର ଅଛି ?

କିରଣମୟୀ କହିଲେ—କେହି ନାହାନ୍ତି ।

—ତେବେ ?

—ତଥାପି ରହିଯିବାକୁ ହେବ ।

ଦିବାକର ଉତ୍କଣ୍ଠାରେ ଉଠିବସି କହିଲା—ଟିକିଏ ସ୍ପଷ୍ଟ କରି କୁହନା ଭାଉଜ ? କହୁଚ କେହି ନାହାନ୍ତି ଅଥଚ ରହିବ କିମିତି, ମୁଁ ତ ଭାବିପାରୁନି । ତୁମେ କ'ଣ ସେଠି ଏକା ଏକା ରହିବ ?

କିରଣମୟୀ ହସିଲେ । ସେ ହସ ଦିବାକର ଦେଖିବାକୁ ପାଇଲା ନାହିଁ । ପାଇଲେ ବୁଝିଥାଆନ୍ତା । କିରଣମୟୀ କିଛି ସମୟ ନୀରବ ରହି

କହିଲେ—ନା ଦିବାକର, ଏକା ରହିପାରିବିନି । ମୋର ସେ ବୟସ ନାହିଁ । କିନ୍ତୁ ତୁମ ପାଖରେ ଏସବୁ ଆଲୋଚନାର କୌଣସି ଆବଶ୍ୟକତା ଅଛି ବୋଲି ମନେକରୁନି । ଏହା କହି ସେ ଦିବାକରର ଡାହାଣ ହାତଟା ମୁହଁ ଉପରକୁ ଟାଣିନେଇ ବ୍ୟଥିତ ଭାବରେ କହିଲେ—କିନ୍ତୁ ତୁମକୁ ନିରର୍ଥକ କଷ୍ଟ ଦେଲି । ସେଥିଲାଗି କ୍ଷମା ମାଗୁଚି ଦିବାକର !

ଦିବାକର ପୁଣି ଅବସନ୍ନ ଅବସ୍ଥାରେ ଶୋଇପଡ଼ିଲା । ସବୁକଥା ସେ ନିଃସଂଶୟରେ ବୁଝିଗଲାନି । କିନ୍ତୁ ଠିକଏ ବୁଝିଲା ଯେ ଘରକୁ ଫେରିବାର ଅନ୍ଧକାର ପଥରେ ଯେଉଁ ଆଶାର ଦୀପ ଶିଖାଟି ମୁହୂର୍ତ୍ତକ ପୂର୍ବେ ସେ ମୂଢ଼ ଭଳି ଜାଳି ପକେଇଥିଲା, ପୁଣି ତାହା ଲିଭିଇବାର ସମୟ ହେଲା ।

ପ୍ରଦୀପ ଲିଭିଲା ସତ, କିନ୍ତୁ ତାହାର ଦୁର୍ଗନ୍ଧ ବାଷ୍ପରେ ଦିବାକରର ବୁକୁ ଭିତରଟା ଏକାବେଳକେ ଭାରାକ୍ରାନ୍ତ ହୋଇଉଠିଲା । ସେ ଅବରୁଦ୍ଧ ନିଶ୍ୱାସର ଗଭୀର ବେଦନାରେ ଠିଆହୋଇ ତୀବ୍ର କଣ୍ଠରେ ପ୍ରଶ୍ନ କଲା—ତୁମେ କ'ଣ ଏତେ ସମୟ ଧରି ତାମସା କରୁଥିଲ ଭାଉଜ !

କୁଣ୍ଠିତ ଲଜ୍ଜାନମ୍ର ଦିବାକରର ଏହି ଆକସ୍ମିକ ଉଗ୍ରତାରେ କିରଣମୟୀ ଚମକି ଉଠିଲେ । କହିଲେ—କି ତାମସା ଦିବାକର ?

—ମୁଁ ଘରକୁ ଫେରିଯିବା କଥା । ଏଭଳି ବିଦ୍ରୂପ କରିବାର କି ଆବଶ୍ୟକତା ଥିଲା ?

କିରଣମୟୀ କହିଲେ—ଅଛା ବିଦ୍ରୂପ ତ କିଛି କରିନି ।

—ତେବେ ଏ କ'ଣ ସତ ?

—ଅବଶ୍ୟ ସତ ।

—ତୁମେ ଏକା ରହିଯିବ, ତା ବି ସତ ?

—ଇଏ ବି ସତ ।

—ଓ, ତାହେଲେ ତୁମେ ଆରାକାନ ଯାଉଛ ! କିନ୍ତୁ କାହା ପାଖରେ କି ଭାବରେ ରହିବ କହିଲ ଦେଖି ?

ପ୍ରତ୍ୟୁତ୍ତରରେ କିରଣମୟୀ କେବଳ ଗୋଟାଏ ନିଶ୍ୱାସ ଛାଡ଼ିଲେ । ତାଙ୍କର ଏହି ପଳାଇବାଟା ଯେ ଦିବାକର ପକ୍ଷରେ କିଭଳି ଭୟାବହ, ଲଜ୍ଜା ଯେ କିଭଳି ଦୁଃସହ, ସେ ସବୁ କଥା ଜାଣନ୍ତି ଏବଂ ଏହି ନିଦାରୁଣ ଅବସ୍ଥାରେ ପଡ଼ି ତାଙ୍କ ମନ ଯେ କେତେଦୂର ବିକଳ ହୋଇପଡ଼ିଛି, ସେ

କଥା ମଧ୍ୟ କିରଣମୟୀଙ୍କର ଅବିଦିତ ନ ଥିଲା । ଦିବାକରଙ୍କୁ ସେ ଭଲ ପାଆନ୍ତି ନାହିଁ—ଭଲ ପାଇବା ମଧ୍ୟ ଅସମ୍ଭବ । ତଥାପି ଆଶ୍ଚର୍ଯ୍ୟ ହେଉଛି ଏଇ ଯେ ଦିବାକରର ପରିପୂର୍ଣ୍ଣ ଉଦାସୀନତାରେ କିରଣମୟୀ ମନେ ମନେ ବ୍ୟଥା ହିଁ ପାଇ ଆସିଛନ୍ତି ।

କିନ୍ତୁ ଯେଉଁ ମୁହୂର୍ତ୍ତରେ ଦିବାକର ତାର କଣ୍ଠସ୍ୱର ଓ ତୀବ୍ରତର ପ୍ରଶ୍ନରେ ଭିତରର ଈର୍ଷାକୁ ଖୋଲିଦେଲା, ସେହି ମୁହୂର୍ତ୍ତରେ କିରଣମୟୀଙ୍କ ଅନ୍ତରର ନିଭୃତ ବେଦନା ଆନନ୍ଦରେ ହିଲ୍ଲୋଳିତ ହୋଇଉଠିଲା । ଏହି ପୁଲକର ଆଉ ଗୋଟିଏ କାରଣ ବି ଥିଲା । ଇତି ପୂର୍ବରୁ ଅପରିଣତବୁଦ୍ଧି ଏଇ ତରୁଣ ଯୁବକଟି ତାର ପ୍ରଥମ ଯୌବନର ସୌନ୍ଦର୍ଯ୍ୟ-ତୃଷ୍ଣାରେ ଏଇ ଆଶ୍ଚର୍ଯ୍ୟ ନାରୀର ଅଲୌକିକ ରୂପ ଦିଗକୁ ଯେତେବେଳେ ବାରମ୍ବାର ଆକୃଷ୍ଟ ହୋଇଥିଲା, କିରଣମୟୀ ସେତେବେଳେ ଦେଖି ସୁଦ୍ଧା ଦେଖି ନ ଥିଲେ, ଜାଣି ସୁଦ୍ଧା ଭ୍ରୂକ୍ଷେପ କରି ନ ଥିଲେ । କିଭଳି ସେ ମଧୁଚକ୍ର ଗଢ଼ି ଉଠିଥିଲା, କେଉଁଠି ସେ ତାର ମଧୁ ସଞ୍ଚିତ ହୋଇଥିଲା, ନିରତିଶୟ ଅବହେଳାରେ ଏ ଦିଗ ପ୍ରତି ସେ ଦୃଷ୍ଟିପାତ କରି ନ ଥିଲେ । କିନ୍ତୁ ଆଜି ଯେତେବେଳେ ଖୋଞ୍ଚା ଖାଇ ଅକସ୍ମାତ୍ ମହୁ ଝରିପଡ଼ିଲା, ସେତେବେଳେ ଏଇ ନିର୍ବାସନରେ ଯେଉଁ ଲୋକ ତାର ଏକମାତ୍ର ଅବଲମ୍ବନ, ତାର ମଧୁ-ଚକ୍ରର ସଯତ୍ନସଞ୍ଚିତ ପ୍ରଚ୍ଛନ୍ନ ମଧୁଭଣ୍ଡାର ପ୍ରତି କିରଣମୟୀ ଏକାନ୍ତ ସତର୍କ ଦୃଷ୍ଟି ନିବଦ୍ଧ କରି ରଖିଲେ । ହସି ହସି କହିଲେ—କାହା ପାଖରେ କିଭଳି ରହିବି, ସେ ଖବର ଶୁଣି ତୁମର ବା ଲାଭ କ'ଣ ହେବ ଦିବାକର ! ଯେତେବେଳେ ଫେରିଯିବ, ସେତେବେଳେ ଅନାବଶ୍ୟକ କୌତୂହଳର କୌଣସି ସାର୍ଥକତା ନାହିଁ ।

ଦିବାକର କିଛି ସମୟ ସ୍ଥିର ରହିଲା ପରେ କହିଲା—ଫେରିଯିବି ବୋଲି ତ ମୁଁ କେବେ କହିନି । ତୁମେ ବରଂ କହୁଛ ।

କିରଣମୟୀ କହିଲେ—ହଁ, ମୁଁ କହୁଛି; କିନ୍ତୁ ମୋ ମୁହଁ ଦେଇ ତୁମ ମନ କଥା ବାହାରିଯାଉଛି । ସେ ତୀବ୍ର ପ୍ରତିବାଦ ପ୍ରତ୍ୟାଶାରେ ଅପେକ୍ଷା କରି ରହିଲେ; କିନ୍ତୁ ପ୍ରତିବାଦ ଆସିଲାନି । କିରଣମୟୀ ତାକୁ ଭାବିବାକୁ ସମୟ ଦେଇ ଧୈର୍ଯ୍ୟ ଧରି ରହିଲେ । ବହୁକ୍ଷଣ ଅତିକ୍ରମ କରିଗଲା-ବା ହାରେ ତେଜ ଦୃଷ୍ଟିର ଅଶ୍ରାନ୍ତ ଅନୁସନ୍ଧାନରେ ଜାହାଜର ମେରୁଦଣ୍ଡ

କରି ଉଠିଲା । ଯାତ୍ରୀମାନଙ୍କର ଅସ୍ପଷ୍ଟ କୋଳାହଳ କ୍ରମଶଃ ସ୍ପଷ୍ଟ ହୋଇ-ଉଠିଲା । କରଣମନ୍ତ୍ରୀଙ୍କ ଧୈର୍ଯ୍ୟର ବନ୍ଧ ମଧ୍ୟ ଭାଙ୍ଗି ପଡ଼ିବାର ଉପକ୍ରମ ହେଲା; କିନ୍ତୁ ଏଇ ଟୋକ୍ରଟ କାଠ ଘରଟିର ନିସ୍ତବ୍ଧତା ଅକ୍ଷୁଣ୍ଣ ରହିଲା ।

ଦିବାକର ପ୍ରତିବାଦ କରିବେ—ଏ ବିଷୟରେ କରଣମନ୍ତ୍ରୀଙ୍କର ଯେତେବେଳେ ତିଳେହେଲେ ସନ୍ଦେହ ରହିଲାନି, ସେତେବେଳେ ସେ ଦୀର୍ଘନିଶ୍ୱାସ ଗୁଡ଼ାଏ ଆସ୍ତେ ଆସ୍ତେ କହିଲେ—ତେବେ କ'ଣ ଫେରିଯିବା ଲାଗି ସ୍ଥିର କଲ ?

ଦିବାକର କହିଲା—ନା ।

କରଣମନ୍ତ୍ରୀ ଆଉ କୌଣସି ପ୍ରଶ୍ନ କଲେ ନାହିଁ ।

## ଛତିଶ

ସେଇ ରାତିରେ ଝଡ଼ ଝଡ଼ କମିଆସିଲା । ସାରାଦିନ ଅବିଶ୍ରାନ୍ତ ଭାବରେ ପଡ଼ିଉଠି ମତ୍ତ ସିନ୍ଧୁ ସକାଳ ଆଡ଼କୁ ଶ୍ରାନ୍ତ ହୋଇଆସିଲା; କିନ୍ତୁ ଉପରର ଆକାଶ ପ୍ରସନ୍ନ ହେଲା ନାହିଁ, ମୁହଁ ଫୁଲେଇ ରହିଲା ।

ସକାଳେ ଅଳ୍ପ ସମୟ ଲାଗି ସୂର୍ଯ୍ୟୋଦୟ ହେଲା ସିନା, କିନ୍ତୁ ସୂର୍ଯ୍ୟୋଦୟ ଏହି ଜାହାଜର ଭୟାର୍ତ୍ତ ଅର୍ଦ୍ଧମୃତ ଯାତ୍ରୀମାନଙ୍କୁ ବାସ୍ତବିକ ସାନ୍ତ୍ୱନା ଦେଇଗଲେ କିମ୍ବା ଆଖି ଲାଲ୍ କରି ଅନ୍ତର୍ଦ୍ଧାନ ହୋଇଗଲେ ବୁଝାଗଲା ନାହିଁ ।

ଏହିଭଳି ସମୟରେ ଦିବାକର ବାହାରକୁ ଆସି ଗୋଟାଏ କାନ୍‌ଭାସ ଆରାମ ଚୌକି ଉପରେ ହାତଗୋଡ଼ ମେଲେଇ ବସିପଡ଼ିଲା । କେଜାଣି କାହିଁକି ଆତ୍ମଗ୍ଲାନିର ତୁଷାନଳ ତାକୁ ପୂର୍ବଭଳି ଦଗ୍ଧ କରୁ ନ ଥିଲା । ଲଜ୍ଜାର ବାରିଧି ମଧ୍ୟ ତାକୁ ସେଭଳି ଦୁସ୍ତର ବୋଧ ହେଲା ନାହିଁ । କୁଆଡ଼େ ଯେଉଁଭଳି ନୀଳ ରଙ୍ଗର ଗଛପତ୍ରରେ ପରିବେଷ୍ଟିତ ଏକ ଅସ୍ପଷ୍ଟ କୂଳ ଝାପସା ହୋଇ ଆଖିରେ ପଡ଼ିଲା । ବୁକୁର ଅସହ୍ୟ ବୋଝ ଯେତେବେଳେ ଏହିଭଳି ଭାବରେ ହାଲୁକା ହୋଇ ଆସୁଥାଏ, ସେତେ-ବେଳେ ସ୍ଥିର ହୋଇ ବସି ଦିବାକର କରଣମନ୍ତ୍ରୀଙ୍କ ତର୍କ ଉପରେ ନିଜ

ପ୍ରବୃତ୍ତିର ଗାର କାଟିବାରେ ପ୍ରବୃତ୍ତ ହେବାକୁ ଲାଗିଲ । କାଲି ରାତିରେ କରୁଣାମୟୀ ଏଇ କଥା କହି ତର୍କ କରିଥିଲା ଯେ ଆମେ ଯଥାର୍ଥ ଅନ୍ୟାୟ ସେତେବେଳେ ଯାଇ କରୁ, ଯେତେବେଳେ କାହାକୁ ଆମେ ତାର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରୁଁ । ତେଣୁ କୌଣସି କାର୍ଯ୍ୟରେ ପ୍ରବୃତ୍ତ ହେବା ପୂର୍ବରୁ ଏହା ଦେଖିବା ଆବଶ୍ୟକ ଯେ କାହାର ପ୍ରକୃତ ଅଧିକାରରେ ହାତ ଦେଉଛୁ କି ନା ! ଆଉ ଏହି ଅଧିକାରର ବାହାର ଦିଗଟା ଯେଉଁଭଳି, ଭିତରର ଦିଗଟା ମଧ୍ୟ ଠିକ୍ ସେଇଭଳି । ନିଜ ଉପରେ ନିଜର ସତ୍ୟ ଅଧିକାର ରହିଛି । ନିଜର ବୋଲି ସେ କାହାରିଠାରୁ ତୁଚ୍ଛ ନୁହେଁ । ସେ ଅଧିକାର ବାହାରେ କାହାରି ହସ୍ତକ୍ଷେପ ସହ୍ୟ କରିବା ଅର୍ଥ ନିଜ ଉପରେ ଅନ୍ୟାୟ କରିବା । ଏହା ହିଁ ମୋର କଥା ।

କ୍ଷଣକାଳ ସ୍ଥିର ରହି ସେ ଆହୁରି ପୁଣି କହିଥିଲେ—ଆମେ ଚୋରି ଡକାୟତି କରି ଯେଉଁଭଳି ପର ଅଧିକାରରେ ହାତଦେଇ ଅନ୍ୟାୟ କରୁ, ମାତାଲକୁ ପଇସା ଯୋଗେଇ ମଧ୍ୟ ଠିକ୍ ସେୟା କରୁ । କାହିଁକି ନା, ସେଠାରେ ତାର ଭଲରେ ରହିବାର ଅଧିକାର ଉପରେ ହସ୍ତକ୍ଷେପ କରୁଁ ।

ଦିବାକର ଚୁପ୍‌ଚାପ୍ ଶୁଣୁଥିବା ଦେଖି କରୁଣାମୟୀ ପୁଣି କହିଥିଲେ—ଯଦି ବା ସାମାଜିକଲୋକଙ୍କ ଏହି ଅଧିକାର ଅତିବ୍ୟାପକ ଏବଂ କୋଉଠି ଏହାର ସୀମାରେଖା ପାଦଦେଲେ ଅନଧିକାର ପ୍ରବେଶ ହେବନି, ଏଇକଥା ନେଇ ସଂସାରରେ ଅନେକ ଦ୍ୱନ୍ଦ୍ୱ, ଅନେକ ମତଭେଦ; ତଥାପି ସୀମା ଯେ ଗୋଟାଏ କିଛି ଅଛି, ସେ ବିଷୟରେ କାହାର ସନ୍ଦେହ ନାହିଁ । ଏଇ ସୀମା ଅତିକ୍ରମ କରିବାର କ୍ଷମତା କାହାରି ନାହିଁ, ସମାଜର ମଧ୍ୟ ନୁହେଁ । ସମାଜ ଏଇ ଅଧିକାରକୁ ଅତିକ୍ରମ କରି କେବଳ ଯେ ପରକୁ ନଷ୍ଟ କରେ ତାହା ନୁହେଁ, ନିଜକୁ ବି ଦୁର୍ବଳ କରେ, ଧ୍ୱଂସ କରେ । ତୁମର ଏତେଟା ମନ ଭାଙ୍ଗି କରି ରହିବାର ଆବଶ୍ୟକତା ପଡ଼ିନାହିଁ ଦିବାକର, ଯଦି ଥରେ ଏଇ କଥାଟି ଭାବି ଦେଖନ୍ତ ଯେ ମତେ ବାହାରକୁ ନେଇଆସି କାହାର ଅଧିକାର ଉପରେ ପାଦ ଦେଇଛ କି ନା ! ମୁଁ ବିଧବା । ମୋ ଉପରେ କାହାର ନ୍ୟାୟସଙ୍ଗତ ଦାବୀ ନାହିଁ । ତୁମେ ଅବିବାହିତ, ତୁମ ହୃଦୟ ଉପରେ ବି କାହାର ଅଧିକାର ନାହିଁ । ଅତଏବ ମତେ ଭଲ ପାଇ ତୁମେ କିଛିହେଲେ ଅନ୍ୟାୟ ଯେ କରିନା, ଏକଥା ବୁଝିବା କିଛି କଷ୍ଟକର ନୁହେଁ ।

ଦିବାକର ହତବୁଦ୍ଧି ହୋଇ କହୁଥିଲା—ସେ କ'ଣ ସହଜ ? ଅବୈଧ ପ୍ରଣୟ ଯଦି ଅନ୍ୟାୟ ନୁହେଁ, ତେବେ ସଂସାରରେ ଅନ୍ୟାୟ ରହିଲା ବା କେଉଁଠି ?

କରଣମୟୀ କହୁଥିଲେ—ଅବୈଧ କେଉଁଠି ? ଯାହାକୁ ଅବୈଧ ବୋଲି ମନେକରୁଛ, ସେଇଟା ତୁମର ସଂସ୍କାର, ଯୁକ୍ତି ନୁହେଁ । ଭଲ କଥା, ତୁମର ଅବୈଧ ଜିନିଷଟି କ'ଣ ଶୁଣେ ?

ଦିବାକର ଉଦ୍ଦୀପ୍ତ ହୋଇ ଜବାବ ଦେଇଥିଲା—ଯାହା ବିବାହଦ୍ୱାରା ସୁପବିତ୍ର ନୁହେଁ, ଯାହାକୁ ସମାଜ ସ୍ୱୀକାର କରିବନି, ଯାହାକୁ ଆତ୍ମୀୟ ଓ ବନ୍ଧୁବାନ୍ଧବ ଘୃଣାଚକ୍ଷୁରେ ଦେଖିବେ, ତାହା ହିଁ ଅବୈଧ—ଏଇଟା ନିହାତି ସହଜ କଥା ।

କରଣମୟୀ ହସି ହସି ଉତ୍ତର ଦେଇଥିଲେ— କି ସହଜ ? ଠିକଏ ଭାବି ଦେଖିଲେ ସହଜ କଥା ବି ଏଭଳି ବଙ୍କା ହୋଇ ଦିଆହୁଏ ଯେ ଦୁନିଆର ଅନେକ ବଙ୍କା ଜିନିଷ ହାରି ମାନିଯାଏ । ତୁମକୁ ତ ବହୁଥର କହିଛି ଦିବାକର, ତୁମର ଏଇ ସୁପବିତ୍ର, ଅପବିତ୍ର ଜ୍ଞାନଟି ସଂସ୍କାର, ଯୁକ୍ତି ନୁହେଁ । ଏଇ ସଂସାରରେ ସ୍ତ୍ରୀ ପୁରୁଷଙ୍କ ଏଭଳି ଅନେକ ମିଳନ ହୋଇ-ଯାଉଛି, ଯାହାକୁ କୌଣସିମତେ ପବିତ୍ର କୁହାଯାଏନା । ଏହାର ନଜିର ଦେଇ କଥା ବଢ଼େଇବାକୁ ଚାହେଁନା ଦିବାକର ! ତୁମର ଇଚ୍ଛାହେଲେ ଇତିହାସ-ପୁରାଣ ପଢ଼ି ଦେଖ । ଅଥଚ ଶେଷ ମିଳନକୁ ସମାଜ ସ୍ୱୀକାର କରିଥିଲା ଏବଂ ଅବଶେଷରେ ବିବାହର ମନ୍ତ୍ର ଦେଇ ମଧ୍ୟ ସୁପବିତ୍ର କରି ନିଆହୋଇଥିଲା । ଦିବାକର, ଆମର ସେଇ "ପାଥୁରଘାଟ" ଘରେ ଯଦି କଣ୍ୱ ମୁନିର ଆଶ୍ରମ ଥାଆନ୍ତା, ତାହାହେଲେ ଶକୁନ୍ତଳା ଯେଉଁ କାଣ୍ଡଟି ଘଟେଇଥିଲେ, ସେଥିରେ କେବଳ ଋଷିମୁନିଙ୍କ ଗୋଷ୍ଠୀ ନୁହେଁ, ସମସ୍ତ ପାଥୁରଘାଟର ଲୋକଙ୍କୁ ଗୋଟିଏ ଘରେ ରହିବାକୁ ପଡୁଥାଆନ୍ତା । କାହିଁ, ସେଇ ପ୍ରଣୟ-କାହାଣୀ ପଢ଼ି ତ କୌଣସି ସତୀ ସାଧ୍ୱୀର ଆଖି ଲାଲହୋଇ ଉଠେନା । ନା ନା, ବ୍ୟସ୍ତ ହୋଇଉଠନା ଦିବାକର ! ମୁଁ ସଖି ସାଧ୍ୱୀଙ୍କ ଉପରେ କଟାକ୍ଷ କରୁନି କିମ୍ବା ଏକାଳକୁ ସେକାଳ ସହିତ ମିଶେଇଦେଉନି । ଏ ଯୁଗ ଏ ଯୁଗ ହୋଇ ରହିଥାଉ ଏବଂ ସେମାନେ ଯେଉଁଠି ଅଛନ୍ତି ଭଲହୋଇ ରହିଥାଆନ୍ତୁ । ସେଥିରେ ମୋର କୌଣସି ଆପତ୍ତି ନାହିଁ । କିନ୍ତୁ

ସେ ଯୁଗର ଶକୁନ୍ତଳାକୁ କାହିଁକି ସେ ଏ ଯୁଗର ନରନାରୀ ଅନ୍ତରରେ ଘୃଣାକରି ପାରେନା, ସେଇଟା ହିଁ ବିଚିତ୍ର ।

କ୍ଷଣକାଳ ନୀରବ ରହି ଆସ୍ତେ ଆସ୍ତେ ସେ କହିଥିଲେ—ଘୃଣା କାହିଁକି ସେ କରିପାରନ୍ତିନି ଜାଣ ହିବାକର ! କେବଳ ପାରନ୍ତିନ ଏଇଥିଲାଗି ଯେ ମିଳନ ତାର ଯେଉଁ ଭାବରେ ହେଉ ମିଳନର ଆଦର୍ଶକୁ ସେ ଖାଣ୍ଟି ରଖିଥିଲେ । ଯେଉଁ ବନ୍ଧନରେ ନିଜକୁ ମୁହୂର୍ତ୍ତକରେ ବାନ୍ଧି ପକେଇଥିଲେ, ସେ ବନ୍ଧନ ପରିପକ୍ୱ ନୁହେଁ ବୋଲି ମନ ଭିତରେ କୌଣସି ସଂଶୟ, କୌଣସି ସଂକୋଚ ରଖି ନାହାନ୍ତି । ତା ଯଦି ରଖିଥାଆନ୍ତେ, ତାହାହେଲେ ଯେତେ ବଡ଼ ଯେତେ ମଧୁର କରି ଲେଖନ୍ତୁ ନା କାହିଁକି କୌଣସି ମଣିଷର ହୃଦୟ ଏଭଳି ଟାଣିନେଇ ପାରନ୍ତେନି । କେଉଁଠି ଅସଲ କଥା ରହିଲା, ଠିକଏ ଭଲକରି ଭାବି ଦେଖ ।

ହିବାକରଙ୍କୁ କୌଣସି ଗୋଟିଏ କଥା ବି ଭଲ ଲାଗେନା । ସେ ଅସହିଷ୍ଣୁ ହୋଇ କହିଲା—ଆଦର୍ଶ ଯେଉଁଭଳି ହେଉ, ଆଜକାଲିର ସମାଜ ଏହା ସ୍ୱୀକାର କରିବନି; ଆଉ ସମାଜରେ ଯାହା ସ୍ୱୀକୃତ ହେବନି, ତାହା ବୈଧ ହେଉ ବା ଅବୈଧ ହେଉ, ତାହାର ସମାଜକୁ ଆଘାତ କରିବା ସାର ହେବ । ସମାଜରେ ରହି ସମାଜକୁ ଆଘାତ କରିବା ଆତ୍ମହତ୍ୟା ସହିତ ସମାନ ।

କରଣମନ୍ତ୍ରୀ ଜବାବ ଦେଇଥିଲେ—ଜାଣ ହିବାକର, ସମାଜକୁ ଆଘାତ କରିବା ଏବଂ ସମାଜର ଅବିଚାରକୁ ଆଘାତ କରିବା ଏକା ଜିନିଷ ନୁହେଁ । ତୁମକୁ ପୂର୍ବରୁ ତ କହିଛି, ସବୁ ଜିନିଷର ଗୋଟିଏ ବାସ୍ତବ ଅଧିକାର ରହିଛି । ସମାଜ ଉଦ୍ଧତ ହୋଇ ଯେତେବେଳେ ତାର ପ୍ରକୃତ ଅଧିକାରର ସୀମା ଲଙ୍ଘନ କରେ, ସେତେବେଳେ ତାକୁ ଆଘାତ କରିବା ଉଚିତ । ଏ ଆଘାତରେ ସମାଜ ମରେନା, ତାର ଚୈତନ୍ୟ ହୁଏ, ମୋହ ତୁଟିଯାଏ । ଲେଖାପଢ଼ା ଶିଖିବା ଲାଗି ହେଉ ବା ଦେଶ ପାଇଁ ହେଉ, ବିଲାତ ଯିବାଟାକୁ ସମାଜ ସ୍ୱୀକାର କରେନା । ଏଇଥିଲାଗି ତାକୁ ବାରମ୍ବାର ଆଘାତ ପାଇବାକୁ ପଡ଼ିଛି । ତଥାପି ଏଭଳି କଠିନ ପ୍ରତିଜ୍ଞା ଯେ ତାହା ବର୍ତ୍ତମାନ ସୁଦ୍ଧା ତ୍ୟାଗ କରିପାରିନି । ଏଥିରେ କ'ଣ ତୁମେ ସମାଜକୁ ସତ୍ ବିବେଚନା ଲାଗି ପ୍ରଶଂସା କର ?

ଦିବାକର କହିଥିଲା—ନା କରେନି; କାରଣ ଭଲ ମନ୍ଦ କରିବାର କାରଣ ନାହିଁ ବୋଲି ।

କରୁଣାମୟୀ କହିଥିଲେ—ଠିକ୍ ସେଇ କଥା । କିନ୍ତୁ ନିଃସଂଶୟରେ ସ୍ପଷ୍ଟ ଉତ୍ତର କେଉଁଠୁ ପାଉଚ ? ନିଜର ବିଚାର-ବୁଦ୍ଧି ପାଖରୁ ବା ସମାଜ ପାଖରୁ ନୁହେଁ ତ ?

ଦିବାକର ଉତ୍ତେଜିତ ହୋଇ ଉତ୍ତର ଦେଇଥିଲା—କିନ୍ତୁ ସମସ୍ତେ ଯଦି ସବୁ କାମରେ ନିଜର ବିଚାର ବୁଦ୍ଧି ଖଟେଇବାକୁ ଯାଆନ୍ତି, ତାହାହେଲେ ତ ସମାଜ ବୋଲି ରହିବନି ।

କରୁଣାମୟୀ କହିଥିଲେ—ମୁଁ ତ ତୁମକୁ ଏପର୍ଯ୍ୟନ୍ତ ଏହି କଥା ହିଁ କହିବାକୁ ଚେଷ୍ଟା କରିଚି । ସବୁ କାମରେ ନିଜର ବୁଦ୍ଧି ଖଟେଇବାକୁ ଗଲେ ଯେଭଳି ସମାଜରେ ଯଦି ସବୁ ସମୟରେ ଏବଂ ସବୁ କାମରେ ମତିଟାକୁ ଚଳେଇବାକୁ ଯାଅ, ସେଥିରେ ମଣିଷ ବଞ୍ଚେନା । ମଣିଷ ହିଁ ଭୁଲ କରିବାକୁ, ଅନ୍ୟାୟ କରିବାକୁ ଜାଣେ; ଆଉ ସମାଜ କ'ଣ ଜାଣେନା ଦିବାକର ? ଉଭୟର ସୀମା ନିର୍ଦ୍ଦିଷ୍ଟ ରହିଛି—ସେ ସୀମା ମୂଢ଼ତାରେ ହେଉ ବା ପ୍ରବୃତ୍ତି ଝୁଙ୍କରେ ହେଉ ବା ଅନ୍ୟାୟ ଜିଦ୍‌ବଶତଃ ହେଉ, ଯେଭଳି ଭାବରେ ହେଉ ଲଙ୍ଘନ କରିବା ହିଁ ଅମଙ୍ଗଳ । ସେ ଅମଙ୍ଗଳକୁ ଏଡ଼େଇଦେବାର କ୍ଷମତା ତୁମ ଭଗବାନର ନାହିଁ ।

ଦିବାକର ଏଥର ଉତ୍ତରରେ କୌଣସି କଥା କହିଲା ନାହିଁ । କରୁଣାମୟୀ ମଧ୍ୟ କିଛି ସମୟ ଚୁପ୍ ରହିବା ପରେ କହିଥିଲେ—ଅଥଚ ଏଇ ସୀମା କୌଣସି ସମାଜରେ ବି ଚିରକାଳ ଗୋଟିଏ ସ୍ଥାନରେ ଆବଦ୍ଧ ରହି ନ ଥାଏ । ଅବଶ୍ୟକତାମତେ ଘୁଞ୍ଚିଯାଏ ।

ଦିବାକର ପଚାରିଲା—କିଏ ଘୁଞ୍ଚାଏ ?

କରୁଣାମୟୀ କହିଥିଲେ—କେହି ଘୁଞ୍ଚାଏନି । ଯେଉଁ ନିୟମରେ ବିଶ୍ୱବ୍ରହ୍ମାଣ୍ଡ ଚାଲେ, ସେଇ ନିୟମରେ ଇଏ ଆପେ ଆପେ ଘୁଞ୍ଚିଯାଏ ।

ଏତେବେଳଯାଏଁ ଦିବାକର କରୁଣାମୟୀଙ୍କ ଯୁକ୍ତିତର୍କର ସବୁକୁ ଏଇ ପଳେଇଯିବାର ଅନୁକୂଳରେ ମିଳେଇନେବାକୁ ଯାଇ ମନ ଭିତରେ ବାଧା ପାଉଥିଲା । ଏବେ ତ ଏଇ କାମକୁ ଯତ୍‌ପରୋନାସ୍ତି ଗର୍ହିତ ବୋଲିବାରେ ତାର କୌଣସି ସନ୍ଦେହ ନ ଥିଲା ଏବଂ ସବୁ ଅପରାଧକୁ ସେ ସ୍ୱନିୟୁ

ଗ୍ରହଣ କରିବା ଲାଗି ନିଜକୁ ପ୍ରସ୍ତୁତ କରି ନେଇଥିଲା । ତଥାପି ଯେତେବେଳେ ସେ ସ୍ପଷ୍ଟ ବୁଝିପାରିଲା ଯେ ଏଇ ଗର୍ହିତ ନାରୀ ଏତେ ବଡ଼ ଅପରାଧକୁ ଅପରାଧ ବୋଲି ଗଣ୍ୟ କରିବାକୁ ଚାହେଁନା, ବରଂ ସମାଜକୁ ଦୋଷୀ ସାବ୍ୟସ୍ତ କରିବାକୁ ଚାହେଁ, ସେତେବେଳେ ତାର ଅସହ୍ୟ ବୋଧ ହୋଇଥିଲା; କିନ୍ତୁ ଟାଣକରି ପଦେ କଥା କହିବା ଭଳି ଶକ୍ତି ତାର ନ ଥିଲା । ତେଣୁ ଟିକିଏ ବିଦ୍ରୂପ କରି କହିଥିଲା—ଏଇ ଯେମିତି ଆମେ ସମାଜକୁ ଆଘାତ କଲେ ! ଏଥର ଦେଖାଯାଉ ସମାଜର କେତେ ବା ଦର୍ପ ଓ ମୋହ ! କ'ଣ କହୁଚ ଭାଉଜ ?

କରୁଣାମୟୀ ବି କହୁଣୀ ଉପରେ ଭରଦେଇ ଦିବାକରକୁ ଚାହିଁ କହିଲେ—ଆମେ ଆଘାତ କରିଲେ କେଉଁଠି ବା ଦିବାକର ? ଭୟରେ ପଳେଇଯିବା ଏବଂ ଠିଆ ହୋଇ ଆଘାତ ଦେବା କ'ଣ ଏକା କଥା ଯେ ଏହାଦ୍ୱାରା ସମାଜର ଦର୍ପ ଚୂର୍ଣ୍ଣ ହୋଇଯିବ ? ଏଥିରେ ତାର ଦର୍ପ ବରଂ ବଢ଼ିଯିବ । କିନ୍ତୁ ତୁମେ କ'ଣ ଏପର୍ଯ୍ୟନ୍ତ ପଢ଼ିନା ଦିବାକର ? ଏହା କହିଦେଇ ଦେହର ଚାଦରଟା ମୁଣ୍ଡ ପର୍ଯ୍ୟନ୍ତ ଟାଣିନେଇ ସେ ଶୋଇପଡ଼ିଲେ ।

ବାହାରେ ମନ୍ଦୀଭୂତ ଝଡ଼ର ଶବ୍ଦ ଭେଦକରି ଜାହାଜ ଘଣ୍ଟାରେ ୧୨ଟା ବାଜିବା ଶବ୍ଦ ଶୁଭିଲା । ଡେକ୍‌ର ଗୋଟିଏ ଚେୟାର ଉପରେ ବୁକୁ ଭିତରେ ଦୀର୍ଘଶ୍ୱାସ ଭର୍ତ୍ତିକରି ଦିବାକର ଚୁପ୍‌ଚାପ୍ ରହିଥିଲା । ହଠାତ୍ ଡାକପଡ଼ିଲା—ଦିବାକର !

ଦିବାକର ଚମକିଉଠିଲା । ସଙ୍ଗେ ସଙ୍ଗେ ଉତ୍ତରଦେଲା— କ'ଣ ଭାଉଜ ?

କରୁଣାମୟୀ କହିଲେ—ତୁମେ ଫେରିଯାଅ ।

ଦିବାକର ଜୋର ଦେଇ କହିଲା—କଦାପି ହେବନି ।

କରୁଣାମୟୀ କହିଲେ—ନାହିଁ କାହିଁକି ? ନ ବୁଝି ଗୋଟାଏ ଅନ୍ୟାୟ କରି ପକାଉଚ, ବୁଝିସାରି ତାର ପ୍ରତିକାର କରିବନି ! ପାପବୋଝ ବୋହି ବୋହି ଚାଲିବ ! ମୁଁ ତାର କୌଣସି ଆବଶ୍ୟକତା ଦେଖିବାକୁ ପାଉନି ।

ଦିବାକର କହିଲା—ତୁମେ ଦେଖନି, ମୁଁ ଦେଖେ । ଫେରିଗଲେ କ'ଣ ପାପର ବୋଝ କମିଯିବ ?

କିରଣମୟୀ କହିଲେ – ସଙ୍ଗେ ସଙ୍ଗେ ହୁଏତ ମୁଁ ଯାଇ ନ ପାରେ; କିନ୍ତୁ ଦି'ଦିନ ପରେ ଯାଇପାରେ ।

ଦିବାକର ମୃଦୁ କଣ୍ଠରେ ପଚାରିଲା—କିନ୍ତୁ ଯିବ କୁଆଡ଼େ ?

କିରଣମୟୀ କହିଲେ—ତୁମ ଘରକୁ, ଆତ୍ମୀୟସ୍ୱଜନଙ୍କ ପାଖକୁ । ତୁମର ତ ସମସ୍ତେ ଅଛନ୍ତି ।

ଦିବାକର କିଛି ସମୟ ଚୁପ୍ ରହିବା ପରେ କହିଲା—ଯାହା କିଛି ମୋର ଅଛି ବୋଲି କହୁଚ, ସେସବୁ ମୋର କିଛି ନାହିଁ ବୋଲି ତ ତୁମେ ଜାଣ । ଆସନ୍ତି କେବଳ ଉପୀନ୍ ଭାଇନା । କିନ୍ତୁ ତୁମେ ତ ତାଙ୍କୁ ଚିହ୍ନ । ତାଙ୍କର ପାଖକୁ କ'ଣ ତୁମେ କହୁଚ ଫେରିଯିବାକୁ ?

—ହଁ, ତାଙ୍କର ପାଖକୁ ଫେରିଯିବାକୁ କହୁଚି ।

ଦିବାକର କିଛି ସମୟ ଚୁପ୍ ରହିବା ପରେ ଧୀରେ ଧୀରେ କହିଲା—ଭାବିଥିଲି ତୁମେ ତାଙ୍କୁ ଚିହ୍ନିଚ; କିନ୍ତୁ ଚିହ୍ନିନ । ମୁଁ ବି ଯେ ଚିହ୍ନେ ତାହା ନୁହେଁ । ହୁଏତ ଭଲକରି ତାଙ୍କୁ ଚିହ୍ନାଯାଏନା । କିନ୍ତୁ ପିଲାଦିନୁ ତାଙ୍କର ହାତରେ ମଣିଷ ହୋଇ ଏଇ ଟିକିକ ଅନ୍ତତଃ ବୁଝିଚି ଯେ ଏହାପରେ ତାଙ୍କ ସାମନାରେ ଯାଇ ଠିଆହେବା ଅପେକ୍ଷା ବରଂ ନିଆଁରେ ଡେଇଁ ମରିଯିବା ଶତ ଗୁଣରେ ଭଲ ।

ହଠାତ୍ କିରଣମୟୀ ଚକିତ ହୋଇଉଠିଲେ । ଦିବାକର ମୁହଁ ଆଡ଼କୁ ଚାହିଁ କହିଲେ—କାହିଁକି ? କ'ଣ ସେ ଏତେ ନିଷ୍ଠୁର ? ଯେଉଁ ଦୋଷ ତୁମର ନୁହେଁ, ସେକଥା ବୁଝେଇ ସୁଝେଇ କହିଲେ କ'ଣ ତୁମକୁ ସେ ଦଣ୍ଡ ଦେବେ ? ଇଏ କେବେ ସମ୍ଭବ ହୋଇ ନ ପାରେ ଦିବାକର !

କିରଣମୟୀଙ୍କର ଆକସ୍ମିକ ଉତ୍ସାହ ଦିବାକର ଲକ୍ଷ୍ୟକରି ନ ଥିଲା । ପାଟଣି ଉପରେ ଯେଉଁ ଆଲୁଅଟା ଜଳୁଥିଲା, ସେଇଆଡ଼କୁ ଚାହିଁ ଅନ୍ୟ-ମନସ୍କ ଭଳି ଆସ୍ତେ ଆସ୍ତେ କହିଲା—ତାଙ୍କୁ କୌଣସି କଥା ବୁଝେଇ କହିବାକୁ ହୁଏନା । କେଜାଣି କିମିତି ସେ ସବୁକଥା ଜାଣିପାରନ୍ତି । ଅବଶ୍ୟ ତୁମ ଭଳି ମୁଁ ଭାବିପାରେନା ଯେ ମୋର ଦୋଷ ନାହିଁ । କିନ୍ତୁ ଯଦି ତୁମ କଥା ଠିକ୍ ହୁଏ, ଯଦି ସତରେ ମୁଁ ନିର୍ଦ୍ଦୋଷ, ତାହାହେଲେ ଯେଉଁଦିନ ତାଙ୍କ ସାମନାରେ ଯାଇ ଠିଆ ହେବି, ସେଇ ଦିନ ହିଁ ସେ କ'ଣ ଦଣ୍ଡ ଦେବେ ? ଆଜିପର୍ଯ୍ୟନ୍ତ ସେ କୌଣସି ଦିନ ମତେ ଦଣ୍ଡ ଦେଇ

ନାହାନ୍ତି । ଆଜି ସେ କିଛି କହିପାରିଲେନି । ଦି' ହାତରେ ଆଖିକି ଚାପିଧରି ଫୁଟ୍‌ଫୁଟ୍ କାନ୍ଦିଲା ।

କିରଣମୟୀ କୌଣସି କଥା କହିଲେନି । ଦି' ଆଖି ବିସ୍ଫାରିତ କରି ତା ମୁହଁକୁ ଖାଲି ଚାହିଁରହିଲେ । ତାଙ୍କ ଅନ୍ତରର ବିପ୍ଳବ କେବଳ ସେଇ ଅନ୍ତର୍ଯ୍ୟାମୀ ହିଁ ଜାଣିଲେ ।

କ୍ଷଣକ ପରେ ଦିବାକର କଥା କହିଲା । ନିରତିଶୟ ବ୍ୟଥିତ କଣ୍ଠରେ କହିବାକୁ ଲାଗିଲା— କାଲି ତୁମେ କହିଲ ଉପୀନଦାଙ୍କ ମଥା ତଳକୁ ନୁଆଇଁଦେବ । ସେ ରାତିରେ ତୁମର କ'ଣ ଯେ ହୋଇଥିଲା, କି ରାଗରେ ଏ କଥା ଯେ କହିଥିଲ, ତାହା ଏବେ ବି ଭାବିପାରୁନି । କିଛି ନା କିଛି କାରଣ ନିଶ୍ଚୟ ଅଛି । କିନ୍ତୁ ସେ କାରଣ ଯାହାହେଉ ତାଙ୍କ ମଥା ନୁଆଇଁଦେବାର ଦୁଃଖ ଯେ କେତେ ବଡ଼, ତାହା ଯଦି ଜାଣନ୍ତି, ଏଭଳି କଥା ମୁହଁରେ ବି ଧରନ୍ତିନି । ତା ଛଡ଼ା ଏଭଳି ମୁଣ୍ଡ ଯଦି ତଳକୁ ନଇଁଯାଏ, ତେବେ କେଉଁଦିନ ଆମେମାନେ କେଉଁ ଆଡ଼କୁ ଚାହିଁ ମୁଣ୍ଡ ଉଠେଇବୁ ? ତୁମେ ସେ ଚେଷ୍ଟା କରନି । ତାଙ୍କର ମୁଣ୍ଡ ନୁଆଇଁଦେବା ଭଳି କ୍ଷମତା ଏ ସଂସାରରେ କାହାର ହେଲେ ନାହିଁ ଭାଉଜ ! ଏ କଥାଟା ସତ ବୋଲି ବିଶ୍ୱାସ କର ।

ସେଇ ଗଭୀର ରାତିରେ ଏଇ ଦୁଇଟି ବିପରୀତପ୍ରକୃତି ଉପେନ୍ଦ୍ର ପ୍ରତି ଭକ୍ତି ଓ ଶ୍ରଦ୍ଧା ଜ୍ଞାପନ କରି ସହସା ଏକାନ୍ତ ଭାବରେ ସମ୍ମିଳିତ ହେଲେ— ଏହି ମତର ମିଳନପୀଠରେ କୌଣସି ବିରୋଧ ନ ଥିଲା । କହିବା ଅପେକ୍ଷା ଶୁଣିବା, ବୁଝେଇବା ଅପେକ୍ଷା ବୁଝିବାର ଆକାଂକ୍ଷା ପ୍ରବଳ ହୋଇଉଠିଲା । ପ୍ରତ୍ୟୁଷରେ କେତେବେଳେ ଯେ ଦିବାକର ଶଯ୍ୟା ତ୍ୟାଗକରି ବାହାରକୁ ଚାଲି ଯାଇଥିଲା, ଘୁମନ୍ତ କିରଣମୟୀ ଜାଣିପାରି ନ ଥିଲେ । ତେଣୁ ନିଦ ଭାଙ୍ଗିବାମାତ୍ରେ ସେ ଦିବାକର ଲାଗି ଉଦ୍‌ବିଗ୍ନ ହୋଇଉଠିଲେ । କାଲି ରାତିରେ କଥା କଥାକେ କିରଣମୟୀ ଅନେକ କଥା ଜାଣିପାରିଥିଲେ । ଦିବାକର ଯେ କେତେ ନିଃସହାୟ ଏବଂ ତାର ଉପୀନ ଭାଇନା ପାଖରୁ ବିଚ୍ଛିନ୍ନ ହେବା ଯେ ତା ପକ୍ଷରେ କିଭଳି ମର୍ମନ୍ତୁଦ ଦୁର୍ଘଟଣା, ଏହା ନିଃସଂଶୟରେ ବୁଝିପାରିବା ପର୍ଯ୍ୟନ୍ତ କିରଣମୟୀ ତାଙ୍କ ନାରୀ-ହୃଦୟର ନିଭୃତ ଅନ୍ତଃସ୍ଥଳରେ ଟିକିଏ ବି ଶାନ୍ତି ପାଉ ନ ଥିଲେ ।

ଏହି ସରଳ, ବିନୀତ, ସତ୍ୟବାଦୀ ଓ ସଚ୍ଚରିତ୍ର ଯୁବକଟିକୁ ତାର ଜୀବନର ପ୍ରାରମ୍ଭରେ ହିଁ ଅକାରଣରେ କକ୍ଷଭ୍ରଷ୍ଟ କରିଦେବାର ଅପରାଧ ତାଙ୍କୁ ଶୋଇବାବେଳେ ମଧ୍ୟ ବିନ୍ଧି ପକାଉଥିଲା । ତେଣୁ ସେ ନିଜ ଭାର୍ଗବୀ ବାମାନେ ଏକ ଅଭିନବ ସ୍ନେହ ସତ୍କାରରେ ଓ ବେଦନାର ସହିତ ଏହି ନିରପରାଧ ହତଭାଗ୍ୟ ଆଡ଼କୁ ପ୍ରଥମରେ ହିଁ ମୁହଁ ଫେରାଇ ଦେଖିଲେ, ଦିବାକର ନାହିଁ । ଉଠି ବାହାରେ ଖୋଜାଖୋଜି କଲେ; କିନ୍ତୁ ଖୋଜି ପାଇଲେନି । ବନ୍ଧୁଙ୍କୁ ଡାକି ଅନୁସନ୍ଧାନ କରିବାକୁ କହିଲେ; କିନ୍ତୁ ବନ୍ଧୁ ମଧ୍ୟ ତାକୁ ଦେଖିପାରିଲେନି ।

ସେପର୍ଯ୍ୟନ୍ତ କିରଣମୟୀ ଉତ୍କଣ୍ଠିତ ଭାବରେ ତାକୁ ଅପେକ୍ଷା କରିଥିଲେ; କିନ୍ତୁ ଏଇ ଉତ୍କଣ୍ଠା ଭିତରେ ବି ବହୁ ଦୂରାଗତ ମୃଦୁ ସୁଗନ୍ଧ ଭଳି ଗୋଟାଏ ଅସ୍ପଷ୍ଟ ଆନନ୍ଦର ଆଭାସ ଉପଲବ୍ଧି କରି ତାଙ୍କ ହୃଦୟ ପୁଲକିତ ହୋଇ ଉଠିଥିଲା ।

ସେଇ ଅତି ତୁଚ୍ଛ ଦିବାକର, ଯାହାକୁ ସେ କୌଣସି ଦିନ ଭଲ ପାଏନି, କୌଣସି ଦିନ ଭଲ ପାଇପାରେନା, ବୁଦ୍ଧିର ବିମାନରେ ତାକୁ ନେଇ ଘର କରିବାକୁ ପଡ଼ିବ, ଭଲ ପାଇବାର ଅଭିନୟ କରିବାକୁ ହେବ— ଜାହାଜକୁ ଉଠିବା ପର୍ଯ୍ୟନ୍ତ ଏଇ ଧିକ୍କାର ଭିତରେ ଭିତରେ ତାଙ୍କୁ ଯେମିତି ପାଗଳ କରି ପକାଇଥିଲା । ପୁଣି ଏଠି ବି ତାର ଶେଷ ନାହିଁ । ଏଇ ଉପରଠାଉରିଆ ସ୍ନେହ ଡୋର ଦିନେ ନା ଦିନେ ଛିଣ୍ଡିଯିବ, ଏଇ ଛଦ୍ମଲୀଳା ଦିନେ ଯେ କଦାପି ଭଲ ଲାଗିବନି, ଡାକ୍ତର ଅନଙ୍ଗମୋହନ ସେ ଶିକ୍ଷା ଭଲକରି ଦେଇଥିଲା । ସେ ଦୁର୍ଦ୍ଦିନରେ ଯେ ପ୍ରାଣାନ୍ତକ ଘୃଣାର ଫାଶ କାଟି କାଟି ତାର ଗଳାକୁ ଆସି ଧରିବ, ସେ ଫାଶ ଯେ ସେ କୌଣସି ଅସ୍ତ୍ରରେ କାଟି ପକେଇବ, ଏଇ ଦୁଶ୍ଚିନ୍ତାର ଶେଷ ନ ଥିଲା । କିନ୍ତୁ କାଲି ରାତିର ରାତ୍ରରେ ଉପେନ୍ଦ୍ରର ରାଜସିଂହାସନତଳେ ବସି ଉଭୟର ସନ୍ଧିପତ୍ର ଯେତେବେଳେ ସ୍ୱାକ୍ଷରିତ ହୋଇଗଲା, ସେତେବେଳେ ନିଦଭାଙ୍ଗି ଏଇ ନିରୀହ ପିଲାଟି ଲାଗି କରୁଣ ଓ ବ୍ୟଥାରେ କିରଣମୟୀ ଏକଆଡ଼େ ଯେଉଁଭଳି ପୀଡ଼ିତା ହୋଇଉଠିଲେ, ଏହି ଅବଶ୍ୟମ୍ଭାବୀ ଘୃଣାର ବିଭୀଷିକାରୁ ମୁକ୍ତିପାଇ ସେଭଳି ବଞ୍ଚିଉଠିଲେ ।

ଏକା ଏକା ଘର ଭିତରେ ବସି ସେ ବାରମ୍ବାର ଏହି କଥା ହିଁ କହିବାକୁ ଲାଗିଲେ—ଆଉ ମୋର ଭୟ ନାହିଁ, କୌଣସି ଭୟ ନାହିଁ । ଯାହାକୁ

ଭଲ ପାଇପାରିବନି, ଅନ୍ତରରୁ ସ୍ନେହ ଦେଇ ତାର ମନର କାଳିମା ପୋଛି ଦେଇପାରିବ । ତଥାପି ଗୋଟାଏ ଭୟ ତା ମନ ଭିତରେ ଉଙ୍କି ମାରିଲା, କାଳେ ଅଗ୍ନିର ପ୍ରଲୋଭନ ସମ୍ବରଣ ନ କରିପାରି ଦିନେ ଦିବାକର ପତଙ୍ଗ ଭଳି ପୋଡ଼ିମରିବାକୁ ବଦ୍ଧପରିକର ହୋଇଉଠେ । ତା ଉପରେ ଆକର୍ଷଣର ଯେ କି ଦୁର୍ନିବାର ଶକ୍ତି, ଏକଥା ବି ତାଙ୍କର ଅବିଦିତ ନ ଥିଲା ।

ମନେପଡ଼ିଲା ତାଙ୍କର ମୃତ ସ୍ୱାମୀ କଥା । ସେଇ ଶୁଷ୍କ କଠୋର ମୂର୍ତ୍ତିମାନ ବିଦ୍ୟାର ଅଭିମାନ ! ଯିଏ ଅତି ସତର୍କ ହୋଇ ଦିନରାତି ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରୁଥିଲେ—ସେଇ ସ୍ୱାମୀ । ତାଙ୍କ ପାଖକୁ ସେ ତ ଦିନେ ହେଲେ ଯାଇ ନ ଥିଲେ; ତଥାପି ତ ସେ ଦିନ କଟାଉଥିଲେ ଲେଖାପଢ଼ା କରି । ଭାତ ରାନ୍ଧି, ଶାଶୁଙ୍କର ଗାଳି ଶୁଣି, ଘରର କାମଦାମ କରି ତାଙ୍କର ଦିନ କଟୁଥିଲା । ରାତିରେ ପରକାଳ ବିରୁଦ୍ଧରେ, ଆତ୍ମା ବିରୁଦ୍ଧରେ ଲଢ଼େଇ କରି, ନାଳିସ କରି, ଗ୍ଲାନିକରି, ବ୍ୟଙ୍ଗକରି ଘରର କାନ୍ଥଗୁଡ଼ାକ ପର୍ଯ୍ୟନ୍ତ ଦୂଷିତ, ବିଷାକ୍ତ କରି କ୍ଲାନ୍ତଜର୍ଜର ହୋଇ କୌଣସି ଏକ ସମୟରେ ଘୁମେଇ ପଡ଼େ । ପୁଣି ସକାଳ ହୁଏ, ରାତି ହୁଏ, ଏହିଭଳି ମାସ ପରେ ମାସ, ବର୍ଷ ପରେ ବର୍ଷ ଗଡ଼ିଯାଉଥିଲା । ଘରେ 'ଭିକ୍ଷା ଦିଅ ମା' କହି ଭିକାରି ପ୍ରବେଶ କରେ ନାହିଁ । କମିତି ଅଛ କହି ପଡ଼ିଶାଘର କିଏ ବି ତାର ଖବରଅନ୍ତର ନିଅନ୍ତି ନାହିଁ । ଦିନେ ବି ସୂର୍ଯ୍ୟ ଆଲୁଅ ବାଟ ଭୁଲି ସୁଦ୍ଧା ସେ ଘରେ ପ୍ରବେଶ କରି ନାହିଁ କିମ୍ବା ପବନ ବି ପଶି ନାହିଁ—ତଥାପି ଦଶ ବର୍ଷ କଟି ଯାଇଥିଲା । ତାର ମା ବାପାଙ୍କ କଥା ମନେ ପଡ଼େନା । ଖାଲି ମନେଅଛି, ବାଳିକା ବୟସରେ କାଳନା ପାଖ ଗୋଟିଏ ଛୋଟ ଗାଁର କେଉଁ ଏକ ନିରାନନ୍ଦ ମାମୁଁ ଘରୁ ବାହାର ହୋଇ ବଧୂ ବେଶରେ ଏଇ ଅନ୍ଧକାର ଘର ଭିତରେ ଆସି ପ୍ରବେଶ କରିଥିଲେ । ସେଦିନଠୁ ସ୍ୱାମୀଙ୍କ ସହିତ ତାଙ୍କର ଗୁରୁ-ଶିଷ୍ୟାର ସମ୍ବନ୍ଧ ରହି ଆସିଥିଲା । ସ୍ୱାମୀ ଦିନେହେଲେ ତାଙ୍କୁ ଆଦର କରିନାହାନ୍ତି । ଭଲ ପାଉଥିଲେ କି ନା, ଦିନେହେଲେ କହିଯାଇ ନାହାନ୍ତି ।

ବଙ୍ଗଳା, ସଂସ୍କୃତ, ଇଂରେଜୀ ଅନେକଗୁଡ଼ିଏ ପାଠ ତାଙ୍କଠୁ ପଢ଼ିବାକୁ ପଡ଼େ । ସେ ପଢ଼ାଉଥାନ୍ତି, ଇଏ କରନ୍ତି । ମୁଖସ୍ଥ କରି ନ ପାରିଲେ

ତିରସ୍କାର ମିଳେ— ଥରେ ଥରେ ବାତ୍ତାନ୍ତ ହ । ରାଗ ଅଭିମାନ କୌଣସି ହିନ ସାଧନ୍ତୁନି, କାନ୍ଦି କାନ୍ଦି ଘୁମେଇପଡ଼ିଲେ କେବେ ସେ ଉଠେଇ ତାକୁ ଖାଇପକା ବୋଲି କହୁନ୍ତୁନି—ଏଇ ତ ତାର ବଧୂଜୀବନର ଇତିହାସ ।

ଶାଶୁଙ୍କର ପରୀକ୍ଷା ଥିଲା ଆହୁରି କଠୋର ! ସେଠି ଅତି କ୍ଷୁଦ୍ର ଭୁଲଭ୍ରାନ୍ତି ଲାଗି ମଧ୍ୟ କ୍ଷମା ନ ଥିଲା । ଅଘୋରମୟୀ ରୋଷେଇଘରର ଚଉଁଳା ଲୁହା ଖଡ଼ିକାଠାରୁ ଆରମ୍ଭ କରି ଜଳନ୍ତା କାଠ ପର୍ଯ୍ୟନ୍ତ ସବୁର ଚିହ୍ନ ଏହି ଶ୍ରେଷ୍ଠ ବୋହୂ ଦେହରେ ଅଙ୍କିତ କରିଦେଇଥିଲେ । ଦିନେ କୌଣସି ଏକ ଅପରାଧର ଶାସ୍ତିବିଧାନ କରିବାକୁ ଯାଇ ବୋହୂ ମୁଣ୍ଡର ବାଳଗୁଡ଼ାକ କାଟି ପକେଇଥିଲେ । ଦୁଃଖ ଅଭିମାନରେ କିରଣମୟୀ ଯେତେବେଳେ ରୋଷେଇ ଘରର ଗୋଟିଏ କୋଣରେ ବସି ସକେଇ ସକେଇ କାନ୍ଦୁଥିଲେ, ସେତେବେଳେ ପିଠିରେ ତାର ଜଳନ୍ତା ନିଆଁ ଖୁଣ୍ଟାର ଖେଞ୍ଚାମାରି ଅଘୋରମୟୀ କହିଥିଲେ — ଚୁପ୍ କର ନଇଲେ ଆଉଥରେ ମାଡ଼ଦେବି । ପିଠିର ଏଇ ପୋଡ଼ା ଘା ଭଲ ହେବାକୁ ମାସେ ଲାଗିଯାଇଥିଲା ।

ହଠାତ୍ ଯେଉଁଳି ଏଇ ଘାଟା ପୋଡ଼ିଉଠିଲା ଭଳି ତାଙ୍କର ମନେହେଲା । କିରଣମୟୀ ମୁହୂର୍ତ୍ତକ ଲାଗି ଚଞ୍ଚଳ ହୋଇ ପୁଣି ସ୍ଥିରହୋଇ ବସିରହିଲେ । କେବେ ଯେ ସେ କୈଶୋର ଛାଡ଼ି ଯୌବନରେ ପାଦ ଦେଇଥିଲେ, ସେକଥା ସେ ଭାବିସୁଦ୍ଧା ପାରି ନ ଥିଲେ ।

ଯୌବନ କାଳରେ, ଅଜ୍ଞାତରେ, ନିରହଙ୍କାରରେ ଦେହର କୂଳ ଉପକୂଳ ଯେତେବେଳେ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ହେବାକୁ ଲାଗିଲା, ସେତେବେଳେ ସ୍ୱାମୀଙ୍କ ସହିତ ବ୍ୟସ୍ତ ରହିଲେ ସୂକ୍ଷ୍ମ ବିଷୟ ନେଇ । କାହିଁକି ଯେ ତାଙ୍କର ଦୈହିକ ନିର୍ଯ୍ୟାତନା ଶେଷ ହେଲା, କାହିଁକି ଯେ ସେ ଗୃହକର୍ତ୍ତ୍ରୀ ହୋଇଉଠିଲେ, ଏକଥା ସେ ଥରେ ହି ଭାବି ଦେଖିବାର ଅବକାଶ ପାଇଲେ ନାହିଁ । ସ୍ୱାମୀ କହିଲେ – ସୁଖ ହିଁ ଜୀବର ଏକମାତ୍ର ଲକ୍ଷ୍ୟ, ଆଉସବୁ ଉପଲକ୍ଷ୍ୟ । ଦୟା, ଧର୍ମ, ପୁଣ୍ୟ ଏସବୁ ଉପଲକ୍ଷ୍ୟ । ହୁଏତ ଇହକାଳ ନଚେତ୍ ପରକାଳ, ହୁଏତ ନିଜର ନଚେତ୍ ପାଞ୍ଚଜଣଙ୍କର, ହୁଏତ ସ୍ୱଦେଶ ନଚେତ୍ ବିଦେଶର—କିଭଳି ଯେ ସୁଖର ସମଷ୍ଟି ବଢ଼ାଯାଇପାରେ—ଏହାହିଁ ଜୀବର କର୍ମ । ଜାଣି କରି ହେଉ ବା ଅଜାଣତରେ ହେଉ, ଏଇ

ଚେଷ୍ଟାରେ ହିଁ ଜୀବନର ସମସ୍ତ ଜୀବନ ପରିପୂର୍ଣ୍ଣ ହୋଇଥାଏ ଏବଂ ଏହାହିଁ ଏକମାତ୍ର ତୁଳାଦଣ୍ଡ, ଯେଉଁଥିରେ ମଣିଷର ସମସ୍ତ ଭଲମନ୍ଦକୁ ଓଜନ କରି ଦିଆଯାଇପାରେ । ନିଜର କି ପରର ଏସ ଦିଗକୁ ନୁହେଁନ । କାରଣ, ତୁ କେବଳ ଏଇତକ ବୁଝି ଦେଖିବା ଲାଗି ଚେଷ୍ଟା କରିବୁ, ଏଥିରେ ସୁଖମାତ୍ରା ବଢ଼େ କି ନା !

କିରଣ କହେ—ଠିକ୍ ସେୟା; କିନ୍ତୁ କିପରି ବା ଜାଣିବ ମୋ କାମରେ ସଂସାରରେ ସୁଖର ସମଷ୍ଟି ବଢ଼ୁଛି ବୋଲି ? ସୁଖର ଚେହେରା ତ ସମସ୍ତଙ୍କ ପାଖରେ ସମାନ ନୁହେଁ ।

ହାରାନ ତାର ଜ୍ୟୋତିହୀନ ଚକ୍ଷୁର ଦୃଷ୍ଟି ଘରର କଡ଼ ବରଗା ଦିଗକୁ ନିକ୍ଷେପ କରି କହନ୍ତି—ଖଣ୍ଡ ଖଣ୍ଡ କରି ଦେଖିଲେ ଏକ ନୁହେଁ ଅବଶ୍ୟ, କିନ୍ତୁ ସମଗ୍ର ଭାବରେ ଏକା ତୁମକୁ ତାର ଉପରେ ନିର୍ଭର କରିବାକୁ ହେବ ।

କିରଣମୟୀଙ୍କ ପାଖରେ ସୁଖର କୌଣସି ରୂପ ସୁସ୍ପଷ୍ଟ ନୁହେଁ । ସେ ଅସହିଷ୍ଣୁ ହୋଇ କହିଉଠନ୍ତି—ଖଣ୍ଡ ଖଣ୍ଡ କରି, ସମଗ୍ର କରି, ଏସବୁ ଖାଲି କଥାର କଥା । ନିଜର କେଉଁଥିରେ ସୁଖ ହୁଏ, ଏଇଟି ହିଁ ବଡ଼ ହେଲେ ମଣିଷ ବୁଝିପାରେ । ସିଏ ବି ସବୁବେଳେ ସବୁ ଅବସ୍ଥାରେ ଠିକ୍ ଭାବରେ ପାରେନା । ଯେତେବେଳେ ନିଜ ସମ୍ବନ୍ଧରେ ମଣିଷ ନିର୍ଭୁଲ ନୁହେଁ, ସେତେବେଳେ ସମସ୍ତ ଜଗତର ଦାୟିତ୍ୱ ହାତକୁ ନେବାକୁ ଯା'ର ସାହସ ହୁଏ ହେଉ, ମୋର କିନ୍ତୁ ହୁଏନା । ଏଇ ସେପାଖର ଚଟକଲର କାଜମାନେ ହୁଏତ ମନେକରନ୍ତି, ଯଦି ସମ୍ଭବ ହୁଏ, କାଶୀର ସମସ୍ତ ମନ୍ଦିର-ଗୁଡ଼ାକ ଭାଙ୍ଗିଦେଇ ପାଟ ତିଆରି କାରଖାନା ଗଢ଼ିଲେ ଯାଇ ମଣିଷ ସୁଖୀ ହୋଇପାରିବ । କିନ୍ତୁ ସମସ୍ତେ କ'ଣ ତା ମନେକରିବେ ? ସୁଖ ଜିନିଷଟି ଯେ କ'ଣ, ଯେତେବେଳଯାଏଁ ତୁମେ ମତେ ବୁଝେଇ ନ ଦେଇଛ, ସେତେବେଳଯାଏଁ ମୁଁ ତୁମର କୌଣସି କଥା ବି ଶୁଣିବି ନାହିଁ । ଏହା କହି କିରଣମୟୀ ଯିବାକୁ ଉପକ୍ରମ କରୁ କରୁ ହାରାନ ହାତଧରି କହନ୍ତି—ଟିକିଏ ବସ । ଏତେ ପଢ଼ାପଢ଼ି କରିବାରେ ତୁମେ ଯଦି ଏଇ ଟିକକରେ ରାଗିଉଠ, ତାହାହେଲେ ସବୁଗୁଡ଼ାକ ବୃଥା ହୋଇଯିବ । ଦେଖ କିରଣ, ମୁଁ ତୁମକୁ ସତରେ କହୁଛି, ସୁଖ ଜିନିଷଟା ଯେ କ'ଣ, ମୁଁ ଠିକ୍ ଜାଣେନା । କୌଣସି

ଦେଶରେ କଏ କେବେ ଜାଣିଥିଲା କି ନା, ସେ କଥା ମଧ୍ୟ ମନେ ଜଣା ନାହିଁ । ଏଇଟା ବୋଧହୁଏ ଜଣାଯାଏନା । ଆମ ଦେଶରେ ପୂର୍ବରୁ ହିନ୍ଦୁ ଋଷିମାନଙ୍କ ଦ୍ୱାରା ଏହି ଚିନ୍ତା ଧାରା ହୋଇଯାଇଛି । ଏଇ ଉକ୍ତିଟିକୁ ବାଦ ଦେଇ ଯେଉଁ ଜନଷଷ୍ଠି ମିଳେ, ତାହା ଯେ ସୁଖ, ସେ କଥା ମଧ୍ୟ କୁହା-ଯାଇ ନ ପାରେ ।

ପ୍ରତ୍ୟୁତ୍ତରରେ କାରଣମୟୀ ଅତି ଅସହିଷ୍ଣୁ ହୋଇ କହନ୍ତି — କିନ୍ତୁ ଯେତେବେଳେ କୁହାଯାଏନା, ତାର ସୁଖର କଳ୍ପନାକୁ ପରିହାସ କରିବା ଯେପରି ଅସଙ୍ଗତ, ସାଧାରଣ ଭାବରେ ସଂସାରରେ ସୁଖର ପରିମାଣ ବଢ଼ାଇ ଦେଖାଇବା ମଧ୍ୟ ସେହିପରି ଧାପ୍ପାବାଜ । ଭଲମନ୍ଦ ମାପିବା ପୂର୍ବରୁ ତୁମର ତୁଳାଦଣ୍ଡଟି ନିର୍ଭୁଲ ହେବା ଦରକାର । ସେଇଟିକୁ ତୁମେ ଯେ ନିର୍ଭୁଲ କରିପାରିବ କେଉଁ ଆଦର୍ଶରେ, ମୁଁ ତ ଭାବିପାରୁନି ।

ହାରାନ କିନ୍ତୁ ସମସ୍ତ ତର୍କବିତର୍କ ହତାଶ ହୋଇ କହନ୍ତି— କାରଣ, ତୁମର ମନର ଗତି କେଉଁଆଡ଼େ ଝୁଙ୍କି ପଡ଼ିଛି । କିନ୍ତୁ ଯେତେଦିନ ତୁମେ ପରକାଳ କଳ୍ପନା, ଆତ୍ମାର କଳ୍ପନା, ଈଶ୍ୱରଙ୍କ କଳ୍ପନା ପ୍ରଭୃତି ଜଞ୍ଜାଳ-ଗୁଡ଼ିକ ମନଭିତରୁ ପରିଷ୍କାର କରି ଓଲେଇ ଦେଇ ନ ପାରିବ, ସେତେ-ଦିନଯାଏଁ ତୁମ ମନରେ ସଂଶୟ ରହିଯିବ । ସୁଖ ଯେ ଜୀବନର ଶେଷ ଉଦ୍ଦେଶ୍ୟ ଏବଂ ସୁଖୀ ହେବା ଯେ ଜୀବନର ଚରମ ସାର୍ଥକତା, ଏକଥା ବୁଝି ବି ବୁଝିବନି । କେବଳ ମନରେ ହୁଏତ ରହିବ "ହୁଏତ ବା ଆଉ କିଛି ରହିଯାଉଛି ।" ଅଥଚ ଏଇ ଆଉ କିଛିର ସନ୍ଧାନ କୌଣସି ଦିନ ଖୋଜି ପାଇପାରିବନି । ଇଏ ତୁମକୁ ବ୍ୟସ୍ତ କରି ରଖିବ, ଅଥଚ ଗତି କରିବାକୁ ଦେବନି । ଆକାଂକ୍ଷା ଜଗେଇବ; କିନ୍ତୁ ପରିତୃପ୍ତି ଦେବନି । ପଥର ଗଳ୍ପ କରିପାରିବ ସତ, କୌଣସି ଦିନ ପଥ ଦେଖେଇଦେଇ ପାରିବନି ।

ଏଇଭଳି ଭାବରେ ଶିଖି କାରଣମୟୀ ମଣିଷ ହୋଇଉଠିଛନ୍ତି । ଆଜି ଗୋଟି ଗୋଟି ହୋଇ ସେସବୁ କଥା ତାଙ୍କର ମନେ ପଡ଼ିବାକୁ ଲାଗିଲା ।

ଏହିଭଳି ତାଙ୍କର ଚିନ୍ତାଧାରା ଯେତେବେଳେ ବର୍ତ୍ତମାନ ଦୁଃଖକୁ ଅତିକ୍ରମ କରି ଅଜ୍ଞାତ ଦିନର ଅଗାଧ ଅତଳ ଦୁଃଖସାଗରରେ ଜବୁଡ଼ୁବୁ ହୋଇ ମରୁଥିଲା, ଠିକ୍ ସେହିଭଳି ସମୟରେ ଦିବାକର ଶୁଷ୍କ ମ୍ଳାନ

ମୁଖରେ କାଁ।ବନ ଭିତରେ ପ୍ରବେଶ କଲା । ତାକୁ ଦେଖିବାମାତ୍ରେ କିରଣ-ମୟୀଙ୍କ ଦୁଃସ୍ୱପ୍ନର କୁହୁଡ଼ି କଟିଗଲା । ସେ ମୁହଁଟିକୁ ସ୍ନେହ ଓ ହସରେ ଉଜ୍ଜ୍ୱଳ କରି ତିରସ୍କାର ସ୍ୱରରେ କହିଲେ— ଘଣ୍ଟେଣା କ'ଣ କୁହ ତ ଦିବା-କର ! କଣ କିଛି ଖାଇବନି ? ଖାଇ ଭୁଲିଥିବ ନା କ'ଣ ? ଆଚ୍ଛା, ବାବୁ···

ତାଙ୍କର କଣ୍ଠସ୍ୱରରେ ଦିବାକର ଏତେ ଦିନ ପରେ ଏକାବେଳକେ ଚମକିଉଠିଲା । ଅକସ୍ମାତ ମନେପଡ଼ିଲା, ଯେମିତି କେତେ ହଜାର ବର୍ଷ ଇତିମଧ୍ୟରେ ଅତିବାହିତ ହୋଇଯାଇଚି । ଭାଉଜଙ୍କ ଇମିତି କଣ୍ଠସ୍ୱର ସେ କେବେ ଶୁଣି ନ ଥିଲା । ସେ ସ୍ୱରରେ ବିଦ୍ୱେଷ, ବିଦ୍ରୂପର କୌଣସି ସୂଚନା ନ ଥିଲା । ଯାହା ଯଥାର୍ଥରେ ସ୍ନେହ ମନର ବେଦନାରେ କୋମଳ, ମଣିଷର କାନ ସେଠାରେ ଭୁଲ ଶୁଣେନା—କାହିଁକି କେଜାଣି ସେ ଚହ୍ନିପାରେ । ଦିବାକର ଅଭିଭୂତ ଅବସ୍ଥାରେ ଚୁପ୍‌ଚାପ୍ ରହିଲା ।

କିରଣମୟୀ ପୁଣି ମୃଦୁ ହସ ହସି କହିଲେ—ସକାଳୁ ଏତେବେଳ ଯାଏଁ କେଉଁଠି ଥିଲ କହିଲ ଦେଖି ?

ଦିବାକର ଆସ୍ତେ ଆସ୍ତେ କହିଲା—ତଳେ ।

—ତଳେ ? ଏତେବେଳଯାଏଁ ତଳେ ବସିବାର କାରଣ ? ଥରେ ଉପରକୁ ଆସି କିଛିଟା ମୁହଁରେ ଦେବାକୁ କ'ଣ ଫୁରୁସତ୍ ନ ଥିଲା ?

ପ୍ରତ୍ୟୁତ୍ତରରେ ଦିବାକର କେବଳ ଅପଲକ ଚକ୍ଷୁରେ ଚାହିଁ ରହିଲା । ମୁହଁରୁ ପଦେ କଥା ବି ବାହାରିଲା ନାହିଁ ।

କିରଣମୟୀ ପୁଣି ପଚାରିଲେ— କ'ଣ କରୁଥିଲ ତଳେ ? ତାର ମୁହଁ ଉପରେ ଜ୍ୟେଷ୍ଠା ଭଗ୍ନୀର ସେଇ ନିର୍ମଳ ସ୍ନେହ-ହାସ୍ୟ, କଣ୍ଠରେ ଭଲ ପାଇବାର ସେହିଭଳି ଅନୁରାଗ । କଲିକତା ପ୍ରଥମେ ଆସି ତାଙ୍କ ପାଖରୁ ଏଇ ଜିନିଷ ପାଇ ଦିବାକର କୃତାର୍ଥ ହୋଇ ଉଠିଥିଲା, ଆନନ୍ଦରେ ତା ଆଖିରେ ପାଣି ଆସିବାର ଉପକ୍ରମ ହୋଇଥିଲା । ସେ କୌଣସିମତେ ତାକୁ ନିବାରଣ କରି କହିଲା—ଭାଉଜ, ତଳେ ଜଣେ ବଙ୍ଗାଳୀ ପରିବାର ନେଇ ଆରାକାନ ଯାଉଛନ୍ତି— ସେମାନଙ୍କର ସେଠି ଘରଦ୍ୱାର ସବୁ ଅଛି ।

କିରଣମୟୀ ଉତ୍ସୁକ ହୋଇ କହିଲେ—ସତେ ଦିବାକର !

ଦିବାକର କହିଲା—ସତେ ଭାଉଜ, ଭାରି ଭଲଲୋକ ସେମାନେ ।

କରଣମୟୀ ଜବାବ ଦେଇ କହିଲେ—ତାହାହେଲେ ତ ଆମେ ସେମାନଙ୍କ ଘରେ ଯାଇ ରହିପାରିବା । ତାଙ୍କ ପରିବାର ସହିତ ମୋର ପରିଚୟ କରେଇ ଦେଇପାରିବ ?

ଦିବାକର ଖୁସି ହୋଇ କହିଲା—କାହିଁକି ପାରିବନି, ପାରିବ । ଘରବାଲି କହୁଥିଲା, ତୁମ ସହିତ ଥରେ······

କରଣମୟୀ ବିସ୍ମିତ ହୋଇ କହିଲେ—ଘରବାଲି ! ସେ ପୁଣି କିଏ ଦିବାକର ?

ଦିବାକର କାମିନୀର ସଂକ୍ଷିପ୍ତ ପରିଚୟ ଦେଇ କହିଲା—ହରିଶବାବୁ ତାଙ୍କ ସ୍ତ୍ରୀଙ୍କୁ ଘରବାଲି ବୋଲି ଡାକଥାଆନ୍ତି । ପୁଅଝିଅ ଘର ଅନ୍ତୁ ନା, ସେଇଥିପାଇଁ···

ଏକଥା ଶୁଣି କରଣମୟୀ ମୌନ ରହିଲେ; କାରଣ ଏଇ 'ଘରବାଲି' ଶବ୍ଦଟିକୁ ସେ ଇତିପୂର୍ବେ କଲିକତାର ଗୃହିଣୀମାନଙ୍କ ମୁହଁରେ ଶୁଣିଥିଲେ । କିନ୍ତୁ ଯେଉଁମାନଙ୍କ ସମ୍ବନ୍ଧରେ ଏଇ ଶବ୍ଦଟି ପ୍ରୟୋଗ ହୋଇଥାଏ, ସେମାନଙ୍କ ମଧ୍ୟରୁ କେହିହେଲେ ଭଦ୍ର ଗୃହିଣୀ ନୁହନ୍ତି । ତେଣୁ ଦିବାକର ଯେତେବେଳେ ଏହି ଘରବାଲିକୁ ସାଙ୍ଗରେ ନେଇ ଏଠିକି ଆସିବାକୁ ଉଦ୍ୟତ ହେଲା, କରଣମୟୀ ହସିଦେଇ ସ୍ନିଗ୍ଧ କଣ୍ଠରେ କହିଲେ – 'ଘରବାଲି'ଟି ଭଲଲୋକ ତ ଦିବାକର ?

ଦିବାକର ତତ୍‌କ୍ଷଣାତ୍ ମୁଣ୍ଡହଲାଇ ଗଦଗଦ୍ ସ୍ୱରରେ କହିଉଠିଲା – ଚମତ୍କାର ଲୋକ ଭାଉଜ ! ଥରେ କଥାବାର୍ତ୍ତା ହେଲେ···।

କରଣମୟୀ କହିଲେ—ଆଜି ଥାଉ ଦିବାକର ! ଆଉ ଦିନେ···

ଦିବାକର ମୁଣ୍ଡହଲାଇ କହିଉଠିଲା—ନା ଭାଉଜ ! ସେମାନେ ଲାଗିଇଚନ୍ତି ତୁମ ସହିତ ଦେଖା କରିବାକୁ । ତୁମ ଗୋଡ଼ତଳେ ପଡ଼ୁଚି, ଖାଲି ତୁମେ କହିଲେ ତାଙ୍କୁ ଏଇଠି ଆଣି ହାଜର କରିଦେବି । ତାଙ୍କ ଘରେ ଯାଇ ଯେତେବେଳେ ରହିବା ବୋଲି କହୁଚ, ସେତେବେଳେ···ଯିବି ଭାଉଜ, ଡାକିଆଣିବି ? ଏହା କହି ଦିବାକର ପ୍ରାୟ ଅଧୀର ହୋଇପଡ଼ି ଠିଆ ହୋଇ ରହିଲା ଏବଂ ସଙ୍ଗେ ସଙ୍ଗେ ତାର ମୁହଁ, ଆଖି, କଣ୍ଠସ୍ୱର ଭିତରଦେଇ ଶ୍ରେଷ୍ଠ ଭାଇର ସ୍ନେହ ଯେପରି ବିଗଳିତ ହୋଇଉଠିଲା । ସେଇ ସ୍ନେହ କରଣମୟୀର ଭୂଲଟାକୁ ଯେପରି ତାତ୍କାଳିକ ଭାବେ ବାନ୍ଧିବାକୁ ଲାଗିଲା ।

ଅକସ୍ମାତ ପ୍ରବଳ ବାଷ୍ପୋଚ୍ଛ୍ୱାସ ତାର କଣ୍ଠ ପର୍ଯ୍ୟନ୍ତ ଠେଲିଦେଇ ଉଠିଲା ଏବଂ ଉଦ୍‌ଗତ ଅଶ୍ରୁ ଗୋପନ କରି କରୁଣାମୟୀ ମୁହଁ ଫେରେଇ କୌଣସିମତେ କହିଲେ—ଆଚ୍ଛା, ତୁମେ ଯାଅ ।

କଥାଟା ସତ ଯେ କୌଣସି ଏକ ଅଜଣା ଅଶୁଣା ଜାଗାକୁ ଯିବା ବାଟରେ ବନ୍ଧୁଲାଭ କମ୍ ଭାଗ୍ୟର କଥା ନୁହେଁ । ଅବଶେଷରେ ଏହା ହିଁ ମନେକରି ସମ୍ଭବତଃ ସେ ଦିବାକରର ବ୍ୟଗ୍ର ଅନୁରୋଧକୁ ସ୍ୱୀକାର କରିଥିଲେ । କିନ୍ତୁ ସେ ଯେତେବେଳେ ସତେ ସତେ ତାକୁ ଡାକିଆଣିବା ଲାଗି ଦ୍ରୁତପଦରେ ବାହାରି ହେଲା, ସେତେବେଳେ ନିଜ ଅବସ୍ଥାକୁ ସ୍ମରଣ କରି କରୁଣାମୟୀ ମନ ଭିତରେ ଭାରି ଲଜ୍ଜାବୋଧ କରିବାକୁ ଲାଗିଲେ । ଯିଏ ଆସି ଉପସ୍ଥିତ ହେବ, ସେ ପୁଣି ବଙ୍ଗାଳୀ ଘରର ସ୍ତ୍ରୀ, ତାର ବୟସ ହୋଇଛି—କେଜାଣି ତାର ଆଖିକୁ ଫାଙ୍କିଦେବା ସମ୍ଭବ ହେବ କି ନା ! ଦିବାକର ସହିତ ତୁଳନାରେ ତାର ନିଜ ବୟସଟା କେବଳ ସ୍ୱାମୀ ସ୍ତ୍ରୀ ହିସାବରେ ବଙ୍ଗାଳୀସମାଜରେ ଏକ୍ଷଣି ଦୃଷ୍ଟିକଟୁ ଯେ କେବଳ ଏଇ କଥା ଭାବି କରୁଣାମୟୀ କୁଣ୍ଠାରେ ସଂକୁଚିତ ହୋଇଉଠିଲେ ।

କିଛି ସମୟ ପରେ ଦିବାକର ପଛରେ ଘରବାଲି ଆସି ହାଜର ହେଲା । ତା ପ୍ରତି ଦୃଷ୍ଟିପାତ ମାତ୍ରକେ କରୁଣାମୟୀ ଜାଣିପାରିଲେ—ସ୍ତ୍ରୀଲୋକ ଜଣଙ୍କ ଭଦ୍ରଘରର ନୁହେଁ । ଯେଉଁମାନେ କଲିକତାରେ ଦାସୀବୃତ୍ତି କରିଥାଆନ୍ତି, ଇଏ ସେଇମାନଙ୍କ ମଧ୍ୟରୁ ଜଣେ । ତାଙ୍କ ବୁକୁ ଉପରୁ ଗୋଟାଏ ବୋଝ ଖାଲି ହୋଇଗଲା ଭଳି ସେ ବୋଧକଲେ । ହସ ହସ ମୁହଁରେ କହିଲେ—ଆସ, ବସ ।

କରୁଣାମୟୀଙ୍କ ରୂପକୁ ଦେଖି ଘରବାଲି ଅଭିଭୂତ ହୋଇପଡ଼ିଲା । ପରେ ଗଳାରେ ଲୁଗାକାନି ଦେଇ ଆଣ୍ଠୁମାଡ଼ି ପ୍ରଣାମ କରି ଦୁଆର ପାଖରେ ବସିପଡ଼ି କହିଲା—ବାବୁଙ୍କ ମୁହଁରୁ ତୁମ କଥା ଶୁଣି ଘରବାଲି କହିଲା—ଯା ଘରବାଲି, ବ୍ରାହ୍ମଣଘର ଝିଅକୁ ଥରେ ନମସ୍କାର କରି ଆ । ଅବଶ୍ୟ ବିଦେଶକୁ ଯାଉଚ ମା, କିନ୍ତୁ ଆମ ଘରେ ରହିଲେ କିଛି ଭୟ ନାହିଁ । ମୋ ନାଁ 'କାମିନୀ' । କାମିନୀ ନାଁ ଶୁଣିଲେ ସମସ୍ତେ ବାଟ ଛାଡ଼ିଦେଇ ଥାଆନ୍ତି । କ୍ଷିଦାନ୍ତ ଝାଡ଼ିଦେବା ମାଇକିନିଆ ମୁଁ ।

କରଣମୟୀ କହିଲେ—ନୂଆ ଜାଗାକୁ ଗଲାବେଳେ ଭୟ ଲାଗୁଥିଲା । କମିତି ମିଶିବୁ, କେଉଁଠି ରହିବୁ, ବଜଣାପାକ ବସି ବସି ଭାବୁଥିଲି ।

ଘରବାଲୀ କହିଲା—ଭୟ କ'ଣ ମା ? ଆଗ୍ରକାନରେ ମତେ କିଏ ନ ଜାଣେ ? ମୋ ନାଁ ଧରିଲେ ଯମ ବି ବାଟ ଛାଡ଼ିଦେବ । ମୋ ଘରେ ରହିବ, କିଛି ଅସୁବିଧା ହେବନି । ଘରଭଡ଼ା ପାଞ୍ଚ ଟଙ୍କା କରି—ତୁମେ ଚାରି ଟଙ୍କା କରି ଦେବ । ତାପରେ ବାବୁଙ୍କର ଚାକିରିବାକିରି ହୋଇଗଲେ ଆଉ ଟଙ୍କାଏ ଦେବ କି ନ ଦେବ ପରେ ବୁଝାଯିବ । ଘରବାଲା ଯାହାର ତ ସବୁ ଅଫିସର ଲୋକଙ୍କ ସହିତ ପରିଚୟ, ମେଳାପ, କହିଦେଲେ ଚାକିରି ଥୁଆ ।

କରଣମୟୀ ଗୋଟାଏ ଦୀର୍ଘନିଶ୍ୱାସ ଛାଡ଼ି କହିଲେ—ଭଗବାନ ତୁମର ମଙ୍ଗଳ କରିବେ ମା !

ତା ମୁହଁ ପ୍ରତି 'ଘରବାଲୀ' ହଠାତ୍ ଗୋଟାଏ ତୀବ୍ର ଦୃଷ୍ଟି ପାତ କରି କହିଉଠିଲା—ଇଏ କି କାଣ୍ଡ ମା' ! ଏଭଳି ମୁଣ୍ଡ ଧୋଇଚ ଯେ ସୁନ୍ଦାରେ ଟିକିଏ ବୋଲି ସିନ୍ଦୂରର ଚିହ୍ନ ନାହିଁ । ସିନ୍ଦୂର ଫରୁଆଟା ଦିଅ ତ, ଲଗେଇ-ଦେଇ ଯିବି ।

ଇମିତି ଘଟଣା ଘଟିବ ବୋଲି ଜାଣିପାରି କରଣମୟୀ ପୂର୍ବରୁ ପ୍ରସ୍ତୁତ ଥିଲେ । ବାଁ ହାତଟା ଦେଖେଇ କହିଲେ—ନା ମା, ମୁଣ୍ଡ ଧୋଇବା ଯୋଗୁଁ ନୁହେଁ । ବର୍ଷେ ହେଲା ମୁଁ ସିନ୍ଦୂର ଫରୁଆ ମା କାଳୀଙ୍କ ପାଖରେ ବନ୍ଧା ରଖିଦେଇଚି । ସେବର୍ଷ ବାବୁଙ୍କ ପ୍ରାଣରେ ଆଶା ଆଉ ନ ଥିଲା । ସିନ୍ଦୂର ଫରୁଆ ବନ୍ଧା ରଖି ଏଇ କାଚ ଦିଇଟା କୌଣସିମତେ ବଜାୟ ରଖିପାରିଚି । ଏହା କହି ସେ ଟିକିଏ ଦୀର୍ଘଶ୍ୱାସ ମୋଚନ କରି ଆଡ଼ ଦୃଷ୍ଟିରେ ବବାକରଙ୍କୁ ଚାହିଁ ଦେଖିଲେ, ତାର ମୁହଁଟି ଲଜ୍ଜା ଓ କୁଣ୍ଠାରେ ଏକାବେଳକେ ବିବର୍ଣ୍ଣ ହୋଇପଡ଼ିଚି ।

ସେଇଥିପାଇଁ ତ କହୁଚି ମା···କହି ଘରବାଲୀ ସହାନୁଭୂତି ପ୍ରକାଶ କରି କହିଲା—ଆଗ୍ରକାନରେ ବି ଆମର କାଳୀ ମନ୍ଦିର ଅଛି । ପହଞ୍ଚିବା ପରେ ଯାହା କିଛି ପୂଜାପୂଜି କରି ଦେଇ ନୂଆ ସିନ୍ଦୂର ଲଗେଇ ପକାଅ । ନଇଲେ ପାଞ୍ଚ ଜଣ ପାଞ୍ଚ ରକମର ଭାବିପାରନ୍ତି । ଆରକାନ ଭଳି ହାରାମଜାଦା ଜାଗା ପୃଥିବୀରେ ନ ଥିବ । କେବଳ ଆମ ଭୟରେ ହିଁ ଯାହା କିଛି ଶାସନ ଅଛି, ନଇଲେ···

କିରଣମୟୀ ହସି ହସି କହିଲେ—ସେଇ କଥା ତ ବାବୁଙ୍କ ସହିତ ଆଜକାଲ ଦିନରାତି ଧରି କଥାବାର୍ତ୍ତା ଚାଲିଛି । ସେ ତୁମର ବହୁତ ପ୍ରଶଂସା କରୁଥିଲେ । ଜାହାଜରେ ଉଠିବା ବେଳକୁ ଭୟ ଥିଲା କ'ଣ ହେବ ବୋଲି । ଯାହାହେଉ ଭଗବାନ·········

କଥାଟା ଶେଷ କରି ହୋଇପାରିଲା ନାହିଁ । 'ଭୟ କ'ଣ ମା ?' କହି ଅଭୟ ଦେଇ ଘରବାଲି ଆତ୍ମଶ୍ଳାଘାରେ ପଞ୍ଚମୁଖ ହୋଇଉଠିଲି ଏବଂ ଦେଖୁ ଦେଖୁ ନିଜର ଘରକରଣାର ଗଳ୍ପ ଏଭଳି ଜମିଉଠିଲି ଯେ କେହି ଭାବିଲେ ଭାବିପାରିବେନି, ଏମାନଙ୍କ ପରିଚୟ ଏଇ ମାତ୍ର ଦଶ ମିନିଟ ତଳର ବୋଲି ।

ଅଦୂରରେ ଚୌକି ଉପରେ ଦିବାକର ଆସି ବସିଥିଲା, ଆଉ ଉଠିନି । କିରଣମୟୀ କେତେ ମିଛ କଥା ଯେ ଅବଲୀଳାକ୍ରମେ କହିଯାଇ-ପାରନ୍ତି, ଶୁଣୁ ଶୁଣୁ ସେ ଯେଉଁଭଳି ହତଚେତନ ଭଳି ସ୍ତବ୍ଧ ହୋଇ ପଡ଼ିଥିଲା । ଏତେ ସମୟ ପରେ ହଠାତ୍ ସଂଜ୍ଞା ଫେରିପାଇ ସେ ବାହାରକୁ ଯିବାର ଉପକ୍ରମ କରିବାମାତ୍ରେ କିରଣମୟୀ କହିଉଠିଲେ—ଦିନଯାକ ତ ଖାଇନା, ପୁଣି ବାହାରକୁ·········

ପ୍ରତ୍ୟୁତ୍ତରରେ ଦିବାକର ଯାହା କହିଲା ତାହା ଶୁଣାଗଲାନି; କିନ୍ତୁ ବୁଝାଗଲା । କିରଣମୟୀ ବ୍ୟସ୍ତହୋଇ କହିଲେ—ନା ନା, ତା ହେବନି ! ତୁମେ ଥରେ ବାହାରକୁ ଗଲେ ଶୀଘ୍ର ଆସିବନି, ମୁଁ ଭଲଭାବରେ ଜାଣେ । ଘରବାଲି ମୁହଁକୁ ଚାହିଁ ହସହସ ମୁହଁରେ କହିଲେ—ଶାଶୁ ଶଶୁର ନାହାନ୍ତି, ବାହାହେବା ଦିନଠୁ ଇମିତି ଏକା ଏକା । ଖିଆପିଆ ବେଳକୁ ଯେମିତି ଝଗଡ଼ା ଖଣ୍ଡେପଟେ ନ ହେଲେ ଚଳେନା । ପୁଣି ଟିକିଏ ହସି କହିଲେ—ମୁଁ ଯାହା ତାହା ଜୋର ଜବରଦସ୍ତି ଖୁଆଇ ଦେଇଥାଏ । ଆଉ କିଏ ହୋଇ-ଥିଲେ ଖାଲି ଆଖିପାଣି ଆଖିରେ ମାରିବା ସାର ହୁଅନ୍ତା ।

ନିଦାରୁଣ ଲଜ୍ଜାରେ ଦିବାକରର ମୁଣ୍ଡଟା ଏକାବେଳକେ ନଇଁ ପଡ଼ିଲା । ଘରବାଲି ହସି କହିଲା—ତାହାହେଲେ ବାବୁ ଦେଖୁଚ, ତୁମେ ଇମିତି ବିଦେଶକୁ ଯାଇ ଘରସଂସାର କରିବ ! କିନ୍ତୁ ମୋ ଘରେ ସେସବୁ ଚଳିବନି ବାବୁ ! ବୋହୂଙ୍କୁ ଜଳେଇ ପୋଡ଼େଇ ମାରିବାକୁ ମୁଁ କଦାପି ଦେବନି । କିରଣମୟୀଙ୍କ ମୁହଁକୁ ଚାହିଁ ହଠାତ୍ ପ୍ରଶ୍ନ କରିବସିଲା—ହଁ ବୋହୂ, ବାବୁ ଦେଖୁଚ ତୁମଠୁ ବୟସରେ ବଡ଼ ହୁଅନ୍ତି, ସମବୟସ ।

କରଣମୟୀ ଉଚ୍ଚସ୍ୱରରେ ହସି କହିଲେ—କୁଳୀନ ଘର । ମୁଁ ଯେ ବଡ଼ ହୋଇଯାଇଚି, ସେଇଟା ମୋର ଭାଗ୍ୟ । ହଁ, ସମବୟସ ନୁହେଁ କ'ଣ ? ତାଙ୍କର ଜନ୍ମ ବୈଶାଖ ମାସରେ, ଆଉ ମୋର ଜନ୍ମ ଆଷାଢ଼ରେ । ଏଇ ମୋଟେ ଦୁଇଟି ମାସର ଶ୍ରେଷ୍ଠ ବଡ଼ । ତାଠୁ ବେଶୀ ନୁହେଁ । ଅନେକ ମତେ ବୟସରେ ବଡ଼ ବୋଲି ଠଉରେଇଥାଆନ୍ତି । କି ଲଜ୍ଜା ! ଏହା କହି କରଣମୟୀ ମୁରୁକି ମୁରୁକି ହସିଲେ । ଘରବାଲି ଏ ହସରେ ଯୋଗ ଦେଲାନି, ବରଂ ଗମ୍ଭୀର ମୁଖରେ କହିଲା—କୁଳୀନ ଘରେ ଲଜ୍ଜା କ'ଣ ମା ? ୧୦ ବର୍ଷର ବର ସହିତ ୫୦ ବର୍ଷ ବୟସର ବୁଢ଼ୀର କୁଆଡ଼େ ବିବାହ ହୋଇଯାଏ ବୋଲି ଶୁଣିଚି । ତା ହୁଏ ମା ! ଯାହାହେଉ ଆଉକାନି ଯାଇ ସୁନ୍ଦାରେ ସିନ୍ଦୂର ଦିଅ, ନଇଲେ ସ୍ତ୍ରୀଲୋକଙ୍କୁ ମାନେନା । ତେବେ ଯାଉଚି । ଖିଆ ପିଆ କର—ସଂଧ୍ୟାବେଳେ ଆସିବି । ଏହା କହି ଘରବାଲି କରଣମୟୀଙ୍କ ପାଦଧୂଳି ମୁଣ୍ଡରେ ଲଗେଇ ଚାଲିଗଲା ।

## ସତିଶ ଛଅଣି

ସତୀଶର ଅରଣ୍ୟବାସ ଅବସ୍ଥା ଯଦ୍ୟପି ଆଜି ପୂର୍ବଭଳି ବଜାୟ ରହିଚି, ତଥାପି ତାର ସେଇ ବୈରାଗ୍ୟସାଧନର ଧାରା ଇତି ମଧ୍ୟରେ ଯେ କେତେଦୂର ବିପଥକୁ ଚାଲିଯାଇଚି, ତାହା ଯେ କେହି ତାକୁ ମାସେ ଦୁ'ମାସ ପୂର୍ବରୁ ଦେଖିଛନ୍ତି, ସେମାନଙ୍କ ଦୃଷ୍ଟିରେ ନିଶ୍ଚୟ ପଡ଼ିବ । ଯେଉଁ ଲୋକ ସ୍ୱେଚ୍ଛାରେ ନିର୍ବାସନ ଦଣ୍ଡ ଗ୍ରହଣ କରି ଏଇ ନିର୍ଜନ ନିର୍ବାନ୍ଧବ ପୁରୀରେ ଏକାକୀ ବାସ କରିବାକୁ ଆସିଚି, ତାର ଏଇ ଆକସ୍ମିକ ବେଶଭୂଷା ପ୍ରତି ଅନୁରାଗର କାରଣ ବା କ'ଣ ଏବଂ କାହିଁକି ବା ପକ୍ଷୀର ଗୀତ ପରିବର୍ତ୍ତେ ନିଜର ଗୀତ ଖାତାଟା ପୁଣି ସିନ୍ଦୁକ ଭିତରୁ ବାହାରେ ଆସି ପଡ଼ିଲା, ବେହେଲା, ସେତାର, ବଂଶୀ ପ୍ରଭୃତି ବାଦ୍ୟଯନ୍ତ୍ରଗୁଡ଼ାକ ବା କାହିଁକି ସେ ଅନାଦୃତ ବାସସ୍ଥାନ ପରିତ୍ୟାଗ କରି ପୂର୍ବଦିନ ଭଳି ଟେବୁଲ ଉପରେ ଆସି ସଜାହେଲା, ତାର ମୁହଁ ଓ ଆଖିରୁ ସେଇ ମଳିନ କ୍ଲାନ୍ତି ବା କିଭଳି ସହସା ତିରୋହିତ ହୋଇଗଲା, ଏସବୁ ଭାବିବାର କଥା ।

ତେଣୁ ଦୁଇ ତିନି ମାସ ତଳର ସତୀଶଙ୍କୁ ହଠାତ୍ ଚିହ୍ନିବା ମୁସ୍କିଲ ।

ଏତେ ବଡ଼ ଅଦ୍ଭୁତ ପରିବର୍ତ୍ତନର ଅସଲ କାରଣଟା ହୁଏତ ଏଠାରେ ଖୋଲିଖାଲି ନ କହିଲେ ଚଳନ୍ତା; କିନ୍ତୁ ହୁଏତ ସାନ୍ତାଳ ପରଗଣାର ଅସାଧାରଣ ପାଣି ପବନର ଗୁଣ ମନେକରି କେତେଜଣ୍ଣ ଏ ନିର୍ବୋଧ ଦଳ ଛୁଟି ଆସି ଯାଇପାରନ୍ତି, ଏଇ ହେଲା ଭୟ !

ତେଣୁ ଏଇ ଟିକିକ ସୂଚନା ଦିଆଯାଇପାରେ । କୌଣସି ପକ୍ଷରୁ ଯଦି ବା ବିବାହ ପ୍ରସ୍ତାବ ଏବେ ବି ସ୍ପଷ୍ଟ ଭାବରେ ଉତ୍‌ଥାପିତ କରା ହୋଇ ନାହିଁ, ତଥାପି ଆତ୍ମୀୟସ୍ୱଜନଙ୍କ ପାଖରେ ସତୀଶ-ସରୋଜନୀର ମନକଥା ସୁସ୍ପଷ୍ଟ ହୋଇଉଠିବାକୁ ବାକି ନ ଥିଲା ।

ସରୋଜନୀର ମା ଜଗତ୍‌ତାରିଣୀଙ୍କ ଆଗ୍ରହ ଥିଲା ଏ ବିଷୟରେ ସବୁଠୁ ବେଶୀ—ଏକଥା ବର୍ଷକ ପୂର୍ବେ କଲିକତାରେ ହିଁ ଜଣା ଯାଇଥିଲା । କିନ୍ତୁ ଆଗ୍ରହ ଓ ବ୍ୟାକୁଳତା ସର୍ବାପେକ୍ଷା ଅଧିକ ବୋଲି ହିଁ ବୋଧହୁଏ ସବୁ ଲୋକଙ୍କ ମଧ୍ୟରୁ କେବଳ ତାଙ୍କ ମନରେ ସଂଶୟ ଥିଲା । ସଂଶୟଟା ହେଉଚି, କେଜାଣି ହୁଏତ ତାଙ୍କର ଶିକ୍ଷାଭିମାନିନୀ କନ୍ୟା ଚିରଦିନର ସମାଜ ଓ ସଂସ୍କାରକୁ କାଟି ସତୀଶଙ୍କୁ ଗ୍ରହଣ କରିବାକୁ ରାଜି ହେବନି ! ନିକଟରେ ସେ ବାପଘର ଶାନ୍ତିପୁରକୁ ଯାଇଥିଲେ । ଫେରିଆସିବା ପରେ କଥାଟାକୁ ପକ୍କା କରିନେବେ, ସେଭଳି ଏକ ଇଙ୍ଗିତ ଯିବା ସମୟରେ ଦେଇ ଯାଇଥିଲେ ।

ସକାଳେ ସତୀଶ ବେହେଲାରେ ନୂଆ ତାର ଯୋଡୁଥିଲା, ବେହାରା ସାଥିରେ ଜଣେ ଭଦ୍ରଲୋକ ଆସି ଉପସ୍ଥିତ ହେଲେ । ସେ ଜ୍ୟୋତିଷବାବୁଙ୍କ ଘରର ଗୁମାସ୍ତା । ଜଗତ୍‌ତାରିଣୀଙ୍କ ସହିତ ଶାନ୍ତିପୁର ଯାଇଥିଲେ, ପୁଣି ତାଙ୍କରି ସାଙ୍ଗରେ ଫେରି ଆସିଛନ୍ତି ।

ଗୁମାସ୍ତା ନମସ୍କାର କରି ଜଣେଇଲେ—ମା ଆପଣଙ୍କୁ ଆଜି ତାଙ୍କ ଘରେ ଖାଇବା ପାଇଁ ନିମନ୍ତ୍ରଣ କରିଛନ୍ତି ।

ଖବର ଶୁଣି ସତୀଶ ଚମକିଉଠି ପଚାରିଲା—ସେ କେବେ ଫେରିଆସିଲେ ?

—ଆଜିକି ତିନି ଦିନ ହେଲା ।

ପ୍ରାୟ ୮ଟା ସାତ ଦିନ ହେଲା ସତୀଶ ସେ ଆଡ଼କୁ ଯାଇ ନାହିଁ । ତାର ସଂପର୍କଟା ସ୍ପଷ୍ଟ ହେବା ଦିନଠୁ ଜ୍ୟୋତିଷବାବୁଙ୍କ ଘରକୁ ଯିବାକୁ ତାକୁ କାହିଁକି କେଜାଣି ଲାଜ ମାଡ଼େ । କହିଲା—ଆଚ୍ଛା, ମାଆଙ୍କୁ କହିଦେବ, ମୁଁ ଦଶଟା ଏଗାରଟା ଭିତରେ ଯାଇ ହାଜର ହେବି ।

'ଆଜ୍ଞା' କହି ଲୋକଟି ନମସ୍କାର କରି ଚାଲିଗଲା ।

ସତୀଶକୁ ନିମନ୍ତ୍ରଣ କରିବାକୁ ପଠେଇଦେଇ ମଧ୍ୟ ଜଗତ୍ତାରିଣୀ ସେଥିଲାଗି କୌଣସି ଆୟୋଜନ ନ କରି ନିଶ୍ଚିନ୍ତ ଥିଲେ; କାରଣ ତାଙ୍କର ଧାରଣା ଥିଲା, ସତୀଶ ସନ୍ଧ୍ୟା ପୂର୍ବରୁ ଆସିବନି । ଏବେ ଗୁମାସ୍ତା ମୁହଁରୁ ଖବର ଶୁଣି ଅତି ବ୍ୟସ୍ତ ଓ କ୍ରୁଦ୍ଧ ହୋଇଉଠିଲେ ।

ଆଜି ଥିଲା ଏକାଦଶୀ । ନିଜ ଲାଗି କୌଣସି ଆୟୋଜନର ଆବଶ୍ୟକତା ନ ଥିଲା ଏବଂ ଯେଉଁ ବିଧବା ବ୍ରାହ୍ମଣକନ୍ୟା ତାଙ୍କ ଘରେ ରୋଷେଇ କରେ, ସେ ବି ଦିନେ ଦି ଦିନ ହେଲା ଶାନ୍ତିପୁରକୁ ଯାଇ ମେଲେରିଆ ରୋଗରେ ପୀଡ଼ିତା ଥିଲା ।

ସେ ଅତି ବିରକ୍ତ ହୋଇ ଗୁମାସ୍ତାକୁ କହିଲେ—ତୁମେ ଏ ବେଳ ଖାଇବା ଲାଗି ସତୀଶକୁ କହି ଆସିବାକୁ କିଏ କହିଥିଲା ? ତୁମର କ'ଣ କିଛିହେଲେ ବୁଦ୍ଧିଶୁଦ୍ଧି ନାହିଁ ?

ଗୁମାସ୍ତା ଭୟତ୍ରସ୍ତ ହୋଇ କହିଲା—ମୁଁ କିଛିହେଲେ କହିନି, ସେ ନିଜେ କହିଲେ ଏ ବେଳା ଖାଇ ଆସିବାକୁ ।

ଜଗତ୍ତାରିଣୀ ରାଗରେ ହୁକୁମ ଦେଲେ—ତେବେ ତୁମେଇ ଯାଇ ଭଲ ମାଛ କେଉଁଠି ମିଳୁଥିବ, ଶୀଘ୍ର ନେଇଆସ ।

ଆଜି ରାଗିବାର ବହୁତ କାରଣ ବି ଅଛି । ସତୀଶକୁ ନିମନ୍ତ୍ରଣ କରିବାକୁ ପଠେଇବା ପରେ ସେ ଖବର ପାଇଥିଲେ, କାଲି ରାତିରେ ସହସା ଶଶାଙ୍କମୋହନ ପୁଣି ଆସି ହାଜର ହୋଇଗଲା । ଉକ୍ତ ସାହିବପଣିଆ ଯୋଗୁଁ ଏ ଲୋକଟାକୁ ସେ ମନେ ମନେ ଆଦୌ ଭଲ ପାଉ ନ ଥିଲେ । ବିଶେଷ କରି ସେ ଯେଉଁଦିନଠୁ ଶୁଣିଥିଲେ ଯେ ସେ ସରୋଜିନୀର ପାଣିପ୍ରାର୍ଥୀ, ସେହିଦିନଠୁ ଲୋକଟା ତାଙ୍କ ଆଖିରେ ବିଷହୋଇ ଉଠିଥିଲା । କୋଡ଼ିଏ ଦିନ ପୂର୍ବେ ସେ ଯେତେବେଳେ କି ଗୋଟାଏ ଉପଲକ୍ଷରେ କଲିକତାରୁ ଏଠାକୁ ଆସିଥିଲା, ସେତେବେଳେ ଜଗତ୍ତାରିଣୀ ସ୍ପଷ୍ଟକରି

କହିଦେଇଥିଲେ ଯେ ତାଙ୍କ ଝିଅ ସହିତ ବିବାହ ଅସମ୍ଭବ । ତଥାପି ଲୋକଟା ଏଡ଼େ ବେହିଆ ଯେ କୁହା ନାହିଁ ପୋଛା ନାହିଁ ପୁଣି ଆସି ହାଜର ! ତା’ଛଡ଼ା ଏ ସମ୍ବାଦ ଆଗରୁ ଜାଣିଥିଲେ ସେ ହୁଏତ ସଞ୍ଜୀବକୁ ନିମନ୍ତ୍ରଣ କରିବାକୁ ପଠାଇ ନ ଥାନ୍ତେ । କାହିଁକି ଏ ଖବର ତାଙ୍କୁ ଯଥା ସମୟରେ ଜଣା ଯାଇ ନାହିଁ କହି ସେ ଜ୍ୟୋତିଷଠୁ ଆରମ୍ଭ କରି ଘରର ଚାକର ବାକର ସମସ୍ତଙ୍କ ଉପରେ ଚଢ଼ି ଉଠିଥିଲେ । ସରୋଜିନୀ ବାହାର ବସିବା ଘରୁ ବାହାର ହୋଇ କୌଣସିମତେ ମାଆଙ୍କ ଦୃଷ୍ଟି ଏଡ଼େଇ ଉପରକୁ ଯାଉଥିଲା—ଶଶାଙ୍କମୋହନର ଆଗମନ କଥା ମଧ୍ୟ ସେ ଜାଣି ନ ଥିଲା । କିନ୍ତୁ ଜଗତ୍‌ତାରିଣୀ ଫେରି ଠିଆହୋଇ ତାର ଆପାଦମସ୍ତକ ଥରେ ନିରୀକ୍ଷଣ କରି ରୂଢ଼ ରାଗ ରାଗ ସ୍ୱରରେ କହିଲେ—ବୁଲି ସରିଲୁ ତ ? ଏଥର ଜୋତା ମୋଜା କଢ଼ାହେଉ । ସଞ୍ଜୀବ ଆଜି ଏଠି ଖାଇବ । ମୁଁ ନିଜେ ନ ରାନ୍ଧିଲେ ତ ତୁମର ଏ ଖ୍ରୀଷ୍ଟାନ ଘରେ ସେ ଜଳ ସ୍ପର୍ଶ ବି କରିବନି । ଯା, ଲୁଗାପଟା ବଦଳେଇ ରୋଷେଇଘରକୁ ଆ ! ବୁଢ଼ୀଲୋକକୁ ସାହାଯ୍ୟ କଲେ ତମ ଯିଶୁ ଖ୍ରୀଷ୍ଟ ରାଗିବେନି ଯେ ।

ମା ରାଗିଲେ ଯେ କିଭଳି ଅଗ୍ନିଶର୍ମା ହୋଇଉଠନ୍ତି, ମିଛ ସତ କିଛି ବିଚାର ନ କରି ମୁହଁରେ ଯା ଆସିଲା ତା କହିଯାଆନ୍ତି, ସେ କଥା କାହାରିକୁ ଅବିଦିତ ନ ଥିଲା ।

ସରୋଜିନୀ କୁଣ୍ଠିତ ସ୍ୱରରେ କହିଲା—ଏଇଲାଗେ ଆସୁଚି ମା !

କିନ୍ତୁ ମାଆଙ୍କ ରାଗ ସେଥିରେ କିଛିହେଲେ ଶାନ୍ତ ହେଲାନି । କହିଲେ—ଆସିଲେ କ’ଣଟା କରି ପକେଇବୁ ? ବୟସ ଆସି ସତର ଅଠର ହେଲାଣି, ମୁଠେ ଚାଉଳ ସିଝେଇବା ବି ଜାଣିପାରିଲୁନି । ଆମେ ବି ଗରିବ ଘରର ଝିଅ ନ ଥିଲୁ ମା, ଯଥେଷ୍ଟ ବଡ଼ ଘରର ଝିଅ; କିନ୍ତୁ ସେ ବୟସରେ ବି ସଂସାର ଚଳେଇ ଆସିଚୁ ! ବ୍ରାହ୍ମଣୀ ଆଜି ଯଦି ଚାଲିଯାଏ, ସମସ୍ତଙ୍କୁ ଶୁଖି ଶୁଖି ମରିବାକୁ ପଡ଼ିବ । ଯେଉଁ ଘରେ ଧର୍ମକର୍ମ କିଛି ନାହିଁ, ସେ ଘରେ ଝିଅ-ପୁଅଙ୍କୁ ପେଟରେ ଧରିବା ବୃଥା । ଏଇ କଠୋର ମନ୍ତବ୍ୟ ଅତି କଠିନ ଭାବରେ ବ୍ୟକ୍ତକରି ଜଗତ୍‌ତାରିଣୀ ମୁହଁକୁ ହାଣ୍ଡି ଭଳି କରି ନିଜେ ଯାଇ ରୋଷେଇଘରେ ହାଜର ହେଲେ । କିନ୍ତୁ କାହିଁକି ଯେ ତାଙ୍କର ନିଜର ପୁଅଝିଅ ଏବଂ ନିଜ ସଂସାରର ଆଚାର ବ୍ୟବହାର ଉପରେ ଏଭଳି ମର୍ମାନ୍ତକ ଆକ୍ରୋଶ, ତାହା ତାଙ୍କର ପୂର୍ବ ଇତିହାସରୁ ବହୁତ କିଛି ବୁଝାଯିବ ।

ଜଗତ୍ତାରିଣୀଙ୍କ ସହଧର୍ମିଣୀଗତ ସ୍ୱାମୀ ହରେଶନାଥ ଓକିଲାତି କରୁଥିଲେ । ଅଗାଧ ଅର୍ଥ ଉପାର୍ଜନ କରି ମଧ୍ୟ ଯେତେବେଳେ ବହୁତ ବୟସରେ ଅଧିକ ଅର୍ଥ ଉପାର୍ଜନ ଆଶାରେ ବାରିଷ୍ଟର ହେବାକୁ କୃତ-ସଂକଳ୍ପ ହେଲେ, ସେତେବେଳେ ସ୍ତ୍ରୀ କାନ୍ଦବୋବା କରି, ଉପବାସ ରହି ମୁଣ୍ଡ ବାଡ଼େଇ ବହୁତ ପ୍ରକାରେ ବାଧା ଦେବାକୁ ଚେଷ୍ଟା କରି ମଧ୍ୟ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ହରେଶନାଥ କାହାରି କଥା ଶୁଣିଲେ ନାହିଁ । ଜଗତ୍ତାରିଣୀଙ୍କୁ ଏବଂ ବାର ବର୍ଷର ପୁଅ ଜ୍ୟୋତିଷ ଏବଂ ଛ ବର୍ଷ ବୟସର କନ୍ୟା ସରୋଜିନୀଙ୍କୁ ଗାଁରେ ଛାଡ଼ିଦେଇ ବିଲାତ ଚାଲିଗଲେ । ପ୍ରଥମେ କେତେଦିନ ଜଗତ୍ତାରିଣୀ ହତୋତ୍ସାହ ଅବସ୍ଥାରେ ରହିଥିଲେ; କିନ୍ତୁ ପରେ ଗୁମାସ୍ତାଙ୍କ ସାହାଯ୍ୟରେ ବିଲବାଡ଼ି, ଘରସଂସାର କଥା ବୁଝିବାକୁ ଲାଗିଲେ । ସ୍ୱାମୀଙ୍କ ଉପରୁ ତାଙ୍କ ମନ ଏକାବେଳକେ ଭାଙ୍ଗି ପଡ଼ିଲା । କିଛିଦିନ ପରେ ହରେଶନାଥ ବାରିଷ୍ଟରୀ ପଢ଼ା ଶେଷକରି ଫେରିଆସି ଆଶାତୀତ ଭାବରେ ଅର୍ଥୋପାର୍ଜନ କରିବାକୁ ଲାଗିଲେ । କଲିକତାରେ ନୂତନ ଅଟ୍ଟାଳିକା ପ୍ରସ୍ତୁତ କରି ନୂତନ ଧରଣରେ ଘରଦ୍ୱାର ସଜେଇବା ଆରମ୍ଭ କଲେ ବସ୍ତୁ, ବବୁର୍ଚ୍ଚି ନିଯୁକ୍ତ କଲେ; କିନ୍ତୁ ଜଗତ୍ତାରିଣୀ ନୀରବରେ ପୃଥକ୍ ହୋଇ ରହିଲେ—ସ୍ୱାମୀଙ୍କ ଗୃହକର୍ମରେ ଯୋଗଦେଲେ ନାହିଁ ।

ଏହିଭଳି ଦିନକୁ ଦିନ ସ୍ୱାମୀ-ସ୍ତ୍ରୀଙ୍କ ବିଚ୍ଛେଦ ନିଦାରୁଣ ହୋଇଉଠିଲା । ବାକ୍ୟାଳାପ ତ ଆଗରୁ ବନ୍ଦ ଥିଲା, ସମ୍ବାଦ ନେବା ବି ପ୍ରାୟ ବନ୍ଦ ହୋଇଗଲା ।

ଦିନେ ଜ୍ୟୋତିଷ ଆସି କହିଲା—ମା, ବାପା ମତେ ବିଲାତ ପଠେଇବାକୁ ଚାହୁଁଛନ୍ତି ।

ଏ ଆଶଙ୍କା ଆଗରୁ ତାଙ୍କର ଥିଲା । ସେ ଅତି କଠିନ ସ୍ୱରରେ କହିଲେ—କେବେ ?

ଜ୍ୟୋତିଷ କହିଲା—ଏଇ ମାସେ ଦି'ମାସ ଭିତରେ ।

'ଆଚ୍ଛା' କହି ମା ମୁହଁକୁ ହାଣ୍ଡି ଭଳି କରି ଅନ୍ୟତ୍ର ଚାଲିଗଲେ । ବିଲାତଯାତ୍ରା ଦିନ ସେ ଦ୍ୱାର ବନ୍ଦକରି ରହିଲେ । ଜ୍ୟୋତିଷ ରୁଦ୍ଧଦ୍ୱାର ସମ୍ମୁଖରୁ ପ୍ରଣାମ କରି ବିଦାୟ ନେଇଗଲେ । ହରେଶନାଥ ସରୋଜିନୀଙ୍କୁ

ଯାଗରେ ଧରି ଜ୍ୟୋତିଷଙ୍କୁ ବମ୍ବେ ପର୍ଯ୍ୟନ୍ତ ପହଞ୍ଚାଇଦେଇ ଫେରଆସି ଶୁଣିଲେ—ଜଗତ୍ତାରଣୀ ନିଜ ବାପଘର ଶାନ୍ତିପୁରକୁ ଚାଲି ଯାଇଛନ୍ତି । କାରଣ ଅନୁସନ୍ଧାନ କରି ବୁଝିଲେ, ଇତି ମଧ୍ୟରେ ତାଙ୍କର ଖୁଡ଼ୁତାଶୁର ଗୋବିନ୍ଦବାବୁ ଜଗତ୍ତାରଣୀଙ୍କୁ ଦେଖା କରିବାକୁ ଆସିଥିଲେ; କିନ୍ତୁ ଏ ଘରେ ଆହାର ସୁଦ୍ଧା କଲେ ନାହିଁ । ସୁତରାଂ ସ୍ତ୍ରୀଙ୍କ ଗୃହତ୍ୟାଗର କାରଣ ବୁଝିବାକୁ ତାଙ୍କୁ ବିଳମ୍ବ ହେଲାନି ।

ଫେରାଇ ଆଣିବାକୁ ଲୋକ ପଠେଇଲେ; କିନ୍ତୁ ଜଗତ୍ତାରିଣୀ ଆସିଲେନି । ପରେଶନାଥ ସରୋଜମାକୁ ବୋର୍ଡିଂରେ ଭର୍ତ୍ତି କରିଦେଲେ । ପ୍ରାକ୍ଟିସ ଛାଡ଼ିଦେଇ ଅଦ୍ଭୁତ କାର୍ଯ୍ୟସବୁ କରିବସିଲେ । ଜଗତ୍ତାରଣୀ ବାପ ଘରେ ରହି ସମସ୍ତ ଖବର ଶୁଣିବାକୁ ପାଇଲେ; କିନ୍ତୁ ବାଧା ଦେବା ଲାଗି ତିଳେହେଲେ ଉଦ୍ୟମ କଲେ ନାହିଁ । ଯେଉଁ ସ୍ୱାମୀ ତାଙ୍କୁ ଆତ୍ମୀୟସମାଜ ବାହାରେ ଠେଲିଦେଇ ଚାଲିଗଲେ, ତାଙ୍କ ଉପରେ ଜଗତ୍ତାରଣୀଙ୍କ ଅଭିମାନର ସୀମା ରହିଲାନି ।

ଏହିଭଳି ଭାବରେ ପୂର୍ଣ୍ଣ ପାଞ୍ଚ ବର୍ଷ କଟିଗଲା । ଜ୍ୟୋତିଷ ଲଣ୍ଡନରୁ ଫେରିଆସି ମାଙ୍କୁ ଆଣିବାକୁ ଗଲା; କିନ୍ତୁ ମା ଅଟଳ ହୋଇ ରହିଲେ, ଘରକୁ ଫେରିଲେନି । କାନ୍ଦି କାନ୍ଦି କହିଲେ – ସବୁ ତ ଶୁଣିଥିବୁ ଜ୍ୟୋତିଷ, ଯେଉଁଥିରେ ତୁମେମାନେ ସୁଖରେ ରହିପାରିବ, ତାହା ହିଁ କର ବାପା ! କିନ୍ତୁ ମତେ ଆଉ ସେ ନରକକୁ ଟାଣନା···ସେସବୁ ମୁଁ ଆଉ ସହି ପାରିବିନି ।

ଜ୍ୟୋତିଷ କହିଲା—ଆମେ ଅଲଗା ବସାକରି ରହିବୁ ମା, ତୁମକୁ ସେ ଘରର ଛାଇ ସୁଦ୍ଧା ମାଡ଼ିବାକୁ ଦେବୁନି । ମୁଁ ଯାହା ରୋଜଗାର କରିବି, ମୋର ବିଶ୍ୱାସ, ସେଥିରେ ଦୁଃଖ କଷ୍ଟରେ ସଂସାର ଚଳିଯିବ । କିଛି ନ ଭାବ ତୁ ଆ ।

ବହୁ କଷ୍ଟରେ ଜଗତ୍ତାରିଣୀ ସମ୍ମତ ହେଲେ ଏବଂ ପୁଅକୁ କଲିକତାରେ ଅଲଗା ବସା କରିବାକୁ କହିଦେଇ ଯିବା ଲାଗି ଆୟୋଜନ କରିବାକୁ ଲାଗିଲେ । ଜ୍ୟୋତିଷ ସପ୍ତାହକ ଭିତରେ ଫେରିଆସି ନେଇଯିବ ବୋଲି କହି ମା ପାଖରୁ ବିଦାୟ ନେଇଗଲା; କିନ୍ତୁ ବିଳମ୍ବର ଅବକାଶ ରହିଲାନି । ପାଞ୍ଚ ଦିନ ପରେ ସେ ଫେରିଆସିଲା । ତାର ଖାଲି ପାଦ ଏବଂ

ଖାଲି ଦେହରେ ଗୋଟାଏ ଶାଲ ଘୋଡ଼େଇହୋଇଥିବାର ଦେଖି ଜଗତ୍‌ତାରିଣୀ ଚିତ୍କାର କରି କାନ୍ଦିଉଠିଲେ । ଜ୍ୟୋତିଷ ଯେଉଁଦିନ କଲିକତାକୁ ଫେରି ଯାଇଥିଲା, ତାର ତିନିଦିନ ପରେ ଅକସ୍ମାତ ହୃଦ୍‌ରୋଗରେ ପଣ୍ଡିତଙ୍କ ଦେହାନ୍ତ ହୋଇଯାଇଥିଲା ।

ନିଦାରୁଣ ଅଭିମାନରେ ଦିନେ ଜଗତ୍‌ତାରିଣୀ ଘର ଛାଡ଼ି ଚାଲି ଯାଇଥିଲେ, ସୁଦୀର୍ଘ ପାଞ୍ଚ ବର୍ଷ ପରେ କାନ୍ଦି କାନ୍ଦି ସେଇ ଘରକୁ ଫେରି-ଆସିଲେ; କିନ୍ତୁ ସ୍ୱାମୀଙ୍କ ସହିତ ଆଉ ଇହଲୋକରେ ଦେଖା ହେଲାନି ।

ଝିଅକୁ ସ୍କୁଲରୁ ଘରକୁ ନେଇଆସିଲେ ଏବଂ ତାର ଗୋଡ଼ରୁ ମୁଣ୍ଡଯାଏଁ ନିରୀକ୍ଷଣ କରି ବିସ୍ମୟରେ ସ୍ତବ୍ଧ ହୋଇଉଠିଲେ । ଜ୍ୟୋତିଷକୁ ଡାକି ଅନ୍ତରାଳରେ କହିଲେ—ଭଉଣୀର ବାହା ବୟସ ତ ହେଲାଣି, କିଛି ଭାବିଛୁ ?

ଜ୍ୟୋତିଷ ମାଆଙ୍କ ମନର ଭାବ ବୁଝିପାରି କହିଲା—ତା ଠୁ ଆହୁରି ବେଶୀ ବୟସର ଝିଅଙ୍କ ବିବାହ ହୋଇପାରୁଛି ମା ! ତୁ କିଛି ଭାବିବା ଦରକାର ନାହିଁ । ଜଗତ୍‌ତାରିଣୀ ବିସ୍ମୟରେ ଆଖିବୁଜି କହିଲେ—ନିର୍ବୋଧ ପରି କଥା କହୁଛୁ କିମିତି ? ତୋ ବାପା ଯାହା କରିଯାଇଛନ୍ତି, ମୁଁ ତ ଆଉ ଫେରିବନି ଜାଣେ; କିନ୍ତୁ ମୁଁ ବଞ୍ଚିରହି ତ ବ୍ରାହ୍ମଣଘରର ଝିଅକୁ ମୁସଲମାନ କି ଖ୍ରୀଷ୍ଟାନ ଘରେ ସମର୍ପି ଦେଇପାରିବିନି । ବରଂ ଝିଅକୁ ଅଭିଆଡ଼ୀ ରଖିଦେବି ସିନା ! ତୋ ଲାଗି କିଛି ଭାବୁନି । ପ୍ରାୟଶ୍ଚିତ୍ତ କରିଦେଲେ ହୋଇଯିବ—ସେ କଥା ମୁଁ କେତେଇଙ୍କ ପାଖରୁ ବୁଝି ଆସିଛି । କିନ୍ତୁ ହଜାର ପ୍ରାୟଶ୍ଚିତ୍ତ କଲେ ତ ଝିଅର ବୟସ କମେଇଦେଇ ହେବନି ?

ଜ୍ୟୋତିଷ କହିଲା—ତୁମକୁ ବୟସ କମେଇବାକୁ ପଡ଼ିବନି ମା ! କିନ୍ତୁ ଦି'ଦିନ ଅପେକ୍ଷା କରିବାକୁ ପଡ଼ିବ । ମୁଁ ଭଲ ବ୍ରାହ୍ମଣଘର ପିଲା ଆଣିଦେବି, ମୁସଲମାନ ବା ଖ୍ରୀଷ୍ଟାନ ଘର ତୁମକୁ ଖୋଜିବାକୁ ପଡ଼ିବନି ।

ଜଗତ୍‌ତାରିଣୀ ରାଗି କହିଲେ—କ'ଣ କହିଲୁ, ଆଉ ଅପେକ୍ଷା କରିବାକୁ କହୁଛୁ ?

ଜ୍ୟୋତିଷ ଜବାବ ଦେଲା—ଦୋଷ ତ ମୋର ନୁହେଁ ମା ! ଏ ଦୋଷ ତୋର ଓ ବାପାଙ୍କର । ମୁଁ ତ ବିଦେଶରେ ଥିଲି ।

ଏକଥା ଯେ ସତ, ଜଗଦ୍ଧାତ୍ରୀ ମନେ ମନେ ବୁଝିଲେ; କିନ୍ତୁ କୁଳୀନ ବ୍ରାହ୍ମଣ ପିଲା ଯେ କେଉଁଠି ଜୁଟିବ ସେ ଭାବ ସୁଦ୍ଧା ପାରିଲେ ନାହିଁ । କହିଲେ—ଯାହା ଭଲ ଭାବୁଚୁ କର ବାପା ! ମୁଁ କାହାର ଭିତରେ ନାହିଁ, ଆଗରୁ କହିଦେଉଚି ତତେ । ଏହା କହି ସେ ଭଗବାନ୍ ହୃଦୟରେ କାମ କରିବାକୁ ଚାଲିଗଲେ ।

ପ୍ରାୟଶ୍ଚିତ କରି ଜ୍ୟୋତିଷ ପିତାଙ୍କ ଶ୍ରାଦ୍ଧ କଲା ।

ଏହାର ଅନତିକାଳ ମଧ୍ୟରେ ପାତ୍ର ଜୁଟିଲା ଜଣେ ବିଲାତଫେରନ୍ତା ସାହେବ । ବାରିଷ୍ଟରୀ ପାସ୍ କରି ୨।୩ ବର୍ଷ ହେଲା ଦେଶକୁ ଫେରିଚି ।

ଶଶାଙ୍କମୋହନର ବର୍ଣ୍ଣ ନେଟିଭ୍; କିନ୍ତୁ ମିଜାଜଟା ବ୍ରିଟିଶ—ସେ ବଙ୍ଗଳା କହୁଥିଲେ ଅଶୁଦ୍ଧ, ଇଂରେଜୀ କହନ୍ତି ଭୁଲ । ଅଳ୍ପ ଦିନ ମଧ୍ୟରେ ତାଙ୍କର ଅନିୟମିତ ଯିବା ଆସିବାଟା ନିୟମିତ ହେଲା ଏବଂ ସରୋଜିନୀ ପ୍ରତି ମନର ଭାବ ଅସ୍ପଷ୍ଟରୁ ସୁସ୍ପଷ୍ଟତର ହୋଇଉଠିଲା ।

ଜଗଦ୍ଧାତ୍ରୀ ପର୍ଦ୍ଦା ଆଢୁଆଳରୁ ଭାବୀ ଜାମାତାକୁ ଚାହିଁ କ୍ରୋଧରେ ଜଳିଉଠିଲେ ଏବଂ ସେଇ ଆକ୍ରୋଶ ମେଣ୍ଟାଇଲେ ଝିଅ ଉପରେ । ତାକୁ ନିଭୃତରେ ଡାକି କହିଲେ—ତୁ ନାଲି ଖାଁଙ୍କ ଭଳି ଯା ତା ଆଗରେ ହେଁ ହେଁ ଫେଁ ଫେଁ ହେଉ କାହିଁକି କହିଲୁ ?

ସରୋଜିନୀ ଲଜ୍ଜାରେ ସଙ୍କୁଚିତ ହୋଇ ଚୁପ୍‌ଚାପ୍ ଠିଆହୋଇ ରହିଲା । ବୁଢ଼ୀ ମା ଆଉ କିଛି ନ କହି ଦ୍ରୁତପାଦରେ ଅନ୍ୟତ୍ର ଚାଲିଗଲେ । ତା' ପରେ ଶଶାଙ୍କମୋହନ ବହୁତ ସମୟ ଘର ଭିତରେ ପଦଚାରଣା କଲା; କିନ୍ତୁ ଯାହା ଲାଗି ତାଙ୍କର ପଦଚାରଣ, ତାର ଦେଖା ମିଳିଲାନି । ମାଆଙ୍କ ଅନୁଶାସନ ସ୍ମରଣ କରି ସରୋଜିନୀ ଅତ୍ୟନ୍ତ ସତର୍କ ହୋଇ ଅନ୍ତରାଳରେ ରହିଲା । ଜ୍ୟୋତିଷ ଏସବୁ ଲକ୍ଷ୍ୟକରି ଦିନେ ସରୋଜିନୀକୁ କହିଲେ—ସରୋ, ତୁ ଆଜିକାଲି ଇମିତି ପଳେଇଯାଉଚୁ କାହିଁକି ?

ସରୋଜିନୀ ମୁହଁ ତଳକୁ କରି କହିଲା—ମା ! ଆଉ କିଛି କହିବାକୁ ପଡ଼ିଲାନି । ଜ୍ୟୋତିଷ ଚୁପ୍‌ଚାପ୍ ଚାଲିଗଲା । ଏ ଘରେ ଏଇ ଗୋଟାଏ ଅକ୍ଷର ହିଁ ଯଥେଷ୍ଟ ।

ପ୍ରାୟ ଦି' ମାସ ପରେ ଦିନେ ସକାଳେ ସେଇ ପାଞ୍ଚଟି ତରଫରୁ ପ୍ରସ୍ତାବ ନେଇ ଜ୍ୟୋତିଷ ମା ପାଖରେ ଆସି ହାଜର ହୋଇ ଯଥାମତ ଗାଳି ଖାଇଲା ।

ପୁଅକୁ ଚୁପ୍ ରହିବା ଦେଖି ମା କିଞ୍ଚିତ୍ ନରମ ହୋଇ କହିଲେ— ଆଚ୍ଛା ବାପା, ତୁମେ ତ ବିଲାତ ଯାଇଥିଲ; କିନ୍ତୁ ପୁଣି ଭଲ ତ ତୁମେସବୁ ହୋଇନ ?

ଜ୍ୟୋତିଷ ଧୀରେ ଧୀରେ କହିଲା — ସମସ୍ତେ ଗୋଟିଏ ରକମର ହୁଅନ୍ତିନ ମା ! କିଏ କିଏ ଟିକିଏ ଅଧେ ବଦଳି ଯାଇଥାଆନ୍ତି । କିନ୍ତୁ ତା ବୋଲି ଏଭଳି ଯୋଗ୍ୟ ପାତ୍ରକୁ ହାତରୁ ଛାଡ଼ିଦେବା ଠିକ୍ ନୁହେଁ । ଶଶାଙ୍କ ବାରିଷ୍ଟରୀ ପଢ଼ି ଆସିଛି, ପୁଣି ଭିତରେ କିଛି ରୋଜଗାର ମଧ୍ୟ କରୁଛି । ବିବାହ କଲେ ସରୋଜିନୀ ସୁଖରେ ରହିବ ବୋଲି ମୋର ମନେହେଉଛି । ଚାଲିଚଳନରେ ଯାହା କିଛି ତଫାତ୍ ଦେଖୁଛ । ସେଇ ଟିକିକ ଯଦି ମାଫ୍ କରିଦିଅନ୍ତ, ତାହାହେଲେ ଭବିଷ୍ୟତରେ ଭଲ ହୋଇଯାଆନ୍ତା ।

ମା କହିଲେ—ମୁଁ କହୁଛି ଜ୍ୟୋତିଷ, ସେ କେବେ ଭଲ ହେବନି । ତା ଛଡ଼ା ବିଦେଶକୁ ଯାଇ ଯିଏ ବିଦେଶୀ ହୋଇ ଫେରେ, ତାକୁ ମୁଁ କୌଣସିମତେ ବିଶ୍ୱାସ କରିପାରିବିନି । ହିନ୍ଦୁସ୍ଥାନକୁ ଗଲେ ହିନ୍ଦୁସ୍ଥାନୀ, କାବୁଲକୁ ଗଲେ କାବୁଲୀ, କଟକକୁ ଗଲେ ଓଡ଼ିଆ ହୋଇ ଫେରିବ, ଇଏ ଗୋଟାଏ କଥା ? ନା ନା ଜ୍ୟୋତିଷ, ତୁ ତାକୁ ବିଦାୟ କରିଦେ ବାପା ! ମୁଁ ତାକୁ ପାରିବିନି । ସେଇଟା ମଣିଷ ନୁହେଁ, ମାଙ୍କଡ଼ । ଏଇ ମାଙ୍କଡ଼ଟା ହାତରେ ମୁଁ ମୋ ସରୋଜିନୀକୁ ସମର୍ପି ଦେଇପାରିବିନି ।

କାହା ସମ୍ବନ୍ଧରେ ମତାମତ ପ୍ରକାଶ କରିବାରେ ଜଗତ୍ତାରିଣୀଙ୍କ ବିଳମ୍ବ ଘଟେନା । ତା ଛଡ଼ା ତାଙ୍କ ପ୍ରକାଶିତ ମତାମତରେ ମଧ୍ୟ ଦ୍ୱିଧା କିମ୍ବା ସଂଶୟ ନ ଥାଏ । ଭାରି ଖୋଲାହୃଦୟା । ଯେଉଁ ଅପରାଧରେ ସେ ନିଜ ସ୍ୱାମୀଙ୍କୁ ସୁଦ୍ଧା ତ୍ୟାଗକରିବା ପର୍ଯ୍ୟନ୍ତ ଯାଉଥିଲେ, ସେ ଅପରାଧକୁ ସିଏ ଯେ କୌଣସି ପ୍ରଲୋଭନରେ କ୍ଷମା କରିବେନି, ସେ କଥା ଜ୍ୟୋତିଷ ଭଲ ଭାବରେ ବୁଝିପାରି ନୀରବରେ ସେ ସ୍ଥାନରୁ ଚାଲିଗଲା । କିଛି ସମୟ ପରେ ଫେରିଆସି କହିଲା—ମା, କିନ୍ତୁ ଗୋଟାଏ କଥା ଭାବି ଦେଖ ।

ମା ପଚାରିଲେ--କି କଥା ?

ଜ୍ୟୋତିଷ କହିଲା—ସରୋଜମାକୁ ତୁମେମାନେ ଯେଉଁ ଶିକ୍ଷା ଦେଇଆସିଛ, ସେଥିରେ ତାର ମତ ନ ନେଇ କୌଣସି ପ୍ରସଙ୍ଗ ସ୍ଥିର କରାଯାଇ ନ ପାରେ । ଯଦି କରାଯାଏ, ତା'ଠୁ ବଳି ଖରାପ କାମ କିଛି ହେବ ନାହିଁ । ପିଲାଦିନୁ ତାର ଦାୟିତ୍ୱ ତୁମେ କେହି ନେଲନି, ଦେଇଦେଲ ବିଦେଶୀ ମେମ୍‌ମାନଙ୍କ ଉପରେ । ଏବେ ବଡ଼ ହୋଇଯିବା ପରେ ତା' ମନ କେଉଁଠି ବୁଝିବା ସହଜ ହେବ ବୋଲି ତ ମୋର ଧାରଣା ।

ଜଗତ୍‌ତାରିଣୀ ଚୁପ୍ ରହିଲେ ।

ଏଇ କଥାଟାକୁ ସେ ମନେ ମନେ ଅସ୍ୱୀକାର କରିପାରିଲେନି ଅଥଚ ପ୍ରକାଶ୍ୟରେ ସ୍ୱୀକାର କରିବା ମଧ୍ୟ ଅସମ୍ଭବ ।

କିଛି ସମୟ ମୌନ ରହି କହିଲେ—ବେଶ ତ ଜ୍ୟୋତିଷ, ତୁମ ସମସ୍ତଙ୍କର ଯଦି ସାହେବ-ମେମ୍ ହେବାକୁ ଇଚ୍ଛା, ହୁଅ, ମତେ କିନ୍ତୁ ତା ପୂର୍ବରୁ କାଶୀ ପଠେଇଦେବାର ବ୍ୟବସ୍ଥା କର ।

ଜ୍ୟୋତିଷ ସାଙ୍ଗେ ସାଙ୍ଗେ ମୁଣ୍ଡ ତଳକୁ କରି ମା'ଙ୍କ ପାଦଧୂଳି ନେଇ ହସି ହସି କହିଲା—ତାହାହେଲେ ମତେ ଯାଇ କାଶୀରେ ରହିବାକୁ ପଡ଼ିବ । ମାଆକୁ ଛାଡ଼ି ଯେ ମୁଁ କେଉଁଠିହେଲେ ରହିବିନି, ଦେଶକୁ ଫେରିବା ପରେ ମନେ ମନେ ଶପଥ କରିନେଇଛି ।

ଜଗତ୍‌ତାରିଣୀ ମୁହଁ ଉଠେଇ ଚାହିଁଲେ । ତାଙ୍କ ମନର ସମସ୍ତ ନିଆଁ କୁଆଡ଼େ ଲିଭିଗଲା । ପରକ୍ଷଣରେ ଗଭୀର ସ୍ନେହରେ ପୁଅ ମୁହଁକୁ ଚାହିଁ ଦୀର୍ଘ ନିଶ୍ୱାସ ପକେଇ କହିଲେ—ନା ବାପା, ତୁ ଆମର ସେଇ କାଶୀରେ ଥିବା ଘରଟା ଖାଲି କରିଦେବାକୁ ଚିଠି ଲେଖିଦେ । ମୁଁ ଏଠି ରହିଲେ ତୁମର ବହୁତ ଅସୁବିଧା ହେବ, ତୁମମାନଙ୍କର ମନ ବିବ୍ରତ ହୋଇପଡ଼ିବ ।

ଜ୍ୟୋତିଷ କହିଲା—ଭଲ କଥା, ସମସ୍ତେ ଯାଇ କାଶୀରେ ରହିବା ।

ମା ପୁଅଙ୍କ ମଧ୍ୟରେ ଏହି କଥାବାର୍ତ୍ତା ଯେଉଁଦିନ ହୋଇଗଲା, ତାର କିଛି ଦିନ ପରେ ଉପେନ୍ଦ୍ର ସତୀଶକୁ ନେଇ ଜ୍ୟୋତିଷ ଘରେ ଉପସ୍ଥିତ ହୋଇଥିଲା । ତା ପର ଘଟଣା ପାଠକଙ୍କୁ ଅବିଦିତ ନାହିଁ ।

ଜଗତ୍‌ତାରିଣୀ ସତୀଶଙ୍କୁ ଦେଖିଲେ । ବେକରେ ମୋଟା ପଇତା । ସେ ସନ୍ଧ୍ୟା ପୂଜାପୂଜି କରେ, ମୁସଲମାନଙ୍କ ହାତତିଆରି ପାଉଁରୁଟି ଖାଏନା । ସେ ଶ୍ରୀମାନ୍ , ନିଷ୍ଠାବାନ । ତା ବାପାଙ୍କର ବହୁତ ଟଙ୍କା । ଜଗତ୍‌ତାରିଣୀ ଦେଖି, ଜାଣି, ଶୁଣି ଏକାବେଳକେ ମୁଗ୍‌ଧ ହୋଇ-ପଡ଼ିଥିଲେ । ତା ପରେ କ୍ରମଶଃ ସେ ଆଭାସ ଇଙ୍ଗିତରୁ ଜାଣିପାରିଲେ ଯେ ସତୀଶ ବିଲାତଫେରନ୍ତା ନ ହେଲେ ମଧ୍ୟ, ଏଭଳି କି ତା ମନରେ ଗୁଡ଼ାଏ କୁସଂସ୍କାର ଥିବା ସତ୍ତ୍ୱେ ସତୀଶ ପ୍ରତି ସରୋଜିନୀର ଯେ କୌଣସି ଅଶ୍ରଦ୍ଧା ଭାବ ନ ଥିଲା, ଜଗତ୍‌ତାରିଣୀ ସେ କଥା ଠଉରେଇ ପାରିଥିଲେ । ତା ଛଡ଼ା ସତୀଶ ଯେତେବେଳେ ତାଙ୍କୁ ମା ବୋଲି ସମ୍ବୋଧନ କଲା, ସେତେବେଳେ ତାଙ୍କର ସ୍ନେହ ଆଦରର ସ୍ରୋତ ଯେପରି ବନ୍ଧ ଭାଙ୍ଗି ନିର୍ବାହିତ ହେବାକୁ ଲାଗିଲା ।

କିନ୍ତୁ ତା ପରେ ବହୁଦିନ ପର୍ଯ୍ୟନ୍ତ ସତୀଶ ସହିତ ଦେଖାହୋଇନି । ସତୀଶକୁ ନ ଦେଖି ଜଗତ୍‌ତାରିଣୀ ମନରେ ଅଧିକ ବ୍ୟଥା ପାଉଥିଲେ । ତଥାପି ନିଜେ ଉଦ୍ୟୋଗୀ ହୋଇ କୌଣସି ଉପାୟ ବାହାର କରିବା ଲାଗି ସେ ପ୍ରୟାସ କରି ନ ଥିଲେ । ତାଙ୍କର ବଡ଼ ଭୟ ଥିଲା, ହୁଏତ ଚେଷ୍ଟା କରିବାକୁ ଗଲେ ଗୋଟାଏ କିଛି ମନ୍ଦ ସମ୍ବାଦ ଶୁଣିବାକୁ ହୁଏ । ସେ ମନେ ମନେ ଜାଣୁଥିଲେ, ତାଙ୍କ ନିଜ ଝିଅର ମତାମତ ଉପରେ ହିଁ ବିବାହର ସମସ୍ତ ଫଳାଫଳ ନିର୍ଭର କରେନି; କାରଣ ସତୀଶଙ୍କ ନିଜ ବୁଢ଼ା ବାପା ଜୀବିତ । କେଜାଣି ସେ କ'ଣ କହିବେ ? ତା ଛଡ଼ା ସତୀଶ ନିଜେ ଜଣେ ବିଲାତଫେରନ୍ତା ଘରେ ବିବାହ କରିବାକୁ ହୁଏତ ସେ ଭୟ କରିପାରେ ।

ଏଭଳି ଅନେକ ଦିନ ବ୍ୟଗ୍ର ଭାବରେ ଦୁଶ୍ଚିନ୍ତାରେ କଟେଇ ସେଦିନ ହଠାତ୍ ଆସି ବୈଦ୍ୟନାଥରେ ଦେଖିବାକୁ ପାଇଲେ ସତୀଶ ବସି ଗପସପ କରୁଛି । ସେତେବେଳେ ତାଙ୍କ ଆନନ୍ଦ କହିଲେ ନ ସରେ । ସତୀଶ ପାଖକୁ ଆସି ପ୍ରଣାମ କରି ପଦଧୂଳି ନେଲା । ସେ କଲିକତାରୁ ଚାଲିଆସି ଅଜ୍ଞାତବାସ କରିଥିଲା । ସରୋଜିନୀ ହିଁ ତାକୁ ଆବିଷ୍କାର କରିଛି— ଏକଥା ଜ୍ୟୋତିଷ ଗପସପ ଛଳରେ ମାଆଙ୍କୁ ଶୁଣେଇଲା । ନିଜ ଝିଅର ଦୁର୍ଘଟଣା ବିବରଣୀ ଶୁଣି ସେ ସତୀଶ ମୁଣ୍ଡରେ ହାତ ଦେଇ ତାକୁ ଅଶେଷ

ଆଶୀର୍ବାଦ କଲେ— ବାପା ସନ୍ତୋଷ, ତୁ ଯେ ଚିଅଛିଲୁ ବିପଦ ମୁହଁରୁ ରକ୍ଷା କରିବୁ, ଏକଥା ଏମାନେ ଯେଉଁଭଳି କୌଣସି ଦିନ ଭୁଲି ନ ଯାଆନ୍ତି । କିନ୍ତୁ ଜଙ୍ଗଲ ଭିତରେ ଏକାକୀ ରହିବାର ଆବଶ୍ୟକତା କ'ଣ ସନ୍ତୋଷ ? ତୁ ଏଇ ଘରର ପିଲା । ଯେତେଦିନ ଆମେ ଏଇଠି ରହିବୁ, ସେତେଦିନ ଏଇ ଘରେ ଆସି ରହିଗଲେ କ'ଣ କିଛି କ୍ଷତି ହେବ ?

ସନ୍ତୋଷ ହସି ହସି କହିଲା—ବେଶ୍ ଭଲରେ ଅଛି ମା ! ମୋର ସେଠି କୌଣସି କଷ୍ଟ ନାହିଁ ।

ଜଗତ୍ତାରିଣୀ କହିଲେ—କଷ୍ଟ ଲାଗି କହୁନି ବାପା ! ଏକା ଏକା ରହିବାରେ ବହୁତ ବିପଦ ! ଏ ଘରେ ବହୁତ ସ୍ଥାନ ଖାଲିପଡ଼ିଛି, ତୁମେ ଚାଲିଆସ । ଜଳବାୟୁ ସେଠି ଯାହା, ଏଠି ବି ସେୟା ।

ସରୋଜିନୀ କହିଲା— ତାହାହେଲେ ତାଙ୍କର ଜାତି ଚାଲିଯିବ ମା !

ଜଗତ୍ତାରିଣୀ ସେତେବେଳ ସୁଦ୍ଧା ଭିତରର କଥା ଜାଣି ନ ଥିଲେ । ମନେ ମନେ ଅତି ବିରକ୍ତ ହୋଇ କହିଲେ—ତୁ ଟା ତ ଖାଲି ଜଣେ ସରୋ ! କାହିଁକି, ଆମେ ଇମିତି କ'ଣ ଯେ ଏଠି ରହିଲେ ଲୋକର ଜାତି ଚାଲିଯିବ ? ନା ବାପା ସନ୍ତୋଷ, ତୁମେ ଏଇଟାର କଥା ମନକୁ ନିଅନା । ଆଜି ତା ଯଦି ହୁଏ, ଉପୀନ୍ ତା ସ୍ତ୍ରୀକି ଧରି ଆମରି ଘରେ ଏତେଦିନ ରହିଲା କିମିତି ? ତାଙ୍କର ଜାତି ଚାଲିଗଲାନି । ତୁ ଇମିତି ମିଛଟାରେ ଭୟ ଦେଖାନା ସରୋ, କହିଦେଉଛି ।

ସରୋଜିନୀ ମୁହଁ ବୁଲେଇ ହସିବାକୁ ଲାଗିଲା । ସନ୍ତୋଷ କହିଲା— ନା ମା, ଜାତି ଯିବ କାହିଁକି ? ମୁଁ ତ ପ୍ରାୟ ପ୍ରତ୍ୟହ ଏଠାକୁ ଆସେ । ରାତିରେ ଖିଆପିଆ ତ ଏଇ ଘରେ ହୁଏ ।

ଏକଥା ଶୁଣି ଜଗତ୍ତାରିଣୀ ପୁଲକିତ ଚିତ୍ତରେ କହିବାକୁ ଲାଗିଲେ—ହଁ, ସିମିତି ଆସୁଥାଅ ବାପା ! ଅନ୍ତତଃ ମୁଁ ଯେତେ ଦିନ ଥିବି, ମୋର ପାଖରୁ ତୁମକୁ ଦୈନିକ ଖାଇପିଇ ଯିବାକୁ ହେବ । ଏହା କହି ସେ ସଙ୍ଗେ ସଙ୍ଗେ ଖିଆପିଆର ବ୍ୟବସ୍ଥା କରିବାକୁ ଅନ୍ୟତ୍ର ଚାଲିଯିବା ପରେ ସରୋଜିନୀ କହିଲା—ଆପଣ ଯେ ମତେ ଗୀତ ଶିଖାଇବାକୁ କହିଥିଲେ···

ସନ୍ତୋଷ କହିଲା—ମୁଁ ତ ପ୍ରାୟ ପ୍ରତ୍ୟେକ ଦିନ ଆସୁଛି, ଶିଖି-ପାରନ୍ତ ।

ସର୍ବେଜନୀ କହିଲା—ଆପଣ ଆସିଲେ ତ ସବୁ ଭଦ୍ରଲୋକ ଆପଣଙ୍କ ଗୀତ ଶୁଣିବାକୁ ଆସି ତୁଣ୍ଡ ବୁଜିଅଛନ୍ତି । ତାର ଭିତରେ କ'ଣ ଶିଖାଯାଏ ?

ସତୀଶ ହସି ହସି କହିଲା—"ନୋ ଆଡ୍‌ମିସନ୍" ବୋଲି ଫାଟକ ଆଗରେ ଗୋଟାଏ ସାଇନ୍‌ବୋର୍ଡ଼ ରଖିଦେଲେ ହେଲା ।

ସର୍ବେଜନୀ କହିଲା—ତା'ଠାରୁ ମାଆ ଯାହା କହିଲେ, ସେଇକଥା କରନ୍ତୁ । ସେଇ ଜଙ୍ଗଲ ଭିତରେ ପଡ଼ିରହନ୍ତୁନି !

କିନ୍ତୁ ଜଙ୍ଗଲରେ ରହିବାର ଆବଶ୍ୟକତା ନେଇ ଆଜି ଯିଏ ଯାହା କହୁ ପଛକେ, ସର୍ବେଜନୀ ମୁହଁରେ କହିବା ସୁନ୍ଦର ଶୁଭୁନି ।······ ସତୀଶ ଚୁପ୍ ରହିଲା ।

ସର୍ବେଜନୀ ପୁଣି କହିଲା—ଆଚ୍ଛା, ଦାଦା ଯାହା କହିଲେ—ପାଞ୍ଚ ଛଅ ଦିନ ପରେ କଲିକତା ଯିବେ ବୋଲି, ସେତେବେଳେ ଆମ କଥା ବୁଝିବ କିଏ ?

ସତୀଶ ପଚାରିଲା—କେତେ ଦିନ ଲାଗି ଯିବେ ?

ସର୍ବେଜନୀ କହିଲା—ଅନ୍ତତଃ ସାତ ଆଠ ଦିନ ତାଙ୍କୁ ସେଠି ରହିବାକୁ ପଡ଼ିବ ।

ସତୀଶ କହିଲା—ତା ହେଲେ ସେ ବ୍ୟବସ୍ଥା ସେ ନିଜେ କରି-ଦେଇ ଯିବେ । ଏଥିଲାଗି ଭୟ ବା କାହିଁକି ? ଆପଣମାନେ ତ ଆମମାନଙ୍କ ହିନ୍ଦୁଘର ଭଳି ଅସୂର୍ଯ୍ୟଂପଶ୍ୟା ନୁହନ୍ତି ଯେ ଘରେ ପୁରୁଷ ନ ରହିଲେ ମୁସ୍କିଲରେ ପଡ଼ିଯିବେ···ଆପଣମାନେ ବା କେତେ ପୁରୁଷର······

ସର୍ବେଜନୀର ମୁହଁ ସେଇ ମୁହୂର୍ତ୍ତରେ ଆରକ୍ତ ହୋଇଉଠିଲା । କହିଲା—କ'ଣ ଆମେ କରିପକାଉଚୁ ଶୁଣେ ? ପୁରୁଷମାନଙ୍କର କ'ଣ କାନ କାଟିପକାଉ ? ଆମେ କ'ଣ ହିନ୍ଦୁଘରର ଲୋକ ନୋହୁଁ ?

ସତୀଶ ଅପ୍ରତିଭ ହୋଇ ସଙ୍ଗେ ସଙ୍ଗେ କଥାଟାକୁ ବୁଲେଇନେବା ପାଇଁ ମୁହଁ ଉଠେଇବା ମାତ୍ରେ ଦେଖିବାକୁ ପାଇଲା, ସମ୍ମୁଖରେ ଶଶାଙ୍କ-ମୋହନ ବାରିଷ୍ଟରଙ୍କୁ ନେଇ ଜ୍ୟୋତିଷ ଘରକୁ ପଶିଆସୁଚି । ଅନ୍ୟ ଦିନ ଭଳି ଆଜି ବି ଶଶାଙ୍କ ଷ୍ଟେସନକୁ ବୁଲିବାକୁ ଯାଇ ଦେଖିଲା, ବାରିଷ୍ଟର ସାହେବ ଫାଷ୍ଟକ୍ଲାସ କାମେରାରୁ ଓହ୍ଲାଉଛନ୍ତି । ଘରେ ପାଦ ଦେଲାମାତ୍ରେ

ଶଶାଙ୍କମୋହନ ସରୋଜିନୀ ଆଡ଼କୁ ହାତ ବଢ଼େଇ କରମର୍ଦ୍ଦନ କରି କିମିତି ଅଛ ବୋଲି ପଚାରିଲେ ଏବଂ ନିଜର ଏଭଳି ଅଚାନକ ଆଗମନର କୈଫିୟତ୍ ସ୍ୱରୂପ କହିଲେ—କାହିଁକି ସେ ତାଙ୍କୁ କଲିକତା ଅସହ୍ୟ ବୋଧ ହେଲା ଏବଂ କାହିଁକି ଯେ କୌଣସି ଚିନ୍ତା ନ କରି ଫାଷ୍ଟ କ୍ଲାସ ଟିକଟ କାଟି ଦେଓଘର ପର୍ଯ୍ୟନ୍ତ ଆସିଲେ, ସେ କଥା ସେ ନିଜେ ଜାଣନ୍ତିନି । ନିଜେ ବସିବା ଲାଗି ଗୋଟିଏ ଚୌକି ଟାଣିଆଣି ବାରିଷ୍ଟର ସାହେବ ଅନର୍ଗଳ ବକିଲାଗିଲେ; କିନ୍ତୁ ସରୋଜିନୀର ମୁହଁରୁ ଦି’ ତିନୋଟି ପଦ କଥା ଛଡ଼ା ଆଉ କିଛି ବାହାରିଲାନି ।

ଦଶ ମିନିଟ ପରେ ସତୀଶଙ୍କୁ ଉଠିଯିବା ଦେଖି ତାର ଦୃଷ୍ଟି ଆକୃଷ୍ଟ ହେବାମାତ୍ରେ ମୁହଁକୁ ବଙ୍କେଇ ସରୋଜିନୀକୁ କହିଲେ—ୟାଙ୍କୁ କେଉଁଠି ଦେଖିଲି ଭଳି ମନେହେଉଛି ।

ସରୋଜିନୀର ଶୁଷ୍କମୁଖ ପ୍ରଦୀପ୍ତ ହୋଇଉଠିଲା । ସଂକ୍ଷେପରେ କହିଲା—କିମ୍ବାଉପାରବନ କେଉଁଠି ଦେଖିଛନ୍ତି ।

ଟିକକ ପରେ ଜଗତ୍ତାରିଣୀ ସତୀଶଙ୍କୁ ଯେତେବେଳେ ଡକେଇ ପଠେଇଲେ, ସେତେବେଳେ ଦେଖାଗଲା, ସତୀଶ କାହାକୁ କିଛି ନ କହି ଚାଲିଯାଇଛି ।

ଏହା ପରେ ତିନି ଦିନ ପର୍ଯ୍ୟନ୍ତ ସତୀଶର ଦେଖାସାକ୍ଷାତ ନ ପାଇ ଜଗତ୍ତାରିଣୀ ଭିତରେ ଭିତରେ କ୍ଷୁବ୍ଧ ଓ ଉଦ୍‌ବିଗ୍ନ ହୋଇଉଠିଲେ । ପୁଅକୁ ନିଭୃତରେ ଡାକି ଟିକିଏ କଡ଼ା ଭାଷାରେ ପଚାରିଲେ— ଏଇ ଲୋକଟି ଏଠି ଆଉ କେତେ ଦିନ ରହିବ ଜ୍ୟୋତିଷ ? ବରଂ ମୁଁ କହୁଛି, ତୁମେମାନେ ସ୍ପଷ୍ଟ ଭାବରେ ଜଣେଇଦିଅ, ତାଙ୍କର ରହିବାର ଆଉ କୌଣସି ଆବଶ୍ୟକତା ନାହିଁ ।

ମାଆଙ୍କ ଆଦେଶ ଜ୍ୟୋତିଷ କିଭଳି ଯେ ପାଳନ କଲା, କହି ହେବନି; କିନ୍ତୁ ପ୍ରସ୍ତାବ ପୂର୍ବରୁ ଶଶାଙ୍କମୋହନ ନିଃସଂଶୟରେ ଶୁଣି-ଗଲେ ଯେ ଯେଉଁ ଆଶା ନେଇ ସେ ଏଠିକି ଆସେ, ସେ ଆଶା ଫଳେ ହେଲେ ନାହିଁ । ସତୀଶ ଯେ ସେଇ ଭାଗ୍ୟବାନ ପାତ୍ର, ସେ କଥା ମଧ୍ୟ ଜାଣିବାକୁ ତାର ବାକି ରହିଲା ନାହିଁ ।

ସାହେବଙ୍କ ମୁହଁ କଳା ପଡ଼ିଗଲା । କିନ୍ତୁ ଆଘାତଟାକୁ ସେ ଭଦ୍ରଭାବରେ ଗ୍ରହଣ କଲେ । ଏଥର କି ଯିବାବେଳେ ସେ ସରୋଜିନୀ ସହିତ ସାକ୍ଷାତ କରିବାକୁ ମଧ୍ୟ କୌଣସି ଚେଷ୍ଟା କଲେ ନାହିଁ ।

ଟ୍ରେନରେ ବସିବାବେଳେ ଠିକ୍ ବିଦାୟ ନେବା ପୂର୍ବ ମୁହୂର୍ତ୍ତରେ ଅତି ଅକସ୍ମାତ୍ ଭାବରେ ସେ ଜ୍ୟୋତିଷକୁ ପଚାରିଲେ— ସତୀଶ ବାବୁ କେଉଁଠି ଡାକ୍ତରୀ ଶିଖିବାକୁ ଚେଷ୍ଟା କରୁଥିଲେ, ତା କ'ଣ ସତ ?

ଜ୍ୟୋତିଷ ମୁଣ୍ଡ ହଲାଇ କହିଲା—ବୋଧହୁଏ ସତ୍ୟ, ହୋମିଓପାଥିକ ସ୍କୁଲରେ କିଛି ଦିନ ପଢ଼ିଥିଲେ ମାତ୍ର ।

—ଓଃ ହୋମିଓପାଥିକ ସ୍କୁଲ ? ତା ପରେ ଶଶାଙ୍କ ଅନ୍ୟ କଥା ପକାଇଲା ।

## ଅଠତିରିଶ

ହଠାତ୍ ଭାଇଙ୍କ ଦେହ ଖରାପ ନେଇ ଟେଲିଗ୍ରାମ ପାଇ ଜଗତ୍ତାରିଣୀଙ୍କୁ ସଙ୍ଗେ ସଙ୍ଗେ ଶାନ୍ତିପୁର ଯିବାକୁ ହୋଇଥିଲା । ତେଣୁ ସତୀଶ ପାଖରେ ପ୍ରସ୍ତାବଟିକୁ ଉତ୍ଥାପନ କରିବାର ସେତେବେଳେ ସୁଯୋଗ ପାଇ ନ ଥିଲେ ସେ । ଆଜି ତାକୁ ଭଲକରି ଖୁଆଇ ପିଆଇ କଥାଟିକୁ ପକାଇବା ପାଇଁ ମନେ ମନେ ସ୍ଥିର କରି ସକାଳୁ ସକାଳୁ ସତୀଶକୁ ନିମନ୍ତ୍ରଣ କରି ଡାକିବା ପାଇଁ ଗୁମାସ୍ତାକୁ ପଠେଇ ଦେଇଥିଲେ । ଇତି ମଧ୍ୟରେ ଏହି ଅଶୋଭନୀୟ କାଣ୍ଡ ଘଟିଲା । ଯାହାର ଆଗମନ ସବୁଠାରୁ ଅପ୍ରୀତିକର, ଅକସ୍ମାତ୍ ସେଇ ଶଶାଙ୍କମୋହନ ସକାଳ ଟ୍ରେନରେ ଆସି ହାଜର ହୋଇଛି ବୋଲି ଶୁଣିବା-ମାତ୍ରେ ଜଗତ୍ତାରିଣୀଙ୍କ ବିରକ୍ତିର ସୀମା ରହିଲା ନାହିଁ । ମଣିଷର ଅତ୍ୟନ୍ତ କାମନାର ବସ୍ତୁ ହଠାତ୍ ବାଧାପ୍ରାପ୍ତ ହେଲେ ତାର ସନ୍ଦେହର ଅଭାବ ନ ଥାଏ । ତେଣୁ ଠିକ୍ ସେଇ ସମୟରେ ସରୋଜିନୀକୁ ବାହାରେ ଆସିବାର ଦେଖି ତାଙ୍କର ସର୍ବାଙ୍ଗରେ କିଏ ଯେମିତି ବିଷ ବୋଳିଦେବା ଭଳି ମନେହେଲା । ତାଙ୍କର ସନ୍ଦେହ ହେଲା ଶଶାଙ୍କମୋହନର ଏଇ ଆକସ୍ମିକ ପ୍ରତ୍ୟାବର୍ତ୍ତନ ମଧ୍ୟରେ ହୁଏତ ବା ଏଇ ହତଭାଗା ଝିଅଟାର କୌଣସି

ହୋଇ ଅଛି···! ତାଙ୍କର ବାରିଷ୍ଟର ପୁଅଙ୍କୁ ତ ସେ କୌଣସିଦିନ ସମ୍ପୂର୍ଣ୍ଣ ଭାବରେ ବିଶ୍ୱାସ କରିପାରିନାହାନ୍ତି । ଫଳରେ ସରୋଜକୁ ଦୋଷ ଦିଆଯାଇ ନ ପାରେ । ତାଙ୍କର ହିନ୍ଦୁ ଆଚାରଭ୍ରଷ୍ଟ ଝିଅପୁଅ ଦୁହେଁ ଯେ ସରୋଜର ଆଚାରପରାୟଣତାକୁ ଭଲ ମନରେ ଦେଖିପାରନ୍ତି, ଏକଥା ସେମାନେ ହୃଦୟ ଭିତରେ ଗ୍ରହଣ କରିପାରିନାହାନ୍ତି ।

ଝିଅକୁ ଗୁଡ଼ାଏ ଇଆଡ଼ୁ ସିଆଡ଼ୁ ଗାଳିଗୁଲଜ ଦେଇ ଦେଇ ସେ ରୋଷେଇଘରେ ପଶି, ଚାକରାଣୀକୁ ରନ୍ଧାରନ୍ଧି ପାଇଁ ସବୁ ଜିନିଷ ସଜାଡ଼ି ରଖିବା ଲାଗି ଆଦେଶ ଦେଇ ଗାଧୋଇବାକୁ ଚାଲିଗଲେ । କିନ୍ତୁ ଘଣ୍ଟାକ ଭିତରେ ଫେରିଆସି ଝିଅକୁ ଚାହିଁ ଅବାକ୍ ।

ଇତି ମଧ୍ୟରେ ସରୋଜମା ଶୀଘ୍ର ସ୍ନାନସାରି ମଠା ପିନ୍ଧି ରୋଷେଇ ଘରେ ପଶି ପରିବା କାଟୁଥିଲା ଏବଂ ଚାକରାଣୀ ପାଖରେ ବସି ଏଇଟା କାଟ, ସେଇଟା କାଟ ବତେଇ ଦେଉଥିଲା । ଜଗତ୍‌ତାରିଣୀ ଚୁପଚାପ୍ କିଛି ସମୟ ଚାହିଁ କହିଲେ—ହିନ୍ଦୁ ଝିଅଙ୍କୁ ଯେ ଆଉ କୌଣସି ପୋଷାକ ସାଜେନା, ତୋତେ ଦେଖି ସେକଥା ମୁଁ ଭଲ ଭାବରେ ଅନୁଭବ କରି-ପାରୁଛି ସରୋ ! ତୋତେ ଦେଖି ମନରେ ଏତେ ଆନନ୍ଦ ମୁଁ କେବେ ପାଇ ନ ଥିଲି ।

ସରୋଜମା ଲଜ୍ଜାରେ ମୁହଁ ତଳକୁ କରି କାମ କରିବାକୁ ଲାଗିଲା । ମା ତାକୁ ଦେଖେଇ ଦେଖେଇ କହିବାକୁ ଲାଗିଲେ—ମୁଁ ସବୁ ବୁଝିଛି ମା, ସବୁ ବୁଝିଛି । ସେ ଯେତେ ପାଶ୍‌କରୁ ପଛକେ, ମାଙ୍କଡ଼ ଛଡ଼ା ମୁଁ ତାକୁ କିଛି କହେନା । ବେହିଆଟା ଆଉଥରେ ଯେମିତି ଫେରି ନ ଆସେ ।

ଟିକିଏ ରହି ପୁଣି କହିଲେ—ଜ୍ୟୋତିଷ କହେ, ପିଲାଦିନୁ ଯିଏ ଯିମିତି ଶିକ୍ଷା ପାଇଥାଏ, ମନଟା ତାର ସେଇଆଡ଼କୁ ଟାଣି ହୋଇଯାଏ । କିନ୍ତୁ ସେ କଥା କାହିଁକି ବା ସତ ହେବ ? ଦିନରାତି ହାଟ୍‌କୋଟ ନ ପିନ୍ଧିଲେ କାହାର ପସନ୍ଦ ହେବନି, ଏକଥା ବା କେଉଁ ଶାସ୍ତ୍ରରେ ଲେଖାଅଛି ମା ?

ରନ୍ଧାବଢ଼ାର ସମସ୍ତ ବ୍ୟବସ୍ଥା କରିଦେଇ ଜଗତ୍‌ତାରିଣୀ ରାନ୍ଧିବାକୁ ଯାଉ ଯାଉ କହିଲେ—ମୋ ମନର ବାସନା ଭଗବାନ ଯଦି ପୂର୍ଣ୍ଣ କରନ୍ତି···ତୁ ନିଜେ କହିଲୁ ଝିଅ, ସେଥିରେ ତୋର ଭଲ କିଛିଟା ହେବ ।

ସରୋଜିନୀ ଆନତମୁଖରେ ମାଆଙ୍କ ମୁହଁର ବାସନଟା ସ୍ପଷ୍ଟ ଶୁଣିବା ଲାଗି ଉତ୍କଣ୍ଠିତ ରହିଲା । ଜଗତ୍ତାରିଣୀ ଆଜି ତାହା ପ୍ରକାଶ କରି କହିଲେନି, ରନ୍ଧାରେ ଲାଗିଗଲେ । ସେ ନୀରବରେ ମନେ ମନେ କ'ଣ ଭାବିଲେ—ସରୋଜିନୀ କିନ୍ତୁ ତାହା ବେଶ୍ ବୁଝିପାରିଲା । ହାଟକୋଟ ପେଣ୍ଟଧାରୀ ସମ୍ବନ୍ଧରେ ଯେଉଁ ଲୋକ୍ୟାକର ଅପବାଦର ଇଙ୍ଗିତରେ ତାଙ୍କୁ ଥରକୁ ଥର ବିଦ୍ଧକଲେ, ତାର ପ୍ରତିବାଦ କରିବା ସରୋଜିନୀ ପକ୍ଷରେ କଠିନ ନ ଥିଲା । କିନ୍ତୁ ନିରତିଶୟ ଅସହିଷ୍ଣୁ ପ୍ରକୃତି ଜଗତ୍ତାରିଣୀଙ୍କୁ କୌଣସି କଥା ଶେଷ ପର୍ଯ୍ୟନ୍ତ କହିବା ଉଚିତ ନୁହେଁ ବୋଲି ଜାଣି ସେ ନୀରବ ହୋଇ ବସିରହିଲା । ବେଳ ପ୍ରାୟ ୧୦ଟା ସମୟରେ କ'ଣ ଗୋଟାଏ ଗୋଳମାଳ ହେଲା । ଗୁମାସ୍ତା କେଉଁଠୁ ଖୋଜି ଖୋଜି ଗୋଟାଏ ପ୍ରକାଣ୍ଡ ରୋହିମାଛ ଆଣି ହାଜର କରାଇଲା । ଜଗତ୍ତାରିଣୀ ଭିତରଘରୁ ଉଙ୍କିମାରି ଦେଖି ଖୁସିହୋଇ କହିଲେ—ବାଃ, ବେଶ ଭଲ ମାଛ ତ !

ସରୋଜିନୀ କହିଲା—ସତୀଶବାବୁ ଆସିବାକୁ ଡେରି ଅଛି ମା, ୧୦ଟା ତ ବାଜିନି ।

ଜଗତ୍ତାରିଣୀ କହିଲେ—ବଜାବଜି କଥା ନୁହେଁ ମା ! ଆଜି ମୋର ଏକାଦଶୀ, ମୁଁ ତ ମାଛ ଛୁଇଁବିନି । ଭାବୁଛି, ଆମ ପୂଝାରୀ ପୂଝାକୁ ରାନ୍ଧିପାରିବ କି ନା । ଆଚ୍ଛା ଦେଖ ତ ଏଲୋକେଶୀ (ଚାକରାଣୀର ନାଁ), ସେ ଘରେ ରନ୍ଧାରନ୍ଧି କେତେ ଦୂର ଗଲାଣି ? ଏଲୋକେଶୀ ବାହାରକୁ ଯିବା ପରେ ସରୋଜିନୀ ଲଜ୍ଜିତ ଭାବରେ ଆସ୍ତେ ଆସ୍ତେ କହିଲା—ମା, ତୁ ବତେଇଦେଲେ ମୁଁ କ'ଣ ରାନ୍ଧିପାରିବିନି ?

—ଜଗତ୍ତାରିଣୀ ବିସ୍ମିତ ହୋଇ କହିଲେ—ତୁ ପାରିବୁ ?

—ହଁ ପାରିବି, ତୁ ଖାଲି ବତେଇ ଦେ ।

ଏଲୋକେଶୀ ଅଟକି ଠିଆହେଲା । ଏଭଳି ସୁରୁଦର୍ଶନ, ବୃହଦାୟତନ ରୋହି ଗୋଟାଏ ଅନାଡ଼ି ହାତରେ ପଡ଼ି ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବା ଆଶଙ୍କାରେ ସେ ଭୀତ ହୋଇଉଠିଲା । ସେ କ'ଣ ତାଙ୍କ ହାତରେ ହେବ ମା···ବାହାରର ଲୋକ ଖାଇବେ ଯେ ।

ଜଗତ୍ତାରିଣୀ କିଛି ସମୟ କ'ଣ ଭାବିଲେ କେଜାଣି କହିଲେ—ହେଉ, ସତୀଶ ତ ବାହାରର ଲୋକ ନୁହେଁ, ଆମରି ଘରର ପିଲା । ତୁ ହାଣ୍ଡା

କର ଠିଆହୋଇ ରହନା କେଣୀ ! ସେଅଂଟ ଚୁଲାଟା ଲପାଲପି କରଦେଇ ମାଛ କାଟି ନେଇଆ । ତୁ ଏ କାମ କର ମା, ମଠାଲୁଗା ପିନ୍ଧ ତ ସୁବଧା ହେବନ—ଆଚ୍ଛା ତା ହେଉ, ଯଦ ଅଡୁଆ ଲାଗୁଚ, କାନଟା ଅଣ୍ଟାରେ ଭଲକର ଭଡ଼ଦେ । ହସି ହସି କହଲେ—ଆଇଁଷ ହାତଟା ତୋର ଯେମିତ ଚରଦନ ଆଇଁଷ ରହଥାଉ ।

ଏ ଆଶୀର୍ବାଦରେ ସରୋଜନୀ ମୁହଁଟି ଆହୁର ଟିକଏ ତଳକୁ ନଇଁ ଆସିଲା । ଘଣ୍ଟାକ ପରେ ଜ୍ୟୋତଷ କ'ଣ ଗୋଟାଏ କାମରେ ରୋଷେଇଘର ଦୁଆର ମୁହଁକୁ ମାଆଙ୍କ ପାଖକୁ ଆସି ବସ୍ମିତ ହୋଇପଡ଼ଲା । ଗୃରଆଡ଼େ ଆଖି ବୁଲେଇ କହଲା—ସେଠି ରାନ୍ଧୁଚ କଏ ମା ? ସବୁ ଭଲ ଦେଖାଯାଉଚ ତ ?

ମା ଟିକଏ ହସିଦେଇ କହଲେ—ଭଲକର ଦେଖ, ଚହ୍ନିପାରୁଚୁ କ ନା !

ଚହ୍ନି ନ ପାରବା କଥା ତ । କନ୍ତୁ କ'ଣ ସେ ସତରେ ରାନ୍ଧୁଚ ନା ତୋର ପାଖରେ ବସିରହଚ ?

ମା ଗୋଟାଏ ନଗୂଢ଼ ଇଙ୍ଗିତ ଦେଇ କହଲେ—ରନ୍ଧାବଢ଼ା କାମ କ'ଣ ହନ୍ଦୁଝିଅକୁ ଶିଖିବାକୁ ପଡ଼େ ? ଏ କଥା ତ ଆମମାନଙ୍କର ଜନ୍ମ-କାଳରୁ ଶିକ୍ଷାହୋଇ ରହଥାଏ; କନ୍ତୁ···

—କ'ଣ ମା ?

ପୁଅକୁ ଟିକଏ ଆଉଆଳକୁ ନେଇ ଜଗତ୍ତାରଣୀ କହଲେ—କନ୍ତୁ ମୁଁ ଭାବୁଚ, ସହାଣ ଶୁଣିଲେ ହୁଏତ ତା ହାତରୁ ଖାଇବନ ।

ଜ୍ୟୋତଷ ହସିଉଠିବାମାତ୍ରେ ସରୋଜନୀ ମୁହଁ ଉଠେଇ ଗୃହିଁଲା । ଜ୍ୟୋତଷ କହଲା—ମା, ତୁ ସହାଣକୁ ଏଭଳ ମନୁ, ପରାଶର ବୋଲ ଭାବୁ କାହିଁକ କହଲୁ ?

ମା କହଲେ—ସେ ଅନ୍ତତଃ ତୁମମାନଙ୍କଠୁ ତ ଭଲ ।

ଜ୍ୟୋତଷ କହଲା—ଇମିତ କ'ଣ ଭଲ ସିଏ ଶୁଣେ ? ଏଇ ସବୁ ଯାଇ ତାର ଭାତ ଡାଲ ରାନ୍ଧଦେଇ ଆସିଥିଲା ବୋଲ ତ ସେ ରାତରେ ଯେ ଗଣ୍ଡେ ଖାଇବାକୁ ପାଇଥିଲା, ନଇଲେ ତାକୁ ସେଦନ ଉପବାସ ରହବାକୁ ପଡ଼ଥାଆନ୍ତା । ଏକଥା ତୁ ଜାଣୁ ?

ମା ଅତି ବ୍ୟଗ୍ର ହୋଇଉଠି କହିଲେ—କେବେ କରେ ?

ଜ୍ୟୋତିଷ ସେଦିନ ରାତିର ସମସ୍ତ ଘଟଣା ବର୍ଣ୍ଣନା କରି କହିଲା ମାତ୍ରେ ସେ ଆନନ୍ଦରେ ବିଭୋଳ ହୋଇପଡ଼ି ମିଷ୍ଟ ଅଭିମାନ ସ୍ୱରରେ ଝିଅକୁ କହିଲେ—ଧନ୍ୟ ତୁ ମା, ମୁଁ ସେତେବେଳୁ ଭାବୁଚି, ତୁ ରନ୍ଧା ଜାଣୁନା ବୋଲି, ଆଉ ତୁ ଚୁପ୍‌ଚାପ୍ କିଛି ନ କହି ବସିଚୁ ।

ଜ୍ୟୋତିଷ ହସି ହସି କହିଲା—ସିଏ ବା କିମିତି ଜାଣିବ ଯେ ତୁ ମନେ ମନେ ଏଭଳି ସବୁ ଭାବିମରୁଚୁ ବୋଲି । କିନ୍ତୁ ସେ ଦିନ ତ ସେ ଖାଇବାକୁ ପାଇନି । ଆଜି ଖିଆପିଆ ସାରି ପୋଡ଼ାମୁହାଁ ଲାଗିପଡ଼ିଚି ରନ୍ଧା ରନ୍ଧିରେ ନା ? ଏତିକି କହି ହସି ହସି ସେ ଚାଲିଗଲା ।

ଜଗତ୍ତାରିଣୀ ଝିଅର ଲାଜ ସରସର ମୁହଁକୁ ଚାହିଁ କହିଲେ—ଲାଜ କ'ଣ କଲେ ? ନିଜ ଲୋକକୁ ରନ୍ଧାବଢ଼ା କରି ଖାଇବାକୁ ଦେବୁ, ଏଥିଠୁ ବଳି ଭାଗ୍ୟ ଝିଅପିଲାଙ୍କର ଆଉ କ'ଣ ଥାଇପାରେ ? ମୁଁ ଜପତପ କରିସାରି ଆସୁଚି । ଏହା କହି ସେ ବାହାରକୁ ଚାଲିଗଲେ ।

ତାପରେ ଦିନ ଗୋଟିକଯାକ ଗଲା, ସତୀଶର ଦେଖା ମିଳିଲା ନାହିଁ । ନ ଆସିବାର କାରଣ ବି କେହି ଜଣେଇ ଗଲେ ନାହିଁ । ସାରାଦିନ ଛଟପଟ ହୋଇ ଜଗତ୍ତାରିଣୀ ସଂଧ୍ୟା ପରେ ଜ୍ୟୋତିଷକୁ ଡାକି କହିଲେ—ତାର କିଛି ନା କିଛି ହୋଇଚି, ଜଣେ ଲୋକ ପଠେଇ ତାର ଖବର ଅନ୍ତର ଟିକିଏ ନେ ବାପା !

ଜ୍ୟୋତିଷ ନିତାନ୍ତ ତାଚ୍ଛଲ୍ୟ ସ୍ୱରରେ କହିଲା—ଏତେ ବାଟ, କାହାକୁ କହିବି କିଏ ଯିବ ?

ଜଗତ୍ତାରିଣୀ ଆଶ୍ଚର୍ଯ୍ୟ ହୋଇ କହିଲେ—କାହିଁକି ଦରଓ୍ୱାନକୁ ପଠେଇଦେଲେ କ'ଣ ସେ ଯାଇପାରିବ ନାହିଁ ?

—କ'ଣ ବା ଦରକାର ?

—କ'ଣ କହିଲୁ ? ତାର ହୁଏତ ଦେହ ଖରାପ ହୋଇଥାଇପାରେ, ଟିକିଏ ଖବର ବି ନେବୁନି ?

ସେ ତ ଆମର କିଛି ନୁହେଁ, ଆତ୍ମୀୟ ନୁହେଁ କି ବନ୍ଧୁ ନୁହେଁ, ତା ଲାଗି ଏତେ ଭାବିବାର ଦରକାର ବା କ'ଣ ? ଏହା କହି ଜ୍ୟୋତିଷ ବାହାରକୁ ଚାଲିଗଲା ।

ପୁଅ ମୁହଁରେ ସତୀଶ ସମ୍ବନ୍ଧରେ ଏଭଳି ଜବାବ ଶୁଣି ଜଗତ୍‌ତାରିଣୀ ହତବୁଦ୍ଧି ହୋଇପଡ଼ିଲେ ।

ସତୀଶ ଯେ ଆମର କିଛି ନୁହେଁ, ତାଙ୍କ ମୁହଁ ଉପରେ ନିଜ ପୁଅର ଏଭଳି ସ୍ପର୍ଦ୍ଧିତ ଉତ୍ତର ତାଙ୍କ ମନରେ ଦୁଃସ୍ୱପ୍ନ ଭଳି ଆଘାତ ଦେଲା । ସେଇଠି ଠିଆହୋଇ କେତେଟା ମୁହୂର୍ତ୍ତ ଭିତରେ କେତେ ଯେ କ'ଣ ତାଙ୍କର ଉପବାସକ୍ଷୀଣ ମୁଣ୍ଡ ଭିତରେ ଛୁଟିଗଲା, ତା ଭଲକରି କେହି ଠଉରେଇପାରିଲେ ନାହିଁ ।

ଧୀରେ ଧୀରେ ଉପରକୁ ଯାଇ ନିଜ ଶେଯ ଉପରେ ଶୋଇପଡ଼ି ସରୋଜିନୀକୁ ପାଖକୁ ଡାକିଆଣି ଜଗତ୍‌ତାରିଣୀ ଝିଅ ମୁହଁକୁ ଚାହିଁ ଆହୁରି ଅଧିକ ଭୟତ୍ରସ୍ତ ହୋଇପଡ଼ିଲେ । କିଛି ସମୟ ନୀରବ ରହିବା ପରେ ପଚାରିଲେ – ସରୋ, ସତୀଶ ଆସିଲା ନାହିଁ କାହିଁକି ତୁ ଜାଣୁ ?

ସରୋଜିନୀ କହିଲା – ନା ।

କନ୍ୟାର ଏଇ ସଂକ୍ଷିପ୍ତ ଉତ୍ତରରେ ଜଗତ୍‌ତାରିଣୀ ଉଠିପଡ଼ି କହିଲେ—ନା ! ଯଦି ଜାଣୁନା, ତାହାହେଲେ ଲୋକ ପଠେଇ ଖବର ନେଲୁନି ? ଏତିକ ମଧ୍ୟ ମତେ କହିଦେବାକୁ ପଡ଼ୁଥାଆନ୍ତା !

ସରୋଜିନୀ ଥର ଥର କଣ୍ଠରେ କହିଲା—ଦାଦା କହିଲେ, ଲୋକ ପଠେଇବାର କୌଣସି ଆବଶ୍ୟକତା ନାହିଁ ।

କାହିଁକି ନୁହେଁ, ସେ କଥା ମୁଁ ଜାଣିବାକୁ ଚାହେଁ । ଯାଅ, ଏହିକ୍ଷଣି ଦରଓ୍ୱାନକୁ ପଠେଇଦିଅ, ସେ ଖବର ନେଇଆସୁ ।

ସିଏ ତ ନାହିଁ ମା, ଦାଦା ତାକୁ ଉପୀନବାବୁଙ୍କ ପାଖକୁ ଟେଲିଗ୍ରାମ କରିବାକୁ ପଠେଇ ଦେଇଛନ୍ତି ।

—ଉପୀନବାବୁକୁ ? ହଠାତ୍ ତାକୁ ଟେଲିଗ୍ରାମ କରିବା ଦରକାର କ'ଣ ?

—ମୁଁ ସବୁ କଥା ଜାଣେନା ମା ! ତୁ ଦାଦାଙ୍କୁ ପଚାର । କହିଦେଇ ସରୋଜିନୀ ମାଆକୁ ଏକରକମ ଉପେକ୍ଷା କରି ଚାଲିଗଲା । ଏଇଥର ଜଗତ୍‌ତାରିଣୀଙ୍କ ମନେହେଲା, ଇତିମଧ୍ୟରେ ନିଶ୍ଚୟ ସତୀଶକୁ ମନାକରି ଦିଆଯାଇଛି । ସେ ବୁଝିପାରୁଥିଲେ, ଯାହାର କାରଣ କ'ଣ ତାଙ୍କ ପାଖରେ କେହିହେଲେ ପ୍ରକାଶ କରିବାକୁ ଅନିଚ୍ଛୁକ । କିନ୍ତୁ ଏସବୁ ଯେ ଅତି ଗୁରୁତର,

ଏଥିରେ କୌଣସି ସନ୍ଦେହ ନାହିଁ । ଏଇ ଅନାସ୍ଥା ମୂଳରେ ଯେ ଶଶାଙ୍କ-ମୋହନର ହାତ ଅଛି ଏବଂ ଦୁରଭିସନ୍ଧି ନେଇ ସେ ସୁଷି ଘରକୁ ଆସିଥିଲା, ସେଥିରେ ଜଗତ୍‌ତାରିଣୀଙ୍କ ମନରେ କୌଣସି ସନ୍ଦେହ ରହିଲା ନାହିଁ । କିନ୍ତୁ କାରଣ ଯେତେ ଭୟାନକ ହେଉନା କାହିଁକି, ସେ ନିଜେ ଉପସ୍ଥିତ ରହିଥିବାବେଳେ ପିଲାଏ ତାଙ୍କର ଅନୁମତି ନ ନେଇ ସନ୍ତୋଷକୁ ମନା କରି ଦେଇଛନ୍ତି, ଏକଥା କଳ୍ପନା କରିବାମାତ୍ରେ ତାଙ୍କ ଦେହ ରାଗରେ ଜଳିଉଠିଲା । ସଙ୍ଗେ ସଙ୍ଗେ ଏଲୋକେଶୀ ହାତରେ ଜ୍ୟୋତିଷକୁ ଡକେଇ ଆଣି ପଚାରିଲେ—ତୁ ଏ ଘରକୁ ସନ୍ତୋଷକୁ ଆସିବାକୁ ବାରଣ କରିଥିଲୁ ?

ଜ୍ୟୋତିଷ ଆଶ୍ଚର୍ଯ୍ୟ ହୋଇ କହିଲା—ନା ତ, ଏ କଥା ତତେ କିଏ କହିଲା ?

—ଉପୀନ ପାଖକୁ ତୁ ସନ୍ତୋଷ ସମ୍ବନ୍ଧରେ ଟେଲିଗ୍ରାମ କରିଚୁ ?

—ହଁ ।

— ସନ୍ତୋଷ କ'ଣ କରିଚି ?

ଜ୍ୟୋତିଷ ଟିକିଏ ଚୁପ୍‌ରହି କହିଲା—ଯାହା କରିଛି, ସେସବୁ ଯଦି ସତ ହୁଏ, ତାହାହେଲେ ତା ସହିତ ମୋର କୌଣସି ସମ୍ବନ୍ଧ ସୁଦ୍ଧା ରହିବ ନାହିଁ ।

—ଏ ଖବର ତତେ କିଏ ଦେଲା ? ଶଶାଙ୍କମୋହନ ନା ? ନିହାତି ବଦମାସଟାଏ । ମୁଁ ତିଳେହେଲେ ବିଶ୍ୱାସ କରିବିନି ।

ଜ୍ୟୋତିଷ କହିଲା—ମୁଁ କିନ୍ତୁ ବିଶ୍ୱାସ କରୁଚି । କିନ୍ତୁ ତାର ଅର୍ଦ୍ଧେକ ସୁଦ୍ଧା ଯଦି ସତ ହୁଏ, ତାହାହେଲେ ମୁଁ କହିଦେଉଚି ମା, ସନ୍ତୋଷର ଛୁଇ ସୁଦ୍ଧା ମାଡ଼ିବାକୁ ମୋର ଘୃଣା ହେବ ।

ପୁଅର ଉତ୍ତେଜିତ କଣ୍ଠସ୍ୱରରେ ଜଗତ୍‌ତାରିଣୀ ନରମ ହୋଇ କହିଲେ—ବେଶ ତ, ଖୋଲିକରି କହ କ'ଣ ହେଇଚି । ସନ୍ତୋଷ ତ ଘରେ ଡକାୟତି କରିନି, ଖୁନ୍ କରି ପଳେଇଆସିନି ଯେ ତା ପ୍ରତି ତୋର ଘୃଣା ହେବ ! ପିଲାଲୋକ କିଛି ଦୋଷ କରିଦେଇ ପାରିଥାଏ—ଇମିତି ତ ବହୁତ ଲୋକ କରିଥାଆନ୍ତି । ସୁଧୁରିସିବାକୁ କେତେ ସମୟ ବା ଲାଗିବ ?

ଜ୍ୟୋତିଷ ମୂର୍ତ୍ତିକୁ ଡ଼ାକିଲେଇ କହିଲା—ମୋ ଅପରାଧର କ୍ଷମା ନାହିଁ ମା ! ଅନ୍ତତଃ ସରୋଜିନୀ କ୍ଷମା କରିପାରିବେନି, ମୁଁ ଏକଥା ନିଶ୍ଚିତ ଭାବରେ ଜାଣି କହୁଛି ।

ଜଗତ୍ତାରିଣୀ ଟିକିଏ ଚଞ୍ଚଳ କହିଲେ—ଅପରାଧଟା କ'ଣ ଶୁଣେ ।

କାଲି ସବୁ ଶୁଣିବ । ଉପୀନ୍‌ଠାରୁ ଚିଠି ନ ପାଇବାଯାଏ ଏ ଆଲୋଚନାର କୌଣସି ଲାଭ ନାହିଁ । ଏହା କହି ମା ମୁହଁରୁ ଦ୍ୱିତୀୟ ଅନୁରୋଧ ଆସିବା ପୂର୍ବରୁ ସେ ଘରୁ ବାହାର ହୋଇଗଲା ।

ଉତ୍ତେଜନାବଶତଃ ଜଗତ୍ତାରିଣୀ ବିଛଣାରୁ ଉଠି ବସିପଡ଼ିଲେ । ପୁଅ ଚାଲିଯିବା ମାତ୍ରେ ସେ ନିର୍ଜୀବ ଭଳି ଶଯ୍ୟା ଗ୍ରହଣ କରି ପକାଇଲେ । ଦୀର୍ଘଶ୍ୱାସ ପକାଇ କହିଲେ—ଭଗବାନ ! ଏ କଳିକାଳରେ କାହାରି ଉପରେ ବିଶ୍ୱାସ କରିନି—ଏଇ କ'ଣ ତମର ଉପଦେଶ !

ପୁଅ ମୁହଁରୁ ଯାହାସବୁ ଶୁଣିଲେ, ସେଥିରୁ ଅନେକ କଥା ମନେ ମନେ ଯୋଡ଼ିଦେଇ ନେଇଥିଲେ । ତେଣୁ ଖାଲି ସନ୍ତାନ ପାଇଁ ନୁହେଁ, ସ୍ୱାମୀଙ୍କ କଥା ମନେପଡ଼ିଯିବାରେ ତାଙ୍କର ଦି ଆଖିରୁ ଲୁହ କ୍ରମଶଃ ଧାର ଧାର ହୋଇ ବହିବାକୁ ଲାଗିଲା ।

ରାତିରେ ଥରେ ଝିଅକୁ ଡାକେଇ ପଠେଇଥିଲେ । ଏଲୋକେଶୀ ସରୋଜିନୀଠାରୁ କୌଣସି ଉତ୍ତର ନ ପାଇ ଫେରିଆସି ଜଣେଇଲା—ସରୋ-ଦିଦି ଶୋଇଛନ୍ତି ।

ଏ କଥା ଶୁଣି ଜଗତ୍ତାରିଣୀ ମୁଣ୍ଡରେ ହାତଦେଇ ବସିପଡ଼ିଲେ । ଯେଉଁ ଝିଅ ଏତେ ଦୁଃସମ୍ବାଦ ଜାଣିସୁଦ୍ଧା ନିର୍ବୋଧ ଭଳି ଶୋଇପାରେ, ସିଏ ଯେ ସନ୍ତାନ ଅପେକ୍ଷା ସେଇ ମାଙ୍କଡ଼ଟା ଉପରେ ବେଶୀ ଅନୁରାଗିଣୀ, ଏକଥା ମନେକରି ଝିଅ ପ୍ରତି ତାଙ୍କ ରାଗ ଓ ଅଶ୍ରଦ୍ଧାର ସୀମା ରହିଲା ନାହିଁ ।

ତା ଆରଦିନ ପ୍ରାୟ ୩ଟାବେଳକୁ ଗେଟ ପାଖରେ ସାଇକଲଟାକୁ ଆଉଜେଇ ଦେଇ ସତୀଶ ଡ୍ରଇଂରୁମରେ ଆସି ପ୍ରବେଶ କଲା ।

ତାର ଶୁଷ୍କମୁଖ, ରୁକ୍ଷକେଶ ଉପସ୍ଥିତ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା । ସରୋଜିନୀ ମୁହଁ ଉଠେଇ ଚାହିଁଲା; କିନ୍ତୁ କୌଣସି କଥା କହିଲା

ନାହିଁ । ଜ୍ୟୋତିଷ ପଚାରିଲେ—ଆପଣଙ୍କର କ'ଣ ଦେହ ଖରାପ ହୋଇଚି ସତୀଶବାବୁ !

ସତୀଶ ଟିକିଏ ହସିବାର ଚେଷ୍ଟାକରି କହିଲା—ନା !

କେହି କିଛି ନ କହୁଥିବା ଦେଖି ସତୀଶ ବିସ୍ମିତ ହୋଇପଡ଼ିଲା । ସେ ମନେ ମନେ ବାଟଯାକ ଭାବି ଆସିଥିଲା—ତାକୁ ସମସ୍ତେ ଗାଳିଦେବେ, ଅଭିଯୋଗ ଅନୁଯୋଗର ସୀମା ରହିବ ନାହିଁ । ତେଣୁ ସେ ସେତେବେଳେ ଘର ଭିତର ଆଡ଼କୁ ଯିବାକୁ ଅଗ୍ରସର ହେଉ ହେଉ କହିଲା—କାଲିର ଅପରାଧ ଲାଗି ମାଆଙ୍କ ପାଖରେ କ୍ଷମା ମାଗି ଆସେ ଆସେ, ତା ପରେ ଅନ୍ୟ କାମ ।

ଶଶାଙ୍କ ଏତେବେଳଯାଏଁ ତୀବ୍ରଦୃଷ୍ଟିରେ ସତୀଶ ଆଡ଼କୁ ଚାହିଁ ରହିଥିଲା । ସେ କହିଲା—ନା, ମା ଶୋଇଛନ୍ତି, କ୍ଷମା ତ ମାଗିବେ, ଉଠନ୍ତୁ ନସ, ଏତେ ତରତର କାହିଁକି ? ଟିକିଏ ବସନ୍ତୁ, ଆପଣଙ୍କ ସହିତ କଥାବାର୍ତ୍ତା ଅଛି ।

ଶଶାଙ୍କମୋହନ ମୁହଁରୁ ଏଭଳି କଥା ଶୁଣି ସତୀଶ କହିଲା—ଆପଣଙ୍କ ସହିତ ମୋର କଥାବାର୍ତ୍ତା ?

ଶଶାଙ୍କ କହିଲା—ଆଜ୍ଞା ହଁ, ଦୁର୍ଭାଗ୍ୟବଶତଃ ମୁଁ ଏଠି ଆସି ପହଞ୍ଚିଯାଇଚି ।

ଜ୍ୟୋତିଷକୁ ଦେଖେଇ କହିଲା—ଆପଣ ଜାଣନ୍ତି, ମୁଁ ଏଙ୍କର ଜଣେ ପରମ ବନ୍ଧୁ ! ନା, ନା, ଜ୍ୟୋତିଷ ବାବୁ ! ଆପଣ ଉଠିଗଲେ ଚଳିବନି । ଆରେ ଆପଣ ଚାଲିଯାଉଛନ୍ତି ଯେ···ମୋର ଯାହା ଯାହା ନାଲିସ ଅଛି, ମୁଁ ଆପଣମାନଙ୍କ ସମସ୍ତଙ୍କ ଆଗରେ କହିବାକୁ ଚାହେଁ । ଦୟାକରି ବସନ୍ତୁ···କହି ସେ ସରୋଜିନୀ ଆଡ଼କୁ ଟିକିଏ ଚାହିଁଲା । କିନ୍ତୁ ସରୋଜିନୀ ଇମିତି ମୁଣ୍ଡକୁ ପୋତି ବସିଲା ଯେ ତାକୁ କେହି ଦେଖିବାର ଉପାୟ ନ ଥିଲା ।

ଶଶାଙ୍କ ଟେବୁଲ ଉପରେ ହାତକୁ ବାଡ଼େଇ କହିଲା—ମୋର ପିଲାଦିନୁ ସ୍ୱଭାବ ହେଉଚି, ଯାହାକୁ ଭଲ ପାଏ, ତା ସମ୍ବନ୍ଧରେ ଆଖିବୁଜି ଉଦାସୀନ ରହିପାରେନା । ତେଣୁ ଗତ ଥର ଶୁଣି ମନେ ମନେ କହିଲି—ଇଏ ତ ଭଲକଥା ନୁହେଁ । ସତୀଶବାବୁଙ୍କ ଏଇ ନିର୍ଜନବାସର ଖବରଅନ୍ତର

ନେବା ଉଚିତ । ଆପଣ ହୁଏତ ରାଗିମିବେ ସଞ୍ଜୀବବାବୁ ! କିନ୍ତୁ ମୁଁ ତ ମୋର ନିଜ ସ୍ୱଭାବ ବିରୁଦ୍ଧରେ ଯାଇପାରିବିନି । କ'ଣ କହୁଚନ୍ତି ଜ୍ୟୋତିଷବାବୁ ?

ଜ୍ୟୋତିଷ ଚୁପ୍‌ଚାପ୍ ମୁଣ୍ଡ ନୁଆଇଁ ବସିରହିଲେ—ସଞ୍ଜୀବ ମଧ୍ୟ ଚୁପ୍‌ଚାପ୍ ରହିଁରହିଲା ।

ସମସ୍ତ ଶ୍ରୋତାଙ୍କ ନୀରବତା ଭିତରେ ଶଶାଙ୍କର ଉତ୍ତେଜନାର ବେଗ ସ୍ୱତଃ କୋହଳ ହୋଇପଡ଼ିଲା । ସେ ଅପେକ୍ଷାକୃତ ସଂଯତ କଣ୍ଠରେ କହିଲେ — ଜ୍ୟୋତିଷ ମୋର ପରମବନ୍ଧୁ ବୋଲି ଆପଣଙ୍କୁ କେତୋଟି ପ୍ରଶ୍ନ କରିବାର ଅଧିକାର ଅଛି । ଆପଣ ତ ଜାଣନ୍ତି······

କଥା ମଝିରେ ସଞ୍ଜୀବ କହିଲା—ନା, ବନ୍ଧୁଭିତର କଥା ମୁଁ କିଛି ଜାଣିନି । କିନ୍ତୁ ଆପଣଙ୍କର କ'ଣ ପ୍ରଶ୍ନ ଶୁଣେ ?

ଶଶାଙ୍କ ଛେପ ଢୋକି କହିଲେ—ମୁଁ ଜାଣିବାକୁ ଚାହେଁ, ଆପଣ ଏଠାକୁ ଆସିଛନ୍ତି କାହିଁକି ?

ସଞ୍ଜୀବ କହିଲା—ଇଚ୍ଛା ହେଲା, ଆସିଗଲି । ଆପଣଙ୍କ ଦ୍ୱିତୀୟ ପ୍ରଶ୍ନ···

ଶଶାଙ୍କ ଥାଆମାମା ହୋଇ ଜ୍ୟୋତିଷଙ୍କୁ ଲକ୍ଷ୍ୟକରି କହିଲେ—ସଞ୍ଜୀବବାବୁଙ୍କ କଲିକତାର ବସା ଖୋଜି ବାହାର କରିବାକୁ ମତେ ବହୁତ କଷ୍ଟ ସହିବାକୁ ପଡ଼ିଚି । ରାଖାଲବାବୁଙ୍କୁ ସେ ଚିହ୍ନନ୍ତି । ସେ କହିଲେ···

ସଞ୍ଜୀବର ଆଖି ଦୁଇଟା ଦାଉ ଦାଉ ହୋଇ ଜଳିଉଠିଲା । କହିଲା— ମାର ଗୁଲି ସେ ରାଖାଲବାବୁଙ୍କୁ, ଆପଣ ନିଜ କଥା କହନ୍ତୁ ।

ଏଥର ଜ୍ୟୋତିଷ ମୁହଁ ଉଠେଇ କହିଲେ—ସଞ୍ଜୀବବାବୁ, ଶଶାଙ୍କ ମୋର ଅନୁରୋଧରେ ହିଁ ଆପଣଙ୍କୁ ଯାହା କିଛି ପଚାରୁଚି । ଆପଣ ଇଚ୍ଛାକଲେ ଉତ୍ତର ଦେଇ ନ ପାରନ୍ତି, କିନ୍ତୁ ତାଙ୍କୁ ଅପମାନିତ କରନ୍ତୁ ନାହିଁ । ଆମ ସହିତ ଆପଣ ଯେଉଁ ବ୍ୟବହାର କରିଛନ୍ତି, ସେଥିରେ କୌଣସି ପ୍ରଶ୍ନ ନ ପଚାରିବା ହିଁ ଉଚିତ ଥିଲି । ଖାଲି ମାଆଙ୍କ ଲାଗି ହିଁ ନିଜ ମୁହଁରୁ ଥରେ ଶୁଣିବା ଆବଶ୍ୟକ ହେଉଛି । ହେଉ, ସେ ନ ପଚାରୁ; ମୁଁ ପଚାରୁଚି— ସାବିତ୍ରୀଟି କିଏ ? ତା ସହିତ ଆପଣଙ୍କ ସମ୍ବନ୍ଧ କ'ଣ ?

ସଞ୍ଜୀବ ଟିକିଏ ଚୁପ୍‌ଚାପ୍ ରହିଁରହିଲା । ପରେ କହିଲା—ସାବିତ୍ରୀ କିଏ ମୁଁ ଜାଣିନି ଜ୍ୟୋତିଷବାବୁ, କିନ୍ତୁ ତା ସହିତ ମୋର କି ସମ୍ବନ୍ଧ ତାର ଉତ୍ତର ଦେବା କୌଣସି ଦରକାର ବୋଲି ମୁଁ ମନେକରୁନି ।

—କାହିଁକି ?

—କାରଣ କହିଲେ ବି ଆପଣମାନେ ବୁଝିପାରିବେନି ।

—କିନ୍ତୁ ଯେମିତି ବା ହେଉ, ଆମେ ବୁଝିବା ଦରକାର ହେଉଛି । ଭଲ କଥା, ତାକୁ କେଉଁଠି ଆଣି ରଖିଛନ୍ତି—ଏ ସମ୍ବାଦ ଦେଲେ ବୋଧହୁଏ ଆମେ ବୁଝିପାରିବୁ ।

ସଖାଶ ଜ୍ୟୋତିଷ ମୁହଁ ଉପରେ ତାର ଜ୍ୱଳନ୍ତ ଦୃଷ୍ଟିକୁ ନିବଦ୍ଧ କରି ଧୀର ଶାନ୍ତ କଣ୍ଠରେ କହିଲା—ଦେଖନ୍ତୁ ଜ୍ୟୋତିଷବାବୁ, ମୁଁ କୌଣସି ଦିନ ଉପରେ ପଡ଼ି ଆପଣଙ୍କ ସହିତ ଘନିଷ୍ଠତା କରିବାକୁ ଚେଷ୍ଟା କରିନି । ତେଣୁ ପ୍ରଶ୍ନୋତ୍ତର ଛଳରେ ଗୁଡ଼ିଏ କଥାକୁ କଟାକଟି କରିବାର ଆବଶ୍ୟକତା ଅଛି ବୋଲି ମୁଁ ମନେକରୁନି । କ'ଣ ଘଟିଚି, ମୁଁ ବୁଝିପାରୁଚି । ଅତଏବ ଆପଣଙ୍କର ଯେତିକି ଜାଣିବା ଆବଶ୍ୟକ, ମୁଁ ନିଜେ ଜଣାଉଚି । ସାବିତ୍ରୀ କୁଆଡ଼େ ଯାଇଚି, ମୁଁ ଜାଣେନା । କାହିଁକି, ସେ ପ୍ରଶ୍ନ ଅନାବଶ୍ୟକ । ତେବେ ଏକଥା ସତ ଯେ ସାବିତ୍ରୀ ଯାହାହେଉ ଯଦି ନିଜ ଇଚ୍ଛାରେ ମତେ ଛାଡ଼ି ଯାଇ ନ ଥାନ୍ତା, ମୁଁ ଯେତେ ଦିନ ବଞ୍ଚନ୍ତି, ତାକୁ ମୁଣ୍ଡରେ ଟେକିଧରି ରଖିଥାଆନ୍ତି । ଏକଥା କେବଳ ଆପଣଙ୍କୁ ନୁହେଁ, ସମଗ୍ର ପୃଥିବୀ ଆଗରେ କହିବାକୁ ମୁଁ ତିଳେହେଲେ ଲଜ୍ଜାବୋଧ କରୁନି । ଆଶାକରେ, ଏହା ପରେ ଆପଣଙ୍କର କୌଣସି ଜିଜ୍ଞାସା ନାହିଁ । ଥିଲେ ବି ମୁଁ ତାର କୌଣସି ଜବାବ ଦେବିନି ।

ସଖାଶର ଏଇ ସୁସ୍ପଷ୍ଟ ଓ ସଂକ୍ଷିପ୍ତ ଉତ୍ତରରେ ସମସ୍ତେ ହଠାତ୍ ବିସ୍ମାରିତ ନେତ୍ରରେ ଶୁହିଁ ପଥରମୂର୍ତ୍ତି ଭଳି ବସିରହିଲେ । ସର୍ବୋଜନୀ ସାମନାରେ ତାର ଏଇ ଅମାନୁଷିକ ହୃଦୟହୀନ ସ୍ପର୍ଦ୍ଧା ତାର ଅସୀମ ନିର୍ଲ୍ଲଜତାକୁ ବହୁ ଦୂରକୁ ଅତିକ୍ରମ କରିଗଲା । ବହୁ ସମୟ ଧରି ସ୍ତମ୍ଭିତ ଭାବରେ ବସି ଜ୍ୟୋତିଷ ପ୍ରବଳ ଚେଷ୍ଟାରେ ନିଜକୁ ସଚେତ କରି ମୁଣ୍ଡ ହଲାଇ କହିଲା—ନା, ଆପଣଙ୍କ ପାଖରେ ମୋର ଆଉ କୌଣସି କଥା ପଚାରିବାର ନାହିଁ । ଯେଉଁ ଟିକକ ଥିଲା, ଉପୀନର ଜବାବରେ ସେତକ ପୂର୍ଣ୍ଣ ହୋଇଛି । ଏଇ ଦେଖନ୍ତୁ···କହି ଆଗରେ ଥିବା ଟେଲିଗ୍ରାମ କାଗଜଟିକୁ ସେ ଫୋପାଡ଼ିଦେଲା ।

—ଉପୀନ୍‌ଦାଙ୍କ ଟେଲିଗ୍ରାମ ? କାହିଁ ଦେଖି । ଏହା କହି ଅତି ବ୍ୟଗ୍ର ଭାବରେ ସତୀଶ କାଗଜଟିକୁ ଉଠେଇନେଲା ।

ଖୋଲି, ପଢ଼ିସାରି ଟେଲିଗ୍ରାମଟିକୁ ଫେରେଇଦେଇ ସତୀଶ କ୍ଷଣକ ଲାଗି ଚୁପ୍ ରହିଲା । ତା ପରେ ନିଶ୍ୱାସ ମାରି କହିଲା—ସବୁ କଥା ସତ । ଉପୀନ୍‌ଦା କେବେ ମିଛ କହନ୍ତିନି । ଯଥାର୍ଥରେ ମୁଁ ଭଲ ନୁହେଁ । ଯଥାର୍ଥରେ ମୋ ସହିତ କେହି ସମ୍ପର୍କ ରଖିବା ଉଚିତ ନୁହେଁ । ବୋଧହୁଏ ମନେ ମନେ ଏହି କଥା ଜାଣି ପାରୁଥିଲି ବୋଲି ଏହି ଜଙ୍ଗଲ ଭିତରକୁ ପଳେଇ ଆସିଥିଲି । ଏହା କହୁ କହୁ ତାର କଣ୍ଠସ୍ୱର ଯେପରି କୌଣସି ମନ୍ତ୍ର ବଳରେ ଗଦ୍‌ଗଦ୍ ହୋଇଆସିଲା; କିନ୍ତୁ କେହି କୌଣସି କଥା କହିଲେ ନାହିଁ । ସତୀଶ ନିଜେ ସ୍ତବ୍‌ଧ ହୋଇ ବସିରହିଲା । ପରକ୍ଷଣରେ ଏକ ବୁକୁଫଟା ଦୀର୍ଘଶ୍ୱାସ ସହିତ ତାର ମନେହେଲା, ଗୋଟାଏ ଅତି ଜଟିଳ ସମସ୍ୟାର ଆଜି ମୀମାଂସା ହୋଇଗଲା । କାଲି ସକାଳେ ହିଁ ଜଗତ୍‌ତାରିଣୀଙ୍କ ନିମନ୍ତ୍ରଣ ସଙ୍ଗେ ସଙ୍ଗେ ବହୁ ଚିନ୍ତା ତା ମନରେ ଉଦୟ ହୋଇଥିଲା । ସରୋଜିନୀର ହୃଦୟଲାଭର ଆକାଂକ୍ଷା ହଠାତ୍ କେବେ ଯେ ତା ଅନ୍ତରରେ ଜାଗ୍ରତ ହୋଇଥିଲା, ଏବେ ଅବଶ୍ୟ ତାହା ସ୍ମରଣ କରିପାରୁନି ସତ, କିନ୍ତୁ ନିଭୃତ ଅନ୍ତର ଭିତରେ ତାର ଆକାଂକ୍ଷା ନିଶ୍ଚୟ ଥିଲା । ନୋହିଲେ ଏସବୁ ଘଟନ୍ତା କିପରି ? ଏହି ଅମୃତ ସଂଜାତ ହୋଇଥିଲା କେଉଁ ସିନ୍ଧୁ ମନ୍ଥନରେ ? ସାବିତ୍ରୀ କହୁଥିବା ଯାଏ ସେ ଏହି ସତ୍ୟଟି ବୁଝି-ପାରିଥିଲା ଯେ ଯୁବତୀ ରମଣୀର ମନ ପାଇବା ଗୋଟାଏ କଥା; କିନ୍ତୁ ସେ 'ପାଇବା'କୁ କାମରେ ଲଗେଇବା ଏକ ଭିନ୍ନ ବସ୍ତୁ । କାରଣ ପାଇବାଟା ଯେତେବେଳେ ନରନାରୀଙ୍କ ନିଭୃତ ହୃଦୟରେ ଗୋପନରେ ନିଃଶବ୍ଦରେ ସମ୍ପୂର୍ଣ୍ଣ ହୋଇ ଉଠିଥାଏ, ସେତେବେଳେ ବାହାର ସଂସାରେ ତାର ପ୍ରତିଧ୍ୱନି ପାଏନା । କିନ୍ତୁ ଯେଉଁଦିନ ଏହି ସଂସାରର ସମ୍ମତି ନ ନେଇ ଆଉ ପାଦେ-ହେଲେ ଆଗେଇବାର ଉପାୟ ନ ଥାଏ, ସେ ଦିନଟି ହିଁ ଦାରୁଣ ଦୁଃଖର ଦିନ । ଏଇ ପାଇବାଟା ଯେ କେତେ କଠିନ, ଏ ଭଲ ଯେ କେତେ ଦୁର୍ଲ୍ଲଭ, ବାହାରର ସଂସାର ଏ ବସ୍ତୁର ଆଡ଼କୁ ମୁହଁ ଫେରାଏନା । ସେ କେବଳ ତାର ଶାସ୍ତ୍ରକୁ ନେଇ ସମାଜ, ଲୋକାଚାରକୁ ନେଇ ବିରୁଦ୍ଧ କଳରବ କରିଥାଏ, ବାଧାଦେଇ ନିଷ୍ଫଳ କରିଥାଏ—ଏହା ହିଁ କେବଳ

ତାର କାମ । ସର୍ବୋଜୟାଙ୍କୁ ହିଁ ଏଇ ସେ ଭଲ ପାଏ । ସେ ଦିଗରେ ପ୍ରତିଦାନ ଯଦି ଏଭଳି ଉନ୍ମୁଖ ହୋଇ ରହିଥାଏ, ତାହାହେଲେ କାହାକୁ ସେ କେଉଁଠି ବା ପ୍ରତିଷ୍ଠା କରିବ ? ଉଦ୍‌ଭ୍ରମର ସମାଜ ଭିନ୍ନ ଭିନ୍ନ । ହେଇଟି କାଲି ତାର ବୃଦ୍ଧ ପିତାର ଚମକିତ ମୁହଁ ବାରମ୍ବାର ମନେପଡ଼ିଲା । ଉପୀନ୍‌ଦାଙ୍କ ଘରର ଶୁଷ୍କ ଭଣ୍ଡାରର୍ଯ୍ୟର ଶୁଷ୍କତର ତୀବ୍ରସ୍ୱର ସହସ୍ରବାର ତାର କାନରେ ଆସି ପଡ଼ିଛି—ସାହିର ସବୁ ଲୋକଙ୍କ ତୀବ୍ର ଶିରଶ୍ଚାଳନ ତାର ହୃତ୍‌ପିଣ୍ଡ ଉପରେ ବହୁବାର ଧକ୍‌କା ମାରିଛି; ତଥାପି ଏହି ବିଶୁଦ୍ଧ ଜଗତର ସବୁ ଲୋକଙ୍କ ସମ୍ମିଳିତ 'ନା ନା' ରବ ମଝିରେ କେବଳ ସର୍ବୋଜୟାର ଲଜ୍ଜାନତ ମୁହଁଟି ହିଁ ତାକୁ ସବଳ ରଖି ପାରିଥିଲା ।

କିନ୍ତୁ ଆଜି ଆଉ କୌଣସି ଭୟ ନାହିଁ । ଯାହାହେଉ ଏଇ ଦିନକ ମଧ୍ୟରେ ଅଚିନ୍ତନୀୟ ଉପାୟରେ ସମସ୍ତ ଗ୍ରନ୍ଥି ଓ ସମସ୍ତ ଦୁଶ୍ଚିନ୍ତାର ଶାନ୍ତି ହେଲା, ରକ୍ଷା ମିଳିଲା ।

ନିଜ ମନେ ମନେ ଏହି କଥା ଭାବି ଭାବି ସେ ମୁହଁ ଉଠେଇ ଚାହିଁ ଦେଖିଲା—ସମସ୍ତେ ଠିକ୍ ପୂର୍ବଭଳି ନୀରବରେ ଅଧୋବଦନରେ ବସି ରହିଛନ୍ତି । ସର୍ବୋଜୟା ମୁହଁ ଆଡ଼କୁ ସେ ଚାହିଁ ଦେଖିଲା ସତ, କିନ୍ତୁ କିଛି ହେଲେ ଦେଖାଗଲା ନାହିଁ । ସେ ତାକୁ ସମ୍ବୋଧନ କରି କହିଲା—ତୁମେ··· ଆପଣ ମୋର କଲିକତା ବସାରେ ଦିନେ ଯାହାର ଲୁଗା ଶୁଖାହେବାର ଦେଖି ଆସିଥିଲେ, ତାର ନାମ ହିଁ ସାବିତ୍ରୀ ! ମୁଁ ଭାବିଥିଲି, ଦିନେ ମୁଁ ଆପଣଙ୍କୁ ସବୁକଥା ଖୋଲି କହିଦେବି ବୋଲି; କିନ୍ତୁ କୌଣସି ଦିନ ସେ ସୁଯୋଗ ହେଲାନି, ସାହସ ବି ହେଲାନି । ଏତକ କହିସାରି ସେ ଠିଆ ହୋଇପଡ଼ି କହିଲା--ଜ୍ୟୋତିଷବାବୁ, ସବୁ ଦୋଷ ମୋର । ଏହି ଦୋଷକୁ ଜାଣିପାରିଥିଲି ବୋଲି ମୋ ମନରେ କୌଣସି ଦିନ ସୁଖ ନ ଥିଲା । ଟିକିଏ ଚୁପ୍ ରହିବା ପରେ କହିଲା—ମୁଁ କୌଣସି ଦିନ କାହାରିକୁ ଠକେଇନି ଜ୍ୟୋତିଷବାବୁ, ମତେ ଭୁଲ ମନେକରିବେନି । ଆଉ ମୋର କିଛି କହିବାର ନାହିଁ ।

ଜ୍ୟୋତିଷ ମୁଣ୍ଡ ଉଠେଇ କ'ଣ କହିବାକୁ ଯାଉଥିଲା; କିନ୍ତୁ ପାଟିରୁ କଥା ବାହାରିଲାନି ।

ସତୀଶ ମଧ୍ଯ ଗୋଟାଏ କଠିନ ଦୀର୍ଘନିଶ୍ୱାସ ସମ୍ବରଣ କରିବାର ଦେଖାଗଲା । କହିଲା—ଏଥର ମୁଁ ଯାଉଛି । ମୋର ଗୋଟିଏ ଅନୁରୋଧ, ମୋ କଥା ଆଲୋଚନା କରି ଆପଣମାନେ ମନ ଖରାପ କରିବେନି ! ମୁଁ କେବେ କୌଣସି ଛଳନାରେ ଆଉ ଆପଣମାନଙ୍କ ସାମନାରେ ଆସି ଠିଆହେବିନି । ମତେ ଆପଣମାନେ ଭୁଲିଯିବେ । ଏତିକି କହି ସେ ଧୀରେ ଧୀରେ ବାହାରି ହୋଇଗଲା ।

ଜ୍ୟୋତିଷ ଏପାଖକୁ ଚାହିଁ ଦେଖିଲା—ସରୋଜିନୀର ମୁଣ୍ଡଟା ଏକା-ବେଳକେ ତାର ଆଣ୍ଠୁ ପାଖକୁ ନଇଁଯାଇଛି । ଆଲୋ ଏ ସରୋ··· କହି ପାଟିକରି ଉଠୁ ନ ଉଠୁଣୁ ସରୋଜିନୀର ଶିଥିଳ ମୂର୍ତ୍ତି ଚେୟାରର ହାତରୁ ସ୍ଖଳିତ ହୋଇ ସେ ତଳେ କାର୍ପେଟ ଉପରେ ଅଚେତ ହୋଇ ପଡ଼ିଗଲା । ଅଭିମାନ ଓ ଅପମାନର କ୍ରୋଧରେ ଜ୍ୟୋତିଷର ବୁଦ୍ଧି ଏଭଳି ଆଚ୍ଛନ୍ନ ହୋଇପଡ଼ିଥିଲା ଯେ ସତୀଶର ବିଦାୟ-ପାଳିଟା ସରୋଜିନୀର ସାକ୍ଷାତରେ ଘଟିଲେ ଯେ ଆଘାତ କେତେ ମର୍ମନ୍ତୁଦ ହେବ, ଏ ହିସାବ ତାର ମନେ ନ ଥିଲା ।

ସେଇଥିଲାଗି ବହୁ ସମୟ ଧରି ସେବାଶୁଶ୍ରୂଷା ପରେ ସରୋଜିନୀର ଚେତନା ଫେରିଆସିବାରୁ ସେ ଯେତେବେଳେ କମ୍ପି କମ୍ପି ଟଳି ଟଳି ଘର ଛାଡ଼ି ଚାଲିଗଲା, ସେତେବେଳେ ଜ୍ୟୋତିଷ ମୁଣ୍ଡରେ ମନେହେଲା କିଏ ଗୋଟାଏ ପଥର ଛେଚି ଦେଇ ଚାଲିଗଲା ।

ଜ୍ୟୋତିଷ କେବଳ ଯେ ଭଉଣୀକୁ ପ୍ରାଣାଧିକ ଭଲ ପାଏ ତାହା ନୁହେଁ, ତା ଭଳି ରୂପଲାବଣ୍ୟବତୀ ଶିକ୍ଷିତା ଭଉଣୀର ଦୃପ୍ତ ଆତ୍ମମର୍ଯ୍ୟାଦା ଜ୍ଞାନ ଉପରେ ମଧ୍ଯ ତାର ଅଗାଧ ବିଶ୍ୱାସ ଥିଲା । କିନ୍ତୁ ଭିତରେ ଭିତରେ ସେ ଏତେ ଭଲ ପାଇପାରେ ଏବଂ ଏସବୁ କୌଣସି କାମରେ ଲାଗିବ ନାହିଁ, ସବୁ କଥା ଜାଣି ସୁଦ୍ଧା ଗୋଟାଏ ଚରିତ୍ରହୀନ ଲମ୍ପଟ ପରମ ଅନ୍ୟାୟୀର ପାଦତଳେ ସମସ୍ତ ବିସର୍ଜନ ଦେଇ ଚେତନା ହରାଇ ସରୋଜିନୀ ଯେ ଶୁଷ୍କ ତୃଣ ଭଳି ଲୋଟିପଡ଼ିବ, ଏ ଆଶଙ୍କା ସେ କଳ୍ପନା ସୁଦ୍ଧା କରି ନ ଥିଲା । ମୁହଁ ଉପରେ ବେଦନାର ଯେଉଁ ଛବି ସେ ଏହିକ୍ଷଣି ଦେଖିବାକୁ ପାଇଲା, ତାହା ଯେ କେତେ ବଡ଼, ତାହା ନିରୂପଣ କରିବାର ଶକ୍ତି ଏବଂ ଅଭିଜ୍ଞତା ତାର ନ ଥିଲା; ତଥାପି ସେ ବହୁକ୍ଷଣ ଧରି ଚୁପ୍‌ଚାପ୍

ବସିରହିବା ପରେ ଶଶାଙ୍କମୋହନ ପ୍ରତି ଗୃହିଁ କହିଲା—ଆପଣ ବୋଧହୁଏ ଆଜି ରାତି ଟ୍ରେନ୍‌ରେ କଲିକତା ଫେରିଯିବେ ?

ଶଶାଙ୍କ କହିଲା—ନା, ସେଭଳି କିଛି ଜରୁରି କାମ ନାହିଁ ସେଠି ।

ଜ୍ୟୋତିଷ ଆଉ କୌଣସି ପ୍ରଶ୍ନ ନ କରି ଉଠିପଡ଼ି ଭିତରକୁ ଗୁଲିଗଲା ଏବଂ ନିଜ ଘରେ ଦୁଆର ଦେଇ ଶୋଇପଡ଼ିଲା । ସେ ରାତିର ଡିନର୍‌ଟା ଶଶାଙ୍କ ଏକା ଏକା ଖାଇବାକୁ ପଡ଼ିଲା ! କାରଣ ଜ୍ୟୋତିଷର କୌଣସି ସମ୍ବାଦ ମିଳିଲା ନାହିଁ ।

ଜଗତ୍‌ତାରିଣୀ ଗୋଟି ଗୋଟି କରି ପୁଅ ମୁହଁରୁ ସବୁ କଥା ଶୁଣି ଗଭୀର ଦୀର୍ଘଶ୍ୱାସ ତ୍ୟାଗକରି ବହୁ ସମୟ ଧରି ସ୍ତବ୍ଧ ହୋଇ ରହିଲେ । ତା ପରେ କହିଲେ – ଏସବୁ ମୋର ପୋଡ଼ା କପାଳର ଫଳ ଜ୍ୟୋତିଷ ! ପରଲୋକ-ଗତ ସ୍ୱାମୀଙ୍କୁ ସ୍ମରଣ କରି କହିଲେ—ନିଜେ ତ ସାରା ଜୀବନ ଜଳିପୋଡ଼ି ମଲ, ବାକି ଟିକିକ ପିଲିପିଲିଙ୍କ ଲାଗି ଯଦି ନ ଜଳିବ ତ ଷୋଳଅଣା ପାପର ପ୍ରାୟଶ୍ଚିତ୍ତ କିପରି ହେବ ? ବେଶ୍ ବାପା ! ତୋର ଯାହାକୁ ପସନ୍ଦ ହେଉଛି, ତା ସହିତ ଭଉଣୀର ବିବାହ କରିଦେ । ମୁଁ ଆଉ ପଦେ ବି କଥା କହିବିନି । ଆଉ ଏକ ଦୀର୍ଘଶ୍ୱାସ ମୋଚନ କରି କହିଲେ— ମନ ହେଉଛି ଅନ୍ତର୍ଯାମୀ; ତେଣୁ ହଠାତ୍ ତାର ଆସିବା କଥା ଶୁଣି ଚମକି ଉଠିଥିଲି ଜ୍ୟୋତିଷ !

କିନ୍ତୁ ଜ୍ୟୋତିଷ କିଛିହେଲେ କହିଲାନି । ସେ ମନେ ମନେ ବୁଝିଥିଲା ଯେ ଘଟଣାଟା ଏତେ ସହଜ ନୁହେଁ । ତେଣୁ ଯାହା ହୋଇ-ଯାଇଛି, ତାହା ତ ଗୁଲିଗଲାଣି କିନ୍ତୁ ଆଖିବୁଜି ବସିରହିଲେ ଚଳିବନି । ହୁଏତ ବା ଦିନେ ଏହି ଚରିତହୀନଟାକୁ ହିଁ ନିଜେ ଯାଇ ଅନୁନୟ ବିନୟ କରି ଫେରାଇ ଆଣିବାକୁ ପଡ଼ିବ ।

କାଲି ଦିନଟାଯାକ ସେ ସରୋଜିନୀକୁ ଥରେ ବି ଘରୁ ବାହାରକୁ ଆସିବାର ଦେଖିନି । କିନ୍ତୁ ଆଜି ସନ୍ଧ୍ୟାବେଳେ ଗୁହା ଖାଇବାକୁ ବାହାର ଘରେ ଆସି ପହଞ୍ଚିବା ମାତ୍ରେ ଦେଖିଲା, ସରୋଜିନୀ ଇତି ପୂର୍ବରୁ ଆସି ପହଞ୍ଚିଛି ଏବଂ ଶଶାଙ୍କ ସହିତ ଆସ୍ତେ ଆସ୍ତେ କଥାବାର୍ତ୍ତା ହେଉଛି । ଜ୍ୟୋତିଷ ପାଖକୁ ଆସି ଗୋଟାଏ ଚୌକି ଟାଣିନେଇ ବସିଲା । ଯଦିଓ ଭଉଣୀର

ମଲନ ଶ୍ରୀମାନ ମୁହଁକୁ ଚାହିଁ ତାର ବୁଝିବାକୁ କିଛି ବାକି ରହିଲାନି, ତଥାପି ବୁକୁ ଉପରୁ ଏକ ଓଜନିଆ ପଥର ଖସିଗଲା ଭଳି ସେ ମନେକଲା ।

ଖିଆପିଆ ସରିବା ପରେ ବହୁତ ସମୟ ପାଏଁ କଥାବାର୍ତ୍ତା ହେଲା ସତ; କିନ୍ତୁ ସେଦିନ ଯାହା ଯାହା ଘଟିଗଲା, ତାର କୌଣସି ସୂଚନା କେହି କିଛି ଦେଲେ ନାହିଁ । ସନ୍ଧ୍ୟା ପରେ ସ୍ୱଚ୍ଛନ୍ଦ ଚିତ୍ତରେ ଭଉଣୀକୁ ଚାଲିଯିବାର ଦେଖି ଜ୍ୟୋତିଷ ମନେ ମନେ କହିଲା—ଦୁର୍ଘଟଣାକୁ ସେ ଯେତେ ବଡ଼ ବୋଲି ଭାବିଥିଲା, ସେତେ ବଡ଼ ନୁହେଁ । ହୁଏତ ଅଳ୍ପ କିଛି ଦିନ ପରେ ପୁଣି ସବୁ ଠିକ୍‌ଠାକ୍ ହୋଇଯିବ—ଏ ଆଶା ତା ମନରେ ଜାଗ୍ରତ ହେଲା ।

ସେଦିନ ଅନେକ ରାତି ପର୍ଯ୍ୟନ୍ତ ଦୁଇ ବନ୍ଧୁଙ୍କ ଭିତରେ ଆଳାପ ଆଲୋଚନା ଚାଲିଲା—ଏଭଳି କି ଜ୍ୟୋତିଷ ତାର ଉଦ୍ଦେଶ୍ୟଟା ମଧ୍ୟ ଇଙ୍ଗିତରେ ବ୍ୟକ୍ତକଲା । ବସ୍ତୁତଃ ସରୋଜିନୀ ଯେ ତାର ପ୍ରଥମ ଝଞ୍ଜାଟାକୁ ସମ୍ଭାଳିନେବା ପରେ ମଧ୍ୟ ସଞ୍ଜୀବର ଏତେ ବଡ଼ ଘୃଣିତ ଆଚରଣ ସହିତ ମନେ ମନେ ଶଶାଙ୍କମୋହନକୁ ତୁଳନା କରି ଯେ ଦେଖିବନି, ଏହା ଏକପ୍ରକାର ଅସମ୍ଭବ ବୋଲି ଉଭୟଙ୍କ ର ମନେହେଲା ।

ତା ପରଦିନ ଦିପହରେ ଖିଆପିଆ ପରେ ସରୋଜିନୀ ତାର ଉପର ଘରର ଖୋଲା ଝରକା ପାଖରେ ଗୋଟାଏ ଚୌକି ଟାଣିନେଇ ବସିଥିଲା । ହଠାତ୍ ମନେହେଲା କିଛି ଦୂରରେ ଗୋଟାଏ ବୋଝେଇ ଶଗଡ଼ ପଡ଼ିଛି ଯେଉଁ ଦୁଇ ଜଣ ଛତା ଧରି ଚାଲିଛନ୍ତି, ସେମାନଙ୍କ ମଧ୍ୟରୁ ଜଣେ ହେଉଛି ବେହାରୀ । ସରୋଜିନୀ ସତର୍କ ହୋଇ ରେଲିଂ ଧରି ଉଠି ଠିଆହେଲା । ଶଗଡ଼ଟା କ୍ରମଶଃ ତାର ଝରକା ପାଖକୁ ଆସିବା ମାତ୍ରେ ଜଣେ ଲୋକ ମୁହଁ ଉଠେଇ ଚାହିଁବାରୁ ସ୍ପଷ୍ଟ ଦେଖାଗଲା, ସେ ବେହାରୀ । ସରୋଜିନୀ ହାତ ହଲେଇ ଡାକିବାମାତ୍ରେ ବେହାରୀ ଅନ୍ୟ ଲୋକକୁ 'ତୁମେ ଯାଉଥା', ମୁଁ ଆସୁଛି' କହି ଛତାଟାକୁ ବନ୍ଦ କରି ଝରକା ତଳକୁ ଆସି ଠିଆହେଲା । ସରୋଜିନୀ କହିଲା— ଘର ଭିତରକୁ ପଶିବା ମାତ୍ରେ ବାଁ ପାଖରେ ସିଡ଼ି, ଉପରକୁ ଆସ ।

ସେତେବେଳେ ଘରେ ସମସ୍ତେ ଦିବାନିଦ୍ରାରେ ନିଦ୍ରିତ । ବେହାରୀ ଧୀରେ ଧୀରେ ସିଡ଼ି ଦେଇ ସରୋଜିନୀର ଉପର ଘର ଭିତରକୁ ପଶି ତାକୁ

ପ୍ରଣାମ କରି ପାଦର ଧୂଳି କଲ୍ପରେ, କଣ୍ଠରେ ଓ ମଥାରେ ଲଗାଇଲା ।

ସତ୍ୟେନ୍ଦ୍ରନାଥ ମନେ ମନେ ତାଙ୍କୁ ଆଶୀର୍ବାଦ କରି କହିଲା—ତୋର ଗାଡ଼ି ତ ସେଇ ରାତି ଏଗାରଟା ପରେ । ବହୁତ ସମୟ ଅଛି । ପୂଜାରୀ ତ ସାଙ୍ଗରେ ଅଛି । ସେ ଜିନିଷପତ୍ର ଓହ୍ଲାଇ ଦେଇ ପ୍ଲାଟଫର୍ମରେ ରଖିଦେଇ ପାରିବ । ତୁ ଟିକିଏ ବସ ।

ପରସ୍ପରର ନ କରି ମଧ୍ୟ ସେ ବୁଝିଥିଲା ଯେ ଯଣ୍ଡାଶ ଏଠିକାର ବସା ଛାଡ଼ି ଅନ୍ୟତ୍ର ଚାଲିଯାଉଛି । ବେହାରା ତାର ଗାମୁଛାରେ କପାଳର ଝାଳ ପୋଛି ବେଞ୍ଚ ଉପରେ ବସିଲା । କିଛି ସମୟ ସ୍ଥିର ରହିବା ପରେ ସତ୍ୟେନ୍ଦ୍ରନାଥ କହିଲା—ଆଚ୍ଛା ବେହାରା, ତୁ ତ କେବେ ବ୍ରାହ୍ମଣଝିଅ ପାଖରେ ମିଛ କଥା କହୁନା ।

ବେହାରା ଜିଭ କାଟି କହିଲା—ବାପ ରେ ମିଛ ! ତାହାହେଲେ ଆଉ କ'ଣ ରକ୍ଷା ମିଳିବ ବାବୁ ! ସାତ ଜନ୍ମଧରି କାଶୀବାସ କଲେ ମଧ୍ୟ ଏ ପାପର ମୋକ୍ଷ ହୋଇପାରିବନି ।

ସତ୍ୟେନ୍ଦ୍ରନାଥ ସ୍ନିଗ୍ଧ ଦୃଷ୍ଟିରେ ଏଇ ପଲ୍ଲୀବାସୀ ଧର୍ମଭୀରୁ ବୃଦ୍ଧ ମୁଖପ୍ରତି ଚାହିଁ କହିଲା— ସେ କଥା ତ ମୁଁ ଜାଣେ ବେହାରା, ତୁ କେବେ ମିଛ କହୁନା; କିନ୍ତୁ ଯାହା ପଚାରିବି, ସେ କଥା ତୁ କାହାରି ପାଖରେ କହିବୁନି ଯେମିତି । ତୋ ମୁନିବ ପାଖରେ ବି ନୁହେଁ । ବେହାରା କହିଲା—ମୋର ଦରକାର ବା କ'ଣ କାହା ପାଖରେ ଏସବୁ କହିବାର !

ସତ୍ୟେନ୍ଦ୍ରନାଥ ଟିକିଏ ମୌନ ରହିବା ପରେ ଅସଲ କଥା ପକେଇଲା । ପଚାରିଲା—ସାବିତ୍ରୀ ଝିଅଟି କିଏ ବେହାରା ?

ବେହାରା ସତ୍ୟେନ୍ଦ୍ରନାଥ ମୁହଁକୁ ଚାହିଁ କହିଲା—ଆମର ସାବିତ୍ରୀ ମାଆଙ୍କ କଥା ପଚାରୁଛ ତ ବାବୁ ? ଜାଣେନା ବାବୁ, ମା ଜନମ ମୋର କାହା ଶାପରେ ପୃଥିବୀରେ ଜନ୍ମଗ୍ରହଣ କରି ଏତେ ଦୁଃଖ ପାଉଛନ୍ତି ! ଆହା ମା ଯେମିତି ଲକ୍ଷ୍ମୀ ପ୍ରତିମା !

ଇତି ମଧ୍ୟରେ ବହୁଦିନ ବିତି ଯାଇଥିଲେ ମଧ୍ୟ ବେହାରା ସାବିତ୍ରୀ ନାଁଟି ସୁଦ୍ଧା ମୁହଁରେ ଉଚ୍ଚାରଣ କରିବାର ସୁଯୋଗ ପାଇନଥିଲା । ତାର କଣ୍ଠସ୍ୱର ଗଦ୍‌ଗଦ୍ ଏବଂ ଆଖିର ଦୃଷ୍ଟି ଅଶ୍ରୁଜଳରେ ଝାପ୍‌ସା ହୋଇଉଠିଲା ।

ପାର୍ବତୀ କଥା ଉଠିବାମାତ୍ରେ ବୃଦ୍ଧାର ଏତେଟା ଭାବାନ୍ତର ଲକ୍ଷ୍ୟକରି ସରୋଜକମ ବିସ୍ମିତ ହୋଇଉଠିଲା ।

ବୈଦ୍ୟନାଥ ହାତରେ ଆଖିପୋଛି କହିଲା—ମା ଯେଉଁଦିନ ରାଖାଲ-ବାବୁଙ୍କ ମେସକୁ ଦାସୀବୃତ୍ତି କରିବାକୁ ଆସିଲେ, ସେତେବେଳେ ମେସର ଲୋକେ ଦେଖି ଅବାକ୍ ହୋଇଉଠିଲେ । ମୁହଁରେ ଯେଉଁଭଳି ହସ ଲାଗି ରହିଥିଲା । ରାଖାଲବାବୁ ମ୍ୟାନେଜର, ଆଉ ମୁଁ ଥିଲି ଚାକର । କିନ୍ତୁ ମା'ଙ୍କ ପାଖରେ ସମସ୍ତେ ସମାନ । ସମସ୍ତଙ୍କୁ ସମାନ ଯତ୍ନ । ଏକାଦଶୀ ଦିନ କାଠୁଆ ଉପବାସ କରି ବି କେବେହେଲେ ମା'ଙ୍କ ମୁହଁରେ ବିରକ୍ତ ଭାବ ଦେଖିନି ଦିଦି !

ବୃଦ୍ଧ ଯେଉଁଭଳି ଆନ୍ତରିକ ଭାବରେ ସବୁ କଥା କହୁଥିଲା । ତେଣୁ ତାର ଏଇ ଅକୃତ୍ରିମ ଭକ୍ତି ଉଚ୍ଛ୍ୱାସରେ ସରୋଜକମ ମୁଗ୍‌ଧ ହୋଇଉଠିଲା ଏବଂ ତାର ବିଦ୍ୱେଷର ଜ୍ୱାଳା ଅର୍ଦ୍ଧେକ ଯେଉଁଭଳି ତରଳି ଝରିପଡ଼ିଲା । ବୈଦ୍ୟନାଥ କହିଚାଲିଲା—ଦିଦି, ଶାସ୍ତ୍ରରେ ଲେଖାଅଛି ମା ଲକ୍ଷ୍ମୀ କ'ଣ ଗୋଟାଏ କେଜାଣି ଅପରାଧ କରି ନାରାୟଣଙ୍କ ହୁକୁମରେ ଦାସୀବୃତ୍ତି କରିବାକୁ ପଡ଼ିଥିଲା । ଆମର ମା ମଧ୍ୟ ସେଉଁଭଳି କୌଣସି ଦୋଷରେ ଚାକରୀ କରିବାକୁ ଆସି ନାନା ଦୁଃଖ କଷ୍ଟ ପାଇ ଶେଷରେ ଚାଲିଗଲେ । ଯେଉଁଦିନ ଚାଲିଗଲେ, ସେ ଦିନଟି ମୋ ବୁକୁ ଭିତରେ ଆଜି ବି ଯେମିତି ଗୁନ୍ଥାହୋଇ ରହିଛି ଦିଦି !

ସରୋଜକମ ଆସ୍ତେ ଆସ୍ତେ ପ୍ରଶ୍ନକଲା—ସେ ଏବେ କେଉଁଠି ଅଛନ୍ତି ବୈଦ୍ୟନାଥ ?

ବୈଦ୍ୟନାଥ ଏ ପ୍ରଶ୍ନର ସହସା ଉତ୍ତର ଦେଲାନି । ମୁହଁକୁ ଚାହିଁ ଚୁପ୍ ରହିଲା ।

ସରୋଜକମ ପୁଣି ପଚାରିଲା—ଜାଣୁନା ବୈଦ୍ୟନାଥ ?

ବୈଦ୍ୟନାଥ ଏଥର ମୁଣ୍ଡ ହଲେଇ କହିଲା – ଅବଶ୍ୟ ଠିକ୍ ଜାଣେନା, କିନ୍ତୁ ତଥାପି ଜାଣେ । କିନ୍ତୁ ସେ କଥା ଜଣେଇବାକୁ ଯେ ମା ମତେ ମନା କରିଛନ୍ତି । ମୁଁ ତ କେବେ କହିପାରିବିନି ।

ସରୋଜକମ ପଚାରିଲା—ମନା କାହିଁକି ?

ମନା ଯେ କାହିଁକି, ତାହା ବୈଦ୍ୟନାଥ ନିଜେ ଭାବି ବି ଠିକ୍ କରି-ପାରିଲାନି । ତଥାପି ଏଇ ନିଷେଧ ତାକୁ ଚିରଦିନ ମାନି ଚଳିବାକୁ ପଡ଼ିବ !

ମା କିଭଳି ଅଛି ଜାଣିବାକୁ ନ ପାଇ ତାକୁ ଏ ଜୀବନରେ ପୁଣି ଆଉଥରେ ଆଖିରେ ଦେଖିବାକୁ ତାର ଯେଉଁ ବ୍ୟଗ୍ରତା, ତାହା ସେ ନିଜେ ଜାଣେ । ବିଶେଷ କରି ଯେଉଁଠି କଥାବାର୍ତ୍ତାରେ ତାର ମା ବିରୁଦ୍ଧରେ ସନ୍ତୋଷର ତୀବ୍ର କୁତ୍ସିତ ଇଙ୍ଗିତ ପ୍ରକାଶ ପାଏ, ସେଇଠି ତା ମନ ଭିତରେ ଆବେଗର ଝଡ଼ ବହିଯାଏ । ତଥାପି ବୁଢ଼ା ଆଜିପର୍ଯ୍ୟନ୍ତ ତାର ଶପଥ ଭଙ୍ଗ କରିନି । ଯଦି କୌଣସି ଦିନ ଅସହ୍ୟ ବୋଧ ହୋଇଛି, ସେତେବେଳେ ସେ ଏଇ-କଥା ହିଁ ସ୍ମରଣ କରେ ଯେ ସାବିତ୍ରୀ ଯେତେବେଳେ ନିଜେ ଏତେ ବଡ଼ କଳଙ୍କ ନୀରବରେ ସହ୍ୟ କରିଛି, ତେବେ ଭିତରେ ଏଭଳି କିଛି କଥା ଅଛି, ଯାହା କି ତାର ବୁଦ୍ଧିର ଅଗୋଚର । ସାବିତ୍ରୀ ପ୍ରତି ତାର ବିଶ୍ୱାସ ଓ ଶ୍ରଦ୍ଧାର ଅନ୍ତ ନ ଥିଲା ।

କିନ୍ତୁ ଏବେ ଆଉ ଜଣେ ଯେତେବେଳେ ସେ କଥା ଜାଣିବା ଲାଗି ଇଚ୍ଛା ପ୍ରକାଶ କରିବାକୁ ଲାଗିଲା, ସେତେବେଳେ ସମସ୍ତ ଘଟଣା କହି-ଦେବାକୁ ତାର ପ୍ରାଣ ଆକୁଳ ହୋଇଉଠିଲା । କିଛି ସମୟ ଚୁପ୍ ରହିବା ପରେ କହିଲା—କହି ଦେଇପାରେ ଦିଦି, ତୁମେ ଯଦି ଆମର ବାବୁଙ୍କୁ କେବେ ନ କୁହ ।

ସରୋଜିନୀ ମନେ ମନେ ବଡ଼ ଆଶ୍ଚର୍ଯ୍ୟ ହୋଇଉଠିଲା । ବେହାରୀ ସବୁ କଥା ଜାଣେ ଅଥଚ ସନ୍ତୋଷ ଜାଣେନା ଏବଂ ତାକୁ ଜଣେଇବାକୁ ବିଶେଷ କରି ସାବିତ୍ରୀ ନିଷେଧ କରିଛି, ତାର କାରଣ ସେ ଭାବି ପାରିଲାନି । କହିଲା—ନା, ବେହାରୀ ! ମୁଁ କାହାରିକୁ କହିବନି, ତୁ କହ ।

ବେହାରୀ ଦୁଇ ମିନିଟ କାଳ ସମ୍ପୂର୍ଣ୍ଣ ନିସ୍ତବ୍ଧ ରହିବା ପରେ ବୋଧହୁଏ ଚିନ୍ତାକରି ଦେଖିନି, ଏଥିରେ ମିଥ୍ୟାର ପାପ ତାକୁ ସ୍ପର୍ଶ କରିବ କି ନା ! ତା ପରେ ଧୀରେ ଧୀରେ ସମସ୍ତ ଇତିହାସ ସେ କହିବାକୁ ଲାଗିଲା ।

ସାବିତ୍ରୀ ଯେ ସନ୍ତୋଷଙ୍କୁ ପ୍ରଣାଧିକ ଭଲ ପାଏ ଏବଂ ଏଇଥିଲାଗି ଯେ ବ୍ରଜଲାଲବାବୁଙ୍କ ଗାଳିଦାଳି ହେଲା ଏବଂ ସେ ଝଗଡ଼ା କରି ବାବୁଙ୍କୁ ବସାରୁ ଚାଲିଯିବାକୁ ବାଧ୍ୟ କଲେ, ସନ୍ତୋଷବାବୁ ଯେ ମଝି ମଝିରେ ମଦ ଖାଆନ୍ତି ଇତ୍ୟାଦି କୌଣସି କଥା ସେ ଗୋପନ ରଖିଲାନି ।

ସରୋଜନୀ ମନ୍ତ୍ରମୁଗ୍ଧ ଭଳି ସବୁ କଥା ବସି ଶୁଣିଲା । ବୋଧହୁଏ ଏଭଳି ଏକାଗ୍ରଚିତ୍ତରେ ଏଭଳି ମନୋଯୋଗ ସହିତ ଆଉ କେହି କାହା କଥା କେବେ ଶୁଣି ନ ଥିବ । ଯେଉଁ ଗୋଖାଲବାବୁ ପାଖରୁ ଶଶାଙ୍କମୋହନ ଖବର ସଂଗ୍ରହ କରିଥିଲେ, ସେ ଲୋକଟିର ଇତିହାସ ସରୋଜନୀ ପାଖରେ ଅଜ୍ଞାତ ରହିଲାନି ।

ସାବିତ୍ରୀର ଘର କେଉଁଠି, ତାର ପିତୃକୁଳ ବା ଶ୍ୱଶୁରକୂଳର ପରିଚୟ କ'ଣ, ସେସବୁର ସନ୍ଧାନ ବେହାରା ନ ଦେଇପାରିଲେ ମଧ୍ୟ ସେ ଯେ ବ୍ରାହ୍ମଣଘରର ଝିଅ, ବିଧବା, ସୁରୂପା, ଶିକ୍ଷିତା—କେବଳ ଭାଗ୍ୟର ବିଡ଼ମ୍ବନାରେ ଦାସୀବୃତ୍ତି କରିବାକୁ ଆସିଥିଲା, ଏକଥା ସେ ବାରମ୍ବାର କହିଚାଲିଲା । ପ୍ରକୃତରେ ମା ବାବୁଙ୍କୁ ଭାରି ଭଲ ପାଉଥିଲେ; ତଥାପି ବାବୁ ମା'ଙ୍କୁ ଯେମିତି ବାଘ ଭଳି ଭୟ କରୁଥିଲେ । ମଦ ଖାଇ ବସାକୁ ଆସିବା ଲାଗି ସେ ସାହସ କରିପାରୁ ନ ଥିଲେ । ବିପିନବାବୁ ବୋଲି ବାବୁଙ୍କର ଜଣେ ବଜାରୀ ସାଙ୍ଗ ଥିଲେ । ତାଙ୍କ ସହିତ ମିଶି ବାବୁ ଗାନବାଜଣା କରନ୍ତି ଏବଂ ତାଙ୍କର ଜୋର ଜବରଦସ୍ତିରେ ସେ ଏକ କୁସ୍ଥାନକୁ ଯାଉଥିଲେ— ମା'ଙ୍କ କାନରେ ଏକଥା ଯେଉଁଦିନ ପଡ଼ିଲା, ସେଇ ଦିନଠୁ ବାବୁଙ୍କର ସେଠିକି ଯିବା ଏକାବେଳକେ ବନ୍ଦ । ସାବିତ୍ରୀ ମା'ଙ୍କୁ ଲୁଚାଇକରି ସେଠିକି ଯିବା ଭଳି କ୍ଷମତା ତାଙ୍କର ନ ଥିଲା । ଏତିକ କହି ବେହାରା ସଗର୍ବେ ସରୋଜନୀ ମୁହଁକୁ ଚାହିଁଲା ।

ସତୀଶ ଉପରେ ଆଉ ଜଣେ ନାରୀର ଏତେ ବଡ଼ ଅଧିକାର ସମ୍ବାଦ ସରୋଜନୀ ବୁକୁ ଭିତରେ କଣ୍ଟା ଭଳି ବିନ୍ଧିଲା; ତଥାପି ସେ ଧୀରେ ଧୀରେ ପ୍ରଶ୍ନ କଲା--ଆଚ୍ଛା ବେହାରା, ସତୀଶବାବୁ ତାକୁ ଏତେ ଭୟ କରିବାର ଦରକାର କ'ଣ ବା ଥିଲା ? ବେହାରା ଯେମିତି ବୁଝିଥିଲା, ସେମିତି କହିଲା--ଆମର ମା' ଭୟାନକ ଲୋକ ଥିଲେ ଦିଦି ! ଖାଲି ଆମ ବାବୁ ନୁହନ୍ତି, ବସା ଗୋଟାକଯାକ ଲୋକ ତାଙ୍କୁ ବଡ଼ ଭୟ କରୁଥିଲେ । ଦିନକର କଥା । ସେଦିନ ବହୁତ ରାତି ହୋଇ ଯାଇଥାଏ । ବାବୁ କୁଆଡ଼େ ମଦ ଖାଇ ଆଉ ଗୋଟାଏ ମଦ ବୋତଲ ସାଙ୍ଗରେ ଧରି ଘରକୁ ଫେରିଲେ । ଭାବିଥିଲେ ସାବିତ୍ରୀ ମା ତାଙ୍କର କାମଦାମ ସାରି ଘରକୁ ଫେରି ଯାଇଥିବେ । ମୁଁ ଚେଇଁଥିଲି, ଦୁଆର ଖୋଲିଦେଲି । ବାବୁ ପଚାରିଲେ—ସାବିତ୍ରୀ ଚାଲି-ଗଲାଣି ବେହାରା ! କହିଲି—ନା ବାବୁ, ଆଜି ସେ ଯାଇ ନାହାନ୍ତି, ଏଇଠି

ଅଛନ୍ତି । ଏହା ଶୁଣିଲାମାତ୍ରେ ମଦ ବୋତଲ ଗ୍ଲାସରେ ଫୋପାଡ଼ିଦେଇ ଆସ୍ତେ ଆସ୍ତେ ଚୋରଙ୍କ ଭଳି ବସାରେ ପଶିଗଲେ । ଭୟରେ ନିଶା ଫିଶା ଆଖିପଲକରେ କୁଆଡ଼େ ଚାଲିଗଲା । କହିଲ ଭଲା ଦାଦା, ସାବିତ୍ରୀ ମା ଛଡ଼ା ଆଉ କିଏ ବାବୁଙ୍କୁ ଶାସନ କରିପାରନ୍ତା !

ସରୋଜିନୀ କିଛି ସମୟ ନୀରବରେ ବସିରହିବା ପରେ କହିଲା—ସତୀଶବାବୁ କ'ଣ ଏବେ ବି ମଦ ଖାଆନ୍ତି ବେହାରୀ ?

ବେହାରୀ ମୁଣ୍ଡ ହଲାଇ କହିଲା—ନା ! କିନ୍ତୁ ଆଉଥରେ ଆରମ୍ଭ କରିବାକୁ ବା କେତେ ସମୟ । ସେଇଥିପାଇଁ ତ ଦି'ଦିନ ହେଲା ଭାବୁଚି, ଦୁଃସମୟରେ ଆମର ସାବିତ୍ରୀ ମା ଯଦି ଆସନ୍ତେ !

ସରୋଜିନୀ ଉତ୍ସୁକ ହୋଇ ପଚାରିଲା—କାହିଁକି ବେହାରୀ ?

ବେହାରୀ କହିଲା—ମୁଁ ବରାବର ଲକ୍ଷ୍ୟକରି ଆସିଚି, ବାବୁଙ୍କ ମନ ଖରାପ ହୋଇଆସିଲେ ମଦ ଖାଇବା ଆରମ୍ଭ କରିଦିଅନ୍ତି । ସେଇ ଜଣେ ଉପୀନବାବୁଙ୍କୁ ସେ ଯାହା ଭୟ କରନ୍ତି; କିନ୍ତୁ ଗଲ କେତେ ଦିନ ହେଲା କାହିଁକି କେଜାଣି ତାଙ୍କ ସହିତ କ'ଣ କିଛି ହୋଇଯାଇଛି । ସେ ଦିନ ରାତିରେ ହଠାତ୍ ବସା ଭିତରକୁ ପଶିଆସି ସାବିତ୍ରୀ ମା'ଙ୍କୁ ଦେଖିଦେଇ ଚାଲିଗଲେ, ଆଉ ଆସି ନାହାନ୍ତି । ତେବେ କହିଲ ଦେଖି ଦାଦା, ମା ଛଡ଼ା ବାବୁଙ୍କୁ କିଏ ଆଉ ସମ୍ଭାଳିପାରିବ ?

ଟିକିଏ ଥମିଯିବା ପରେ ପୁଣି ସେ କହିଲା—ଦେହ ଖରାପ ଖବର ପାଇବା ପର୍ଯ୍ୟନ୍ତ ଏଇ ପାଞ୍ଚ ଛଅ ଦିନ ବାବୁଙ୍କର ଯେ କିଭଳି କଟିଛି, ତା ତ ମୁଁ ନିଜ ଆଖିରେ ଦେଖିଲି । ପଅରିଦିନ ନିଦରୁ ଉଠି ତାର ପାଇ ସେଇ ଯେ ମୁହଁକୁ ପୋତି ବସିପଡ଼ିଲେ, ଆଉ ଉଠିଲେନି । ତା ପରେ ରାତି ଗାଡ଼ିରେ ଗାଁକୁ ଚାଲିଗଲେ । ମତେ ଖାଲି କହିଦେଇ ଗଲେ, ବେହାରୀ; ତୁ ସବୁ ଜିନିଷ ରଖାରଖି କରିଦେଇ ଗାଁକୁ ଚାଲିଆ ।

ସରୋଜିନୀ ଉଦ୍‌ବିଗ୍ନ ହୋଇ ପଚାରିଲା—କାହାର ଦେହ ଖରାପ ?

ବେହାରୀ ଆଶ୍ଚର୍ଯ୍ୟ ହୋଇ କହିଲା—ଯିବା ବାଟରେ ବାବୁ କ'ଣ ଆପଣମାନଙ୍କୁ କିଛି ହେଲେ କହିଯାଇ ନାହାନ୍ତି ?

ସରୋଜିନୀ ମୁଣ୍ଡ ହଲାଇ କହିଲା—ନା ତ ? କାହାର ଦେହ ଖରାପ ?

ବେହାରୀ ନିଶ୍ୱାସ ପକେଇ କହିଲା—ତାହାହେଲେ ବାବୁ ଭୁଲି ଯାଇଛନ୍ତି । ସେଦିନ ସକାଳେ ଆପଣଙ୍କ ଘରକୁ ବନ୍ଧୁ ନିମନ୍ତ୍ରଣ ଖାଇବାକୁ ବାହାରୁ ବାହାରୁ ଚିଠି ଆସିଲା, ବାପାଙ୍କ ଦେହ ଖରାପ । ସେଇଥିପାଇଁ ଆଉ ଖାଇବାକୁ ଆସିପାରିଲେନି । ତାପରେ ପଅରଦିନ ଏକାବେଳକେ ଶେଷ ଖବର ଆସିଗଲା ବାପା ଆଉ ନାହାନ୍ତି ବୋଲି । ବାବୁ ସଙ୍ଗେ ସଙ୍ଗେ ଗ୍ରାମରେ ଗାଡ଼ି ଧରିଲେ ।

ସର୍ବେଶ୍ୱରୀ ଚମକିଉଠି କହିଲା—କ'ଣ କହିଲୁ ? ସତ୍ୟଶରବାବୁଙ୍କ ବାପା ମରିଗଲେ !

ବେହାରୀ କହିଲା—ହଁ ଦିଦି !

—କ'ଣ ହୋଇଥିଲା ?

ବହୁତ ବୟସ ହୋଇ ଯାଇଥିଲା । ଖାଲି ଗୋଟାଏ ଉପଲକ୍ଷ୍ୟ କରି ସେ ବିଦାୟ ନେଇଗଲେ । ଏହା କହି ବେହାରୀ ଓଦା ଆଖି ଦୁଇଟାକୁ ତା ମଇଳା ଗାମୁଛାରେ ପୋଛି ପୋଛି ପୁଣି କହିଲା—ଆଉ କୋଉଥିଲାଗି ନୁହେଁ, ଖାଲି ଏଇଥିଲାଗି ଦୁଃଖ ହେଉଛି ଯେ ଏହି ବୁଢ଼ା ବାପା ଛଡ଼ା ବାବୁଙ୍କର ନିଜର ବୋଲି କେହି ନ ଥିଲେ । ତେଣୁ ଦୁଇ ଦିନ ହେଲା ଖାଲି ଭାବୁଚି, ଯ୍ୟାପରେ ବାବୁ ଯେ କ'ଣ ବୋଇଲେ କ'ଣ କରିବସିବେ, ମା ଦୁର୍ଗା ହିଁ ଜାଣନ୍ତି । ବେହାରୀ ପୁଣି ଆଖିକୁ ଭଲ କରି ପୋଛିବାକୁ ଲାଗିଲା । ସର୍ବେଶ୍ୱରୀ ଆଖିରୁ ଲୁହ ଗଡ଼ିବାକୁ ଲାଗିଲା । କହିଲା—ଏଣିକି ସତ୍ୟଶରବାବୁ ହୁଏତ ଭଲ ହୋଇ ଯାଇପାରନ୍ତି । ଖରାପ ହୋଇଯିବେ, ଏ ଭୟ ତୁ କାହିଁକି କରୁଚୁ ବେହାରୀ !

ବେହାରୀ ଅନ୍ୟମନସ୍କ ଭଳି କହିଲା—କେଜାଣି ? ମୁହଁକୁ ଉଠେଇ କହିଲା—ତୁମ ମୁହଁରେ ଫୁଲ ଚନ୍ଦନ ପଡ଼ୁ ଦିଦି ! ବାବୁ ମୋର ଏଣିକି ଭଲ ହୋଇଉଠନ୍ତୁ, ଆଉ ସେ ଆଡ଼କୁ ଯେପରି ମନ ନ ଯାଉ । କିନ୍ତୁ ଯିବାବେଳେ ଠିକ୍ ଗାଡ଼ିରେ ଉଠିଲାବେଳକୁ କହିଲେ, ଯାହା-ହେଉ ବେହାରୀ, ରକ୍ଷା ମିଳିଲା । ସଂସାରରେ ଆଉ କାହା ଲାଗି ଚିନ୍ତା କରିବାକୁ ନାହିଁ । ଯେଉଁ ଗୋଟିକ ବାକି ଥିଲା, ସେତିକ ବି ଗଲା । ତୁମକୁ ସତ କହୁଚି. ଦିଦି, ସେତିକିବେଳୁ ଯେତେବେଳେ ମନେ ପଡ଼ୁଯାଉଚି, ମନ ଭିତରଟା ହୁହୁ କରି ଉଠୁଚି । ଏଣିକି ତ ବହୁତ

ପଇସା ବାବୁଙ୍କ ହାତରେ ପଡ଼ିବ । ମାଗଣାରେ ସବୁ ତ ଭଲ ଲୁହନ୍ତି । ଖରାପ ବାଟରେ ଗଲେ ଆଉ କିଏ ଦେଖିବ କୁହ ତ ? ଖାଲି ପାରନ୍ତି ଆମ ମା ମାବଳୀ । ବେହାରୀ ଜାଣେନା, ଏଇତକ କହିଦେଲେ ସରୋଜନୀ ମନ ଭିତରଟା କିପରି ପୋଡ଼ିଉଠେ !

ସରୋଜନୀ ଆଘାତକୁ ସମ୍ଭାଳିନେଇ ମୃଦୁ କଣ୍ଠରେ କହିଲା—ବେଶ୍ ତ ବେହାରୀ, ତାଙ୍କୁ ଆସିବାକୁ ଚିଠି ଲେଖିଦେଉନୁ ?

—ମୁଁ ତ ଠିକଣା ଜାଣିନି । ନିଜେ ଯଦି ଥରେ କାଶୀ ଯାଆନ୍ତି, ହଁ, ତାହାହେଲେ ପାରନ୍ତି । ଯିମିତି ହେଉ ଖୋଜି ଖୋଜି ଫେରେଇ ନେଇ ଆସନ୍ତି । କିନ୍ତୁ ମୋର ତ ସେ ଯୁ ନାହିଁ, ବାବୁଙ୍କୁ ଏକୁଟିଆ ପକେଇ ଦେଇ ତ ଯିବା ମୋ ପକ୍ଷରେ ସହଜ ନୁହେଁ ଦିଦି ! ତା ଛଡ଼ା ମୁଁ ତ କେବେ କାଶୀ ଯାଇନି, ବାଟଘାଟ କିଛି ଜାଣିନି । ଏହା କହି ସେ ନିରୁପାୟ ଭଳି ସରୋଜନୀ ମୁହଁକୁ ଚାହିଁରହିଲା । ସ୍ପଷ୍ଟ ବୁଝାଗଲା, ସଙ୍କଟରେ ଏଇ ପରମ ଉପକାରୀ ବୁଢ଼ା ଚାକର ପ୍ରଭୁଙ୍କର ଅବଶ୍ୟମ୍ଭାବୀ ଅମଙ୍ଗଳ ଆଶଙ୍କାରେ ବ୍ୟାକୁଳ ହୋଇ ସରୋଜନୀ ପାଖରୁ ଆଶ୍ୱାସ ପାଇବ ବୋଲି ଆଶା କରୁଛି । କିନ୍ତୁ ସରୋଜନୀ ତାକୁ କୌଣସି ଭରସା ନ ଦେଲାନି, ଖାଲି ନୀରବରେ ଚାହିଁରହିଲା ।

—ତେବେ ଯାଉଚି ଦିଦି ! କହି ବେହାରୀ ଆସି ସରୋଜନୀର ପାଦତଳେ ମୁଣ୍ଡିଆ ମାରିଲା ଏବଂ ପାଦଧୂଳି ନେଇ ଘରୁ ବାହାରି ହୋଇଗଲା । କିନ୍ତୁ ପରକ୍ଷଣରେ ଅକସ୍ମାତ୍ ଫେରିଆସି ଦି ହାତ ଯୋଡ଼ି ଆଗରେ ଠିଆହେଲା ।

—କ'ଣ କରେ ବେହାରୀ ?

—ଗୋଟାଏ ନିବେଦନ କରିବି ଦିଦି !

—ସରୋଜନୀ ଟିକିଏ ହସିପକେଇ କହିଲା—କି କଥା ?

ବେହାରୀ ସିମିତି ଯୋଡ଼ି ହାତରେ କରୁଣ କଣ୍ଠରେ କହିଲା—ମୁଁ ଜାତରେ ଗଉଡ଼ ଚଷା, ସେଥିରେ ପୁଣି ବୁଢ଼ାଲୋକ । କିଛି କିଛି ଯଦି କିଛି କହି ପକେଇଥାଏ, ମନରେ ଧରିବେନି ।

ସରୋଜନୀର ଆଖିରୁ ଲୁହ ଝରିଆସିଲା; କିନ୍ତୁ ପ୍ରାଣପଣେ ତାକୁ ରୋକିନେଇ ମୁଣ୍ଡ ହଲାଇ ଖାଲି କହିଲା—ନା ।

ତା ମୁହଁରୁ ଖାଲି ଏଇ ଗୋଟିକ 'ନା' ଶବ୍ଦ ଶୁଣି ଦେବାଶିଷର ଚମକ ଭାଙ୍ଗିଗଲା । ସେ ନିଜକୁ ଚଷା ପ୍ରଭୃତି କହି ନିଜ ବୁଦ୍ଧିହୀନତାର ସହସ୍ର ପରିଚୟ ଦେଉଥିଲେ ମଧ୍ୟ ସେ ପ୍ରକୃତରେ ନିର୍ବୋଧ ନ ଥିଲା । ତେଣୁ କାହିଁକି ଯେ ସରୋଜିନୀ ସାବିତ୍ରୀ କଥା ପଚାରିବାକୁ ତାକୁ ବାଟରୁ ଡାକି ଆଣିଥିଲା, କାହିଁକି ଯେ ସିଏ ଏଭଳି ମନୋଯୋଗ ଦେଇ ତାର କହିବା କାହାଣୀ ଶୁଣୁଥିଲା, ସବୁକଥାଗୁଡ଼ାକ ସୂର୍ଯ୍ୟର ଆଲୁଅ ଭଳି ତା ଆଗରେ ପରିଷ୍କାର ହୋଇଉଠିଲା । ନ ଜାଣି, ନ ଭାବି ସେ ସରୋଜିନୀକୁ ଏତେ ଯାଏଁ ନାନା କଥା କହି ବେଦନା ଦେଇଛି ବୋଲି ପରେ ଭାବିପାରି ତା ମନରେ ଅନୁତାପର ସୀମା ନ ଥିଲା । ଦେବାଶିଷ ସଙ୍ଗେ ସଙ୍ଗେ କହିଲା—ମୁଁ ଜାଣେ, ସେ ତୁମ କଥା କେବେହେଲେ ଫୋପାଡ଼ି ଦେଇପାରିବେନି । ତୁମେ ବି ଇଚ୍ଛାକଲେ ବାବୁଙ୍କୁ ଅସମୟରେ ରକ୍ଷା କରିପାରିବ । କିନ୍ତୁ ମୋର ମନେ ହେଉଛି, ତୁମେ ଯେମିତି ତାଙ୍କୁ ତ୍ୟାଗ କରିଦେଇଛ ମା ! ଦେବାଶିଷ ଏଇ ପ୍ରଥମ ସରୋଜିନୀକୁ ମା ବୋଲି ସମ୍ବୋଧନ କଲା । 'ମା' କହି କାମ ଆଦାୟ କରିବାର ଫନ୍ଦିଟା ବୁଢ଼ା ବେଶ୍ ଭଲ ଭାବରେ ଜାଣେ ।

ସରୋଜିନୀ ଆଖିଲୁହକୁ ଆଉ କୌଣସିମତେ ରୋକିପାରିଲାନି । ଦୁଇ ଆଖିରେ ଦୁଇକୂଳ ଖାଇ ଟୋପା ଟୋପା ହୋଇ ଲୁହ ବୁଢ଼ା ଆଖି ଆଗରେ ଝରିପଡ଼ିଲା । କିନ୍ତୁ ସଙ୍ଗେ ସଙ୍ଗେ ପୋଛିପକାଇ କହିଲା— ନା ଦେବାଶିଷ, ମୋ ଦେଇ କିଛି ହେବନି । ଆଉ ତାଙ୍କ ସହିତ ମୋର କୌଣସି ସମ୍ପର୍କ ନାହିଁ ।

ଦେବାଶିଷ କହିଲା—ମା ବୋଲି ଡାକୁଚି, ମୁଁ ତୁମର ପିଲା ଭଳି । ଦୋଷାଦୋଷ ଯାହା ହୋଇଥାଉ, ମୁଁ କ୍ଷମା ମାଗୁଚି । ଏହାକହି ଦେବାଶିଷ ସରୋଜିନୀର ଗୋଡ଼ତଳେ ପଡ଼ିଗଲା । କହିଲା—ତୁମେ ତ ଆମ ବାବୁଙ୍କୁ ଚିହ୍ନ । ଏହି ବିପଦବେଳେ ଅଭିମାନ କରି ତାଙ୍କୁ ମାରିଦେବା କ'ଣ ଭଲ ହେବ ? ନା ମା, ମୁଁ ତା କଦାପି କରିବାକୁ ଦେବିନି ।

ସରୋଜିନୀର ନିଦାରୁଣ ଅଭିମାନର ଜମାଟ ତରଳିଯାଇ ସତୀଶଙ୍କୁ କ୍ଷମାକରିବା ଲାଗି ଉନ୍ମୁଖ ହୋଇଉଠିଲା ସତ, କିନ୍ତୁ ସଙ୍ଗେ ସଙ୍ଗେ ଦେବାଶିଷ ସାବିତ୍ରୀ ପ୍ରସଙ୍ଗରେ ଯାହାସବୁ କହିଥିଲା, ହଠାତ୍ ତାର ମନେ ପଡ଼ିଯାଇ ତାର ବିଗଳିତ ଚକ୍ଷୁପଲକ ହଠାତ୍ ଶୁଖି ଶୁଖି ଆସିଲା । ସେ

ମୁଣ୍ଡ ହଲାଇ ଶାନ୍ତ, କଠୋର ସ୍ୱରରେ କହିଲା--ତୁ ଭୟ କରନା ବେହାରୀ, ସାବିତ୍ରୀ ଆସିଗଲେ ସବୁ ଠିକ୍ ହୋଇଯିବ । କିନ୍ତୁ ମୋ ଦେଇ ତୁମ ବାବୁଙ୍କର କୌଣସି ଉପକାର ହେବନି ବେହାରୀ !

ଏହି ନିଷ୍ଠୁର ପ୍ରତ୍ୟୁତ୍ତର ଲାଗି ବେହାରୀ ଆଦୌ ପ୍ରସ୍ତୁତ ନ ଥିଲା । ତାର ସଙ୍କଳ୍ପ ଭଲ ପାଇବା ପାଖରେ ଏଇ ଶୁଷ୍କ କଣ୍ଠସ୍ୱର ଏଭଳି କଠିନ ଭାବରେ ଆଘାତ ଦେଲା ଯେ ସେ କିଛି ସମୟ ବିହ୍ୱଳ ଚିତ୍ତରେ ଖାଲି ଚାହିଁରହିଲା । ତା' ପରେ ଆଉ କୌଣସି କଥା ନ କହି ପ୍ରଣାମ କରି ବାହାରି ହୋଇଗଲା ।

## ଅଣଚାଳିଶି

ଯକ୍ଷ୍ମାରୋଗଗ୍ରସ୍ତ ସ୍ତ୍ରୀକୁ ନେଇ ପାଞ୍ଚ ଛଅ ମାସ ନୈନିତାଲରେ ରହିବା ପରେ ଏଇ କେତେ ଦିନ ହେଲା ଉପେନ୍ଦ୍ର ବକ୍ସାରକୁ ଫେରି ଆସିଥାଏ । ବକ୍ସାରରେ ରହିବା ସୁରବାଳାର ଶେଷ ଇଚ୍ଛା । ସେଦିନ ସନ୍ଧ୍ୟା ପରେ ସ୍ନିଗ୍ଧ ଦୀପାଲୋକ ଆଡ଼କୁ ବହୁ ସମୟ ଧରି ଚୁପ୍‌ଚାପ୍ ଚାହିଁ ରହି ଏହି ପରଲୋକଯାତ୍ରୀ ଧୀରେ ଧୀରେ ସ୍ୱାମୀଙ୍କ ଡାହାଣ ହାତ ଉପରେ ନିଜ ହାତଟିକୁ ଚାପିରଖି କହିଲା—ତୁମ କଥାରେ ଆଉ କେବେ କୌଣସି ସନ୍ଦେହ ହୁଏନା । ଆଜି ଗୋଟିଏ କଥା ମତେ ସତକରି କହିପାରିବ ? ଭୁଲିଯିବନି ତ ?

ଉପେନ୍ଦ୍ର ମୁମୂର୍ଷୁ ସ୍ତ୍ରୀ ଉପରକୁ ଢଳିପଡ଼ି କହିଲା—କି କଥା ପଶୁ ?

ସୁରବାଳା ଟିକିଏ ନୀରବ ରହିବା ପରେ କହିଲା—ତୁମକୁ ମୁଁ ଆଉଥରେ ପାଇପାରିବି ତ ?

ଉପେନ୍ଦ୍ର ସୁରବାଳାର କପାଳ ଉପରୁ ରୁକ୍ଷ କେଶରାଶି ଆଡ଼େଇ ଦେଇ କହିଲା—ହଁ, ନିଶ୍ଚୟ ପାଇବ ।

--ଆଚ୍ଛା କେତେ ଦିନରେ ପାଇବି ? ମୁଁ ତ ଅତିଶୀଘ୍ର ଚାଲିଯାଉଛି । କିନ୍ତୁ କେତେ ଦିନ ଧରି କେଉଁଠି ତୁମକୁ ଅପେକ୍ଷା କରିବି ?

—ସ୍ୱର୍ଗରେ ଥିବ । ସେଇଠୁ ମତେ ସବୁବେଳେ ଦେଖିବାକୁ ପାଇବ ।

କିନ୍ତୁ ଏକା ଏକା କିମିତି ରହିବ ମୁଁ ? ଆଚ୍ଛା, ଡାକ୍ତର କ'ଣ ସବୁ କଥାରୁ ଜବାବ ଦେଇସାରିଛି । ଇମିତି କୌଣସି ଔଷଧ ନାହିଁ, ଯେଉଁଥିରେ ମୁଁ ବଞ୍ଚିପାଇପାରିବ । ମୁଁ ଚାଲିଗଲେ ତୁମର ଘର କଷ୍ଟ ହେବ ।

ଆଖିର ଜଳକୁ ଉପେନ୍ଦ୍ର କୌଣସିମତେ ଆଉ ରୋକିପାରିଲାନି । ଟୋପା ଟୋପା ହୋଇ ସୁରବାଳା କପାଳ ଉପରେ ଝରିପଡ଼ିଲା ।

ହୃଦୟ ଭିତରଟା ମଥିତ ହୋଇ ଗୋଟିଏ ମାତ୍ର ସ୍ୱର ଉଠିଲା—ହେ ଭଗବାନ ! ସ୍ୱାମୀ ବୁକୁରେ ଏତେ ଶକ୍ତି ଦେଇପାରିଲ; କିନ୍ତୁ ନିଜର ସ୍ନେହାସ୍ପଦ ପ୍ରାଣର ପ୍ରତିମାକୁ ଆଉ ଦିନେହେଲେ ବଞ୍ଚାଇ ରଖିବାର ଶକ୍ତି ଦେଇ ପାରିଲନି !

ସୁରବାଳା ଶୀର୍ଣ୍ଣ ହାତଟିକୁ ଉଠାଇ ସ୍ୱାମୀର ଆଖିକୁ ପୋଛିଦେଇ କହିଲା—ତୁମର କାନ୍ଦ ମୁଁ ଆଉ ସହିପାରୁନି । ମୋର ଆଉ ଗୋଟିଏ କଥା ରଖିବ ?

ଉପେନ୍ଦ୍ର ମୁଣ୍ଡ ହଲେଇ କହିଲା—ହଁ, ରଖିବ; କୁହ ।

ସୁରବାଳା କହିଲା—ତାହାହେଲେ ମୋ ସାନ ଭଉଣୀ ଶଚୀ ସାଙ୍ଗରେ ଦିବାକରର ବିବାହ ଦିଅ । ମୁଁ ତାଙ୍କୁ ବହୁଦିନ ହେଲା ଦେଖିନି । ଦି ଚାରି ଦିନ ପାଠପଢ଼ା ବନ୍ଦ ହୋଇଗଲେ କ'ଣ ବା କ୍ଷତି ହେବ ? କଲିକତାରୁ ଚାଲିଆସିବାକୁ ଆଜି ଟେଲିଗ୍ରାମ କରିଦିଅ ।

ଏଇ ଶେଷ ଅନୁରୋଧ ଉପେନ୍ଦ୍ର ବୁକୁତଳେ କଣ୍ଟା ବିନ୍ଧିଲା ଭଳି ଲାଗିଲା । ଦିବାକରକୁ ସୁରବାଳା ଯେ କେତେ ଭଲ ପାଏ, ସେ ଜାଣେ । ତଥାପି ତାର ଶେଷ ଇଚ୍ଛା ପୂରଣ କରିବାର କୌଣସି ଉପାୟ ନ ଥିଲା । ଦିବାକର ଇତିମଧ୍ୟରେ ଯେଉଁସବୁ କାର୍ତ୍ତି କରିସାରିଛି, ସେ ସୁରବାଳା ପାଖରେ ଗୋପନ ରଖିଆସିଛି । ଆଜି ବି ସେ ପ୍ରକାଶ କଲା ନାହିଁ । ଟେଲିଗ୍ରାମ କରିବା କଥାଟାକୁ ଏଡ଼େଇଦେବା ଅଭିପ୍ରାୟରେ କହିଲା—କିନ୍ତୁ ତୁମେ ତ ପ୍ରଥମେ ଏହି ବିବାହ ପ୍ରସ୍ତାବରେ ରାଜି ନ ଥିଲ ପରା ! ଶେଷରେ ମୋର କଥା ଉପରେ ହଁ ମତ ଦେଇଥିଲ । ଏବେ ମୋ ନିଜର ମତ ବଦଳି-

ଯାଇଛ । ଶଚୀ ଲାଗି ଆନ୍ତ୍ରିକ ଭଲ ପାତ୍ର ଠିକ୍ କରିଦେବି; କିନ୍ତୁ ବିବାହ କଥା ଆଉ ଉଠାଅନା ମଣ୍ଡ!

ସୁରବାଳା କହିଲା—ନା, ସେ କଥା ହେବନି । ବିବାହକରଙ୍କ ସାଥିରେ ହିଁ ଶଚୀର ବିବାହ ହେବ । ତା ତୁମେ ହିଁ କରିବ—ଆଉ କିଏ ନୁହେଁ ।

ଉପେନ୍ଦ୍ର ଟିକିଏ ଆଶ୍ଚର୍ଯ୍ୟ ହୋଇ କହିଲା—କାହିଁକି କୁହ ତ ?

ଶଚୀ ଘରକୁ ଆସିଲେ ତା ମୁହଁକୁ ଦେଖି ଆଉ ତୁମେ କେବେହେଲେ ପର ହୋଇପାରିବନି । ତା ଛଡ଼ା ସେ ଘରେ ଥିଲେ ତୁମର ବି ଦେଖାଶୁଣା କରିପାରିବ ।

ଉପେନ୍ଦ୍ର ଟିକିଏ ଅନ୍ୟମନସ୍କ ରହିଲା ଭଳି କହିଲା—ହଁ, ଯଦି ଅସମ୍ଭବ ନ ହୁଏ, ତାହାହେଲେ ବିବାହ ହେବ ।

ଏହାର ତିନି ଦିନ ପରେ ଖବର ପାଇ ଉପେନ୍ଦ୍ରର ନିଷେଧ ସତ୍ତ୍ୱେ ମହେଶ୍ୱରୀ ଆସି ହାଜର ହେଲେ । ସୁରବାଳା ତା କୋଳ ଉପରେ ମୁଣ୍ଡ ରଖି କହିଲା—ମୁଁ ତ ଗଲି ଦିଦି, ସ୍ୱାଙ୍କ ଉପରେ ଟିକିଏ ଦୃଷ୍ଟି ରଖିଥିବ । ମୁଁ ଜାଣେ, ଇଏ ଆଉ କେବେହେଲେ ବାହା କରିବେନି; କିନ୍ତୁ ଭାରି କଷ୍ଟ ହେବ । ତୁମମାନଙ୍କୁ ସ୍ୱାଙ୍କ କଥା ଲାଗିଲା । ଏହା କହିବା ମାତ୍ରେ ତା ଆଖି ଲୁହରେ ଭରି ଉଠି ହୋଇଉଠିଲା ।

ମହେଶ୍ୱରୀ ସୁରବାଳା ବୁକୁ ଉପରେ ମୁହଁକୁ ଜାକି ରହିଗଲେ; କିନ୍ତୁ ତାଙ୍କ ମୁହଁରୁ ପଦେହେଲେ କଥା ବାହାରିଲାନି ।

ଏଇମିତି ଆଉ ଚାରି ପାଞ୍ଚ ଦିନ କଟିଗଲା । ତା ପରେ ଦିନେ ସକାଳେ ସ୍ୱାମୀଙ୍କ କୋଳ ଉପରେ ମୁଣ୍ଡ ରଖି ସମଗ୍ର ପରିବାରକୁ ଶୋକ-ସାଗରରେ ଭସେଇଦେଇ ସତୀ ସାଧ୍ୱୀ ସ୍ୱର୍ଗଧାମକୁ ଚାଲିଗଲେ ।

ଉପେନ୍ଦ୍ର ଧୀର ଶାନ୍ତ ଭାବରେ ପତ୍ନୀଙ୍କ ଶେଷକୃତ୍ୟ ସମାପନ କରି ମହେଶ୍ୱରୀଙ୍କୁ ନେଇ ଘରକୁ ଫେରିଆସିଲେ । ଉପେନ୍ଦ୍ରର ପିତା ଶିବପ୍ରସାଦ ବାବୁ ପୁଅକୁ ଦେଖି ଖୁବ୍ ଖୁସି ହୋଇଉଠିଲେ । ମନେ ମନେ ଭାବିଲେ, ନା, ଯେତେଟା ଭୟ ପାଇଥିଲି, ସେତେଟା ନୁହେଁ । ଏପରି କି ଅଚିରେ ସେ ନୂତନ ଗୋଟିଏ ବୋହୂ ଘରକୁ ଆଣିବାର କଳ୍ପନା ମନେ ମନେ କରି-ବସିଲେ । କିନ୍ତୁ ମନେ ହେଉଥିଲା, ଅନ୍ତର୍ଯ୍ୟାମୀ ଅଲକ୍ଷ୍ୟରେ କହୁଥିଲେ—

ଶିବପ୍ରସାଦ, ମନରେ ଏତେ କଳ୍ପନା ସିନା କରୁଚ, ବାସ୍ତବରେ ପରିଣତ ହେବା ସମ୍ଭବ ନୁହେଁ ।

କିଛିଦିନ ପରେ ପୁଅକୁ କୋର୍ଟକୁ ଯିବାର ଦେଖି ଶିବପ୍ରସାଦ ମନେ ମନେ ତୃପ୍ତି ବୋଧ କଲେ । ଏଭଳି କି ଆନନ୍ଦରେ ଆତିଶଯ୍ୟରେ ପୁଅକୁ ପାଖକୁ ଡାକି ସଂସାରର ଅନିତ୍ୟତା ସମ୍ବନ୍ଧରେ ବହୁତ କଥା କହି ଅବଶେଷରେ କହିଲେ—ଉପୀନ, ତୁ ତ ଆଉ ପିଲା ନୋହୁଁ; ବୁଝିପାରିବ ବା କ'ଣ ? ସଂସାରରେ କିଛି ହେଲେ ଚିରସ୍ଥାୟୀ ନୁହଁ, ସମସ୍ତ କ୍ଷଣସ୍ଥାୟୀ । ଆଜି ଯାହା ଅଛି, କାଲିକି ଆଉ ନ ଥିବ । ସବୁ ମାୟା, ସବୁ ଅନିତ୍ୟ । ବୟସକୁ ନଷ୍ଟ କରିଦିଅନା ବାବା ! ପ୍ରାଣପଣେ ଉନ୍ନତି କରିବାର ତ ଏଇ ସମୟ । ଶାସ୍ତ୍ରରେ ଅଛି, "ଚଳାଚଳମିଦଂ ସର୍ବଂ କୀର୍ତ୍ତିର୍ଯସ୍ୟ ସ ଜୀବତି" । ଅର୍ଥାତ୍ ମାନ, ମର୍ଯ୍ୟାଦା, ସମ୍ଭ୍ରମ ଯାହା କିଛି କୁହ, ସବୁ ମୂଳରେ ଟଙ୍କା । ଟଙ୍କା ରୋଜଗାର ଉପରେ ସବୁ ନିର୍ଭର କରେ । ଦେଖୁଚୁ ନା, ସତୀଶବାବା ସତୀଶ ପାଇଁ କେତେ ଧନ ରଖି ଯାଇଛନ୍ତି ! ଉପେନ୍ଦ୍ର ସବୁ କଥା ଶୁଣି 'ଯେ ଆଜ୍ଞା' କହି କଚେରୀକୁ ଚାଲିଗଲା ।

କଚେରୀରେ ସତୀଶର ଭାଇଙ୍କ ସହିତ ଦେଖାହେଲା । ସେ ଏଇ ଦୁର୍ଘଟଣା ହେତୁ ଦୁଃଖପ୍ରକାଶ କରି ଶେଷରେ ସତୀଶ କଥା ପକେଇଲେ । ଉପେନ୍ଦ୍ରର ଧାରଣା ଥିଲା ଯେ ବାପାଙ୍କର ମୃତ୍ୟୁ ପରେ ସତୀଶ ଘରେ ଅଛି । କିନ୍ତୁ ଏବେ ସେ ଶୁଣିବାକୁ ପାଇଲା, ଅବଶ୍ୟ ସେ ଘରେ ଅଛି; କିନ୍ତୁ ମଫସଲ ଘରେ । ଟୁନୁବାବୁ ସତୀଶର ସାବତମା ପୁଅ ଭାଇ । କୌଣସିଦିନ ତାଙ୍କୁ ଭଲ ନଜରରେ ଦେଖନ୍ତି ନାହିଁ । ଗୋଟିଏ ଘରେ ବାସ କରି ମଧ କେବେହେଲେ ତାର କୌଣସି ଖବର ରଖିବାକୁ ଟୁନୁ ଚେଷ୍ଟା ସୁଦ୍ଧା କରନ୍ତି ନାହିଁ । ବସ୍ତୁତଃ ସତୀଶ ସହିତ ତାଙ୍କର ସମ୍ବନ୍ଧ ନ ଥିଲା ବୋଲି କହିଲେ କୌଣସି ଅନ୍ୟାୟ ହେବନି । ବାପାଙ୍କ ମୃତ୍ୟୁରେ ସମ୍ପତ୍ତି ଭାଗ ବଣ୍ଟା ହେବା ଦିନଠାରୁ ସତୀଶ ତାଙ୍କର ଆହୁରି ବିଷଦୃଷ୍ଟିରେ ପଡ଼ିଛି । କହିଲେ—ସତୀଶ ଯା ଭିତରେ ପ୍ରାୟ ୩୦।୪୦ ହଜାର ଟଙ୍କା ଖର୍ଚ୍ଚ କରି ମସ୍ତ ଦୁଇଟା ଡିସପେନ୍‌ସାରୀ ଖୋଲିଚି, ମାସିକ ଶହେ ଟଙ୍କା ଦରମା ଦେଇ ଜଣେ ଡାକ୍ତରକୁ ଆଣିଚି । ତା ଛଡ଼ା ଘରଗୋଟାକଯାକକୁ ଏକରକମ ଡାକ୍ତରଖାନା କରି ପକାଇଛି ।

ଉପେନ୍ଦ୍ର ସହଜ ଭାବରେ କହିଲା—ଏ ମତଲବ ତ ତାର ବନ୍ଧୁଙ୍କର ଥିଲା । ବୋଧହୁଏ ଖାଲି ଟଙ୍କା ଅଭାବରେ ଏତେ ଦିନ ହେଲା କିଛି କରିପାରୁ ନ ଥିଲା ।

ଟୁନୁ ବାବୁ ଠିକିଏ ତାଚ୍ଛଲ୍ୟ ସ୍ୱରରେ କହିଲେ—ସେ କଥା ମୁଁ ମଧ୍ୟ ତ ମନେ କରୁଥିଲି । କିନ୍ତୁ ଖାଲି ଡିସପେନ୍‌ସାରୀ ଖୋଲିବା ମତଲବ ସିନା ତୁମେ ଜାଣୁଥିଲ; କିନ୍ତୁ ତାର ସାଧନ ଭଜନ ଉଦ୍ଦେଶ୍ୟଟା ତୁମକୁ ଜଣା ନ ଥିବ । ଉପେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ କହିଲା—ସାଧନ ଭଜନ କ'ଣ ଟୁନୁବାବୁ ?

ଟୁନୁବାବୁ କହିଲେ—ଏଇ ଚକ୍ର, କାରଣ ପଞ୍ଚ ମକାର ପ୍ରଭୃତି । ଖାଲି ଫିଲନ୍ ଥ୍ରପିଷ୍ଟ ନୁହେଁ, ସତୀଶ ବାବା ଆଜିକାଲି ଜଣେ ଉଚ୍ଚକୋଟିର ସାଧକ । ଗେରୁଆ ବସନ, ବଡ଼ ବଡ଼ ଲମ୍ବା ଦାଢ଼ି, ରୁଦ୍ରାକ୍ଷମାଳା, କପାଳରେ ସିନ୍ଦୂରଟୋପା, ସବୁବେଳେ ଢୁଲୁଢୁଲୁ ଲୋଚନ । ତାଠାରୁ ଗୋଟାଏ ଦସ୍ତଖତ ନେବାକୁ ରାସବିହାରୀ ବାବୁଙ୍କୁ ପଠେଇଲି ସେ ସେ ଉପରେ ପାଖସୁଦ୍ଧା ପଶିପାରିଲେ ନାହିଁ । ଆଉ ଏ ଚିଠି ଖଣ୍ଡିକ ପଢ଼ି ଦେଖ, ତାଙ୍କ ଗୃହର ସେଇ ବେହାରୀଟା ମୋ ପାଖକୁ ଲେଖି ପଠେଇଛି । ଉତ୍ତର ଦେବା ଏପର୍ଯ୍ୟନ୍ତ ହୋଇପାରିନି, ସେଥିପାଇଁ ପକେଟରେ ଧରି ବୁଲୁଛି । ଏହା କହି ସେ ଖଣ୍ଡିଏ ହଳଦିଆ ରଙ୍ଗର ଚଉଡ଼ା କାଗଜ ବାହାର କରି ଉପେନ୍ଦ୍ର ଆଗରେ ରଖିଦେଲେ ।

ବେହାରୀ ନିରୁପାୟ ହୋଇ ବଡ଼ଭାଇ ପାଖକୁ ଉପାୟ ଭିକ୍ଷା କରି ଏଇ ଚିଠିଟି ପଠେଇଥିଲା । ଖୁବ୍ ସମ୍ଭବ, ସେ ଗାଁର କୌଣସି ପିଲାକୁ କହିଛି, ସେ ଏଇ ଚିଠି ଖଣ୍ଡିକ ଲେଖିଦେଇଛି । ମୂଳରୁ ଶେଷଯାଏଁ ଚିଠି ଖଣ୍ଡିକ ପଢ଼ିବା ସମ୍ଭବ ହେଉନ ସତ, କିନ୍ତୁ ଯେତେଯାଏଁ ପଢ଼ିବା ସମ୍ଭବ ହେଲା, ସେଇ ଟିକକ ଉପେନ୍ଦ୍ରକୁ ବହୁ ସମୟ ଧରି ସ୍ତମ୍ଭୀଭୂତ କରି ରଖିଲା ।

ତାର ଆବାଲ୍ୟ ବନ୍ଧୁ, ତାର ଡାହାଣ ହାତ, ତାର ଶ୍ରେଷ୍ଠଭାଇ ସେଇ ସତୀଶ କ'ଣ ଏତେ ନିମ୍ନସ୍ତରକୁ ଖସିଯାଇଛି ! ଗାଁ ଭିତରେ ପ୍ରକାଶ୍ୟରେ ଏହିଭଳି ସବୁ ବୀଭତ୍ସ କାର୍ଯ୍ୟକରି ବୁଲିବାକୁ ଡେଲେହେଲେ ଲଜ୍ଜାବୋଧ ତ କରୁନି, ବରଂ ଧର୍ମସାଧନ କରୁଛି ବୋଲି ଆତ୍ମପ୍ରସାଦ ଲଭ

କରୁଚି ! ହୁଏତ ସେ ସେଇ କୁଳଟା ଗୃହକର୍ତ୍ତୀକୁ ମଧ୍ୟ ସାଙ୍ଗରେ ରଖିଥିବ । ତା ଛଡ଼ା ବେହାଗ ଚିଠିରୁ ସ୍ପଷ୍ଟ ଜଣାପଡୁଚି, ଗାଁର କେଇଟା କୁକର୍ମୀ ମଧ୍ୟ ତାର ସାଙ୍ଗ ହୋଇଛନ୍ତି ।

ଅନ୍ୟମନସ୍କ ହୋଇ ଉପେନ୍ଦ୍ର ଚିଠି ଖଣ୍ଡିକ ପକେଟରେ ପୂରେଇ କଚେରୀରୁ ଘରକୁ ଫେରିଆସିଲା । ଚିଠିଟିକୁ ଟୁନୁବାବୁଙ୍କୁ ଫେରାଇଦେବା ଲାଗି ମଧ୍ୟ ତାର ମନେପଡ଼ିଲାନି ।

ବେହାଗ ଚିଠିଟିକୁ ଡାକରେ ପଠେଇଦେଇ ପ୍ରଥମ କେଇଦିନ ଟୁନୁବାବୁ ଆସିବେ ବୋଲି ଭାବି ଉଦ୍‌ଗ୍ରୀବ ହୋଇ ରହିଥାଏ । ପରେ ସେ ନ ଆସିବାର ଦେଖି ହୁଏତ ଟୁନୁବାବୁ ଘରେ ନ ଥିବେ, ପରେ ଚିଠି ପାଇ ନ ଆସିଲେ ମଧ୍ୟ ଯାହାହେଲେ କିଛି ନିଶ୍ଚୟ ଉତ୍ତର ଦେବେ ବୋଲି ଭାବି ଅପେକ୍ଷା କରିବସିଲା । କିନ୍ତୁ ଦିନ ପରେ ଦିନ ଅତିବାହିତ ହୋଇଗଲା, ଉତ୍ତର ବି ଆସିଲାନି ।

ବିଶେଷ କରି "ଆକୋବାବା"ଙ୍କ ଦୌରାତ୍ମ୍ୟରେ ବେହାଗ ଅତିଷ୍ଠ ହୋଇ ଉଠିଥାଏ । ଇଏ ତାନ୍ତ୍ରିକ ସନ୍ନ୍ୟାସୀ, ସିଦ୍ଧପୁରୁଷ – ସନ୍ତୋଷବାବୁଙ୍କ ମନ୍ତ୍ରଗୁରୁ । ଅଷ୍ଟପ୍ରହର ମଦ ଓ ଗଞ୍ଜାରେ ମେଜାଜ ଦୁର୍ବାସାଙ୍କଠାରୁ ତୀକ୍ଷ୍ଣ । ମୁହଁଟା ଏଡ଼େ ଖରାପ ଯେ ଶୁଣିଲେ ମଣିଷ କାନରେ ହାତ ଦେଇଦିଏ । କିନ୍ତୁ ଏଇଟା କୁଆଡ଼େ ତାନ୍ତ୍ରିକସିଦ୍ଧ ସାଧୁମାନଙ୍କର ଗୋଟାଏ ଲକ୍ଷଣ ! ତା ଛଡ଼ା ସନ୍ତୋଷବାବୁଙ୍କ ଗୁରୁ !

ତେଣୁ ବେହାଗର ତାଙ୍କ ଉପରେ ଭକ୍ତି କମ୍ ନ ଥିଲା ! କିନ୍ତୁ ସନ୍ତୋଷର କୌଣସି ରକମ ଅନିଷ୍ଟର ସୂଚନା ପାଇଲେ ବେହାଗ ହିତାହିତଜ୍ଞାନଶୂନ୍ୟ ହୋଇପଡ଼େ ।

'ଗୁରୁବାବା'ଙ୍କ ଶିକ୍ଷକତାରେ ସନ୍ତୋଷ ଓ ତା ସାଙ୍ଗ ସାଥିମାନେ ରାତି ଅଧରେ ଚକ୍ର ସାଧନା କରନ୍ତି, ଆନୁସଙ୍ଗିକ ଅନୁଷ୍ଠାନାଦି ମଧ୍ୟ ହୁଏ । ବେହାଗ ସବୁ ସହ୍ୟ କରେ । କିନ୍ତୁ ସେଉଁଦିନ ଦିନ ବେଳଟାରେ ସେ ଦେଖିଲା ବାବୁ (ସନ୍ତୋଷ) ମଦ ଓ ଗଞ୍ଜେଇ ବାବାଙ୍କ ପ୍ରସାଦ ବୋଲି ସେବନ କରୁଛନ୍ତି, ବୃଦ୍ଧ ଭୃତ୍ୟର ବେହାଗ କୌଣସିମତେ ସହ୍ୟ କରିପାରିଲାନି । ଦିନେ ସନ୍ତୋଷ ବାବାଙ୍କ ପାଖରେ ନ ଥାଏ, ବେହାଗ ଆକୋବାବାଙ୍କ ପାଖକୁ ଯାଇ ଗୋଡ଼ତଳେ ଲମ୍ବ ହୋଇ ଶୋଇପଡ଼ି ହାତଯୋଡ଼ି କହିଲା—

ବାବା, ସବୁ କର ଓ କରାଅ ପଛକେ, ଆମ ବାବୁଙ୍କୁ ମଦ, ଗଞ୍ଜେଇ ଖୁଆଅ ନାହିଁ ।

ଅଗ୍ନିରେ ଘୃତାହୁତି ପଡ଼ିଲା । ବାବା ମୁହୂର୍ତ୍ତକ ଭିତରେ ଚିତ୍କାର କରିଉଠିଲେ—କ'ଣ କହିଲୁ ? ତୁ ଶଳା ମଦ ନା ଧରୁଚୁ ?

ବେହାଲା ବମୀତ କଣ୍ଠରେ କହିଲା—କେଜାଣି ବାବା, ଆପଣଙ୍କ ଦେଶରେ ତ ତାକୁ ମଦ କହନ୍ତି । ଶୁଣିଚି ବୋଲି କହିଲି ।

ବାବା କହିଲେ—ହେଲା ମଦ, ତୁ ଶଳା କହିବାକୁ କିଏ ?

ବେହାଲା ସମ୍ଭାଳି ନ ପାରି କହିଲା—ମୁଁ କିଏ ? ମୁଁ ବାବୁଙ୍କ ଗୃହକର !

ବାବା ଦାନ୍ତ କଡ଼ମଡ଼ କରି କହିଉଠିଲେ—ଜାଣିଚୁ ନା ମୁଁ ତୋ ବାବୁର ବାବା !

ବେହାଲା ବସିଥିଲା, ସଙ୍ଗେ ସଙ୍ଗେ ଉଠିପଡ଼ି ପାଟିକରି କହିଲା—ଖବରଦାର ! ମୋ ସାମନାରେ ଏସବୁ କିଚ୍ଛି କହିପାରିବନି କହି ଦେଉଚି ।

ଥାକୋବାବାଙ୍କର ତ ହିନସଶ୍ଚ କେବେହେଲେ ଚୈତନ୍ୟ ପ୍ରାପ୍ତ ନ ଥାଏ । ବେହାଲାର ତିରସ୍କାରରେ ଏକାବେଳକେ ହିତାହିତଜ୍ଞାନଶୂନ୍ୟ ହୋଇପଡ଼ିଲେ । 'ତୁଠା କ'ଣ କରିବୁ ରେ ଶଳା ?' କହି ପାଖରେ ଥିବା ଖଡ଼ମଟାକୁ ଉଠେଇ ବେହାଲାର ମୁଣ୍ଡକୁ ଲକ୍ଷ୍ୟକରି ଫୋପାଡ଼ିଦେଲେ । ବେହାଲାର ନାକରୁ ଝର ଝର ହୋଇ ରକ୍ତ ଝରିପଡ଼ିଲା । ମୁହୂର୍ତ୍ତକ ମଧ୍ୟରେ ତା ହୃଦୟର କୌଣସି ଏକ ଅଜ୍ଞାତ ସ୍ଥାନରୁ ଗୁଳିଶ ବର୍ଷ ପୂର୍ବର ରକ୍ତ ଗରମ ହୋଇଉଠିଲା । ସେ ଘରକୋଣରେ ଥିବା ଗୃହ ହାତ ଲମ୍ବା ତ୍ରିଶୂଳଟାକୁ ଧରି ବାବାଙ୍କ ମୁଣ୍ଡ ଉପରକୁ ମାରିଦେବ ବୋଲି ଟେକିଲା । ଭୟରେ ହହାତ ଉପରକୁ ଟେକିଦେଇ ବାବା କୁକୁର ଭଳି ରଡ଼ି ଛାଡ଼ିଲେ । ସେଇ ଅମାନୁଷିକ ଚିତ୍କାରରେ ବେହାଲାର ଚମକ ଭାଙ୍ଗିଗଲା । ତ୍ରିଶୂଳଟାକୁ ଯଥାସ୍ଥାନରେ ରଖିଦେଇ ସେ ନାକରୁ ରକ୍ତ ପୋଛୁ ପୋଛୁ ଗୁଲିଗଲା ।

ଘଣ୍ଟେ ହ'ଘଣ୍ଟା ପରେ ସତୀଶ ପଗ୍ଋରିଲା—କ'ଣ ସତ ?

ବେହାଲା କହିଲା—ହଁ ସତ ! କିନ୍ତୁ ତା ନାକ ଫାଟି ରକ୍ତ ବହିଥିବା କଥା କିଛିହେଲେ କହିଲାନି ।

ସଞ୍ଜଣ ଟିକଏ ନୀରବ ରହିବା ପରେ କହିଲା—ତୋତେ ଏ ଘରେ ରଖିବାକୁ ଆଉ ମୁଁ ଦେଇପାରିବିନି । କିନ୍ତୁ ତତେ କୌଣସି ଜବାବ ଦେବିନି । ଟଙ୍କା ଦୁଇଶହ ଧରି ତୁ ତୋ ଗାଁକୁ ଚାଲିଯା । ପ୍ରତି ମାସରେ ଦରମା ତୁ ମୋଠୁ ଘରେ ଥାଇ ପାଇବୁ ।

ବେହାରୀ ମୁଣ୍ଡ ହଲାଇ କହିଲା—ଆଜ୍ଞା !

ସେ କ୍ଷୋଭ ପ୍ରକାଶ କଲାନି, କ୍ଷମାଭିକ୍ଷା ଚାହିଁଲାନି, ଦୁଇଶହ ଟଙ୍କା ଲୁଗାକାନିରେ ବାନ୍ଧି ପ୍ରଭୁଙ୍କ ପାଦଧୂଳି ମୁଣ୍ଡରେ ଲଗେଇ ସଂଧ୍ୟା ପୂର୍ବରୁ ଗାଁ ଛାଡ଼ି ଚାଲିଗଲା ।

ସଞ୍ଜଣ ଉପର ବାରଣ୍ଡାରେ ଠିଆହୋଇ ବେହାରୀର ଯିବା ବାଟକୁ ଲକ୍ଷ୍ୟକରି ରହିଲା । କ୍ରମେ ବଧୂପାଲ ଦୋକାନ ଆରପଟେ ତା ଦେହଟା ଯେତେବେଳେ ଅଦୃଶ୍ୟ ହୋଇପଡ଼ିଲା, ସଞ୍ଜଣ ଗୋଟାଏ ଦୀର୍ଘନିଶ୍ୱାସ ଟାଣି ମନେ ମନେ କହିଲା—ଏତେଦିନେ ବେହାରୀଟା ବି ଚାଲିଗଲା··!

ଆଶ୍ୱିନ ପ୍ରଥମ ସପ୍ତାହରେ ମହାମାୟାଙ୍କ ପୂଜା । ଡେରି ଅଛି, କିନ୍ତୁ ସଞ୍ଜଣର ବନ୍ଧୁମହଲରେ ଏଥର ମାଆଙ୍କର କ'ଣ କ'ଣ କରାଯିବ ଆଲୋଚନା ଚାଲିଥାଏ । ମହାଷ୍ଟମୀ ଲାଗି ଏତିକେବେଳୁ ପ୍ରସ୍ତୁତ ହେବା ଦରକାର । କିନ୍ତୁ ଭାଦ୍ର ମାସର ମଧ୍ୟଭାଗରେ ଗୃହଆଡ଼େ ମ୍ୟାଲେରିଆର ପ୍ରକୋପ ବଢ଼ିଉଠିଲା । ଏପରି କି ଦି ଚାରୋଟି ସାନ୍ନିପାତିକ ଜ୍ୱର ଲାଗି ଡାକ୍ତର ଗାଁକୁ ଆସିବାର ଦେଖାଗଲା ।

ଆଜକୁ କେତେ ଦିନ ହେଲା ସଞ୍ଜଣର ଦେହଟା କମିତି କମିତି ଲାଗୁଚି । ବେହାରୀ ଯେଉଁଦିନ ଚାଲିଗଲା, ସେ ରାତିରେ ଜ୍ୱରର ଲକ୍ଷଣ ସ୍ପଷ୍ଟଭାବରେ ଅନୁଭୂତ ହେଲା । ହୁଏତ ଏକାଦଶୀ ଉପବାସ ଲାଗି ହୋଇଥିବ ଭାବି ସେ ତା ଆରଦିନ ସକାଳେ ଜ୍ୱରଟା କିଛି ନୁହେଁ ବୋଲି ଉଡ଼େଇଦେଲା । କିନ୍ତୁ ଯାହା ବାସ୍ତବ, ତାକୁ ଏତେ ସହଜରେ ଉଡ଼େଇ ଦେବା ସହଜ ନୁହେଁ । ଦିନ ଗୋଟାକଯାକ ସେ ମାନିବାକୁ ବାଧ ହେଲା ଯେ ତା ଦେହ ଭଲ ନାହିଁ ।

ଛଅ ଦିନ ପରେ ପୂର୍ବ ପ୍ରଥାମତେ ଆଜିର ଚତୁର୍ଦ୍ଦଶୀ ରାତିରେ ପୂଜା ଆୟୋଜନ ହୋଇଥିଲା; କିନ୍ତୁ ସଞ୍ଜଣ ନିଜେ ଯୋଗ ଦେଇପାରିବନି ବୋଲି ଜଣେଇଦେଲା । ଅପରାହ୍ନ ବେଳକୁ ଗୁରୁଦେବ ଆସି ସଞ୍ଜଣ ମଥା

ଉପରେ ଶାନ୍ତ-ଜଳ ସିଞ୍ଚ କମଣ୍ଡଳୁ ଦେଖାଇ ହସି ହସି କହିଲେ—ବାବା, ଏ ଯୋଗ ଉପରେ ତ ଯମର ଅଧିକାର ନାହିଁ । ତା ଛଡ଼ା ତୁମେ ଯେ ଧର୍ମର ମୂଳାଧାର । ପୃଥ୍ବୀରେ ତୁମେ ନ ରହିଲେ ସବୁ ପଣ୍ଡ ହୋଇଯିବ ବାବା !

ଗୁରୁଙ୍କ କଥା ସତ୍ୟଶ ଅଗ୍ରାହ୍ୟ କରେନା; ତେଣୁ ନିଜ ଇଚ୍ଛା ବିରୁଦ୍ଧରେ ସେ ରହିଗଲା । ବସ୍ତୁତଃ ବେହାଗକୁ ବିଦାୟ କରିବା ଦିନ-ଠାରୁ ସବୁ କଥା ମନେ ମନେ ଚିନ୍ତାକରି ଏସବୁ ତାକୁ କିଛି ଭଲ ଲାଗୁ ନ ଥିଲା । ଯଦିଓ ବେହାଗ ପ୍ରକୃତରେ ଚାଲିଗଲା, ଆଉ ଆସିବନି ବୋଲି ତାର ବିଶ୍ବାସ ହେଉ ନ ଥିଲା; ତଥାପି ସେ ଯେତେ ଶୀଘ୍ର ହେଉ ନା କାହିଁକି ତାକୁ ଫେରିପାଇବା ଲାଗି ପ୍ରାଣ ତାର ବ୍ୟାକୁଳ ହୋଇ ଉଠୁଥିଲା । ତା ଛଡ଼ା ଆଉରି ଗୋଟାଏ ଚିନ୍ତା ତାକୁ ଭିତରେ ଭିତରେ ଯାତନା ଦେଉଥିଲା । ହୁଏତ ବେହାଗ ନିଜ ଗାଁକୁ ଚାଲିଯାଇଛି କି ତାଙ୍କର ପଶ୍ଚିମ ଘରକୁ ଚାଲିଯାଇଛି ଏବଂ ଯାଇ ସବୁକଥା ପ୍ରଚାର କରି କି ଗୋଟାଏ ଅପ୍ରୀତିକର କାଣ୍ଡ ଘଟେଇବା ଚେଷ୍ଟାରେ ଅଛି କି ଆଉ କୌଣସି ଉଦ୍ଦେଶ୍ୟରେ ସେ କେଉଁଠି ରହୁଛି, ଏସବୁ ଚିନ୍ତା ତା ମନ ଭିତରେ ଥିଲା । ଯାହାହେଉ ତାକୁ ପୁଣି ଆଖିରେ ନ ଦେଖିବା ପର୍ଯ୍ୟନ୍ତ ସତ୍ୟଶ କୌଣସିମତେ ନିଶ୍ଚିନ୍ତ ରହିପାରୁ ନ ଥିଲା ।

ସନ୍ଧ୍ୟା ପୂର୍ବରୁ ଉପର ମହଲା ଘରେ ସମବେତ ବନ୍ଧୁମାନଙ୍କ ସାଥିରେ ଦୁ' ଗ୍ଲାସ ଖଣ୍ଡେ ମଦ ସେବନ କରିବା ପରେ ସତ୍ୟଶର ସେଇ ନିର୍ଜୀବ ଭାବ କଟିଯାଇଥିଲା; ତଥାପି ଅନ୍ତରରେ ପୀଡ଼ାର ଗ୍ଲାନି ତାକୁ ଭିତରେ ଭିତରେ ଭୀଷଣ ପୀଡ଼ା ଦେଉଥିଲା । ଠିକ୍ ଏହିଭଳି ସମୟରେ ପାଖ ଘରେ ଅକସ୍ମାତ୍ ବେହାଗର ସ୍ବର ଶୁଣିବାକୁ ପାଇ ସତ୍ୟଶ ପୁଲକିତ ବିସ୍ମୟରେ ଚଞ୍ଚଳ ହୋଇଉଠିଲା ।

ଡାକିଲା—କିଏରେ, ବେହାଗ କିରେ ?

ବେହାଗ ଦ୍ୱାର ପାଖକୁ ଆସି କହିଲା—ଆଜ୍ଞା !

ଗୁରୁବାବାଙ୍କ ମୁହଁ କଳା ପଡ଼ିଗଲା । କହିଲେ—ଏ ଶଳାଟା ପୁଣି ଫେରିଆସିଲା ଦେଖୁଛ ! ତେବେ ଏଇଟା ଏ ଘରେ ପଶୁଛ କାହିଁକି ?

ଏଇ ଘରେ ହିଁ ସେମାନଙ୍କ "ନିଶିଥଚକ୍ର"ର ଆୟୋଜନ ଚାଲିଥିଲା ।

ସତୀଶ ଏସବୁ ପ୍ରଶ୍ନର ଉତ୍ତର ନ ଦେଇ ବେହାଗଙ୍କୁ ପଚାରିଲା— ତୁ ଘରକୁ ଯାଇଥିଲୁ ନା ?

ବେହାଗ କହିଲା—ଆଜ୍ଞା ନା । ମୁଁ କାଶୀ ଯାଇଥିଲି ।

—କାଶୀ ? କାଶୀ କାହିଁକି ?

—ମାଆଙ୍କୁ ଆଣିବାକୁ ।

ସତୀଶ ଚମକିଉଠିଲା । ବେହାଗ କାହାକୁ ମା' ବୋଲି ଡାକେ, ସତୀଶ ତାହା ଜାଣେ । କହିଲା—ସେ କ'ଣ କାଶୀରେ ରହେ ?

—ଆଜ୍ଞା ହଁ ।

—ତୁ ତାର ଠିକଣା ଜାଣୁ ?

ବେହାଗ କହିଲା—ନା । କିନ୍ତୁ ମୁଁ ଜାଣେ ମା ଯେଉଁଠି ଥାଆନ୍ତୁ ନା କାହିଁକି, ବାବାଙ୍କ (କାଶୀ ବିଶ୍ୱନାଥ) ମନ୍ଦିରରେ ନିଶ୍ଚୟ ଥରେ ଦେଖାହେବ ।

—ଦେଖା ହେଲା ?

—ଆଜ୍ଞା ହଁ ।

ସତୀଶର ବୁକୁତଳଟା ଯିମିତି ଥଣ୍ଡା ହୋଇଆସିଲା । କିଛି ସମୟ ସ୍ଥିର ଭାବରେ ନିଜକୁ ସମ୍ଭାଳିନେଇ ଶୁଖିଲା ଗଳାରେ କହିଲା— କିନ୍ତୁ ମତେ ନ କହିଲେ ତୁ ସେଠିକି ଯିବାଟା ଠିକ୍ ହୋଇନି । ତାର ମାନ ସମ୍ମାନ, ଲଜ୍ଜା ସରମର କୌଣସି ଜ୍ଞାନ ନାହିଁ । ଯଦି ତୋ ସାଙ୍ଗରେ ସେ ଚାଲି ଆସିଥାଆନ୍ତା, ତାହାହେଲେ ତୁ କି ବିପଦରେ ପଡ଼ିଥାଆନ୍ତୁ ଭଲା କହିଲୁ ?

ବେହାଗ ନୀରବରେ ଠିଆହୋଇ ରହିଲା ।

ସତୀଶ କହିବାକୁ ଲାଗିଲା—ଘରେ ପଶିବାକୁ ତ ଦିଅନ୍ତିନି । ତାକୁ ନେଇ ତୁ ଏ ରାସ୍ତାଟାରେ କିଭଳି ମୁସ୍କିଲରେ ପଡ଼ିଥାଆନ୍ତୁ ଭାବି ଦେଖିଚୁ ତ ! ଲୋକେ ତୁଚ୍ଛାଟାରେ କ'ଣ ତତେ ଗଉଡ଼ ମୂର୍ଖ କହନ୍ତି ! ଆଚ୍ଛା ଯା, ଖିଆପିଆ କର । କାଳୀଚରଣ, ଭଲକରି ଗ୍ଲାସେ ଦେ ତ ଭାଇ !

ହୁକୁମ ମାତ୍ରେ କାଳୀଚରଣ ଏକ ଗ୍ଲାସ ମଦ ସାଧକଙ୍କ ହାତକୁ ବଢ଼େଇଦେଲା ।

ବେହାରୀ କୋମଳ ସ୍ୱରରେ କହିଲା—ବାବୁ, ମା ଆପଣଙ୍କୁ ଡାକୁଛନ୍ତି ।

ସତୀଶ ଗ୍ଲାସଟା ମୁହଁକୁ ଉଠେଇବାକୁ ଯାଉଥିଲା, ଚମକିଉଠି କହିଲା—କିଏ ଡାକୁଚନ୍ତି କହିଲୁ ?

ବେହାରୀ କହିଲା—ମା ।

ସତୀଶ ହତବୁଦ୍ଧି ଭଳି ଗ୍ଲାସଟାକୁ ପିକଦାନୀ ଉପରେ ଓଗୁଡ଼େଇ କହିଲା—ତୋ ସାଥିରେ ସେ ଆସିଚି ? ଆଗରୁ କହିଲୁନି କାହିଁକି ?

ବେହାରୀ ଏ଼ାର କୌଣସି ଜବାବ୍ ନ ଦେଇ ପୁଣି କହିଲା—ସେ ଏହିକ୍ଷଣି କ'ଣ କଥାବାର୍ତ୍ତା କରିବାକୁ ଡାକୁଚନ୍ତି ।

ସତୀଶ କଣ୍ଠକୁ ଟିକିଏ ବଦଳେଇ କହିଲା—ତୁ ଯା କି ବେହାରୀ, କହିଦେବୁ ବାବୁଙ୍କୁ ଜର ହୋଇଚି । ତେଣୁ ବାହାରୁ କେତେ ଜଣ ବନ୍ଧୁ ତାଙ୍କୁ ଦେଖିବାକୁ ଆସିଛନ୍ତି । ଅଧଘଣ୍ଟାକ ପରେ ଆସିବେ ଯା କହିଦେବୁ ।

ବେହାରୀ ତାର ହାତ ପାଖରେ ଥିବା ଦରଜାଟା ଆଖିର ଇଙ୍ଗିତରେ ନିର୍ଦ୍ଦେଶ କରିଦେଇ ଆସ୍ତେ ଆସ୍ତେ କହିଲା—ମା' ତ ଏଇଠି ଠିଆହୋଇ ରହିଛନ୍ତି, ଥରେ ଆସନ୍ତୁ ।

ସତୀଶ ଚକିତ ହୋଇଉଠି ନିଃଶବ୍ଦରେ ଆଙ୍ଗୁଠି ଦେଖେଇ କହିଲା—କ'ଣ ଏଇ ଘରେ ?

ବେହାରୀ ମୁଣ୍ଡ ହଲାଇ ଉତ୍ତର ଦେଲା—ହଁ, ଏଇ ଘରେ ।

ସତୀଶ ଚଟ୍‌କରି କିଛି ଲବଙ୍ଗ, ଅଳେଇଚ ପାଟିରେ ପକେଇ ଦେଇ ଉଠି ଧୀରେ ଧୀରେ ବାହାରକୁ ଆସି ଦେଖିଲା, ତାର ପାଖ କବାଟ ଅନ୍ତରାଳରେ ସାବିତ୍ରୀର ଲୁଗାକାନି ଦେଖାଯାଉଚି । ସେ ଯେ ସବୁକଥା ଶୁଣିଚି, ସେଥିରେ କୌଣସି ସନ୍ଦେହ ନାହିଁ । ତାର ଇଚ୍ଛାହେଲା, ବୋକା ବେହାରୀଟାର ଗାଲରେ ଦି ଗୁମୁଡ଼ା ପକାନ୍ତା । ସାବିତ୍ରୀକୁ ଉଙ୍କିମାରି ଦେଖି ଧୀରେ ଧୀରେ କହିଲା—ଘର ଭିତରକୁ ଆସ ।

ଏଇ କଣ୍ଠସ୍ୱରରେ ଯେପରି ବନ୍ଧାଥିବା ତା ବୁକୁର ସମସ୍ତ ତାର ସଙ୍ଗେ ସଙ୍ଗେ ଝଙ୍କୃତ କରିଉଠିଲା । ଘରେ ପଶୁ ପଶୁ ସାବିତ୍ରୀ କହିଲା—ଜର ହୋଇଚି ବୋଲି କହୁଥିଲ ଯେ ?

ସତୀଶ ମୁଣ୍ଡକୁ ହଲାଇ କହିଲା—ହଁ, ଜର ହୋଇଚି ତ ।

'କାହିଁ ଦେଖି !' କହି ସାବିତ୍ରୀ ସତୀଶର ପାଖକୁ ଲାଗିଆସି ସତୀଶର କପାଳ ଉପରେ ହାତ ଦେଇ କହିଲା—ହଁ, ଏତେ ତ ! ଘର ଉତ୍ତାପ, ଦେହ ଯେମିତି ଜଳିଯାଉଚି । ଆସ, ଶେଯ ପକେଇ ଦେଉଚି, ଶୋଇପଡ଼ିବ । ବେହାରୀ, ବାବୁଙ୍କ ଘରେ ଆଲୁଅ ଜଳେଇଦେବୁ ଯା ! କହି ସାବିତ୍ରୀ ତିନିତାଲାର ସିଡ଼ି ଆଡ଼କୁ ଆଗେଇ ଆସିଲା । ସେ ଘରକୁ ପଶିବାମାତ୍ରେ ବାବୁଙ୍କ ଶୋଇବାଘରର ସନ୍ଧାନ ସେ ବେହାରୀକୁ ପଚାରି ନେଇ ସାରିଥିଲା । ପଲଙ୍କ ଉପରେ ଶେଯ ପ୍ରସ୍ତୁତ ଥିଲା । କେବଳ କାନରେ ଝାଡ଼ ଦେବାମାତ୍ରେ ସତୀଶ ଶାନ୍ତଶିଷ୍ଟ ପିଲାଟି ଭଳି ଶୋଇପଡ଼ିଲା । ଝରକା ଖଇଟା ବନ୍ଦ କରିଦେଇ ବେହାରୀକୁ ପଚାରିଲା—ସାଧୁବାବାଟି କେଉଁ ଘରେ ରହନ୍ତି ?

ବେହାରୀ ପାଖ ଘରଟିକୁ ଦେଖେଇ ଦେବାମାତ୍ରେ ସାବିତ୍ରୀ କହିଲା—ତାଙ୍କର କ'ଣ କ'ଣ ଜିନିଷ ଅଛି ? ସେସବୁ ତଳକୁ ନେଇଆ ବେହାରୀ ! ଡାହାରେ ଗୁଡ଼ାଏ ଘର ତ ଖାଲି ପଡ଼ିଛି, ସେଥିରୁ ଗୋଟିକରେ ସେ ବେଶ୍ ଆରାମରେ ରହିପାରିବେ ଯେ । ବେହାରୀ ଚାଲି ଯାଉଥିଲା, ସାବିତ୍ରୀ ଡାକ କହିଦେଲା ଆଉ ବାବୁଙ୍କୁ ଯେଉଁମାନେ ଦେଖି ଆସିଥିଲେ, ସେମାନେ ନିଜ ନିଜ ଘରକୁ ଚାଲିଯିବାକୁ କହିଦେ । କହ, ବାବୁଙ୍କ ଜର ଖୁବ ବଢ଼ିଯାଇଚି, ତଳକୁ ଓହ୍ଲେଇ ଯାଇପାରିବେନି ।

ସତୀଶ କୌଣସି ପଦେହେଲେ କଥା କହିପାରିଲାନି, ମୁହଁ ବନ୍ଦ କରି ପଡ଼ିରହିଲା । ବେହାରୀ ଖରଦର୍ପରେ ଆଦେଶ ପାଳନ କରିବା ଲାଗି ପ୍ରସ୍ଥାନ କରିବାମାତ୍ରେ ସାବିତ୍ରୀ କହିଲା—ଆଉ ଉଠନି ତୁମେ । ମୁଁ ଖିଆପିଆର ବ୍ୟବସ୍ଥା ଠିକ୍ କରିଦେଇ ଆସେ ।

ସାବିତ୍ରୀର ଭୟ, ହୁଏତ ସାଧୁବାବା ବିଦ୍ରୋହ କରିଉଠିବେ । ତେଣୁ ଅଜ୍ଞାତରେ ଆସି ଦୁଆର ଆଢୁଆଳରେ ଠିଆହୋଇ ରହିଥିଲା । ପରକ୍ଷଣରେ ସେପଟ ଦୁଆର ଦେଇ ବେହାରୀ ପଶିଆସି ବଡ଼ ପାଟିରେ କହିଲା—ମା କହିଲେ, ଆପଣମାନେ ସମସ୍ତେ ନିଜ ନିଜ ଘରକୁ ଚାଲିଯାଆନ୍ତୁ । ବାବୁଙ୍କର ଜର ବଢ଼ିଚି । ଆଜି ଆଉ ସେ ତଳକୁ ଓହ୍ଲେଇ ପାରିବେନି । ଥାକୋବାବାଙ୍କୁ ଲକ୍ଷ୍ୟକରି କହିଲା—ତୁମର ଜିନିଷପତ୍ର

ଉଲେ କବାରେ ଘର ପାଖରେ ରଖିଦେବାକୁ ମା ହୁକୁମ ଦେଇଛନ୍ତି । ତୁମେ ସେଇଠି ରହିବ ।

ବାବାଙ୍କର କୌଣସି ଉଗ୍ରତା ପ୍ରକାଶ ପାଇଲାନ । ସେ ଶାନ୍ତ-ଭାବରେ ପଚାରିଲେ—ମା କଏ ବେହାରୀ ?

ବେହାରୀ କଡ଼ା ଗଳାରେ ଜବାବ ଦେଲା—ସେକଥା ଜାଣିବା ତୁମର କ'ଣ ଦରକାର ? ଯାହା କହୁଛି, ତା କର । ଉଲକୁ ଯାଅ । ମନେ ମନେ ସେ କହୁଥିଲା—କଏ ବା ତାର ଠିକଣା ପାଇବେ ? ବନା ଫଇସାରେ ମଦ ଗଞ୍ଜେଇ ଖାଇ କଠଉପିଛା—ସବୁ କାଳ ବାହାର କରି-ଦେଉଛି ଦେଖ !

ସମସ୍ତେ ହତବୁଦ୍ଧି ଭଳି ପରସ୍ପରକୁ ଚାହିଁ ଉଠିବାର ଉପକ୍ରମ କଲେ । କେହି କିଛି ବୁଝିପାରିଲେନି ଅବଶ୍ୟ; କିନ୍ତୁ ଆଦେଶ ଯେତେ-ବେଳେ ପ୍ରକୃତରେ ଆଦେଶ ଭାବରେ ଅକୁଣ୍ଠିତ ସ୍ୱରରେ ପ୍ରକାଶ ପାଏ, ସେତେବେଳେ ସେଇଟା କାହାର କଣ୍ଠର ଆଦେଶ, ତାହା ଅନୁଭବ କରିବା କଠିନ ନୁହେଁ । ସେ ଆଦେଶଟାରେ ଜୋର୍ ଥାଏ ଅଧିକ ।

ବେହାରୀ ଫେରିଯାଇ ଘରକୁ ଆସି ଦେଖିଲା, ସାବିତ୍ରୀ ପୂଜାରୀ-ହାତୀ ଦୁଧ ସିଝେଇବାର ଉଦ୍‌ଯୋଗ କରୁଛି । କହିଲା—ସ୍ନାନ ହୋଇ ଆସିଲାଣି । ଗାଧୁଆ ହେଲାନି ମା ! ବନସାରା ଗାଡ଼ରେ ଜଳ ଟୋପାଏ ହେଲେ କୁଣ୍ଡରେ ପଡ଼ିନ । ଚାଲିଲ, ଆଗେ ତୁମକୁ ଗାଧୁଆପାଧୁଆ କରିବାର ଜାଗାଟା ଦେଖେଇ ଦେଇ ଆସିବି । ଆସିଲାବେଳକୁ ବାବୁଙ୍କ ପାଇଁ ଦୁଧ ସିଝା ସରିଥିବ ।

ସାବିତ୍ରୀକୁ ପଠେଇଦେଇ ବେହାରୀ ବାବୁଙ୍କ ଲାଗି ତମାଖୁ ସଜେଇ ଘୁଡ଼ୁଘୁଡ଼ୁଟିକୁ ହାତରେ ଧରି ନାଲରେ ଦୁଆର ଫିଟେଇ ବାବୁଙ୍କ ଘରେ ପଶିଲା । ସତୀଶ ଚୁପ୍‌ଚାପ୍ ଶେଯରେ ପଡ଼ିରହିଥିଲା । ଆଖି ଖୋଲି କହିଲା—କଏ ବେହାରୀ ?

—ହଁ ବାବୁ, ତମାଖୁ ସଜେଇ ଆଣିଛି ।

—ଆ ଠ...ସେ କେଉଁଠି ?

ବେହାରୀ କହିଲା—ଏପର୍ଯ୍ୟନ୍ତ କୁଣ୍ଡରେ ଟୋପାଏ ହେଲେ ଜଳ ପଡ଼ିନ । ସେଇଥିପାଇଁ ଜୋର କରି ଗାଧୋଇବା ପାଇଁ ପଠେଇଦେଇ ଯାଇ ଆସିଲି ।

ସତୀଶ କହିଲା--ବେଶ୍ ଠିକ୍ କରିଚୁ । କିନ୍ତୁ ତତେ ମୁଁ ଖୋଜୁଥିଲି ବେହାଣ୍ଡି !

ବେହାଣ୍ଡି ବ୍ୟସ୍ତ ହୋଇଉଠିଲା—କାହିଁକି ବାବୁ ? ଦେହ କମିତି ଲାଗୁଚି ?

ସତୀଶ ମୁଣ୍ଡ ହଲାଇ କହିଲା—ଭଲ ନୁହେଁ ବେହାଣ୍ଡି ! ସେଇଥିପାଇଁ ତତେ ଖୋଜୁଥିଲି । ଦୁଆରଟାରେ ଖିଲ୍ଲିକ ଲଗେଇଦେଇ ମୋ ପାଖରେ ଟିକିଏ ଆସି ବସ ।

ବେହାଣ୍ଡି ଦ୍ୱାର ରୁଦ୍ଧ କରି ଶଙ୍କିତ ଚିତ୍ତରେ ପ୍ରଭୁଙ୍କ ପାଦତଳକୁ ଲାଗିଆସିଲା ।

ସତୀଶ ପଚାରିଲା—ଆଚ୍ଛା ବେହାଣ୍ଡି, ଜୀବନରେ ଘାଟି ପଡ଼ିବା କଥାରେ ତୋର ବିଶ୍ୱାସ ଅଛି ?

ବେହାଣ୍ଡି ଚକିତ ହୋଇ କହିଲା—ଘାଟି ? ଘାଟିକି ମାନିବିନି ? ପାଞ୍ଜିରେ ଲେଖା କଥା କ'ଣ କେବେ ମିଛ ହୋଇପାରେ ବାବୁ !

ସତୀଶ ଟିକିଏ ଚୁପ୍ ରହିବା ପରେ କହିଲା—ଏଥର ମୋର ଗୋଟାଏ ମସ୍ତ ଘାଟି ଅଛି ବେହାଣ୍ଡି !

ବେହାଣ୍ଡି ଶିହରିଉଠି କହିଲା—ନା, ନା, ଏଭଳି କଥା କହିବେନି ବାବୁ !

ସତୀଶ ମନେ ମନେ କ'ଣ ଭାବି ମୁଣ୍ଡକୁ ହଲାଇ କହିଲା—ମୁଁ ଜାଣିପାରୁଚି ବେହାଣ୍ଡି, ଏଇ ଜର ହିଁ ମୋର ଶେଷ ଜର । ଏଥର ମୁଁ ଆଉ ବଞ୍ଚିବିନି ।

ଆଖିପଲକରେ ବେହାଣ୍ଡି ସତୀଶର ଦ'ପାଦ ଚିପିଧରି କହିଲା—ଏକଥା ମୁହଁରେ ଧରନ୍ତୁନି ବାବୁ ! ତୁମର ଦୁଃଖ କଷ୍ଟ ନାଁ ଧରିଲେ ମୋ ଦେହ ଥରିଉଠୁଚି ବାବୁ ! ମୋ ପରମାୟୁ ନେଇ ତୁମେ ବଞ୍ଚିରୁହ ବାବୁ ! ତୁମେ ଗଲେ ଆମେ ସମସ୍ତେ ମରିଯିବୁ, ଜଣେ ହେଲେ କେହି ବଞ୍ଚି ପାରିବୁନି । କହୁ କହୁ ବେହାଣ୍ଡି ହୁହୁ କରି କାନ୍ଦିଉଠିଲି ।

ସତୀଶ ଗମ୍ଭୀର ମୁଖରେ କହିଲା—ମରିବା ବଞ୍ଚିବା କଥା ତ କାହା ହାତରେ ନାହିଁ ବେହାରୀ ! ଯଦି ନ ବଞ୍ଚେ, ତତେ ଯାହା ଯାହା ପଚାରିବି, ସତ କହିବୁ ?

ବେହାରୀ କାନ୍ଦ କାନ୍ଦ କହିଲା—ଏଇ ଆପଣଙ୍କ ପାଦ ଧରି ରାଣ ପକେଇ କହୁଚି ବାବୁ, କିଛିହେଲେ ମିଛ କହିବିନି ।

···କିଛିହେଲେ ଲୁଚେଇବୁନି ତ ?

—ନା ବାବୁ, କୌଣସି କଥା ଲୁଚେଇବିନି ।

ସନ୍ତୋଷ କହିଲା—ଆଚ୍ଛା, ବସ ।

ବେହାରୀ ମୁହଁ ପୋଛି ନିଜ ସ୍ଥାନରେ ଆସି ବସିବା ପରେ ସନ୍ତୋଷ ପଚାରିଲା—ଆଚ୍ଛା, ସାବିତ୍ରୀକୁ କେଉଁଠି ପାଇଲୁ କହିଲୁ ?

— କହିଲି ପରା କାଶୀରେ !

—ସେଠି ବିପିନ ବାବୁଙ୍କ ସହିତ ତୋର ଦେଖାହେଲା ?

ବେହାରୀ ଜିଭକୁ କାମୁଡ଼ି ଘୃଣାସ୍ୱରରେ କହିଲା— ରାମ ! ରାମ ! ସେଇ ହାରାମଜାଦାଟା ଆମର ବା କିଏ ଯେ ତା ସହିତ ମୋର ଦେଖା ହେବ !

ସନ୍ତୋଷ କହିଲା—କିନ୍ତୁ ତୁ ନିଜେ ତ ତାକୁ 'ଚୋର' ବୋଲି ଡାକୁଥିଲୁ ବଚ୍ଛଣାରେ···

ବେହାରୀ ଦ'ହାତ ଉଠେଇ ସନ୍ତୋଷର କଥାଟାକୁ ଶେଷ କରିବାକୁ ମଧ୍ୟ ଦେଲାନି । ସହସା ଅତି ଉତ୍ତେଜିତ ହୋଇ ନିଜ ଗାଲରେ ଚାପୁଡ଼ା ମାରି କହିବାକୁ ଲାଗିଲା···ତାର ଶାସ୍ତି ଏଇ···ଏଇ···ଏଇ । ନ ଜାଣି କିଛି କହିଦେଇଥିଲି ବୋଲି ତ ପାଞ୍ଚ ଜଣଙ୍କ ପାଖରେ ମୁହଁ ଦେଖେଇପାରୁନି । ଜାଣିକରି କହିଥାଆନ୍ତି ଯଦି, ମୋର ଏ ଜିଭଟା ପଚି ସଡ଼ି କେତେବେଳୁ ପଡ଼ିଗଲାଣି ।

ସନ୍ତୋଷ ଆଶ୍ଚର୍ଯ୍ୟ ହୋଇ ଉଠି ବସି କହିଲା—କ'ଣ ତୋର ହେଲା କରେ ?

ବେହାରୀ ଲଜ୍ଜିତମୁଖରେ ସ୍ଥିର ହୋଇ ବସି ଗୋଟାଏ ପରେ ଗୋଟାଏ ସବୁ କଥା କହିଗଲା—ଟିକିଏ ହେଲେ ବଢ଼େଇ କହିଲାନି । ଆମୂଳଚୂଳ ସବୁ ଏକାବେଳକେ ଅବିକଳ, କିଛି ହେଲେ ଲୁଚେଇ ରଖିଲାନି ସେ । ନିଜେ ଯାହା ଜାଣେ, ମୋକ୍ଷଦା ଓ ଚକ୍ରବର୍ତ୍ତୀ ମୁହଁରୁ ଯାହା ଶୁଣିଥିଲା, ସାବିତ୍ରୀ ମୁହଁରୁ ଯାହା କିଛି ଜାଣି ପାରିଥିଲା, ସବୁ କଥା ଗୋଟିକ ପରେ ଗୋଟିଏ ବ୍ୟକ୍ତ କରି କହିଲା । ସନ୍ତୋଷ ପଥର ମୂର୍ତ୍ତି ଭଳି ସ୍ତବ୍ଧ ହୋଇ ବସିରହିଲା । ବେହାରୀ ମୁହଁରୁ ମଧ୍ୟ ଆଉ କଥା ବାହାରିଲାନି ।

ବହୁକ୍ଷଣ ପରେ ସତୀଶ ଦୀର୍ଘନିଶ୍ୱାସ ଟାଣି କହିଲା—ଏତେଦିନ ଯାଏ ଏସବୁ କଥା ମତେ ତୁ ନ କହିଥିଲୁ କାହିଁକି ?

ବେହାରୀ କହିଲା—କହିବି ବୋଲି ମୋ ବୁକୁ ଭିତରଟା ଦହିଦହି ସାମି ଛଡ଼ାକ୍ ହୋଇଛି; କିନ୍ତୁ କିଛିହେଲେ କହି ପାରୁ ନ ଥିଲି ।

—କାହିଁକି ? ଶୁଣେ ।

—ମୋ ସାବିତ୍ରୀ ମା ରାଣ ପକେଇ ନିଷେଧ କରିଥିଲା ବାବୁ !

ସତୀଶ ଆଉ ଟିକିଏ ନୀରବ ରହି କହିଲା—କିନ୍ତୁ ସେ ଯାହା-ହେଉ ବେହାରୀ, ସାବିତ୍ରୀ ତ ସେଦିନ ରାତିରେ ନିଜ ମୁହଁରେ କହି ଯାଇଥିଲି ସେ ବିପିନ ଛଡ଼ା ଆଉ କାହାରିକୁ ଚିହ୍ନେନା । ତାର ସାଥିରେ ହିଁ ସେ ଚାଲିଯାଉଛି । ସେ କ'ଣ ମିଛ କହିଥିଲା ବେହାରୀ ?

ବେହାରୀ କହିଲା—ଏଇ କଥାଟା ମୁଁ ନିଜେ ବି ବୁଝିପାରିନି ବାବୁ ! ତେବେ ମୁଁ ନିଶ୍ଚୟ ଜାଣେ, ଏସବୁ କଥା ଖାଣ୍ଟି ମିଛ । ମୁଁ ମୋ ପିଲାଙ୍କ ରାଣ ପକେଇ କହୁଛି, ଏଗୁଡ଼ାକ ନିହାତି ମିଛ କଥା । ମା ଯିବା ସମୟରେ କାନ୍ଦି କାନ୍ଦି କହିଥିଲି, କାହିଁକି ଏ କଳଙ୍କ ନିଜ ମୁଣ୍ଡରେ ନିଜେ ବୋହିନେଉଛ ମା ! ତଥାପି ମା ମତେ କୌଣସି କଥା ପ୍ରକାଶ କରିବାକୁ ହୁକୁମ ଦେଲେନି । ନିଜେ କାନ୍ଦି କାନ୍ଦି କହିଲେ—ବେହାରୀ, ମୋ ରାଣ, ବାବୁଙ୍କୁ ଏକଥା କେବେ କିଛି କହିବୁନି । ସେ ମତେ ଘୃଣା କରନ୍ତୁ, ଆଉ କେବେହେଲେ ମୋ ମୁହଁ ନ ଦେଖନ୍ତୁ, ତା ମୋ ପକ୍ଷରେ ଢେର୍ ଭଲ । ଏତିକି କହୁ କହୁ ବେହାରୀର ସେଦିନ ରାତି କଥା ମନେ ପଡ଼ିଗଲା । ତା ଆଖିରୁ ଝରଝର ହୋଇ ଲୁହ ବହିଆସିଲା ।

ସତୀଶ ଆଖିରେ ମଧ୍ୟ ସେଇ ଲୁହ । ଅବାରିତ ସେ ଅଶ୍ରୁଧାରା ! କିନ୍ତୁ ବେହାରୀ ଜାଣିପାରିଲାନି । ବେହାରୀ ଅଶ୍ରୁ ସମ୍ବରଣ କରିବା ପୂର୍ବରୁ ସତୀଶ ଅଶ୍ରୁ ସମ୍ବରଣ କରି ନେଇଥିଲା ।

ସତୀଶ କହିଲା—ତୁ ସିନା ବେହାରୀ ବୁଝିନୁ କିଛି, କିନ୍ତୁ ମୁଁ ବୁଝିଛି ସେ ନିଜ ଗୋଡ଼ରେ କୋଡ଼ ମାରି ଖଣ୍ଡିଆ କାହିଁକି କରିଥିଲି ? କିନ୍ତୁ ମିଥ୍ୟାର ତ କେବେ ଜୟ ହୁଏନା ବେହାରୀ, ସତ୍ୟର ଜୟ ହୁଏ ।

ବାହାରୁ କିଏ ଦୁଆର ବାଡ଼େଇବାର ଶୁଭିଲା । —କ'ଣ ଦୁଆର ବନ୍ଦକରି ଶୋଇପଡ଼ିଲି ନା କ'ଣ ? ଦୁଆର ଖୋଲ ।

ବେହାଗ ବାବୁଙ୍କ ଆଡ଼କୁ ଚାହିଁଲା, କିନ୍ତୁ ବାବୁ ସେତେବେଳକୁ ଆଖିବୁଜି ଚୁପ୍‌ଚାପ୍ ଶୋଇ ପଡ଼ିଲେଣି । ଜଣେ ଶୁଆ ପାଖରେ କହନ୍ତୁ ।

ବାହାରୁ ଡାକ ଶୁଭିଲା—ଦୁଆର ଖୋଲ, ହାତ ପୋଡ଼ିଗଲା ଯେ ।

ବେହାଗ ସଙ୍ଗେ ସଙ୍ଗେ ଦୁଆର ଖୋଲି ପାଖକୁ ଆଡ଼େଇ ହୋଇ ଠିଆହେଲା ।

## ଚାକିରି

ଗିନାରେ ଗିନାଏ ଗରମ ଦୁଧ ଧରି ସାବିତ୍ରୀ ସତୀଶ ଘରେ ପହଞ୍ଚିଲା । ସେ ପିନ୍ଧିଥାଏ ଗୋଟାଏ ଧଳା ଶାଢ଼ୀ, ସଦ୍ୟସ୍ନାତ ସୁଦୀର୍ଘ ସିକ୍ତ କେଶଗୁଡ଼ିକ ପିଠି ଉପରକୁ ପକେଇଦେଇଛି, କିଛିଟା ଚୂର୍ଣ୍ଣ କୁନ୍ତଳ ମୁହଁ ଓ କପାଳ ଉପରେ ଆସି ପଡ଼ିଛି । ସତୀଶ ତାକୁ ଆଜି ଆଖିରେ ଚାହିଁ ଦେଖିଲା । ତାର ମନେହେଲା, ସାବିତ୍ରୀକୁ ସେ ନିମିତ୍ତ ଆଜି ପ୍ରଥମ କରି ଦେଖିଲା ।

କିନ୍ତୁ ସେ ସତୀଶର ଆର୍ଦ୍ର ଚକ୍ଷୁ-ପଲ୍ଲବ ଏଇ କ୍ଷୀଣ ଦୀପାଲୋକରେ ଦେଖିବାକୁ ପାଇ ନ ଥିଲା । ଟିକିଏ ପାଖକୁ ଲାଗିଆସି ପଚାରିଲା— ଭିତରୁ ଦୁଆର ଦେଇ ପ୍ରଭୁ-ଭୃତ୍ୟଙ୍କ ମଧ୍ୟରେ କ'ଣ କଥାବାର୍ତ୍ତା ହେଉଥିଲା ଶୁଣେ ? ମତେ ଫାଟକ ବାହାରକୁ ବାଡ଼େଇ ବାହାର କରିଦେବା ପାଇଁ ନା ?

ସତୀଶ କିଛି ଉତ୍ତର ଦେଲାନି । ହୁଏତ କଥା କହିଲେ କଣ୍ଠ-ସ୍ୱରରେ ନିଜର ଦୁର୍ବଳତା ଧରା ପଡ଼ିଯାଇପାରେ, ସେଇଥିପାଇଁ ସେ ଚୁପ୍ ରହିଥିଲା ।

ସାବିତ୍ରୀ କହିଲା—ପିଲାଦିନେ ବିରାଡ଼ି ବେକରେ ଘଣ୍ଟି ବନ୍ଧା ଗଳ୍ପ ପଢ଼ିଥିଲ ତ ? ମୁଁ ଦେଖିବାକୁ ଚାହୁଁଛି, ଘଣ୍ଟି ବାନ୍ଧିବାକୁ କିଏ ଆଗେଇ ଆସୁଛି—ନିଜେ ତୁମେ ନା ତୁମର ସେଇ ସାଧୁବାବାଟି ।

ତଥାପି ସତୀଶ କୌଣସି କଥା କହିଲାନି, ସେଇଭଳି ଚୁପ୍ ରହିଲା ।

ଗୋଟାଏ ଚୌକି ଟାଣିଆଣି ସାବିତ୍ରୀ ପାଖରେ ଆସି ବସିଲା । କିନ୍ତୁ ଏଥର ତାର ସେଇ ପରିହାସ-ତରଳ କଣ୍ଠସ୍ୱର ଗମ୍ଭୀର ହୋଇ-

ଆସିଲି । କହିଲି—ସେ ତାମସା ଏତିକିରେ ରହୁ, ମତେ ଅସଲ କଥାଟା ବୁଝାଇ ଆଗେ କହିଲ ଭଲ ! ଉପୀନ୍ଦା ସହିତ ତ ଝଗଡ଼ା କଲ । ଶେଷରେ ସରୋଜିନୀ ସହିତ ଝଗଡ଼ା କରି ପଳେଇ ଆସିଲ ନା ? ହୁଏତ ସେସବୁ ଦିନକ ମଧ୍ୟରେ ତୁଟିଯିବ; କିନ୍ତୁ ଏସବୁ କ'ଣ ହେଉଛି ଶୁଣେ । ମୋ ଦେହ ଛୁଇଁ ଶପଥ କରିଥିଲ, ମଦ ଖାଇବନି । ମଦ ଚୁଲିକି ଯାଉ, ଶେଷରେ ଗଞ୍ଜେଇ ଫୁଙ୍କା ବି ଚାଲିଲା ! ଅଘୋରୀ, ଅରକ୍ଷିତ, ଗେରୁଆ ବସ୍ତ୍ରଧାରୀ ଭଣ୍ଡ ଦଳେ ଗୋଟେଇ ଗାଟେଇ ଆଣି ବେଶ୍ ପେଟ ଭର୍ତ୍ତି ଖିଆ-ପିଆ ଚାଲିଛି !

ସାବିତ୍ରୀ ମୁହଁରେ ସରୋଜିନୀର ନାମୋଲ୍ଲେଖ ମାତ୍ରେ ସତୀଶର ଦେହ ଯେମିତି ଜଳିଉଠିଲା । ବେହାଗ୍ର ଯେ କୌଣସି କଥା କହିବାକୁ ବାକି ରଖିନି, ସେ ବେଶ୍ ବୁଝିପାରିଲା । ହଠାତ୍ ସେ 'କହିବ ବୋଲି ଭାବିଲା—ତୋରି ପାଇଁ ମୋର ସର୍ବନାଶ, ତୁଇ ଆମରି ଶନି ! କିନ୍ତୁ ସେ କଥା ସେ ଓଠରେ ଚାପିନେଇ ସଂକ୍ଷେପରେ କହିଲା—ଦୁଃଖ ଭୁଲେଇ ମଦ, ଗଞ୍ଜେଇ ଖାଇବାରେ ଦୋଷ କ'ଣ ?

—ଦୋଷ କ'ଣ ତୁମେ ଜାଣନା ?

—ନା ।

—ଆଚ୍ଛା ସେ କଥା ଯଦି ଜାଣନି, ଏ କଥା ତ ଜାଣ ଯେ ତୁମେ ନିଜେ ମୋ ଦେହକୁ ଛୁଇଁ ପ୍ରତିଜ୍ଞା କରିଥିଲ !

—ତୁ ମୋର ଇମିତି କ'ଣ ଯେ ତୋ ଦେହ ଛୁଇଁ ପ୍ରତିଜ୍ଞା କରିଥିଲି ବୋଲି ତାକୁ ପାଳିବାକୁ ବାଧ୍ୟ ।

ସାବିତ୍ରୀ କୌଣସିମତେ ହସକୁ ଚାପି ମୁଣ୍ଡ ହଲାଇ କହିଲା—କେହି ନୁହେଁ ମୁଁ ? ଏକାବେଳକେ କେହି ନୁହେଁ ?

ସତୀଶ ମୁଣ୍ଡ ହଲାଇ କହିଲା—ନା ।

—ତେବେ ମଦ ଗ୍ଲାସ ଫୋପାଡ଼ିଦେଇ ଅଳେଇଚ ବୋଲିଦେଇ ଲୁଚେଇ ସେଦିନ ଆସୁଥିଲ କାହିଁକି ?

—ସେସବୁ ନେଇ ତୁ କାଳେ ବକାବକି କରିବୁ, ସେଇ ଭୟରେ ।

ସାବିତ୍ରୀ ହସି ହସି କହିଲା—ତେବେ ସାବିତ୍ରୀ ତୁମର କେହି ନୁହେଁ ? ଆଚ୍ଛା ଟିକିଏ ଦୁଧ ଖାଇ ଘୁମାଅ । ସତୀଶ କୌଣସି ଆପତ୍ତି

କରିପାରିଲେନି । ଉଠିବସି ସାବତ୍ରୀ ହାତରୁ ଦୁଧ ଗିନାଟା ନେଇ ସବୁତକ ଦୁଧ ପିଇଦେଇ ଶୋଇପଡ଼ିଲା ।

ସାବତ୍ରୀ ଗିନାଟା ଧରି ଚାଲି ଯାଉଥିଲା, ସତୀଶ ପଚାରିଲା—ତୋର ସାନ୍ଧ୍ୟ ପ୍ରାର୍ଥନା ସରିଲାଣି ତ ?

ସାବତ୍ରୀ ଫେରିପଡ଼ି କହିଲା—ହଁ ।

—କ'ଣ ଖାଇଲୁ ?

—ଏପର୍ଯ୍ୟନ୍ତ କିଛି ଖାଇନି—ଯାଉଛି କିଛି ଖାଇନେବି ।

—ଶୋଇବୁ କେଉଁଠି ?

—ଦେଖେ, ଫାଟକ ବାହାରେ ଜାଗାଫାଗା ଟିକିଏ ମିଳୁଛି କି ନାହିଁ ? ନହିଲେ ଗଛ ତଳେ । ପରେ ସେ ଟିକିଏ ମୃଦୁ ହସି ଦେଇ କହିଲା— ଆଚ୍ଛା, ଏପରି ଗୁଡ଼ାଏ କଥା ମୁହଁରୁ ବାହାରିବାକୁ ତୁମ ମନରେ କୌଣସି କଷ୍ଟ ହେଉନି ? ଧନ୍ୟ ତୁମେ ! ଏତିକି କହିଦେଇ ସ୍ନେହରେ ସତୀଶ କପାଳ ଉପରୁ ବାଳଗୁଡ଼ାକ ହାତରେ ଉପରକୁ ଆଡ଼େଇ ଦେବାକୁ ଗଲାବେଳେ ଲଲାଟରେ ଉତ୍ତାପ ଅନୁଭବ କରି ସେ ଚମକିଉଠିଲା । ବେହାରୀ ଘରେ ପଶିଆସି ପଚାରିଲା—ମା, ତୁମର ବିଛଣା !

ସାବତ୍ରୀ ପାଖଘରକୁ ହାତରେ ଦେଖେଇଦେଇ କହିଲା—ସେଇ ଘରେ ମୋର ବିଛଣା ପକେଇଦେ । ବେହାରୀ, ବାବୁଙ୍କର ଜର ବଢ଼ିଲା ଭଳି ଲାଗୁଛି । ମୁଁ ଏଇ ପାଖଘରେ ଶୋଇବି । ମଝି କବାଟଟା ଖୋଲା ରହିବ । ତତେ ମଧ୍ୟ ଆଜି ଏ ଘର ଖଟରେ ଶୋଇବାକୁ ପଡ଼ିବ । ସତୀଶକୁ କହିଲା—ଆଉ ରାତି ଅନିଦ୍ରା ହୁଅନି, ଶୋଇବାକୁ ଚେଷ୍ଟାକର । ଏହା କହି ଦେଇ ସେ ଧୀରେ ଧୀରେ ଦୁଆରଟା ବନ୍ଦ କରିଦେଇ ଗଲା ।

ଅଳ୍ପ ସମୟ ପରେ ସାମାନ୍ୟ କିଛି ଖାଇଦେଇ ସେ ପାଖଘରେ ଶୋଇପଡ଼ିଲା । ଆଗରୁ ହାଲିଆ ହୋଇ ପଡ଼ିଥିଲା ସେ; ତେଣୁ ଗାଢ଼ ନିଦ୍ରାରେ ଶୋଇପଡ଼ିଲା ।

ଭୋର ସକାଳୁ ନିଦ ଭାଙ୍ଗିବାମାତ୍ରେ ସାବତ୍ରୀ ଧଡ଼୍ପଡ଼୍ ହୋଇ ଉଠିପଡ଼ି ଏ ଘରେ ଆସି ଦେଖିଲା, ଶେଯରେ ସତୀଶ ଭୀଷଣ କଷ୍ଟରେ ଛଟପଟ ହେଉଛି । କପାଳରେ ହାତ ଦେଇ ଦେଖିଲା, ଖଇଫୁଟା ତାତି । ସାବତ୍ରୀର ଶୀତଳ ସ୍ପର୍ଶରେ ସତୀଶ ଆଖି ଖୋଲିଲା, ଦୁ'ଆଖି ମହାର ଫୁଲ ପରି ଲାଲ୍ ଲାଲ୍ ।

ଜର ଅବସ୍ଥା ଦେଖି ସାବନୀ ଜମୃରେ ସେଇ ଶେଯ ଉପରେ ବସି ପଡ଼ିଲା । କ'ଣ କଥା ଅଚ୍ଚଳ, ସେ ଠିକ୍ କରିପାରିଲାନି ।

ସତ୍ୟାଶ ତାର ହାତଟିକୁ ଟାଣିନେଇ ନିଜ ତାତିଲା କପାଳ ଉପରେ ଚୁପିଧର କହିଲା—ମୁଁ କାଲି ଜାଣିପାରିଲି । କାଲି ମୁଁ ବେହାରୀକୁ କହୁଚ— ଏଇ ଜର ମୋର ଶେଷ ଜର । ଏଥର ଆଉ ମୁଁ ବଞ୍ଚିବନି ।

ଜରର ତୀବ୍ର ଯାତନାରେ ସତ୍ୟାଶ ଧଇଁସଇଁ ହୋଇ କଥାଗୁଡ଼ାକ କହିବା ପରେ ସାବନୀ ତାକୁ ସାନ୍ତ୍ୱନା ଦେବ କ'ଣ, ଅଦମ୍ୟ କ୍ରନ୍ଦନରେ ତା ନିଜର କଣ୍ଠରୋଧ ହୋଇଆସିଲା । ସାରା ରାତି ସେ ନିଶ୍ଚିନ୍ତରେ ଶୋଇ ପଡ଼ିଥିବାରୁ ଅନୁତାପରେ ମୁଣ୍ଡଟାକୁ ଛେଚି ଚୂନା ଚୂନା କରିଦେବାକୁ ଇଚ୍ଛାହେଲା ତାର ।

ସତ୍ୟାଶ କହିଲା--ତୁ ମୋ ପାଖରେ ଅଛୁ, ସେଇଟା ମୋର ବଡ଼ ସାହସ ।

ଆଜି ସେଇ ସାବନୀ, ଯାହାକୁ କାଲି ରାତିରେ 'ତୁ ବା ମୋର କିଏ' କହିଥିଲା, ଆଜି ସିଏ ତାର ସବୁଠୁ ବଡ଼ ଅବଲମ୍ବନ ।

କିନ୍ତୁ ଇତି ମଧ୍ୟରେ ସାବନୀ ଯେମିତି ସମସ୍ତ ବୁଦ୍ଧି ହରେଇ ବସିଛି । ବେହାରୀକୁ କହି ଡାକ୍ତରକୁ ଡକେଇ ଆଣିବା କଥା ମଧ୍ୟ ସେ କହିପାରି ନାହିଁ । କେବଳ ସତ୍ୟାଶର ବାହୁ ଉପରେ ହାତ ରଖି ପଥର ମୂର୍ତ୍ତି ଭଳି ବସିରହିଲା ।

କିଛି ସମୟ ପରେ ସତ୍ୟାଶ ପୁଣି ସାବନୀ ଆଡ଼କୁ କଡ଼ ଲେଉଟାଇଲା । ପୁଣି ସାବନୀର ହାତଟିକୁ ଟାଣିନେଇ ବୁକୁ ଉପରେ ଚୁପି-ଧରି କହିଲା···ମୁଁ ତ ବି କିଛି କିଛି ଡାକ୍ତରୀ ପଢ଼ିଛି । ମୁଁ ଜାଣେ, ମୋର ଏ ଜ୍ଞାନ ହୁଏତ ଓପରଓଳି ଆଡ଼କୁ ନ ଥିବ । ଯଦି ଜ୍ଞାନ ମୋର ଫେରି ନ ଆସେ, ତେବେ ଉପୀନଦାକୁ କହିବୁ, ଏଇ କାନ୍ଥ ଆଲମିରା ଭିତରେ ମୋର ଉଇଲ ଅଛି । ସେ ମୋର ମୁହଁକୁ ଆଉ ଚାହିଁବନି ଜାଣେ; କିନ୍ତୁ ଏକଥା ବି ଜାଣେ, ମୋର ମରଣ ପରେ ମୋର ଶେଷ ଇଚ୍ଛାକୁ ସେ ଅପମାନିତ କରିବନି । ସାବନୀ ! ସଂସାରରେ ଏକାକୀ ତୋ ଛଡ଼ା ଆଉ କେହି ବୋଧହୁଏ ମୋର ନିବେଶୀ ଆପଣାର ବୋଲି ନାହିଁ ।

ଭଲଲ କଥା ସାବିତ୍ରୀଙ୍କୁ ଆତ୍ମହରା କରି ପକେଇଲା । ଏତେ କାଳ-ଯାଏଁ ଏ ଅମର ଜନ୍ମ ଆଜ ତାର ଏକ ମୁହୂର୍ତ୍ତର ଆବେଗରେ ଭାଙ୍ଗି ପଡ଼ିଲା । ମସ୍ତଶ ବ୍ଲକୁ ଉପରେ କୋଟିମଡ଼ ସେ ଏକାବେଳକେ ପିଲଙ୍କ ଭଳି କାନ୍ଦିଉଠିଲା ।

ବେହାରୀ ପ୍ରାୟ ରାତି ଗୋଟାକଯାକ ଅନିଦ୍ରା ରହି ଭୋରବେଳକୁ ଶୋଇ ପଡ଼ିଥିଲା । ସେ ଚମକିଉଠି ଚମି ହତବୁଦ୍ଧି ଭଳି ଚାହିଁରହିଲା । ସେତେବେଳେ ସତୀଶ ହାହାତ ଦେଇ ସଜୋରେ ସାବିତ୍ରୀର ମୁହଁଟିକୁ ତୋଳିଧରି କିଛି ସମୟ ଏକଦୃଷ୍ଟିରେ ଚାହିଁରହିବା ପରେ ନିମିଳିତ ଅଶ୍ରୁ ତାର ନିଜର ଅଗ୍ନ୍ୟୁତପ୍ତ ଶୁଷ୍କ ଓଷ୍ଠାଧର ଉପରକୁ ଟାଣିନେଇ ନିଃଶବ୍ଦରେ ସ୍ଥିର ରହିଲା ।

ତାର ମୁହଁ, ତାର ଚିବୁକ, ତାର ଗଲା ସାବିତ୍ରୀର ଦୁଆଖିର ଲୁହ ସ୍ରୋତରେ ଭାସିବାକୁ ଲାଗିଲା । ଏହି ଅଶ୍ରୁର ପ୍ରବାହ ଯେ ତାର ପ୍ରାଣାଧିକର ରୋଗୋତ୍ପନ୍ନ ପ୍ରବଳ ପ୍ରଦାହକୁ ସିକ୍ତ କରିନେଲା ଏବଂ ଶୀତଳ କରିନେଲା, ସେକଥା ଅନ୍ତର୍ଯ୍ୟାମୀଙ୍କୁ ଅଗୋଚର ହୋଇଥାଇପାରେ; କିନ୍ତୁ ବେହାରୀର ବିହ୍ୱଳଚକ୍ଷୁ ଛଡ଼ା ଆଉ ଦ୍ୱିତୀୟ ସାକ୍ଷୀ କେହି ରହିଲେ ନାହିଁ ।

ବାହାରେ ଶରତର ସ୍ନିଗ୍ଧ ପ୍ରଭାତ । ସାବିତ୍ରୀ ଆତ୍ମସମ୍ବରଣ କରି ଉଠି ବସିଲା ଏବଂ ଲୁଗାକାନିରେ ନିଜ ଆଖି ପୋଛିନେଇ ପ୍ରିୟତମର ମୁହଁରୁ ସମସ୍ତ ଅଶ୍ରୁଚିହ୍ନ ପୋଛିନେଲା । ସେଠୁ ଉଠିଆସି ଘରର ସବୁ କବାଟ ଝରକା ଖୋଲିଦେବାମାତ୍ରେ ସ୍ୱର୍ଣ୍ଣାଭ ରୌଦ୍ରକିରଣରେ ଘର ଭରି ଉଠିଲା ।

ବେହାରୀର ଆଖିରୁ ସେତେବେଳେ ବିନ୍ଦୁ ବିନ୍ଦୁ ହୋଇ ଲୁହ ଝରି ପଡୁଥିଲା । ସାବିତ୍ରୀ ମୁହଁର ଭାବକୁ ସମ୍ଭାଳିନେଇ ଶାନ୍ତ ସହଜ କଣ୍ଠରେ କହିଲା— ଭୟ କ'ଣ ବେହାରୀ, ମୁଁ ଯେତେବେଳେ ଅଛି, ଭୟ କ'ଣ ? ସବୁ ଠିକ୍ ହୋଇଯିବ । ବାବୁ ଭଲ ହୋଇଯିବେ । ମୁଁ ବାବୁଙ୍କର ଲୁଗାପଟା ବଦଳେଇ ଦେଉଛି, ତୁ ଯା ଶୀଘ୍ର ଡାକ୍ତରବାବୁଙ୍କୁ ଡାକିନେଇ ଆସିବୁ ।

ବେହାରୀ ସଙ୍ଗେ ସଙ୍ଗେ ଯାଇ ଉପ୍‌ପେନ୍‌ସାହିର ଡାକ୍ତରବାବୁଙ୍କୁ ଡାକି ନେଇଆସିଲା । ସେ ସତୀଶଙ୍କୁ ଠିକ୍‌ଭାବରେ ପରୀକ୍ଷା କରି ମୁହଁକୁ

ବିକୃତ କରି କହିଲେ—ରଏ ଯେ କମମାନଙ୍କର ଲକ୍ଷଣ ଦେଖୁଛି । ତେବେ କିଛି ଭୟ ନାହିଁ; ରୋଗ ବେଶୀଦୂର ବଢ଼ିନି ।

ଭରସା ଓ ସାନ୍ତ୍ୱନା ଦେଇ ଡାକ୍ତରବାବୁ ନିଜ ହାତରେ ଔଷଧ ପ୍ରସ୍ତୁତ କରିବା ଲାଗି ତଳକୁ ଚାଲିଗଲେ । ସର୍ବାଣୀ ଟିକିଏ ମୃଦୁ ହସାଦେଇ ସାବିତ୍ରୀ ମୁହଁକୁ ଚାହିଁ କହିଲା—ତୁମମାନଙ୍କର ଭୟ ଥାଇପାରେ; କିନ୍ତୁ ମୁଁ ଟିକିଏ ବି ଭୟ କରୁନି । ଘରେ ସେ ତକିଆ ତଳୁ ଗୋଟାଏ ଫୁଲମାଳ ବାହାର କରି ସାବିତ୍ରୀକୁ ଦେଖାଇ କହିଲା—ଏଇଟାକୁ ଚିହ୍ନି ପାରୁଛୁ । ନିଜେ ଇଚ୍ଛାକରି ଦିନେ ଯାହାକୁ ନିଜ କାନରେ ବାନ୍ଧିଥିଲୁ, ଆଜି ମୁଁ ତାକୁ ତୋର କାନରେ ବାନ୍ଧି ଦେଇଯିବି । ଏହା କହି ସାବିତ୍ରୀର ଅଶ୍ରୁସିକ୍ତ କାନଟିକୁ ଟାଣିନେଇ ଧୀରେ ଧୀରେ ଫୁଲର ରଙ୍ଗଟିକୁ ବାନ୍ଧିଦେଇ ଗୋଟାଏ ଶାନ୍ତିର ନିଶ୍ୱାସ ପକେଇ ପୁଣି କଡ଼ ଲେଉଟେଇ ଶୋଇପଡ଼ିଲା ।

ସାବିତ୍ରୀ ଉପରେ ବେହାରାର ପ୍ରଗାଢ଼ ବିଶ୍ୱାସ । ଏକାବେଳକେ ନିର୍ଭରଶୀଳ । ସାବିତ୍ରୀ ମୁହଁରୁ ସାହସ ପାଇ ସେ ପ୍ରଥମେ ପ୍ରଥମେ ବେଶ ପ୍ରଫୁଲ୍ଲ ହୋଇ ଉଠିଥିଲା ସତ; କିନ୍ତୁ ସେ ତ ପିଲା ନୁହେଁ । କେତେଦିନରେ ସେଇ ସାବିତ୍ରୀର ମୁହଁ ଚେହେରାକୁ ଦେଖି ଖାତବସ୍ତ ହୋଇପଡ଼ିଲା । ସେ ଲକ୍ଷ୍ୟକରି ସ୍ପଷ୍ଟତଃ ଦେଖି ପାରୁଥିଲା, ଏହି ଅସୀମ କର୍ମପଟୁ ସାହସୀ ରମଣୀର ଶାନ୍ତ ମୁହଁ ଉପରେ ଗୋଟାଏ ପାଣ୍ଡୁର ଛାୟା କ୍ରମଶଃ ଘନୀଭୂତ ହୋଇଉଠିଛି ।

ଆଠ ଦଶ ଦିନ ପରେ ଦିନେ ସାବିତ୍ରୀକୁ ନିଭୃତରେ ପାଇ ବେହାରା ସଜଳ କଣ୍ଠରେ କହିଲା—ଏହି ବୁଢ଼ାକୁ ଭୁଲେଇଲେ କ'ଣ ହେବ ? ତୁମର ଏଇ କଚି ବୁକୁରେ ଯାହା ସହ୍ୟ ହେବ ମା, ଏହି ବୁଢ଼ା ତା ହାଡ଼ରେ କ'ଣ ସହିପାରିବନି ? ମତେ ସବୁକଥା ଖୋଲି କୁହ ମା, ଯଦି ମୋ ହାତରେ କିଛି ହୁଏ ।

ସାବିତ୍ରୀ ଟିକିଏ ସ୍ଥିରରହି କହିଲା—ତେବେ ଏଥର କହିବି ବେହାରା, ତୁ ଲେଖିଲା ଭଳି ମୁଁ ଆଜି ସକାଳେ ଉପୀନବାବୁଙ୍କ ପାଖକୁ ଚିଠି ଲେଖିଦେଇଛି । ଦିଦିନ ଅପେକ୍ଷା କରି ଦେଖେ । ଯଦି ସେ ନ ଆସନ୍ତି, ତାହାହେଲେ ତୁ ଥରେ ତାଙ୍କ ପାଖକୁ ଯିବାକୁ ପଡ଼ିବ ।

ବେହାରା ଉଜ୍ଜ୍ୱଳିତ ହୋଇ କହିଲା—ମତେ ନ କହି ଏ କାମ କଲ କାହିଁକି ମା ?

—କାହାଁକି ? ସେ କ'ଣ ଆସିବେନି ?

ବେହାରୀ ମୁଣ୍ଡକୁ ହଲାଇ ଅନେକ ଆସ୍ତେ କହିଲା—ସେ ଆସିପାରନ୍ତି, କିନ୍ତୁ ମନେ କରିଲେନି କାହାଁକି ?

— କାହାଁକି ବେହାରୀ ?

ବେହାରୀ ସଂକୋଚରେ ଚୁପ୍ ରହିଲା । କଥାଟା କହିବା ଦରକାର; କିନ୍ତୁ ଏଇ ଅତି ଅପମାନକର ବାକ୍ୟ ତା ମୁହଁଦେଇ ହଠାତ୍ ବାହାର ହେଉ ବୋଲି ସେ ଚାହୁଁ ନ ଥିଲା ।

ସାବିତ୍ରୀ କହିଲା—ଏଇ ସମୟରେ ତାଙ୍କର ଆସିବା ନିତାନ୍ତ ଦରକାର ଯେ ।

ବେହାରୀ ବହୁ କଷ୍ଟରେ ସଂକୋଚକୁ ଅତିକ୍ରମ କରି କହିଉଠିଲା, ସେ କଥା ତ ଜାଣେ ମା; କିନ୍ତୁ ତୁମେ ପାଖରେ ନ ରହିଲେ ପୃଥିବୀର ସବୁ ଲୋକ ବାବୁଙ୍କ ବନ୍ଧୁଣା ଗୁଣ୍ଡପଣ ଦେଖିରହିଲେ ମଧ୍ୟ କେହି ତାଙ୍କୁ ବଞ୍ଚାଇ ପାରିବେନି । ଏକଥା ଭାବିପାରୁଛ ତ ମା !

ସାବିତ୍ରୀ କହିଲା—ହଁ, ଭାବିଛି ବେହାରୀ ! ମୁଁ ଘରର ଯେଉଁଠିହେଲେ ଲୁଚିରହି ମୋ କାମ ମୁଁ କରିବି; କିନ୍ତୁ ଉପୀନବାବୁ ଯେ ନ ଆସିଲେ ନ ଚଳେ । ତା ଛଡ଼ା ମୁଁ ତ ମାଇପି ଲୋକ, ଏ ବିପଦର ଭଲ ମନ୍ଦ ବା କ'ଣ ବୁଝିପାରିବି ? ନା, ବେହାରୀ ! ସେଇ ଆସନ୍ତୁ; ସେଇ ସବୁ ବୁଝିବେ ।

ବେହାରୀ ମୁଣ୍ଡକୁ ହଲାଇ ହଲାଇ କହିଲା—ଉପୀନବାବୁଙ୍କ କଥା ଜାଣେନା ମା; କିନ୍ତୁ ବାବୁଙ୍କ କଥା ଜାଣେ । ନିର୍ବୋଧ ଅବଶ୍ୟ, କିନ୍ତୁ ଷାଠିଏ ବର୍ଷ କାଳ ଏ ସଂସାରକୁ ଦେଖିଆସିଛି । କେଇଟା ମଣିଷ ବା ତୁମ ଭଳି ଭଲମନ୍ଦ ବୁଝନ୍ତି କହିଲ ? ସେ ଯାହାହେଉ, ତୁମେ ପାଖରୁ ଚାଲିଗଲେ ବାବୁଙ୍କୁ ଆଉ ସେ ଯିବା ବାଟରୁ କେହି ଫେରେଇଆଣି ପାରିବେନି, ଏ କଥା ମୁଁ ଭଲ ଭାବରେ ଜାଣେ । ସେଭଳି କାମ କରନି ମା, ତୁମେ ଆମ ବାବୁଙ୍କୁ ଛାଡ଼ି କୁଆଡ଼େ ହେଲେ ଯାଅନି ।

ଏକଥା ବେହାରୀ ଅପେକ୍ଷା ସାବିତ୍ରୀ କିଛି କମ୍ ଜାଣେନା । ତାକୁ ହାତ ପାଖରେ ନ ପାଇଲେ ସତୀଶର ବ୍ୟାକୁଳତା କେତେଦୂର ବଢ଼ି ଉଠିବ, ସେକଥା ସତୀଶ ମଧ୍ୟ ଜାଣେ । କିନ୍ତୁ ଏଇ ନିଦାରୁଣ ରୋଗଶଯ୍ୟାରେ ସତୀଶକୁ ଛାଡ଼ି ସାବିତ୍ରୀ ବଞ୍ଚିବ କିପରି ? ତା ପ୍ରତି ଉପୀନଦାଙ୍କ ଘୃଣା ଯେ

କେତେଦୂର, ସେ କଥା ସେ ଭଲଭାବରେ ଜାଣେ । ସେ ଆସିଲେ ତାଙ୍କୁ ଆତ୍ମଗୋପନ କରିବାକୁ ପଡ଼ିବ, ସେଥିରେ କ୍ଳେଶମାତ୍ର ସନ୍ଦେହ ନାହିଁ—ଏସବୁ କଥା ସେ ମନେ ମନେ ବିଚାର କରି ଦେଖିଥିଲା; କିନ୍ତୁ ଯାହା ଲାଗି ଏତେଦିନ ଧରି ଏତେ ଦୁଃଖ ସହିଆସିଛି, ତାର ଲାଗି ଏ ଦୁଃଖ ସେ ସହିବ ତା ମନେକରି ସେ ଉପେନ୍ଦ୍ରଙ୍କୁ ସବୁକଥା ଖୋଲିଖାଲି ଲେଖି ତାଙ୍କୁ ଆସିବା ଲାଗି ଅନୁରୋଧ କରିଥିଲା ।

ସାବିତ୍ରୀ ଦୃଢ଼କଣ୍ଠରେ କହିଲା—ନା ବେହାରୀ, ସେ କଥା ହେବାକୁ ମୁଁ ଦେବିନି । ପଅରଦିନ ମଧ୍ୟରେ ସେ ଯଦି ନ ଆସନ୍ତି, ତୁ ଯାଇ ତାଙ୍କୁ ଯେପରି କୌଣସିମତେ ଆଣିବୁ ।

ବେହାରୀ ମ୍ଳାନମୁଖରେ କହିଲା—ଏ କଥା କହୁଚ କାହିଁକି ମା ! ମୁଁ ଚାକର ଲୋକ । ଯାହା ହୁକୁମ କରିବେ, ତାହା କରିବି । କିନ୍ତୁ ମୁଁ ବି ତ ମଣିଷ । ତୁମର ଘରର ଭଲ ଲୁଚି ରହିବାଟାକୁ ଯଦି ମୁଁ କେବେ ସହି ନ ପାରେ, ତାହାହେଲେ ମତେ ଗାଳି ଦେବନି ମା, ମୁଁ ଆଗରୁ କହି ଦେଉଛି ।

କିନ୍ତୁ ସାବିତ୍ରୀର ସେ ଚିଠି ଉପେନ୍ଦ୍ର ହାତରେ ପଡ଼ିଲାନି । ପିତା ଓ ମହେଶ୍ୱରର ବାରମ୍ବାର ଅନୁରୋଧରେ ସେ ମାସକ ପୂର୍ବେ ନିଜର କଳା ଦିହରେ ଜଳବାୟୁ ବଦଳେଇବା ଲାଗି ପୁରୀ ଯିବାକୁ ବାଧ ହୋଇଥିଲି । ଏଠି କାହା ସହିତ ପରିଚୟ ନ ଥିଲି ବୋଲି ଆସିବା ଦିନ ରାତିରେ ସେମାନଙ୍କୁ ଗୋଟିଏ ଶ୍ରେଷ୍ଠ ହୋଟେଲରେ ଆଶ୍ରୟ ନେବାକୁ ପଡ଼ିଥିଲା । ଇଚ୍ଛା ଥିଲି ପରଦିନ ସକାଳେ ଗୋଟାଏ ଭଲ ଜାଗା ଅନୁସନ୍ଧାନ କରିନେବେ; କିନ୍ତୁ ହୋଟେଲମାଲିକ ଭୁବନ ମୁଖୁଯ୍ୟେ ମହାଶୟଙ୍କର ଯତ୍ନ କହିଲେ ନ ସରେ । ଅଲଗା ବିଛଣା ସଜେଇଦେଲେ—ଯେତେ ଦିନ ରହିଲୁ, ଆନନ୍ଦରେ ରହିବ ବୋଲି ଭରସା ଦେଲେ ସେ ।

ସକାଳେ ଜଣେ ପ୍ରୌଢ଼ା ଘର ଓଳେଇବା ଲାଗି ଆସି ଉପେନ୍ଦ୍ରଙ୍କୁ ବାରମ୍ବାର ନିରୀକ୍ଷଣ କରିବାକୁ ଲାଗିଲା । ଶେଷରେ ଝାଡ଼ୁ ଟୋକା ଫୋପାଡ଼ି ଦେଇ ଗୋଡ଼ତଳେ ପଡ଼ି ପ୍ରଣାମ କରି କହିଲା—ବାବୁଙ୍କର କ'ଣ କିଛି ବେମାର ହୋଇଥିଲା ? ଭାରି ରୋଗା ଦେଖାଯାଉଛନ୍ତି ଯେ ! ସେ ଚେହେରା, ଦେହର ରଙ୍ଗ ନାହିଁ ।

ଉପେନ୍ଦ୍ର ବସ୍ମୟାପନ୍ନ ହୋଇ କହିଲା—ତୁ ମତେ କ'ଣ ଚିହ୍ନୁ ?

ସ୍ତ୍ରୀଲୋକଟି କହିଲା—ମୁଁ ଯେ ମୋକ୍ଷଦା, ଚିହ୍ନିବନି ।

ଉପେନ୍ଦ୍ରର ମନେପଡ଼ିଲା, ଏଇ ମୋକ୍ଷଦା ବହୁଦିନ ଆଗେ ମେସ୍‌ର ବସାରେ ରୋଷେଇ କରୁଥିଲା । କହିଲା—ତୁ ଏଇଠି ରୋଷେଇ କରୁଚ୍‌ନା ?

ମୋକ୍ଷଦା ଲାଜ ଲାଜ ହୋଇ କହିଲା—ନା, ତେବେ ରୋଷେଇ କରିବି କ'ଣ ? ମୁଖୁଯ୍ୟେ ମହାଶୟ କହିଲେ, ଆଉ କଲିକତାରେ ପଡ଼ି ରହିବା କାହିଁକି, ଚାଲ କୌଣସି ଏକ ତୀର୍ଥସ୍ଥାନରେ ଯାଇ ରହିବା ଗୋଟାଏ କିଛି ହୋଟେଲ ଫୋଟେଲ କରି ।

ଉପେନ୍ଦ୍ର ବାଧାଦେଇ କହିଲା—ତା'ହେଲେ ହୋଟେଲ ଭଲ ଚାଲୁଚି ତ ?

ତାଙ୍କର ବିରକ୍ତ ଭାବକୁ ମୋକ୍ଷଦା ଠିକ୍ ବୁଝିପାରିଲା । କହିଲା—ହଁ, ସେମିତି ଚାଲୁଚି । ତେବେ ବାବୁ, ଏ ବୟସରେ ମୋର ରୋଷେଇ କରିବାଟା କ'ଣ ସୁନ୍ଦର ? ମୁଖୁଯ୍ୟେ ମହାଶୟଙ୍କ ସ୍ତ୍ରୀ ମାଉସୀ କାହିଁକି ? ଧରିବାକୁ ଗଲେ ଝିଅଟାକୁ ମୁଁ ତ ମଣିଷ କଲି । ମାଉସୀ ବୋଲି ଡାକେ । ଘରରେ ମାଉସୀ ଭଳି ତାକୁ ବୁକୁ ଉପରେ ରଖିଥିଲି - ଏ କଥା ନ ଜାଣେ କିଏ ? ସାବି କହିଲା—ମାଉସୀ, ମୁଁ ଏସବୁ କରିପାରିବିନା, ରୋଷେଇ କରିବି, ତତେ ଆଉ ସମସ୍ତଙ୍କୁ ପୋଷିବି । ତାହା ହିଁ ହେଲା । ବାବୁମାନଙ୍କ ବସାରେ ରୋଷେଇ କରେଇଦେଲି । ବାବୁମାନେ ତାକୁ ରୋଷେଇଣୀ ବୋଲି ଭାବୁ ନ ଥିଲେ, ଭାବୁଥିଲେ ସେ ବସାର ଘରଣୀ । କିନ୍ତୁ ଯାହା କୁହ ବାବୁ, ସେଇ ଶ୍ରେଷ୍ଠବାବୁଙ୍କ ହେତୁ ହିଁ ଆଜି ଆମର ଏତେ ଦୁଃଖ !

ଉପେନ୍ଦ୍ର ଉତ୍ସୁକ ହୋଇ ପ୍ରଶ୍ନକଲେ—ଶ୍ରେଷ୍ଠବାବୁ କିଏ, ଆମ ସତୀଶ ?

ମୋକ୍ଷଦା ମୁଣ୍ଡ ହଲେଇ କହିଲା—ହଁ ବାବୁ, ସେଇ । ଝିଅଟା କ ଆଖିରେ ଶ୍ରେଷ୍ଠବାବୁଙ୍କୁ ଦେଖିଲା କେଜାଣି, ତାରି ଲାଗି ସେ ସବୁ ତ୍ୟାଗକଲେ । ଆଉ ଶ୍ରେଷ୍ଠବାବୁ କ'ଣ ଧରକୁଆଁ ଦେଲେ ? ବିପିନ୍‌ବାବୁ

ଲକ୍ଷପତି ଜମିଦାର ! ବସାକୁ ଧନ ଗାଡ଼ି ଦୌଡ଼ ଦୌଡ଼ ଶେଷରେ ପାଦ-ତଳେ ପଡ଼ିବା ପର୍ଯ୍ୟନ୍ତ ଗଲା । ସୁନାରୂପା ମିଶି ୧୦ ହଜାର ଟଙ୍କାର ଗହଣା ଯାଉଥିଲେ । କ'ଣ ହେଲା ? ଝିଅଟା ମୁହଁ ଖୋଲି ଗୋଟିଏ କଥା ବି କହିଲା ନାହିଁ । କ ତେଜ ତାର—ସୁନା ରୂପା ଗହଣାଗୁଡ଼ିକ ତ ନୁହେଁ, ନିଜ ଘରଦ୍ୱାର, ଜନଧନସବୁ ପାଦରେ ଠେଲିଦେଇ କୋଉ ଏକ ବ୍ରାହ୍ମଣ ଘରେ ଚାକରାଣୀ ହେଲା । ମାତ୍ର ଛଅ ମାସ ଚାକରାଣୀ କରିଛି, ହାଡ଼ ପିଞ୍ଜରା ବାହାରିଗଲା । ସେଇଠୁ କୁଆଡ଼େ ଯେ ଗଲା, ମା ଦୁର୍ଗା ହିଁ ଜାଣନ୍ତି । ହତଭାଗୀ ବଞ୍ଚିଛି କି ମରିଛି କେଜାଣି ! ମୋକ୍ଷଦା ପୂର୍ବ ସ୍ମୃତିର ଆବେଗରେ କାନ୍ଦିଉଠିଲା ।

ଉପେନ୍ଦ୍ର ଚୁପ୍‌ଚାପ୍ ରହିଲେ ।

ମୋକ୍ଷଦା ଆଖି ପୋଛି କାନ୍ଦ କାନ୍ଦ ସ୍ୱରରେ କହିଲା—ବାବୁ, ଛୋଟବାବୁ ଏବେ କୋଉଠି ? ଦେଖାହେଲେ, ସାବିତ୍ରୀର ଠିକଣା କ'ଣ ଜାଣିଛନ୍ତି କି ବୋଲି ପଚାରନ୍ତି ?

ଉପେନ୍ଦ୍ର ମୃଦୁ ସ୍ୱରରେ କହିଲେ—ସତୀଶ ଯେ ଏବେ ଠିକ୍ କେଉଁଠି ଅଛି ସେ କଥା ମୁଁ ମଧ୍ୟ ଜାଣେନା । ଶୁଣିଛି ନିଜ ଗାଁରେ ଅଛି । ଆଚ୍ଛା, ଏଇ ସାବିତ୍ରୀ ଝିଅଟି କିଏ ମୋକ୍ଷଦା !

ମୋକ୍ଷଦା ପ୍ରଜ୍ୱଳିତ ହୋଇଉଠି କହିଲା—କିଏ ? କୁଳୀନ ବ୍ରାହ୍ମଣ ଘର ଝିଅ ବାବୁ ! ପିଲାଟା ନଅ ବର୍ଷ ବେଳୁ ବିଧବା ହୋଇ ଘରେ ଥିଲା । ଏଇ ପୋଡ଼ାମୁହାଁ ମଣିଷଟା ବାହା କରିବ, ରାଜରାଣୀ କରି ରଖିବ କହି ଭୁଲେଇ ଭାଲେଇ ନେଇ ଆସି ଶେଷରେ ଠେଲି ଦେଇ କୁଆଡ଼େ ଚାଲିଗଲା । ଏଇଟା ବ୍ରାହ୍ମଣ ବୋଲି କହିହୁଏ, କିନ୍ତୁ ତା କାମ ଯାହା, ଚମାରଠୁ ବଳି ହୀନ । ଚମାର ହାତରୁ ପାଣି ଖାଇବା ଭଲ, ମୁଁ ହାତରୁ ନୁହେଁ ।

ଉପେନ୍ଦ୍ର ବୁଝି ନ ପାରି କହିଲେ—କାହା କଥା କହୁଛ ମୋକ୍ଷଦା ?

ମୋକ୍ଷଦା ଉଦ୍ଧତ ଭାବରେ କହିଲା—ଏଇ ମ ଏଇ ଭୁବନ ମୁଖାର୍ଯ୍ୟେ । ନଇଲେ, ଏଇମିତି ଚମାର ସଂସାରରେ କ'ଣ ଅଛି ? ତୁ ଥିଲୁ ତାର ବଡ଼ ଭଉଣୋଇ ତୋର ଏଇ କାମ ?

ଉପେନ୍ଦ୍ର ଅତି ଆଶ୍ଚର୍ଯ୍ୟ ହୋଇ ପଚାରିଲେ—ଏ ହୋଟେଲ ଯାର, ସେଇ ?

ମୋକ୍ଷଦା କହିଲା—ହଁ, ବାବୁ ହଁ ! ଏ ସେଇ ଲକ୍ଷ୍ମୀଛଡ଼ା ଭୁବନ ! ଭୁବନବାବୁ ଅନୁପସ୍ଥିତିର ସୁଯୋଗ ନେଇ ମୋକ୍ଷଦା କହିଲା—ହଉ ଆଣିଲୁ ତ କ'ଣ ବା କଲୁ ତାର ? ଅକୂଳରେ ଭସେଇଦେଲୁ ଅଥଚ ଯଦି ନେଇଲେ ତା ଦେହ ଛୁଇଁପାରିଲୁ ନାହିଁ । ନେଇଆସି, ଆଜ ନୁହେଁ କାଆଲ କହି କହି ମାସେ ଖଣ୍ଡେ କଟେଇଦେଲ ଯଦି କହିଲି କ'ଣ ନା—ନା, ସେ ବାହା ହେବନି, ଲାଠିମାରି ଘରୁ ବାହାର କରିଦେଲ ତାକୁ । ପିଲାଲୋକ, ଅଳ୍ପ ବୟସ, ଗୁଣ୍ଡା ଯେ ଆଉ ଫେରିଲାନି । ଘରର ଏତିକି ସୁଦ୍ଧା ମାଡ଼ିଲାନି । ସେ ତ ଆଉ କେହି ନୁହଁ ଯେ ଯିଏ କଥା କହି ତାକୁ ଭୁଲେଇଦେବ । ସେ ସାବିତ୍ରୀ ! ଯେ ଦଶ ହଜାର ଟଙ୍କାର ଗହଣାକୁ ଗୋଡ଼ରେ ଠେଲିଦେଇ ଚାଲିଯାଇପାରେ ସେ ସେଇ !

ଉପେନ୍ଦ୍ର ବନ୍ଧୁ ସମସ୍ତ ଶୁଣି ରହିବା ପରେ କହିଲା—ତୋର ମୁଖୁଯ୍ୟେ ମହାଶୟଙ୍କ ଥରେ ଡାକ ଦେଇପାରିବୁ, ଯି ଗୁଟିଏ କଥା କହିବାକୁ ଅଛି ।

ମୋକ୍ଷଦା କହିଲା—ବଜାରକୁ ଯାଇଛି । ଠିକ୍ ଏ ଅଟକାଯିବା ପରେ ପୁଣି କହିଲା—ମଝିରେ ଯଦି ରାସ୍ତାରେ ଚକ୍‌କୋଣ ଠାକୁର ଚକ୍ରବର୍ତ୍ତୀ ସାଥିରେ ଦେଖାହେଲା । ଠାକୁରେ କହନ୍ତି, କାହନ୍ତି—ମାଆକୁ ଆମର ସମସ୍ତେ ଭଲ ପାଉଥିଲେ । ଯେମିତି ରୂପ, ସେମିତି ଗୁଣ, ଦୟା ମାୟା······ ।

ଉପେନ୍ଦ୍ର ପଚାରିଲେ--ଚକ୍ରବର୍ତ୍ତୀ ଠାକୁର ଜଣକ କିଏ ?

ମୋକ୍ଷଦା କହିଲା—ସେ ବାବୁମାନଙ୍କ ମେସର ପୂଜାରୀ ଥିଲେ । ସବୁକଥା ଜାଣନ୍ତି । ବେହାରୀଠୁ ଶୁଣି ସବୁକଥା ମତେ କହିଲେ । ଗୁଡ଼ମହଲବାଲା ବ୍ରାହ୍ମଣ ଘରେ ମା ସାବି ରୋଷେଇ କରୁଥିଲା । ବେମାର ହେବାରୁ ଛୁଟି ମାଗିଲା···କିନ୍ତୁ···ଆଚ୍ଛା ବାବୁ, ସବୁ ବ୍ରାହ୍ମଣ କ'ଣ ଏତେ ନିଷ୍ଠୁର ! ସେ ସ୍ୱଚ୍ଛନ୍ଦରେ କୁଆଡ଼େ କହିଲା—ତୋ ଲାଗି ସାତ ଟଙ୍କାର ଔଷଧପତ୍ର କିଣା ହୋଇଛି । ସେତକ ଦେଇ ଫିଟୁ ପଛ ଯା । ଏଇ ଟଙ୍କା କେଇଟା ଶୁଝିବା ଲାଗି ସେଇ ବେମାର ଦେହରେ ଚାଲି ଚାଲି ସତୀଶବାବୁଙ୍କ ବସାକୁ ଆସିଥିଲା ସାବି । କିନ୍ତୁ ଇମିତି ପୋଡ଼ା କପାଳ ଯେ ସେଇଦିନ ବାବୁଙ୍କର କେହି ଆତ୍ମୀୟ ନିଜ ପରିବାରଙ୍କୁ ନେଇ ବସାରେ ହାଜର ।

ଗାଧୁଆପାଧୁଆ ସାରି, ଅଖିଆ ଅପିଆ ମା ସାବିତ୍ରୀ ଟଙ୍କା ସାତଟା ପାଇ-ଗଲେ ଚାଲିଯିବ ବୋଲି ଅପେକ୍ଷା କରିଥିଲା ସେ ଘରେ ! ବନ୍ଧୁବାନ୍ଧବ ଲୋକ ଆସିଛି ଯେତେବେଳେ, ଗୋଟାଟା ରୁହ । ନା, ତା ହେଲାନି । ରାଗରେ ସ୍ତ୍ରୀର ହାତ ଧରି ଫର୍‌ଫର୍ ବାହାରିଗଲେ । ଗ୍ରୋଟବାବୁ ଅବାକ୍ । କିନ୍ତୁ ସାବି ଆମର ଠିକ୍‌ଏ ଅଭିମାନୀ । ଏ ଅପମାନ ସେ କ'ଣ ସହିପାରନ୍ତା ! ଜଳ ଗ୍ରହଣ ନ କରି ସେମିତ୍ ବାହାରିଗଲା ସେ ଆଉ ଦେଖା ସାକ୍ଷାତ ନାହିଁ ।

ଉପେନ୍ଦ୍ର କାଠ ଭଳି ବସି ରହିଗଲା । ତାର ସେଇ ସ୍ଫୀତ ନକ୍ସର ଇତିହାସ ଆଖି ଆଗରେ ଜକ୍ ଜକ୍ ହୋଇ ଫୁଟିଉଠିଲା । ମନେ ମନେ ଭାବିଲା, ମୋକ୍ଷଦାର କାହାଣୀର ଅଧାଅଧି ଯଦି ବା ସତ୍ୟ ହୋଇଥାଏ, ତାହାହେଲେ ଯେଉଁ ନାଁଟାକୁ ସେ ଏପର୍ଯ୍ୟନ୍ତ ଘୃଣା କରିଆସିଛି, ସେ କି ଆଶ୍ଚର୍ଯ୍ୟ ନାରୀ !

ମୋକ୍ଷଦା ନିଜ କାମକୁ ଚାଲିଗଲା; କିନ୍ତୁ ଉପେନ୍ଦ୍ର ନିସ୍ପନ୍ଦ ଭାବରେ ସେଇଠି ବସିରହିଲା । ଯାହା ଅସତ୍, ଯାହା ମିଥ୍ୟା, ଯାହା ଲେଶମାତ୍ର କଳଙ୍କ ବାଷ୍ପରେ କଳୁଷିତ, ତାହା ଚିରଦିନ ତା ପାଖରେ ବିଷ ଭଳି ତ୍ୟାଜ୍ୟ । ଯେଉଁ ସତୀଶକୁ ସେ ତ୍ୟାଗ କରିପାରିଛି, ଆଜି ମୋକ୍ଷଦା କଥାରେ, ତା ଲାଗି ତାର ଆଖିପତା ଭରିଉଠିଲା, ଦୃଷ୍ଟି ଝାପ୍‌ସା ହୋଇ-ଆସିଲା । ତାର ଯେଉଁ ମର୍ମର ଭଳି-ଶୁଭ୍ର-ହୃଦୟ ପଥର ପରି କଠିନ ହୋଇ ରହିଥିଲା, କାହିଁକି ସେ ଆଜି ଏକ ଅଜ୍ଞାତ ନାରୀର କଳଙ୍କିତ-ପ୍ରଣୟ-ବେଦନାର କାହାଣୀରେ ତରଳିଗଲା, ତାହା ଭାବି ଦେଖିଲେ ଦେଖାଯାଇ ପାରନ୍ତା ଯେ ଏ ଦୁର୍ବଳତା ସେଇ ପାଷାଣ ତଳେ ହିଁ ଲୁଚିହୋଇ ରହିଥିଲା । ସୁରବାଳା ଯେତେବେଳେ ତାର ଅର୍ଦ୍ଧେକ ଶକ୍ତି ହରଣ କରି ଚାଲିଗଲା, ସେତେବେଳେ ସୁଯୋଗ ପାଇ ପ୍ରଚଣ୍ଡ ଉତ୍ସ ଭଳି ତାର ପାଷାଣ ବକ୍ଷ ବିଦୀର୍ଣ୍ଣ କରି ବାହାରି ହୋଇଆସିଛି । ସୁରବାଳା ଯେ ତାକୁ କେତେ ଶକ୍ତି-ହୀନ କରି ଯାଇଛି, ଚିନ୍ତାକରି ବସିବା ମାତ୍ରେ ଉପେନ୍ଦ୍ରର ମନରେ ଭୀଷଣ ଭୟ ଜାଗ୍ରତ ହୁଏ ।

କିନ୍ତୁ ସେ ଦିଗ ପ୍ରତି ତାର ଲକ୍ଷ୍ୟ ନ ଥିଲା । ସେ କେବଳ ଶୂନ୍ୟ ଦୃଷ୍ଟି ନେଇ ସମ୍ମୁଖକୁ ଚାହିଁରହିଲା । କେଉଁ ଅଜଣା ସାବିତ୍ରୀର ଭଲ-

ପାଇବାର ଇତିହାସ ସୁରବାଳାର ଶେଷ ମୁହୂର୍ତ୍ତର ସେଇ ଅନିର୍ବଚନୀୟ କରୁଣ ଆଖି ଦୁଇଟି ଭଳି ତା ଆଖି ଉପରେ ମଡ଼େଇ ହୋଇ ସ୍ଥିର ରହିଲା ।

ତାର ଚମକ ଭାଙ୍ଗିଗଲା ଭୁବନ ମୁଖୁଯ୍ୟେଙ୍କ କଣ୍ଠସ୍ୱରରେ । ନଳକଟା ଘର ଭିତରେ ପଶି ପଚାରିଲା—ବାବୁ କ'ଣ ମତେ ଡାକୁଥିଲେ ?

ଉପେନ୍ଦ୍ର କହିଲେ—ବସ, ତୁମେ ସାବିତ୍ରୀକୁ ଚିହ୍ନ ?

—ଆଜ୍ଞା ଚିହ୍ନେ ।

—ତା ସମ୍ବନ୍ଧରେ ଯାହା ଜାଣ ମତେ କହିପାରିବ ?

—ଆଜ୍ଞା କହିପାରିବି । ନିର୍ଲ୍ଲଜ ଭାବରେ ତାର ଗୋଟାର ଅପରାଧର ଇତିହାସ ଗୋଟିକ ପରେ ଗୋଟିଏ ବ୍ୟକ୍ତ କରି ଶେଷ କଲା ସେ । ଶେଷରେ କହିଲା—ମୁଁ ବି ଭଦ୍ରଲୋକର ପିଲା ବାବୁ, କିନ୍ତୁ ଆଗରୁ ଯଦି ତାକୁ ଚିହ୍ନି ପାରିଥାଆନ୍ତି, ତାହାହେଲେ ଏ ବାଟରେ ଗୋଡ଼ଦେଇ ଏଇ ବିଦେଶ ହୋଟେଲରେ ନିଜେ ରାନ୍ଧୁଣିଆ କାମ କରି ଦିନ କଟାଇବାକୁ ପଡ଼ି ନ ଥାଆନ୍ତା । କିନ୍ତୁ ମୁଁ ଜୋର୍ ଦେଇ କହିପାରେ ବାବୁ, ତା ଦେହରେ ପ୍ରାଣ ଥିବାଯାଏ କେହି ତାକୁ ନଷ୍ଟ କରିପାରିବେନାହିଁ ।

ଉପେନ୍ଦ୍ର କହିଲେ—ସେଥିରେ ତୁମର ସାନ୍ତ୍ୱନା ବା କ'ଣ ?

ମୁଖୁଯ୍ୟେ କହିଲା—ତେବେ ପରକାଳରେ ଜବାବ ଦେଇପାରିବ, ସେ ନଷ୍ଟ ହୋଇଯାଇନି ।

ତାକୁ ବିଦାୟ ଦେଇ ଉପେନ୍ଦ୍ର ସେପରି ଚୁପ୍‌ଚାପ ବସିରହିଲ । ତା ମନରେ କିଏ ଜଣେ ତାକୁ ଯେମିତି ବାରମ୍ବାର କହିବାକୁ ଲାଗିଲା, କିଚ୍ଛି ଭଲ କରିନୁ ଉପୀନ, କିଚ୍ଛି ଭଲ କରିନୁ । ଯେଉଁ ନିରୁପାୟା, ନିରାଶ୍ରୟା ନାରୀ ଏତେବଡ଼ ପ୍ରଲୋଭନକୁ ଅନାୟାସରେ ଜୟ କରି ଚାଲିଯାଇ ପାରେ, ତାକୁ ଅପମାନିତ କରିବାର ଅଧିକାର ତୋର ନ ଥିଲା ।

ସେଇଦିନ ହିଁ ଉପେନ୍ଦ୍ର ଭୁବନ ମୁଖୁଯ୍ୟେଙ୍କ ଆଶ୍ରୟ ତ୍ୟାଗକରି ଅନ୍ୟତ୍ର ଚାଲିଗଲା ।

କିନ୍ତୁ ସମୁଦ୍ରର ଜଳବାୟୁ ତା ସ୍ୱାସ୍ଥ୍ୟକୁ ଫେରାଇ ଆଣିପାରିଲାନି । ବେଳ ଯେତେ ବଢ଼ିବାକୁ ଲାଗେ, ଆଖି ପୋଡ଼େ, ଜର ମାଡ଼ିଆସେ । ରାତିକୁ ଜର ବଢ଼େ । ଏଇ ଜର ତାକୁ ଯେ ଦିନକୁ ଦିନ କ୍ଷୀଣ କରି ପର-

ଲୋକବାସିନୀ ସ୍ୱାମୀହରା ସୁରବାଳା ପାଖକୁ ଆଗେଇ ନେଉଛି, ସେ କଥା ସେ ଅନ୍ତରରେ ଯେଭଳି ସ୍ପଷ୍ଟ ଭାବରେ ଅନୁଭବ କରେ ।

ଏହିପରି ଭାବରେ, ଏଇ ନିର୍ଜନ ନିବାସରେ ଇହକାଳର ମିଆଦ ଯେତେବେଳେ ପ୍ରତିଦିନ ସରି ସରି ଆସିବାକୁ ଲାଗିଥାଏ, ସେଭଳି ଏକ ସକାଳେ ବେହାରୀର ପନ୍ଥ ଘର ଠିକଣାରୁ ପୁନଃ ପ୍ରେରିତ ହୋଇ ଉପେନ୍ଦ୍ର ହାତରେ ଆସି ପହଞ୍ଚିଲା ।

ଯା କଥା ମନେପଡ଼ିବା ମାତ୍ରେ ବୁକୁ ଭିତରେ ଛୁଞ୍ଚି ଗୋଞ୍ଜିଲା ଭଳି ଲାଗେ, ତାର ସେଇ ଚିରଦିନର ବନ୍ଧୁକୁ ଅପମାନିତ କରି ତ୍ୟାଗ କରିବାର ଦୁଃଖ ତା ଅନ୍ତରରେ ଅହରହ କେତେବଡ଼ ହୋଇ ଉଠିଥିଲା, ସେକଥା କେବଳ ଅନ୍ତର୍ଯ୍ୟାମୀ ହିଁ ଦେଖୁଥିଲେ । ଆଜି ସେଇ ସଙ୍ଗୀର କଠିନ ପୀଡ଼ାର ସମ୍ବାଦ ବହନ କରି ବେହାରୀର ଚିଠି ଚିକିତ୍ସା ଓ ଶୁଶ୍ରୂଷାର ଅଭାବ ଜଣାଇଲା ମାତ୍ରେ ଅନେକ ଦିନ ପରେ ଉପେନ୍ଦ୍ରର ଶୁଷ୍କ ଓଷ୍ଠାଧାରରେ ହସ ଦେଖାଦେଲା । ବିଚରା ବେହାରୀ ଜାଣେନା ଯେ ଯାର ଅନ୍ତିମଦିନ ଆସିବା ଉପରେ, ତାର ହାତରେ ଆଉ ଜଣଙ୍କର ସେବାର ଗୁରୁଭାର ! ତଥାପି ଉପେନ୍ଦ୍ର ଏ ଚିଠି ପାଇ ବେଡ଼ିଂ ବାନ୍ଧି ପୁରୀ ତ୍ୟାଗ କଲା ।

## ଏକଗୁଳି

ଜ୍ୟୋତିଷ ହାଇକୋର୍ଟରୁ ଫେରି ଘରେ ପହଞ୍ଚିବାମାତ୍ରେ ଦେଖିବାକୁ ପାଇଲା, ଆଗ ବାରଣ୍ଡାର ଦୁ'ଟି ଆରାମ ଚୌକି ଉପରେ ଶଶାଙ୍କ ଓ ସରୋଜିନୀ ମୁହାଁମୁହିଁ ବସି କଥାବାର୍ତ୍ତା କରୁଛନ୍ତି ।

ଶଶାଙ୍କ ଜ୍ୟୋତିଷକୁ ଦେଖି ଚୌକିରୁ ଉଠିପଡ଼ିଲା । କହିଲା— ଆଜି କାମଦାମ ଟିକିଏ ସକାଳୁ ସକାଳୁ ଶେଷ ହୋଇଗଲା, ଭାବିଲି ଏଇଠି ଚା' ଖାଇ ସାଙ୍ଗସାଥି ହୋଇ କ୍ଲବକୁ ଯିବି ।

'ବେଶ୍ କରିଛୁ' କହି ଟିକିଏ ହସିଦେଇ ଜ୍ୟୋତିଷ ଘର ଭିତରକୁ ଚାଲିଗଲା । ସରୋଜିନୀ ଭାଇଙ୍କ ସହିତ ଆସିବାକୁ ଉପକ୍ରମ କରୁ କରୁ

ଜ୍ୟୋତିଷ ଫେରିଆସି କୃତ୍ରିମ ଭର୍ତ୍ସନା-ସ୍ୱରରେ କହିଲା, ଅନ୍ତଥିଲୁ ଏକା ଏକା ଛାଡ଼ିଦେଇ ତୁ ଚାଲି ଆସିବାକୁ ଉଦ୍ୟତ·····ତୁ ।

ସରୋଜନୀ ଆରକ୍ତ ମୁଖରେ ପୁଣି ଚୌକିରେ ବସିପଡ଼ିଲା । ଭଉଣୀର ଏ ଲଜ୍ଜା ବିଷୟ ଜ୍ୟୋତିଷ ଅନୁଭବ କରିପାରିଲା ।

ମାଆଙ୍କ ଆଦେଶମତେ ଜ୍ୟୋତିଷ ଲୁଗାପଟା ଛାଡ଼ିଲେଇ ମୁହଁ ହାତ ଧୋଇ ଜଳଖିଆ କରିଥାଏ । ଏଇଟା ତାର ଅଭ୍ୟାସଗତ । ମାଆଙ୍କ ସହିତ ଦେଖାହେବା ମାତ୍ରେ କହିଲା—ଶଶାଙ୍କ ଆସିଛି, ଆଜି ଜଳଖିଆ ବାହାର ଘରକୁ ପଠେଇଦେ ମା !

ମା କହିଲେ—ଆଚ୍ଛା । ବାହାରେ ସରୋ ଅଛି ତାହାହେଲେ···
ଜ୍ୟୋତିଷ ମୁଣ୍ଡ ହଲେଇ କହିଲା—ଅଛି । ଟିକଏ ଚୁପ୍ ରହିବା ପରେ କହିଲା—ଆଚ୍ଛା ମା, ଏଭଳି ମଣିଷ କେଉଁଠି କଏ ଅଛି ଜାଣୁ, ଯାହାପାଖରେ କିଛି ଦୋଷ ନାହିଁ, ଖାଲି ଗୁଣ ।

ପ୍ରଶ୍ନଟାକୁ ଜଗତ୍ତାରିଣୀ ପ୍ରସନ୍ନ ଚିତ୍ତରେ ଗ୍ରହଣ କଲେନି । କହିଲେ— କାହିଁକି ତୁ ଯେ ଯେତେବେଳେ ସେତେବେଳେ ଏସବୁ କଥା କହୁ ? ମୁଁ ତ ବହୁଥର କହିଛି, ମୋର କୌଣସି ଆପତ୍ତି ନାହିଁ । ତୁ ଯଦି ଭଲ ଭାବୁଚୁ, ତାରି ହାତରେ ସରୋକୁ ଦେ ।

ଜ୍ୟୋତିଷ କହିଲା— ଦୋଷ ନ ଥାଇ ମଣିଷ ନାହିଁ ମା ! କିନ୍ତୁ ମୁଁ ଅନେକ ଥର ଭାବି ଦେଖିଛି, ସରୋଜନୀ ଦୁଃଖୀ ହେବନି । ତା ଛଡ଼ା ସେ ବଡ଼ ହୋଇଗଲାଣି, ତାର ଅମତରେ କୌଣସି କଥା କରାଯିବା ଉଚିତ ନୁହେଁ । ସେ ଦେଖିଲା, କେତେବେଳେ ସରୋଜନୀ ତା ପିଠିକୁ ଘସିହୋଇ ଆସି ଠିଆ ହୋଇଛି ।

ମା ଭଣ୍ଡାର ଘର ଭିତରୁ କଥା କହୁଥାଆନ୍ତି । ତେଣୁ ସରୋ ସେ ଇତିମଧ୍ୟରେ ଆସି ସବୁକଥା ଶୁଣୁଛି, ସେ ଜାଣିପାରି ନ ଥିଲେ । ଜ୍ୟୋତିଷର କଥାର ଉତ୍ତର ଦେଇ ବିରକ୍ତିପୂର୍ଣ୍ଣ ସ୍ୱରରେ କହିଲେ—ଏକଥା ତ ମୁଁ କୌଣସିଦିନ କହିନି ଜ୍ୟୋତିଷ ! ଏହି ଅଲକ୍ଷଣୀ ଝିଅଟାର ବିବାହ ତା ଅମତରେ ହିଁ ହଆହେବା ଦରକାର । ତୁମେ ଦି' ଜଣଯାକ ଯେତେବେଳେ ସେ ପ୍ରସଙ୍ଗଟାକୁ ଭାଙ୍ଗି ଦେଲ, ସେତେବେଳେ କ'ଣ ମୁଁ ଝିଅର ମନକଥା ଜାଣିନି ? ମୁଁ ସବୁ ବୁଝେ । ବୁଝିଛି ବୋଲି ତ ଚୁପ୍ ରହିଛି । ଏବେ ମତେ

ମିନ୍ଦରେ ଖୁଣ୍ଟା ଦେଉଚ । ତା ପରେ ସେ ଜଳଖିଆ ସଜେଇବାରେ ଲାଗିଲେ । ସଂକୋଚ ଓ ଲଜ୍ଜାରେ ସତ୍ରୋଜନୀ ଯେପରି ମାଟିତଳେ ମିଶି-ଗଲା । ମା କିନ୍ତୁ ସତ୍ରୋଙ୍କ ହାବଭାବ କିଛିହେଲେ ଜାଣିପାରିଲେ ନାହିଁ । ଜ୍ୟୋତିଷ ଜବାବ ଦେବା ପୂର୍ବରୁ ସେ ନିଜ କଥାର ଅନୁବୃତ୍ତି ସ୍ୱରୂପ ପୁଣି କହିବାକୁ ଲାଗିଲେ—ଯାହାକୁ ପାଇଲେ ତୋ ମେମ ଭଉଣୀ ଖୁସି ହେବେ, ତାକୁଇ ଦେ ବାବା ! ମୋ ମନ କ'ଣ, ମତ କ'ଣ ମତେ ବାରମ୍ବାର ପଚାରନା । ମୋର ଯାହା ମତ କହିଦେଲି ।

ଭଉଣୀର ନିରତିଶୟ ସଂକୋଚକୁ ଦେଖି ଜ୍ୟୋତିଷ ନିଜେ ଅତି ସଂକୋଚ ବୋଧ କରୁଥିଲା । ତଥାପି ଟିକିଏ ଜୋରରେ ହସି କହିଲା—କିନ୍ତୁ ମତାମତ ପ୍ରସନ୍ନ ମନରେ ଦେବା ଉଚିତ ।

ଜଗତ୍ତାରିଣୀ କହିଲେ—ପ୍ରସନ୍ନ ମନରେ କହୁଚି ବାବା, ପ୍ରସନ୍ନ ମନରେ କହୁଚି । ମତେ ଆଉ ବିରକ୍ତ କରନି ତୁମେମାନେ ।

ଜ୍ୟୋତିଷ କିଛି ସମୟ ନୀରବ ରହିବା ପରେ ଭାବି ଚିନ୍ତି ଦେଖିଲା, ଘଟଣା ଯେତେବେଳେ ଗଡ଼ି ଗଡ଼ି ଏପର୍ଯ୍ୟନ୍ତ ଆସିଲାଣି, ମାଆଙ୍କ ବିରକ୍ତି ସତ୍ତ୍ୱେ କିଛିନା କିଛି ନିଷ୍ପତ୍ତି କରିଦେବା ଉଚିତ ହେବ । କାରଣ ସେମାନଙ୍କର କ୍ଲବ, ଲାଇବ୍ରେରୀରେ ଏ କଥାଟା ଆଜିକାଲି ପ୍ରାୟ ଆଲୋଚିତ ହେଉଚି । ଅଥଚ କ'ଣ ଯେ ଠିକ୍ ହେବ, ସେ କଥା ବୁଝି ଯାଉନି । ଘରେ ଏକଥା ପ୍ରାୟ ଉଠେ; କିନ୍ତୁ ସେମିତି ସେମିତି ବନ୍ଦ ହୋଇଯାଏ । ଆଗକୁ ବଢ଼ି ପାରେନା । ଶଶୀଙ୍କୁ ମଧ୍ୟ ଏହିଭଳି ଅନିଶ୍ଚିତତା ଭିତରେ ଦୀର୍ଘକାଳ ପକେଇ ରଖାଯିବା ଠିକ୍ ନୁହେଁ । ତେଣୁ ବରକନ୍ୟାଙ୍କ ସୁନିଶ୍ଚିତ କାମନା ବିରୁଦ୍ଧରେ ମାଙ୍କର ସ୍ପଷ୍ଟ ଅନିଚ୍ଛା । ଜ୍ୟୋତିଷ ମୁଣ୍ଡରେ ମୁଣ୍ଡେଇ ନେଇ ଯାହାହେଉ କିଛି ଗୋଟାଏ ସ୍ଥିର କରାଯାଉ ବୋଲି ଭାବି କହିଲା—ତାହାହେଲେ ମୁଁ ଭାବୁଚି ମା, ଏ ରବିବାର ଦିନ ବନ୍ଧୁବାନ୍ଧବଙ୍କ ଆଗରେ ପଅରିଦିନ ବିଭା କଥାଟା ପକ୍କା ହୋଇଯାଉ । କ'ଣ କହୁଚୁ ?

ମା କହିଲେ—ଭଲ ।

ସତ୍ରୋଜନୀ ଧୀରେ ଧୀରେ ନିଜ ଘର ଭିତରକୁ ଚାଲିଗଲା ।

ରବିବାର ଦିନ ସକାଳେ ଜ୍ୟୋତିଷର ବୈଠକଘରଟା ବନ୍ଧୁ-ବାନ୍ଧବଙ୍କ ସମାଗମରେ ପରିପୂର୍ଣ୍ଣ ହୋଇଉଠିଲା । ନବଦମ୍ପତିଙ୍କ ବିବାହ

ସଂବନ୍ଧରେ ପକ୍କା କଥା ହୋଇବା ପରେ ଏଇଠି ମଧ୍ୟାହ୍ନ ଭୋଜନର ଆୟୋଜନ ମଧ୍ୟ କରା ଯାଇଥିଲା । ଆଜି ଶଶାଙ୍କର ବେଶଭୂଷାରେ କେବଳ ଯେ ଟିକିଏ ପରିପାଟୀ ପରିଲକ୍ଷିତ ହେଉଥିଲା ତାହା ନୁହେଁ, ତା ମୁଖ-ମଣ୍ଡଳରେ ଆଜି ଯେଉଁଭଳି ଶ୍ରୀ ଫୁଟି ଉଠିଥିଲା, ସେଥିରେ ସେ ଅତି ସୁନ୍ଦର ଦେଖା ଯାଉଥିଲା । କେତେ ଜଣ ମହିଳା ଉପସ୍ଥିତ ଥିଲେ । କେବଳ ସରୋଜିନୀ ଉପସ୍ଥିତ ନ ଥିଲା । ବେହେରା ହାତରେ ଡକେଇବା ପରେ ଜ୍ୟୋତିଷ ନିଜେ ଯାଇ ତା ଘର କବାଟ ଉପରେ ଠକ ଠକ ଶବ୍ଦ କରି ଚଞ୍ଚଳ ଆ ବୋଲି ଅନୁରୋଧ କରିଥିଲା । ହୁଏତ ଅନ୍ୟ କୌଣସିଦିନ ହୋଇଥିଲେ ତାର ଏଇ ଆଚରଣ ଅପରାଧ ବୋଲି ଗଣା ହୋଇଥାଆନ୍ତା । କିନ୍ତୁ ଆଜି ମାର୍ଜନା ପାଇବାର ଅଧିକାର ଅଛି ଜାଣି ସସ୍ନେହ କୌତୁକରେ ଅତିଥିମାନେ ଜ୍ୟୋତିଷକୁ ଚଞ୍ଚଳ ଡାକି ଆଣିବାକୁ କହୁଥିଲେ ।

ବହୁତ ଡକାଡ଼ାକି ପରେ ପ୍ରାୟ ଦିନ ୧୦ଟା ବେଳକୁ ସରୋଜିନୀ ଯେତେବେଳେ ଉପସ୍ଥିତ ହେଲା, ସେତେବେଳେ ତାର ଚେହେରା ଦେଖି ଉପସ୍ଥିତ ସମସ୍ତେ ବିସ୍ମିତ ହୋଇପଡ଼ିଲେ । ତାର ମୁହଁ ପାଣ୍ଡୁର, ଆଖି ତଳ କଳା ପଡ଼ିଯାଇଚି—ମନେ ହେଉଚି, ଯେମିତି ସେ ରାତିସାରା ମୁହୂର୍ତ୍ତେ ହେଲେ ଶୋଇନି । ଜ୍ୟୋତିଷ ନିର୍ବାକ ଭାବରେ କେବଳ ଭଉଣୀର ମୁହଁ ଆଡ଼କୁ ଚାହିଁରହିଲା । ସରୋର ଆକାର ପ୍ରକାରକୁ ଦେଖି ହତବୁଦ୍ଧି ହୋଇପଡ଼ିଲା ସେ ।

କିନ୍ତୁ ଏହା ଅପେକ୍ଷା ଶହେଗୁଣ ବିସ୍ମୟ ଯେ ତା ଭାଗ୍ୟରେ ଥିଲା, ସେ ଜାଣି ନ ଥିଲା । ମୁହୂର୍ତ୍ତକ ଭିତରେ ସେଇ ପ୍ରଚଣ୍ଡ ବିସ୍ମୟ ଉପେନ୍ଦ୍ରର ମୂର୍ତ୍ତି ନେଇ ପର୍ଦ୍ଦାକୁ ଆଡ଼େଇ ଘର ଭିତରେ ପ୍ରବେଶ କଲା । ଜ୍ୟୋତିଷ ଚମକିଉଠି କହିଲା—କିଏ ଉପୀନ ?

ସରୋଜିନୀ କହିଲା—ଉପୀନବାବୁ !

ବସ୍ତୁତଃ ଦିନବେଳା ନ ହୋଇଥିଲେ ଏମାନେ ଉପୀନକୁ ଆଦୌ ଚିହ୍ନି ପାରନ୍ତେ ନାହିଁ । ମଣିଷର ଦେହର ଯେ ଏପରି ପରିବର୍ତ୍ତନ ହୋଇପାରେ, ଏକଥା ଭାବି ବି ହୁଏନା ।

ଉପେନ୍ଦ୍ର ଗୋଟାଏ ଚୌକି ଉପରେ ବସିପଡ଼ି କହିଲା—ଦେହଟା କେତେଦିନ ହେଲା ଭଲ ନାହିଁ । ପୁରୀରୁ ଆସୁଚି । ଆଜି କ'ଣ ହେଉଚି କି ?

ସରୋଜିନୀ ଉଠିଆସି ଉପେନ୍ଦ୍ରର ହାତକୁ ନିଜ ହାତ ଉପରେ ରଖି ମୁହଁକୁ ଚାହିଁ କହିଲା—କ'ଣ ହେଉଛି ଉପୀନବାବୁ ? କହୁ କହୁ ତା ହ' ଆଖି ସଜଳ ହୋଇଆସିଲା । ଉପେନ୍ଦ୍ର ତାର ବିବର୍ଣ୍ଣ ଓଠ ଦେହରେ ହସ ଫୁଟେଇ କହିଲା - ରୋଗ ତ ମୋଟେ କିଛି ନାହିଁ ଭଉଣୀ !

ଉପେନ୍ଦ୍ର ଆଜି ଏଇ ପ୍ରଥମ କରି ସରୋଜିନୀକୁ ଭଉଣୀ ବୋଲି ସମ୍ବୋଧନ କଲା । ସରୋଜିନୀ ସଙ୍ଗେ ସଙ୍ଗେ ଆଖିରୁ ଲୁହ ପୋଛିନେଇ କହିଲା—ଚାଲନ୍ତୁ ସେ ଘରେ ବସିବା । ଏହାକହି ସେ ତା ହାତ ଧରି ଟାଣିନେଇ ଏଇ ଜନାକୀର୍ଣ୍ଣ କକ୍ଷରୁ ଧୀରେ ଧୀରେ ବାହାରିଗଲା ଏବଂ ସଙ୍ଗେ ସଙ୍ଗେ ଏ ଘରର ଆନନ୍ଦ ଉତ୍ସବ ଯେଉଁଭଳି ଲିଭିଗଲା । ଜ୍ୟୋତିଷ ଆସି ସରୋଜିନୀକୁ କହିଲା—ଉପୀନ ବିଶ୍ରାମ କରୁ; ତୁ ଏ ଘରକୁ ଆ । ସରୋଜିନୀ ମୁଣ୍ଡ ହଲାଇ ସଂକ୍ଷେପରେ କହିଲା, ଆଜି ଥାଉ ଦାଦା !

ଜ୍ୟୋତିଷ ହତବୁଦ୍ଧି ହୋଇ କହିଲା—ଥିବ କିମିତି ? ସରୋଜିନୀ ପୁଣି ମୁଣ୍ଡ ହଲାଇ କହିଲା—ନା ଆଜି ଥାଉ ।

ଜଗତ୍ତାରିଣୀ ଖବର ପାଇ ଘରେ ପଶି କାନ୍ଦ କାନ୍ଦ ସ୍ୱରରେ କହିଲେ—କିମିତି ଏତେ ରୋଗାହୋଇପଡ଼ିଲୁ ବାବା ! ଆଉ କୋଉଠିକି ଯିବାକୁ ଉତେ ଦେବିନି ବାବା ! ଏଇ ଘରେ ରହ, ଡାକ୍ତର ଦେଖେଇବା ନଚେତ୍ ରୋଗ ଭଲ ହେବନି ।

ସରୋଜିନୀ ଜୋରଦେଇ କହିଲା—ହଁ ଉପୀନଦା, ତୁମକୁ ଆମପାଖରେ ହିଁ ରହିବାକୁ ପଡ଼ିବ । ସେ ମଧ୍ୟ ଆଜି ଏଇ ପ୍ରଥମ ଉପେନ୍ଦ୍ରକୁ ଦାଦା ବୋଲି ଡାକିଲା ।

ଉପେନ୍ଦ୍ର ଯେ ସେଇ ଚାକରୀ ଲାଗି ପୁରୀରୁ ଚାଲିଆସିଛି, ସେକଥା ନ ପଚାରି ମଧ୍ୟ ସମସ୍ତେ ଧରି ନେଇଥିଲେ ।

ଉପେନ୍ଦ୍ର ହସି ହସି କହିଲା—ଫେରିଆସି ଏଠି ରହିବି; କିନ୍ତୁ ମତେ ଆଜି ଏଇ ଘଣ୍ଟାକ ଭିତରେ ଏଠୁ ଯିବାକୁ ପଡ଼ିବ ।

ଜଗତ୍ତାରିଣୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—ଆଜି ! ଏହିକ୍ଷଣି ?

ସତୀଶ ଯେ ଖୁବ୍ ରୋଗଗ୍ରସ୍ତ ହୋଇପଡ଼ିଛି ଉପେନ୍ଦ୍ର ସେ କଥା ବର୍ଣ୍ଣନା କଲା ଏବଂ ଦେଖାଇ ଦେଇଥିବା ଚିଠି ଖଣ୍ଡିକ ସରୋଜିନୀ ହାତରେ ଦେଇ କହିଲା—ସାଢ଼େ ୧୧ଟାବେଳେ ଟ୍ରେନ । ମତେ ସେଇଥିରେ ଯିବାକୁ

ହେବ । ଯଦି ଫେରିଆସେ, ଆଉ କୋଉଠି ଆଶ୍ରୟ ନ ନେଇ ଏଇଠି ଆସି ନିଶ୍ଚୟ ରହିବ ।

ଜଗନ୍ତାରିଣୀଙ୍କ ମାତୃହୃଦୟ ବିଗଳିତ ହୋଇପଡ଼ିଲା । ଚକ୍ଷୁ ପୁଣି ଅଶ୍ରୁପୂର୍ଣ୍ଣ ହୋଇ ଉଠିଲା । ସତୀଶଙ୍କୁ ସେ ମନେ ମନେ ସ୍ନେହ କରନ୍ତି। ସେଇ ସତୀଶ ଆଜି ପୀଡ଼ିତ, କିନ୍ତୁ ଉପେନ୍ଦ୍ରର ଯେଉଁଭଳି ଅବସ୍ଥା ସେଥିରେ ପୁଣି ସେ ସତୀଶର ସେବା କରିବାକୁ ଯାଉଛି ଜାଣି ତାଙ୍କ ବୁକୁ ଫାଟି ପଡ଼ିଲା । ସେ ଆଖିକୁ ପୋଛି ପୋଛି ଚାଲିଗଲେ ଉପେନ୍ଦ୍ରର ଖାଇବା ପିଇବା ବ୍ୟବସ୍ଥା କରିବାକୁ ।

ସରୋଜିନୀ ଚିଠିଟିକୁ ମୂଳରୁ ଶେଷଯାଏଁ ଦୁଇ ତିନି ଥର ପଢ଼ି କିଛି ସମୟ ସ୍ତବ୍ଧ ଭାବରେ ବସିରହିଲା । ତା ପରେ କହିଲା—ତୁମ ସାଥିରେ ମୁଁ ବି ଯିବି ଉପୀନଦା !

ଉପେନ୍ଦ୍ର କହିଲା—ବେଳ ବହୁତ ହୋଇଗଲାଣି, ତୁଛାଟାରେ ଷ୍ଟେସନକୁ ଯିବା କ'ଣ ବା ଦରକାର ?

ସରୋଜିନୀ କହିଲା—ଷ୍ଟେସନକୁ ନୁହେଁ, ଘରକୁ— ତୁମ ସାଥିରେ ମତେ ନେଇ ଚାଲ ।

ଉପେନ୍ଦ୍ର କହିଲା—ଧେତ୍ ପାଗଳୀ ! ତୁ ସେଠିକି ଯିବୁ କିମିତି ?

ତୁମ ସାଥିରେ ।

ଉପେନ୍ଦ୍ର କହିଲା—ତୁ, ଏମାନେ ତତେ ସେଠିକି ଯିବାକୁ ଦେବେ କିପରି ? ତୁ ବା ସେଠିକି ଯିବୁ କାହିଁକି ?

ସରୋଜିନୀ ଜିଦ୍‌ଧରି କହିଲା—ନା, ମୁଁ ନିଶ୍ଚୟ ଯିବି । ଏହା କହି ସେ ପ୍ରସ୍ତୁତ ହେବା ଉଦ୍ଦେଶ୍ୟରେ ଚାଲିଗଲା ।

ଅଫିସ ଘରେ ଗୋଟାଏ ଲମ୍ବା ଚୌକି ଉପରେ ବସି ଜ୍ୟୋତିଷ ଶଶାଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ବୋଧହୁଏ ଏହି ଆଲୋଚନା ହିଁ ହେଉଥିଲା । ସରୋଜିନୀ ଆସ୍ତେ ଆସ୍ତେ ଯାଇ ଦାଦାଙ୍କ ପଛଆଡ଼େ ଠିଆହୋଇ ତାର କାନ୍ଧ ଉପରେ ହାତ ରଖିବାମାତ୍ରେ ସେ ଚକିତ ହୋଇ ମୁହଁ ଫେରାଇ କହିଲା—କ'ଣ କଲେ ସରୋ ?

ସରୋଜିନୀ ଦାଦାର ମୁହଁ ପାଖକୁ କାନକୁ ଟାଣିଆଣି କହିଲା—ସତୀଶବାବୁଙ୍କର ଭୀଷଣ ଦେହ ଖରାପ ।

ଜ୍ୟୋତିଷ ମୁଣ୍ଡ ହଲେଇ ଦୁଃଖିତ ହୋଇ କହିଲ—ହଁ, ଶୁଣିଲି ତ । ଉପୀନ ଏଇ ଏଗାରଟା ଗାଡ଼ିରେ ଯାଉଛି ନା' କ'ଣ ?

ସରୋଜିନୀ କହିଲ—ହଁ, ମୁଁ ବି ତାଙ୍କ ସାଥିରେ ଯିବି ।

ଜ୍ୟୋତିଷ ଚମକିଉଠି କହିଲ—ତୁ ଯିବୁ କୋଉଠିକି ?

ସରୋଜିନୀ କହିଲ – ସେଇଠିକି ।

ଜ୍ୟୋତିଷ ପଚାରିଲ—ସେଇଠିକି ମାନେ ? ସତୀଶ ଯେଉଁଠି ଅଛି, ସେଠିକି ?

ଶଶାଙ୍କ ଦୁଇଚକ୍ଷୁ ବିସ୍ମୟରେ ବିସ୍ଫାରିତ କରି ଚାହିଁରହିଲା । ଜ୍ୟୋତିଷ ଉତ୍ତେଜିତ ସ୍ୱରରେ କହିଲ—ତୁ କ'ଣ ପାଗଳ ହେଲୁ ନା କ'ଣ ? ତାର ଦେହ ଖରାପ, ତୁ ଯିବୁ କାହିଁକି ?

ସରୋଜିନୀ ଶାନ୍ତ ଅଥଚ ଦୃଢ଼ କଣ୍ଠରେ କହିଲ—ମୁଁ ଯିବନି ତ ଆଉ କିଏ ଯିବ ? ନା ଦାଦା, ସେ ଖୁବ୍ ଅସୁସ୍ଥ, ମତେ ଯିବାକୁ ହିଁ······ ଆଉ ସେ କିଛି କହିପାରିଲନି । ଦାଦାର କାନ୍ଧରେ ମୁହଁ ରଖି କହିଁ କହିଁ ହୋଇ କାନ୍ଦିଉଠିଲା ସେ ।

ଜ୍ୟୋତିଷର ଆଖି ଆଗରୁ ଯେପରି ଗୋଟାଏ ଅନେକ ଦିନର କଳାପର୍ଦ୍ଦା କିଏ ଅତି ଜୋରରେ ଟାଣିଦେଇ ପକେଇଲା । କିନ୍ତୁ କିଛି ସମୟ ନିଃଶବ୍ଦରେ ବସିରହି ପରେ ଭଉଣୀର ମୁଣ୍ଡ ଉପରେ ହାତ ବୁଲେଇ କହିଲ—ଆଚ୍ଛା ଯା । ସାଥିରେ ଗୃହିଣୀ ଓ ଦରଓ୍ୱାନ ମଧ୍ୟ ଯିବେ । ସତୀଶ କିମିତି ଅଛି, ଗଲମାତ୍ରେ ଟେଲିଗ୍ରାମ କରିବୁ । ମୁଁ ସଙ୍ଗେ ସଙ୍ଗେ ରମଣୀ ଡାକ୍ତରକୁ ନେଇ ପହଞ୍ଚିବି । ଏ କଥା ଶୁଣୁ ଶୁଣୁ ସରୋଜିନୀ ମନରେ ଆନନ୍ଦ କହିଲେ ନ ସରେ । ଧାଇଁ ପଳେଇଲା ସେଇଠୁ ।

ଶଶାଙ୍କ ମୂଢ଼ ଭଳି ଚାହିଁରହିବା ପରେ ସେଇ ପ୍ରଶ୍ନକୁ ହିଁ ପଚାରିଲା— ସତୀଶବାବୁଙ୍କର ତ ଦେହ ଖରାପ । ଇଏ କାହିଁକି ଯିବେ ? ସେ କଥା ବୁଝି ପାରୁନି ଜ୍ୟୋତିଷବାବୁ ! ବ୍ୟାପାର କ'ଣ ?

ଜ୍ୟୋତିଷ କାନରେ ଏସବୁ କଥା ପଶିଲା କି ନା କହିବା କଠିନ । ସେ ଯିମିତି ସ୍ୱପ୍ନାବିଷ୍ଟ ଭଳି କହି କହି ବାହାରିଗଲା – ତା ଲାଗି ଇଏ ଏତେ ବ୍ୟାକୁଳ, ସେ କଥା ତ ସ୍ୱପ୍ନରେ ସୁଦ୍ଧା ଭାବିନ ସେ । ଏମାନେ କହନ୍ତି ଗୋଟେ ରକମର – କରନ୍ତି ଅନ୍ୟ ରକମର ।

ଷ୍ଟେସନରେ ଓହ୍ଲାଇ ଉପେନ୍ଦ୍ର ଯେଉଁ ଭଦ୍ରଲୋକଙ୍କୁ ସମ୍ମୁଖରେ ପାଇଲେ ତାଙ୍କୁ ବାବୁ କେଉଁଠା ବୋଲି ପଚାରିଲା—ଭାଗ୍ୟକ୍ରମେ ସେଇ ଟିଲାଟି ସମ୍ମୁଖରେ ଉପସ୍ଥିତ ହେଲା। ସେ ରେଳ କମ୍ପାଉଣ୍ଡର। ନିଜର କୌଣସି କାମରେ ଷ୍ଟେସନକୁ ଆସିଥିଲା। ବାବୁଙ୍କ ପାଖକୁ ଯିବେ ଶୁଣିବାମାତ୍ରେ ସେ ଯିବାର ଯୋଗାଡ଼ କରିବା ପାଇଁ ବ୍ୟସ୍ତ ହୋଇ ଧାଁ ଧପଡ଼ କଲା। କେବଳ ସରୋଜିନୀ ପାଇଁ ଗୋଟାଏ ପାଲିଙ୍କି ସଂଗ୍ରହ କରି ଆଣିଲା ସେ। ଉପେନ୍ଦ୍ରଙ୍କୁ କହିଲା—ଏଇ ତ ମହେଶପୁର, କଥାବାର୍ତ୍ତା ହୋଇ ଚାଲିଯିବା, ବାଟ ଜଣା ପଡ଼ିବନି। ଅଧଘଣ୍ଟାଏ ସମୟ ଲାଗିବ। ଗୋରୁ ଗାଡ଼ିରେ ଗଲେ ବହୁତ ସମୟ ଲାଗିବ।

ଚାଲିବା ଭଳି ଶକ୍ତି ଉପେନ୍ଦ୍ରର ନ ଥିଲା। କିନ୍ତୁ ଶଗଡ଼ରେ ଯିବା ଭୟରେ ପଦବ୍ରଜକୁ ସେ ସ୍ୱୀକାର କରିନେଲା।

ସରୋଜିନୀଙ୍କୁ ପାଲିଙ୍କିରେ ବସେଇଦେଇ ଦରୱାନ ଓ ଦାସୀଙ୍କୁ ସାଙ୍ଗରେ ଧରି ସେ ମହେଶପୁର ଅଭିମୁଖେ ଚାଲିଲା। ବାଟ କଢ଼େଇ ନେଉଥିବା ପିଲାଟିର ବୟସ ସତର ଅଠର ବର୍ଷରୁ ବେଶୀ ନୁହେଁ। ଖୁବ୍ ଚାଲାକ, ବଡ଼ ଚଞ୍ଚଳ, ନାଁ ଏକକଡ଼ି। ତାର ଭରସା ଆଉ ବର୍ଷେ ଅଧେ ତାଙ୍କର ଡାକ୍ତରବାବୁଙ୍କ ସହିତ ଘୂରିପାରିଲେ ସେ ଅଲଗା ପ୍ରାକ୍ଟିସ କରିପାରିବ। ତା ମତରେ ଡାକ୍ତରୀଟା କିଛି ନୁହେଁ, ଠିକଏ ହାତଯଶ ହେଲେ ହେଲା। ଯେ ବଂଚିବାର ଅଛି ସେ ବଂଚିବ, ଯିଏ ମରିବାର ଅଛି ତାକୁ ଯେତେ ଚିକିତ୍ସା କର ନିଶ୍ଚୟ ମରିବ।

ଉପେନ୍ଦ୍ର ହଁ ସେୟା ବୋଲି ଉତ୍ତର ଦେଇ ପରକ୍ଷଣରେ ପଚାରିଲା—ତୁମ ବଡ଼ବାବୁ କିମିତି ଅଛନ୍ତି ?

ଏକକଡ଼ି କହିଲା—ବାବୁ ? ଆଜିକି ବାଇଶ ଦିନ ହେଲା ଭଲ ହୋଇଗଲେଣି। ମୁଁ, ମୁଇଁ ସବୁ ଔଷଧ ଦେଇଛି।

ଉପେନ୍ଦ୍ର ବହୁତ କିଛି ନିଶ୍ଚିନ୍ତ ହୋଇ କହିଲା—ସେଭଳି କ'ଣ ଶ୍ରୀରଙ୍କ ଦେହ ଖରାପ ହୋଇଥିଲା ?

ଏକକଡ଼ି କହିଲା – ବେଶୀ ? ସେ ତ ଏକରକମ ମରି ଯାଇଥିଲେ। ମା ଯଦି ଆସି ନ ଥାନ୍ତେ ତ ରୋଗ ଭଲ କରିବା ଅସାଧ୍ୟ ହୋଇ ଉଠିଥାନ୍ତା। ନ ହେବ ବା କେମିତି ? ଦିନରାତି ଆକୋବାବାଙ୍କ ସାଥିରେ ପଡ଼ି ମଦ ଆଉ

ଗଞ୍ଜେଇ । ରୋଗ ହେବନ ତ ଆଉ କ'ଣ ହବ ? କ'ଣ ନା କାଳୀ-ସିଦ୍ଧ ହେଉଚ । କାଳୀ ନା ଫାଳୀ ! ଏସବୁ କଥାରେ ଆମ୍ଭମାନଙ୍କର ବିଶ୍ୱାସ ନାହିଁ । କିନ୍ତୁ ମା ଆମର ଘରେ ପହଞ୍ଚିବା ମାତ୍ରେ ଥାକୋବାବାଙ୍କୁ ବିଦାକରି ନିକାଳି ଦେଲେ । ଧକ୍କା ମାରି ଚମୁଟା, ତ୍ରିଶୂଳକୁ ଫୋପାଡ଼ିଦେଲେ । ସେତିକିରେ ସାବାଡ଼ । ବାବାଙ୍କଗଟା କେତେଦିନ ଧରି ଯେଉଁ କାଣ୍ଡ କଲ ନା ! ଏ ଅଞ୍ଚଳଟା ଯାକର ସିମିତ ଗୋଟାଏ ସମ୍ରାଟ ! ଆଜ ଯାକୁ ମାରତ କାଲ ତାକୁ ମାର ! ସାମାନ୍ୟ କଥାରେ ମତେ ହନେ ଯାହା ନ କଲ ସେ ! ବାବୁ, ମୁଁ ଗୋଟାଏ ନିହାତ ସରଳ ଲୋକ । କାହା ସାଥିରେ କଳିକଜିଆ କରିବାକୁ ବଡ଼ ଭୟ । ଆଉ କିଏ ହୋଇଥିଲେ, ବେହିୟାଟାର ମୁଣ୍ଡ ଫଟେଇ ବିଫାଳ କରି ଦେଇଥାଆନ୍ତା ।

ଉପେନ୍ଦ୍ର ପଗ୍ଚରିଲ—ମା କିଏ ?

ଏକକଡ଼ି କହିଲ—ସେତେ କଥା କ'ଣ ମୁଁ ଜାଣେ ? ସମସ୍ତେ ଡାକୁଚନ୍ତି ମା, ମୁଁ ମଧ୍ୟ ଡାକୁଚି ମା !

ଉପେନ୍ଦ୍ର ପଗ୍ଚରିଲ—ତାକୁ ତୁମେ ଦେଖିଚ ?

ଏକକଡ଼ି କହିଲ—ହଁ ଦେଖିନ ଆଉ କ'ଣ ?

ଉପେନ୍ଦ୍ର ପଗ୍ଚରିଲ—ତାର ବୟସ କେତେ କହିପାରିବ ?

ଏକକଡ଼ି ଟିକିଏ ଭାବିଚିନ୍ତି କହିଲା—ପ୍ରାୟ ୪୦।୫୦ ହେବ ବୋଧହୁଏ । ନଇଲେ ବାବୁଙ୍କୁ କିଏ କ'ଣ ଶାସନ କରିପାରେ ? ଡାକ୍ତର ବାବୁ ତ କହନ୍ତି, ସେ ଆସି ନ ଥିଲେ ବାବୁ ଯାଇ ଆର ପୁରରେ ପହଞ୍ଚି ସାରନ୍ତେଣି ।

ଏକକଡ଼ି ସାଙ୍ଗରେ ଉପେନ୍ଦ୍ର ସତୀଶ ଘରେ ପହଞ୍ଚିଲାବେଳକୁ ସୂର୍ଯ୍ୟାସ୍ତ ସମୟ । ସରୋଜିନୀ ଆଗରୁ ପହଞ୍ଚି ସାରିଥିଲା । ତାକୁ ପାଲିଙ୍କିରୁ ଗେଟ ବାହାରେ ବରଗଛ ତଳେ ଓହ୍ଲେଇଦେଇ ବର୍ତ୍ତମାନ ଅପେକ୍ଷା କରିଥିଲା । ଆଗରେ ଦାତବ୍ୟ ଚିକିତ୍ସାଳୟ । ସେଇଠି ବହୁ ଲୋକଙ୍କ ଭିଡ଼ ।

ଏକକଡ଼ି ସମସ୍ତଙ୍କୁ ସାଙ୍ଗରେ ଆଣି ତଳେ ପ୍ରତୀକ୍ଷା ଗୃହରେ ବସେଇ ଦେଇ ବେହାରିଙ୍କୁ ଡାକିବାକୁ ଗଲା । କିନ୍ତୁ ତାର ଦେଖା ମିଳିଲାନି । ଡାକ୍ତରବାବୁ ମଧ୍ୟ ବାହାରକୁ ରୋଗୀ ଦେଖିବାକୁ ଯାଇଥିଲେ । ବହୁ ରୋଗୀ ତାଙ୍କୁ ଅପେକ୍ଷା କରି ରହିଥିଲେ ।

ଉପେନ୍ଦ୍ରର ଏହି 'ମା' ସମ୍ବନ୍ଧରେ ବହୁତ ସନ୍ଦେହ ଥିଲା । ତେଣୁ ମନୋରାଜ୍ୟକୁ ସେଇଠି ଅପେକ୍ଷା କରିବାକୁ କହି ସିଧାସଳଖ ସିଡ଼ିଦେଇ ଉପରକୁ ଉଠିଗଲା ।

ସତୀଶ ଶେଯ ଉପରେ ଶୋଇ ପଡ଼ିଥିଲା । ତା ପାଖରେ ବସି ସାବିତ୍ରୀ ନିବିଷ୍ଟ ମନରେ ଜରର ଚାର୍ଟଟିକୁ ପରୀକ୍ଷା କରୁଥିଲା । ସେପଟର ଖୋଲା ଝରକା ଦେଇ ସୂର୍ଯ୍ୟାସ୍ତ-ଆଭା ଶେଯ ଉପରେ ବିଛେଇ ହୋଇ ପଡ଼ିଥିଲା ।

ଏହିଭଳି ସମୟରେ ଦ୍ୱାର ଆଗରେ ଟଙ୍ଗାଥିବା ପରଦା ଆଡ଼େଇବା ଶବ୍ଦରେ ସାବିତ୍ରୀ ମୁହଁ ଉଠେଇ ଦେଖିଲା, ଜଣେ ଅପରିଚିତ ଭଦ୍ରଲୋକ ।

ଶୀଘ୍ର ମୁଣ୍ଡରେ ଓଢ଼ଣା ଟାଣିଦେଇ ଉଠି ଉଠି ଆଗନ୍ତୁକ ନିକଟକୁ ଆସି କହିଲା—ଉଠନ୍ତୁନ, ମୁଁ ଉପୀନ । ଆପଣ ସାବିତ୍ରୀ ତ ?

ସାବିତ୍ରୀ ମୁଣ୍ଡକୁ ହଲେଇ କହିଲା—ହଁ କିନ୍ତୁ ଭୟ ଓ ଲଜ୍ଜାରେ ତା ମଥା ଅବନତ ହୋଇଆସିଲା ।

ଉପେନ୍ଦ୍ର ପଚାରିଲା—ସତୀଶ ଶୋଇଛି ? ଏବେ ଦେହ କିପରି ଅଛି ?

ସାବିତ୍ରୀ ପୂର୍ବଭଳି ମୁଣ୍ଡ ହଲାଇ କହିଲା—ଭଲ ଅଛନ୍ତି ।

ଉପେନ୍ଦ୍ର ଧୀରେ ଧୀରେ ଖଟର ଗୋଟିଏ ପାଖରେ ଆସି ବସିଲା । ନିଜର କର୍ତ୍ତବ୍ୟ ସେ ପୂର୍ବରୁ ସ୍ଥିରକରି ନେଇଥିଲା । କହିଲା—ମତେ ସେ ଚିଠି ତାହାହେଲେ ଆପଣ ହିଁ ଲେଖିଥିଲେ, ବର୍ତ୍ତମାନ ବୁଝିପାରୁଛି । ମତେ ଆସିବାକୁ କହି ନିଜର ସୁଖ ଦୁଃଖ ଭଲମନ୍ଦ ଯେ ଆପଣ କେତେଦୂର ତୁଚ୍ଛ କରିଥିଲେ, ମୁଁ ସେ କଥା ବୁଝିନି ବୋଲି ମନେ କରିବେନି । ସେଇ କଥାତ ମୁଁ ଚାହେଁ । ଏଇତ ନିଜର ପରିଚୟ ।

ସାବିତ୍ରୀର ମନେହେଲା, ସେ ବୋଧହୁଏ ସ୍ୱପ୍ନ ଦେଖୁଛି । ସମ୍ଭବତଃ ଇଏ ଆଉ ଜଣେ କିଏ ? ସତୀଶର ସେଇ ଉପୀନ୍‌ଦା ନୁହେଁ ।

ଉପେନ୍ଦ୍ର କିଛି ସମୟ ଚୁପ୍ ରହିବା ପରେ କହିଲା—ତୋଠୁ ମୁଁ ବୟସରେ ବଡ଼ । ତତେ ମୁଁ ସାବିତ୍ରୀ ବୋଲି ଡାକିବି । ତୁ ମତେ ଦାଦା ବୋଲି ଡାକ । ଆଜିଠୁ ତୁ ମୋର ସ୍ନେହର ଭଉଣୀ ।

ସାବିତ୍ରୀ ମାରବାରେ ଉଠିଆସି ଗଳାରେ ଲୁଗାକାନି ଦେଇ ଉପେନ୍ଦ୍ର ପାଦତଳେ ପଡ଼ି ପ୍ରଣାମ କଲା ଏବଂ ଦୁହାତ ବଢ଼େଇ ଉପେନ୍ଦ୍ରର ମୋଟା ଖୋଲୁ ଖୋଲୁ ପ୍ରଶ୍ନ କଲା—ଆସିବାକୁ ଏତେ ଡେରିହେଲା କାହିଁକି ? ଚିଠି କ'ଣ ଠିକ୍ ସମୟରେ ପାଇନା ?

ଉପେନ୍ଦ୍ର ସାବିତ୍ରୀର କାମରେ ବାଧା ଦେଲାନି । ସହଜ ଭାବରେ କହିଲା—ନା ସାନ୍ତ୍ୱ ପାଇନି । ପଅରଦିନ ପୁରୀରେ ତୋ ଚିଠି ପାଇବାମାତ୍ରେ ଆସିଛି । କିନ୍ତୁ ତୋର ସେ ଗୋଟାଏ ବଡ଼ କାମ ବାକି ରହିଛି ସାନ୍ତ୍ୱ !

କଥା କହୁ କହୁ ଉପେନ୍ଦ୍ର ଅଟକିଗଲା ।

ସାବିତ୍ରୀ ମୋଟାଟିକୁ ଗୋଟିଏ ପାଖରେ ରଖିଦେଇ ମୋଜା ଖୋଲ୍ ଖୋଲୁ କହିଲା – କି କାମ ଦାଦା ?

ତଥାପି ଉପେନ୍ଦ୍ର କିଛି କହିପାରିଲାନି । ତା ପରେ ଯେମିତି ଜୋରକରି ଭିତରର ସଂକୋଚ କାଟି କହିଲା—କିନ୍ତୁ ତୋ ଛଡ଼ା ଏ କାମ କରିବାର ସାଧ୍ୟ କାହାର ନାହିଁ । ହଁ, ଆଉ ଜଣେ ପାରିଥାନ୍ତା— ସେ ସୁରବାଳା ।

ସାବିତ୍ରୀ ମୌନ ମୁଖରେ ଅପେକ୍ଷା କରିବାରୁ ଦେଖି ଉପେନ୍ଦ୍ର କହିଗଲା—ସତୀଶର ନାଁ ଶୁଣିଛୁ ?

ସାବିତ୍ରୀ ମୁଣ୍ଡ ହଲାଇ କହିଲା—ଶୁଣିଛି ।

ବୋଧହୁଏ ସବୁକଥା ଶୁଣିଛୁ ?

ସାବିତ୍ରୀ ସେଇମିତି ମୁଣ୍ଡ ହଲାଇ କହିଲା—ହଁ, ସବୁକଥା ଜାଣେ ।

ଉପେନ୍ଦ୍ର ଧୀରେ ଧୀରେ କହିଲା—ସତୀଶର ଦେହ ଖରାପ ଶୁଣି ତାକୁ କୌଣସିମତେ ଅଟକେଇ ରଖିହେଲାନି । ତଳ ଘରେ ସେ ବସି ରହିଛି । ତାର କିଛି ବ୍ୟବସ୍ଥା କରିଦିଅ ଭଉଣୀ !

ସାବିତ୍ରୀ ବିସ୍ମିତ କିନ୍ତୁ ଆନନ୍ଦପୂର୍ଣ୍ଣ କଣ୍ଠରେ କହିଲା—ସେ ଆସିଛନ୍ତି ! ମୁଁ ଏଇକ୍ଷଣି ଯାଇ···କିନ୍ତୁ ଦାଦା, ମୁଁ ତାଙ୍କ ପାଖକୁ ଯିବାଟା କ'ଣ·····?

ଏ ଇଙ୍ଗିତ ଉପେନ୍ଦ୍ର ଭଲ ଭାବରେ ବୁଝିପାରିଲା । ଦୁଇଚକ୍ଷୁ ପ୍ରସାରିତ କରି ମୁକ୍ତ କଣ୍ଠରେ କହିଉଠିଲା— କ'ଣ କହିଲୁ, ତୁ ଯାଇ ପାରିବୁନି ? ମୋର ସ୍ନେହ ଭଉଣୀ ସାବିତ୍ରୀ କ'ଣ ସଂସାରରେ କାହାଠାରୁ

ଏତେ ଶ୍ରେଷ୍ଠ ନଯ ତାର ମଥା ଉଜଳକରି ଠିଆହେବାକୁ ସଂକୋଚ ହେବ ? "ମୋ ଭଉଣୀ" ଘୃଠୁ ବଳି ସଂସାରରେ ତୋର ଆଉ କ'ଣ ବଡ଼ ପରିଚୟ ଥାଇପାରେ ?

ସାବିତ୍ରୀ ଆଉ ସହିପାରିଲେ ନାହିଁ । ନିମିଷକରେ ତାର ମଥା ଉପେନ୍ଦ୍ରର ଦି' ପାଦତଳେ ଲୋଟିପଡ଼ିଲା । ଥରକୁ ଥର ସେଇ ପବିତ୍ର ପଦର ଧୂଳି ମୁଣ୍ଡରେ ନେଇ ସେ ଯେତେବେଳେ ଉଠି ଠିଆହେଲା, ସେତେବେଳେ ଦେଖାଗଲା, ତା ମୁଣ୍ଡରେ କୌଣସି ଆବରଣ ନାହିଁ—ଆଖିରୁ ଟପ ଟପ ହୋଇ ଜଳ ବହିପଡ଼ୁଛି । ସେଇ ଅଶ୍ରୁସିକ୍ତ ମୂର୍ତ୍ତିଟି ଉପରେ ନାରୀଜାତିର ବୃହତ୍ ମହିମା ଉପେନ୍ଦ୍ର ନିର୍ନିମେଷ ଚକ୍ଷୁରେ ନିରୀକ୍ଷଣ କରିବାକୁ ଲାଗିଲା ।

ଆଖି ପୋଛି ସାବିତ୍ରୀ ଯେତେବେଳେ ଘରୁ ବାହାରିଗଲା, ଉପେନ୍ଦ୍ର ପଛରୁ କହିଲା—ଯା ସାବି, ଯାହାର ଭଉଣୀ ବୋଲି ସବୁଲୋକଙ୍କ ପାଖରେ ପରିଚୟ ଦେବୁ, ତାକୁ କହିଦେବୁ, ଆମେ ଦି ଭାଇ ଭଉଣୀ ଆଜି ପର୍ଯ୍ୟନ୍ତ କେବେହେଲେ ଶ୍ରେଷ୍ଠ କାମ କରିନୁ ।

ସାବିତ୍ରୀ ଚାଲିଯିବା ପରେ ଉପେନ୍ଦ୍ର ନିଦ୍ରିତ ସତୀଶ ପ୍ରତି ଦୃଷ୍ଟିପାତ କରି ଡାକିଲା—ସତୀଶ ? ସତୀଶ !

ନିଦରୁ ଧଡ଼ପଡ଼ ହୋଇ ଉଠିପଡ଼ି ସତୀଶ ଆଖିକୁ ମକଚି ଚାହିଁ ରହିଲା ।

—ମୋର ଉପୀନଦା, ମତେ ଚିହ୍ନି ପାରୁନୁ ?

—ଉପୀନ୍‌ଦା ! ସତୀଶ ବହୁତ ଚିନ୍ତାରେ ନିର୍ବାକ ଭଳି ଚାହିଁରହିଲା ।

—କରେ, ଏବେ ବି ଚିହ୍ନି ପାରୁନୁ ?

ସତୀଶ ତନ୍ଦ୍ରାଳସ କଣ୍ଠରେ କହିଲା—ହଁ ଚିହ୍ନିପାରିଛି । ତୁମେ ଉପୀନ୍‌ଦା ! ତୁମେ ଆସିଛ ?

—ହଁ ଆସିଛି ।

—ତେବେ ପାଦ ଦି'ଟି ଉଠାନା ଭାଇ, ବହୁଦିନ ହେଲା ପାଦଧୂଳି ଗ୍ରହଣ କରିନି ।

ଉପେନ୍ଦ୍ର ଦି ହାତ ବଢ଼ାଇ ତାର ଚିରଦିନର ବନ୍ଧୁକୁ ବୁକୁ ଉପରକୁ ଟାଣି ନେଇଗଲା । କିଛି ସମୟ ଧରି ଅଚେତନ ମୂର୍ତ୍ତି ଭଳି

ଉଭୟେ ଉଭୟଙ୍କୁ ଜାକି ଧରିବା ପରେ ଉପେନ୍ଦ୍ର ଆସ୍ତେ ଆସ୍ତେ କହିଲ— ଆଉ ଡେରି କରନା ସତୀଶ, ଟିକିଏ ଶୀଘ୍ର ଭଲ ହୋଇ ଉଠ, ତତେ ମୋର ବହୁତ କଥା କହିବାକୁ ଅଛି ।

କି ନାମ ଉପୀନ୍‌ଦା ? କହି କହି ସତୀଶ ପଛକୁ ଲୁହିଁ ଦେଖିଲ, ସାବିତ୍ରୀ ସରୋଜିନୀକୁ ସାଙ୍ଗରେ ଧରି ଆସୁଛି ।

ଥରେ ଉପେନ୍ଦ୍ରକୁ ତ ଥରେ ଏହି ଦୁଇଟି ମହିଳାଙ୍କ ପ୍ରତି ଦୃଷ୍ଟି-ପାତ କରି ସତୀଶ ବଡ଼ ବିସ୍ମିତ ହୋଇପଡ଼ିଲା । ସେ ନିଜ ଦୃଷ୍ଟିକୁ ବିଶ୍ୱାସ ଯେ କରିପାରୁନି, ଏକଥା ସାବିତ୍ରୀ ଓ ଉପେନ୍ଦ୍ର ବେଶ ବୁଝି ପାରୁଥିଲେ ।

ସରୋଜିନୀ ସତୀଶର କଙ୍କାଲସାର ପାଣ୍ଡୁର ମୁଖ ପ୍ରତି ଦୃଷ୍ଟିପାତ କଲି । ତାପରେ ସାଙ୍ଗେ ସାଙ୍ଗେ ଅଗ୍ରସର ହୋଇ ବିଛଣା ପାଖରେ ମୁହଁକୁ ଚାପି କାନ୍ଦିବାକୁ ଲଗିଲି । କାହାରି ମୁହଁରୁ ପଦେହେଲେ କଥା ବାହାରିଲାନି; କିନ୍ତୁ ଏହି କାଳ ଭିତରେ ଯେ କେତେ ବେଦନା ଓ କ୍ଷମା ଭିକ୍ଷା ଥିଲି, ସେ କଥା ବୁଝିବାକୁ କାହାରି ବାକି ରହିଲାନି । ସତୀଶ ନିର୍ବାକ ଭାବରେ କାଠ ପିତୁଳା ଭଳି ବସିରହିଲ । ତାର ହୃଦୟର ଏକପ୍ରାନ୍ତ ଅବ୍ୟକ୍ତ ଆନନ୍ଦରେ ଯେଉଁଳି ତରଙ୍ଗିତ ହୋଇଉଠିଲି—ସେଉଁଳି ଅନ୍ୟ ପ୍ରାନ୍ତ ନିଦାରୁଣ ସମସ୍ୟାର ଅଭିଘାତରେ ଘାତ, ସଂକ୍ଷୁବ୍‌ଧ ହୋଇଉଠିଲି । ବହୁ ସମୟ ଧରି କାହାରି ମୁହଁରୁ କୌଣସି କଥା ବାହାରିଲି ନାହିଁ । ହବାଶେଷରେ ଏଇ ପ୍ରାୟାନ୍ଧକାର ଘର ଭିତରେ କେବଳ ସରୋଜିନୀର ଦୁର୍ନିବାର କ୍ରନ୍ଦନ ଉଚ୍ଛ୍ୱସିତ ହୋଇ ଉଠିବାକୁ ଲଗିଲି । ଏହି ନୀରବତା ଭଙ୍ଗ ହେଲି ଉପେନ୍ଦ୍ରର କଣ୍ଠସ୍ୱରରେ । ସେ ସରୋଜିନୀର ମଥା ଉପରେ ଧୀରେ ଧୀରେ ତାର ଦକ୍ଷିଣ ହସ୍ତ ରଖି କହିଲ—ଅପରାଧ ଯାହା ହୋଇଥାଉ ସତୀଶ, ଆମର ଏ ଭଉଣୀଟିକୁ ତୁ ମାଫ୍ କର । ଏହା ବୁକୁତଳର ବହୁଦିନରେ ସଞ୍ଚିତ ଦୁଃଖ ଆଜି ତୋର ସେବା କରିବା ଲଗି ମୋ ସାଙ୍ଗରେ ପଠେଇ ଦେଇଛି । କିନ୍ତୁ ସାବିତ୍ରୀ ତୁ ଏଭଳି ମୁହଁ ଶୁଖେଇ ଠିଆହେଲେ ଚଳିବନି । ତୋର ଏଇ ମରଣୋନ୍ମୁଖ ଦାଦାଟିର ଅନେକ ଭାର ଆଜିଠାରୁ ତତେ ବହନ କରିବାକୁ ପଡ଼ିବ । ଆ, ମୋ ପାଖରେ ଆସି ବସ ।

ସାବଣୀର ନାଁ ପଡ଼ିବାମାତ୍ରେ ସଦ୍ୟୋଜାତ ଲଜ୍ଜା, ସରମ, ବେଦନା ସବୁକଥା ଭୁଲିଯାଇ ମୁହଁ ଉଠେଇ ଠିଆ ହେଲା । ଏପର୍ଯ୍ୟନ୍ତ ସେ ତାକୁ ଉପେନ୍ଦ୍ରର କୌଣସି ରୂପେ ଆତ୍ମୀୟା ବୋଲି ମନେ କରିଥିଲା ।

ସାବଣୀ ଧୀରେ ଧୀରେ ଉପେନ୍ଦ୍ର ପାଦ ପାଖକୁ ଆସି ଖଟ ଉପରେ ବସିଲା । ଉପେନ୍ଦ୍ର ତା ମଥା ଉପରେ ହାତ ରଖି କହିଲା—ତୁ ମନେକରନା ଭଉଣୀ ତୋଠୁ ମାଫ ଗୁହିଁ ତୋର ମୁଁ କିଛି ବେମର୍ଯ୍ୟାଦା କରୁଚି । କିନ୍ତୁ ସତ୍ତ୍ୱଣ, ତୁ ମତେ ଆଗ ମାଫ କର । ତୋର ଯେତେ ଅପମାନ, ଯେତେ ଅନିଷ୍ଟ କରିଚି, ସବୁ କଥା ଆଜି ଭୁଲିଯା ଭାଇ !

ସତ୍ତ୍ୱଣ କଥା କହିବ କ'ଣ, ସେ ଅବାକ୍ ହୋଇ କେବଳ ଅପଲକ ଚକ୍ଷୁରେ ଗୁହିଁରହିଲା ।

ଉପେନ୍ଦ୍ର ଟିକିଏ ହସିଦେଇ କହିଲା—ମୁଁ ଜାଣିଚି ସତ୍ତ୍ୱଣ, ତୁ ମୋ ସମ୍ବନ୍ଧରେ ବହୁତ କଥା ଭାବୁଥିବୁ । ତୁ ଭାବୁଥିବୁ, ତୋ ଉଗୀନଦାଦା ପିଲାଙ୍କ ଭଳି ଏଭଳି ବକୁଚି କାହିଁକି ? କିନ୍ତୁ ତୁ ଜାଣିନୁ ସତ୍ତ୍ୱଣ, ବହୁଦିନ ଧରି ତୋ ଉଗୀନଦାର ଏ ମୁହଁଟା ମୂକ ହୋଇ ପଡ଼ିଥିଲା । ତେଣୁ ଯେତେକଥା ପୁଞ୍ଜୀଭୂତ ହୋଇ ରହିଥିଲା, ଆଜି ମାତାଲ ଭଳି ବାହାରି ଆସୁଚି । ଅଟକେଇ ରଖିପାରୁନି ।

ଉପେନ୍ଦ୍ର କଥାର ଭଙ୍ଗୀକୁ ଦେଖି ସତ୍ତ୍ୱଣର ବୁକୁ ଭିତରଟା ଏକ ଅଜ୍ଞାତ ଭୟରେ ଆନ୍ଦୋଳିତ ହେବାକୁ ଲାଗିଲା । ସେ କ'ଣ ଗୋଟାଏ କଥା ଜାଣିବାକୁ ଚାହୁଁଥିଲା, ଅଟକିଗଲା । ସେ ଯେମିତି ଗୁହିଁ ରହିଥିଲା, ସେଭଳି ଗୁହିଁରହିଲା ।

ପରକ୍ଷଣରେ ଉପେନ୍ଦ୍ର ସଦ୍ୟୋଜାତ ମୁହଁକୁ ଗୁହିଁ ସତ୍ତ୍ୱଣକୁ କହିଲା—ତୁ ଭଲ ହୋ; ଆଶୀର୍ବାଦ କରୁଚି ସୁଖରେ ରହ—ମୁଁ ମୋର ଏଇ ଭଉଣୀଟିକି ନେଇ ଚାଲିଯିବି । ଏତିକି କହିବା ପରେ ପରେ ଉପେନ୍ଦ୍ର ସାବଣୀ ମୁଣ୍ଡରେ ହାତ ଥୋଇ କହିଲା—ତା ଛଡ଼ା ମୋର ଘର ନେବାକୁ ଆଉ ସଂସାରରେ କେହି ନାହିଁ ଭଉଣୀ ! ଯେଉଁଭଳି ସାଙ୍ଘାତିକ ରୋଗ ହୋଇଚି, ସେଥିରେ ଆଉ କାହାକୁ ପାଖକୁ ଡାକିବା ଲାଗି ସାହସ ବି ହେଉନି, ଉଚିତ ମଧ୍ୟ ନୁହେଁ । କେବଳ ତୋ ଭଳି ଯିଏ ପରର ସେବାରେ ହିଁ ନିଜକୁ ନିୟୋଜିତ କରିଆସିଚି, ତାରି ଉପରେ ନିଜକୁ ସମର୍ପି ଦେଇ

ପାରେ । କ'ଣ ସାବ୍ବୀ, ପିବୁ ମୋ ପାଙ୍ଗରେ ? ସତୀଶଙ୍କୁ ଛାଡ଼ିବାକୁ କଷ୍ଟ ହେବ; ତଥାପି ପ୍ରାଠୁ ବଳି ଦୁଃଖକଷ୍ଟ ମଣିଷ ଆନନ୍ଦରେ ସହନ୍ତିଏ । ମୋର ଆଶା ତୁ ମଧ୍ୟ…

ସାବ୍ବୀକୁ ନେଇ ଉପୀନ୍‌ଦା ଚାଲିଯିବ—ଏ ପ୍ରସ୍ତାବଟା ସତୀଶ ମନରେ ବିଦ୍ୟୁତ୍ ଭଳି ଝଲକିଗଲା । ସେ ହଠାତ୍ କହିଉଠିଲା—ବଉ ଭାଉଜ କିମିତି ଅଛନ୍ତି ? ତାଙ୍କ ଦେହ ବ୍ୟସ୍ତ ବୋଲି ଶୁଣି ଆସିଥିଲି ।

ଉପେନ୍ଦ୍ର ଖୁବ୍ ଜୋରରେ ଓଠକୁ ଚାପିଧରିଲା ପରେ ଉପରକୁ ମୁହଁ କରି କହିଲା—ବଉ, ବଉ ନାହିଁ—ମରିଗଲାଣି ।

ସତୀଶ ଚମକି ପାଟି କରି ଉଠିଲା—ସୁରବାଳା ଭାଉଜ ଆଉ ନାହାନ୍ତି ?

ଉପେନ୍ଦ୍ର ମୁଣ୍ଡ ହଲେଇ କହିଲା—ନା ।

ଟିକେ ମୋଟା ଚକଆଟା ଉପରକୁ ଆଉଜି ମୂର୍ଚ୍ଛାହତଙ୍କ ଭଳି ଚାହିଁ ରହିଲା ।

ସୁରବାଳା ନାହିଁ, ସେ ମରିଗଲାଣି—ଏ କଥା ଉପେନ୍ଦ୍ର ମୁହଁରେ ଅତି ସହଜରେ ବାହାରି ଆସିଲା; କିନ୍ତୁ ଏଇ ନାହିଁ ଭିତରେ ଯେ କିପରି ନାହିଁ ରହିଛି, 'ସୁରବାଳା ମରିଯାଇଛି'ର ଯିବା ଭିତରେ ଯେ କି ଯିବା ନାହିଁ, ସତୀଶଠୁ କ'ଣ କିଏ ବେଶୀ ଜାଣେ ? ସାବ୍ବୀଠୁ କ'ଣ କିଏ ବେଶୀ ଶୁଣିଛି ?

ତଥାପି ସୁରବାଳା ନାହିଁ, ସେ ମରିଯାଇଛି । ସତୀଶ ମୁହଁକୁ ଚାହିଁ ଉପେନ୍ଦ୍ର ଟିକିଏ ହସିଦେଇ କହିଲା—ଭଗବାନ ନେଲେ, ସେଥିରେ କିଏ ବା ବାଧା ଦେବ ! କିନ୍ତୁ ଏ ସମୟରେ 'ଦିବା'ଟା ଯଦି ଥାଆନ୍ତା ! ମା ବାପା କେହି ନାହାନ୍ତି, ପିଲାଟିଦିନୁ ପାଳି ପାଳି ଏତେ ବଡ଼ କଲି, ଶେଷରେ ସେ ବି ଚାଲିଗଲା । ମରିବା ଆଗରୁ ତାକୁ ଥରେ ଦେଖିପାରିବି କି ନାହିଁ ସନ୍ଦେହ ।

ସତୀଶ ସେଇଭଳି ମୂର୍ଚ୍ଛାହତଙ୍କ ଭଳି ରହି ପଚାରିଲା— ଦିବାର କ'ଣ ହେଲା କି ଉପୀନ୍‌ଦା !

ଉପେନ୍ଦ୍ର କହିଲା—କେଜାଣି ତାର କ'ଣ ହେଲା ? କଲିକତାରେ ହାରାନଦା ଘରେ ରହିବାକୁ ତାକୁ ଛାଡ଼ିଦେଇ ଆସିଲି…ସେ ବଡ଼ ଲଜ୍ଜାର ବିଷୟ, କାହାରିକି କହିବାକୁ ଲାଜ ମାଡ଼ୁଛି । ଘରେ ସମସ୍ତେ ଜାଣନ୍ତି, ସେ

କଲିକତାରେ ଅନ୍ତ, ମୃତ ତାକୁ ସହି ନଲେ ଚାହୁଁଥିଲା. ମରିବା ଆଗରୁ ବନ୍ଧୁତ ଲଗେଇଥିଲା ତାକୁ ଥରେ ଦେଖିବା ପାଇଁ; କିନ୍ତୁ ତାର ଇଚ୍ଛା ମେଣ୍ଟାଇ ପାରିଲ ନାହିଁ । ନାଗନଦା ସ୍ତ୍ରୀ ସହିତ କୁଆଡ଼େ ଯେ ଚାଲିଗଲା ତାର ପତ୍ତା ନାହିଁ ।

ତନି ଜଣ ଶ୍ରୋତା—ସମସ୍ତଙ୍କ ଅବ୍ୟକ୍ତ କାନ୍ଦ ଏକା ସାଙ୍ଗରେ ହାହାକାର କରିଉଠିଲା; କିନ୍ତୁ କୌଣସି କଥା ସ୍ପଷ୍ଟ ହେଲାନି ।

ତା ପରେ ଚାରିଆଡ଼େ ନୀରବତା । ଘର ଗୋଟାକଯାକ ମନେ-ହେଲା ଶ୍ମଶାନ ଭଳି ଶୂନ୍‌ଶାନ ।

କେହିହେଲେ ଉପେନ୍ଦ୍ର ମୁହଁକୁ ଚାହିଁପାରିଲେନି । କିନ୍ତୁ ପ୍ରତ୍ୟେକେ ଅନୁଭବ କଲେ, ସେମାନଙ୍କର ଏତେ ଦିନର ଦୁଃଖକଷ୍ଟ, ମାନ ଅଭିମାନ ଯେମିତି ଏଇ ଅଭିନବ ବେଦନାରେ ଏକାବେଳକେ ତୁଚ୍ଛ ହୋଇ-ପଡ଼ିଛି ।

ସାବିତ୍ରୀ ସଖିଣ ପାଖରୁ ସବୁକଥା ଶୁଣିଥିଲା । ତେଣୁ ସବୁକଥା ଜାଣେ । ସେ ଭାବିବାକୁ ଲାଗିଲା, ଏଡ଼େ ବିପୁଳ ଶୂନ୍ୟତାକୁ ଏ ଲୋକଟା ପରିପୂର୍ଣ୍ଣ କରି ରଖିଛି କିମିତି ? ଏତେବଡ଼ ବ୍ୟଥାକୁ ନିଜ ଦୈନନ୍ଦିନ ଜୀବନ-ଯାତ୍ରା ଭିତରେ ଏତେ ସହଜରେ ବୋହି ବୁଲୁଛି କିମିତି ? ବୁକୁ ଭିତରେ ଯାର ଏତେବଡ଼ ହାହାକାର, ବାହାରେ ତାର ଏତେଟିକେ ବୋଲି ଆକ୍ଷେପ ନାହିଁ କାହିଁକି ? ସେ ପାଇଛି କ'ଣ ? କିଏ ଏହାର ସୁଖ-ଦୁଃଖକୁ ଏଭଳି ସହଜ ସୁସହ କରି ପକେଇଛି ?

ସେ ପାଦ ଉପରେ ଆସ୍ତେ ଆସ୍ତେ ହାତ ବୁଲାଉ ବୁଲାଉ କହିଲା — ଦାଦା, ଏସବୁ ବେମାରରେ ତୁମ ପକ୍ଷରେ ପାହାଡ଼ର ହାଓ୍ୱା ଭଲ, ନା ?

ଉପେନ୍ଦ୍ର ତା ମୁଣ୍ଡରେ ହାତଦେଇ କହିଲା—ହଁ ଭଉଣୀ, ସେଇ କଥା ତ ଡାକ୍ତରମାନେ କହନ୍ତି । କିନ୍ତୁ ଭଗବାନ ଯାହାକୁ ତଲବ କରନ୍ତି, ତାକୁ ଯିବାକୁ ହିଁ ପଡ଼େ । ସେ ହାଓ୍ୱା ପାହାଡ଼ର ହେଉ ବା ସମତଳର ହେଉ, କେହି ରଖିପାରିବେନି ।

ସାବିତ୍ରୀ କହିଲା—ଯାହାହେଉ ପଛକେ, ଆମେ କିନ୍ତୁ ଯାଇ ପାହାଡ଼ରେ ରହିବା ।

ଉପେନ୍ଦ୍ର ହସି ହସି କହିଲା—ଆଚ୍ଛା, ତାହା ହିଁ ହେବ ।

ମହାମାୟୀଙ୍କ ପୂଜା ଆସନ୍ନ ହୋଇଆସିଲା । ସତୀଶ ସମ୍ପୂର୍ଣ୍ଣ ସୁସ୍ଥ ହେବା ପୂର୍ବରୁ ବଙ୍ଗାଳୀଙ୍କ ସର୍ବଶ୍ରେଷ୍ଠ ଅନନ୍ଦୋଜ୍ଜ୍ୱଳ ଦିନଗୁଡ଼ିକ ସୁଖ-ସ୍ୱପ୍ନ ଭଳି ଅତିବାହିତ ହୋଇଗଲା । ଆଉ କେତେଦିନ ଏଠାରେ ରହିବା କଥା ଥିଲା; କିନ୍ତୁ ଉପେନ୍ଦ୍ରର ଦେହ ପ୍ରତି ଲକ୍ଷ୍ୟ କରି ସାବିତ୍ରୀ ତ୍ରୟୋଦଶୀ ଦିନ ଯିବାରନ୍ତ ଦିନ ସ୍ଥିର କରିନେଲା । ଉପେନ୍ଦ୍ର ଆପତ୍ତି କଲେ ମଧ୍ୟ ସାବିତ୍ରୀ ଜିଦ୍ କରି କହିଲା - ସେକଥା ହେବନି ଦାଦା, ସତୀଶବାବୁଙ୍କ ଦେହ ଭଲ ହୋଇଗଲାଣି, ଖାଲି ଯାହା ଟିକିଏ ଦୁର୍ବଳତା ରହିଛି—ସବଳ ହେବା ଲାଗି ଅପେକ୍ଷା କରିବାକୁ ଗଲେ ତୁମକୁ ଆଉ ଜୀବନରେ ଖୋଜି ପାଇବନି । ପଅରଦିନ ଆମକୁ ଯିବାକୁ ହିଁ ପଡ଼ିବ, ନାହିଁ କଲେ ଚଳିବନି ।

ଉପେନ୍ଦ୍ର ଟିକିଏ ହସିଦେଇ କହିଲା—ଆଚ୍ଛା, ସେ କଥା ଦେଖା-ଯିବ । କିନ୍ତୁ ଏଠୁ ଚାଲିଗଲେ କ'ଣ ମତେ ଖୋଜି ପାଇବୁ ସାବି ?

ସାବିତ୍ରୀ ଆଉ କୌଣସି ତର୍କ ନ କରି କାମ କରିବାକୁ ବାହାରିଲା । ଉପେନ୍ଦ୍ରର ଦିନଗୁଡ଼ିକ ଏଠି ବେଶ୍ ଶାନ୍ତିରେ କଟୁଥିଲା । ନିଜ ଲାଗି ତାର ବେଶୀ ଚିନ୍ତା ନ ଥିଲା ବୋଲି ଯିବାବେଳ ଯେ ଆସନ୍ନ ହୋଇ-ଉଠୁଛି, ସେ କଥା ସେ ବୋଧହୁଏ ହୃଦ୍‌ବୋଧ କରିପାରି ନ ଥିଲା । କିନ୍ତୁ ସତୀଶର ମୁହଁଟି ଶୁଖିଗଲା; କାରଣ ଏହି ଜିଦ୍ ସହିତ ତାର ଘନିଷ୍ଠ ପରିଚୟ ଥିଲା । ତେଣୁ ତ୍ରୟୋଦଶୀ ଯେ କୌଣସିମତେ ପାରି ହେବନି, ସେଥିରେ ତାର ଲେଶମାତ୍ର ସଂଶୟ ରହିଲାନି । କିନ୍ତୁ କୌଣସି କଥା ପଦେହେଲେ ସେ କହିଲାନି । ପରି ଦିନ ସେ ଏ ସମ୍ପର୍କରେ ସମ୍ପୂର୍ଣ୍ଣ ନିର୍ବାକ ରହିଲା । ତାର ଯାତାୟାତ ମାନେ ବେହାରୀ ସଜଳ ଚକ୍ଷୁରେ ସାବିତ୍ରୀକୁ ପଚାରିଲା—ଆଉ କେତେଦିନ ପରେ ଦେଖା ମିଳିବ ମା ? ଏ ପ୍ରଶ୍ନ ପରେ ମଧ୍ୟ ସତୀଶ ମୌନ ରହିଲା ।

ସାବିତ୍ରୀ ସତୀଶ ପ୍ରତି କଟାକ୍ଷପାତ କରି ଗମ୍ଭୀର ସ୍ୱରରେ କହିଲା—ତୋ ବାବୁଙ୍କର ଯୋଉଦିନ ବାହାଘର ହେବ ବେହାରୀ, ସେତେବେଳେ ନିଶ୍ଚୟ ମୋର ଦେଖା ପାଇବୁ । ଅବଶ୍ୟ ତୋ ବାବୁ ଯଦି ଦୟାକରି ମତେ ଆଣନ୍ତି, ତେବେ ।

ଦଶ ଦିନ ପୂର୍ବେ ସରୋଜିନୀକୁ ନେଇ ଯିବା ପାଇଁ ଜ୍ୟୋତିଷ ନିଜେ ଆସିଥିଲା । ସେତିକିବେଳେ ସତୀଶ ସହିତ ସରୋଜିନୀର ବିବାହ ପ୍ରସଙ୍ଗ ପକ୍କା କରି ପକେଇଥିଲା ଉପେନ୍ଦ୍ର ।

ସତୀଶ ଏ ପ୍ରସଙ୍ଗରେ କୌଣସି ଆପତ୍ତି କରି ନ ଥିଲା । ସ୍ଥିର ହୋଇଥିଲା ଯେ ଆଗାମୀ ଶୁକ୍ଳ ବିବାହ ତିଥିରେ ଏ ବିବାହ ହୋଇଯିବ । ସାବିତ୍ରୀ ଏଇ ଇଙ୍ଗିତ ଦେଇ କହିଥିଲା ଏବଂ ସତୀଶ ଚୁପ୍‌କରି ସବୁକଥା ଶୁଣିଥିଲା ।

ଯିବା ଦିନ ଉପେନ୍ଦ୍ର ଟିକିଏ ଚକିତ ହୋଇ ପଚାରିଲେ—ତୋ ଦେହ କ'ଣ ଭଲ ଲାଗୁନି ସତୀଶ ? କାଲିଠୁ ତୁ ତ ଘରି ଶୁଖିଲା ଦେଖାଯାଉଚୁ ।

ସତୀଶ ଉଦାସ କଣ୍ଠରେ କହିଲା—ନା, ବେଶ ଭଲ ତ ଅଛି ।

ଉପେନ୍ଦ୍ର ଚାଲିଯିବା ପରେ ସାବିତ୍ରୀ ଘରେ ପହଞ୍ଚିଲା । ତାର ବଡିଯାକ ଆଖି ଲାଲ ଲାଲ । ଆଖିର ପଲ୍ଲବ ଓଦା । ଦେଖିଲାମାତ୍ରେ ଏସବୁ ଜଣାପଡ଼ିବ । ଗୋଟିଏ କଥା ପୁନଃ ପୁନଃ ସ୍ମରଣ କରାଇ କହିଲା—କଥା ରଖିବଟି !

ସତୀଶ କହିଲା—ରଖିବି ।

—ମଦ, ଗଞ୍ଜେଇ କେବେ ଛୁଇଁବନି ?

—ନା ।

—ମତେ ନ ପଚାରି ଯନ୍ତ୍ରତନ୍ତ୍ର ଆଉକୁ ମନ ଡଳେଇବନି ?

—ନା ।

ଦେହ ପୂରାପୂରି ଭଲ ନ ହେବାଯାଏ ଦୁଇ ଦିନକୁ ଥରେ ଚିଠି ଲେଖିବ ?

ଲେଖିବି ।

ସେଥିରେ କୌଣସି କଥା ଲୁଚେଇବନି ?

ନା ।

—ତାହାହେଲେ ଯାଉଚି । ଏହା କହି ସଙ୍ଗେ ସଙ୍ଗେ ପ୍ରଣାମ କରି ବାହାରିଗଲା ।

ସତୀଶ ବିଛଣା ଉପରେ ବସିଥିଲା, ଶୋଇପଡ଼ିଲା । ବିଦାୟ ଦେବା ଲାଗି ତଳକୁ ଓହ୍ଲେଇବାର ଚେଷ୍ଟା ସୁଦ୍ଧା କଲାନି ।

ବାହାରେ ଦୁ'ଟି ପାଲିଙ୍କି ପ୍ରସ୍ତୁତ ଥିଲା । ପାଲିଙ୍କି ପାଖରେ ଠିଆ ହୋଇ ଉପେନ୍ଦ୍ର ଆସ୍ତେ ଆସ୍ତେ ଡାକ୍ତରବାବୁଙ୍କ ସାଥିରେ କଥାବାର୍ତ୍ତା କରୁଥିଲେ । ମୋଟା ଚାଦରରେ ସର୍ବାଙ୍ଗ ଆବୃତ କରି ସାବିତ୍ରୀ ଧୀର ପଦ-କ୍ଷେପରେ ଆସି ଅନ୍ୟ ପାଲିଙ୍କି ଭିତରେ ପ୍ରବେଶ କରିବାକୁ ଉପକ୍ରମ

କରିବା ମାତ୍ରେ ବେହାରା ଧାଇଁଆସି ଚୁପ୍ ଚୁପ୍ କହିଲା—ଟିକିଏ ଆସନ୍ତୁ ମା, ବାବୁ କ'ଣ ଗୋଟିଏ ବଡ଼ ଦରକାରୀ କାମରେ ଡାକୁଛନ୍ତି ।

ସାବିତ୍ରୀ ଫେରିଗଲା । ଉପେନ୍ଦ୍ର କଥାବାର୍ତ୍ତା କରୁ କରୁ ତାହା ଲକ୍ଷ୍ୟ କରିଥିଲେ । ସାବିତ୍ରୀର ମଧ୍ୟ ଏଇ ଆଶଙ୍କା ଥିଲା । ଘରେ ପଶି ଦେଖିଲା, ସତୀଶ ସେପଟକୁ ମୁହଁ କରି ଶୋଇଛି ।

ବିଛଣାର ସନ୍ନିକଟକୁ ଆସି ହସ ଲୁଚେଇ ସାବିତ୍ରୀ କହିଲା—ଘଟଣା କ'ଣ, ଟ୍ରେନ୍ ଫେଲ୍ କରେଇଦେବ ନା କ'ଣ ?

ସତୀଶ ମୁହଁକୁ ଓଲଟେଇ ସାବିତ୍ରୀ ଦେହର ଲୁଗାଟାକୁ ଧରି କହିଲା—ବସ । ମୁଁ ତତେ ଯିବାକୁ ଦେବିନି । ଏଇ ମୋର ଘର, ଏଇ ମୋର ଗାଁ । ମୋର ଇଚ୍ଛା ବିରୁଦ୍ଧରେ ତତେ ଜବରଦସ୍ତି ନେଇଯିବାର ସାଧ୍ୟ ଦଶ ଦଶଟା ଜମିନ୍ଦାର ନାହିଁ ।

ସାବିତ୍ରୀ ଅବାକ୍ । ସେ ନିରୀକ୍ଷଣ କରି ଦେଖିଲା, ସତୀଶର ଆଖି ଦି'ଟାରେ ହିଂସ୍ର, ତୀବ୍ର ଦୃଷ୍ଟି । ଏ ଦୃଷ୍ଟି ନିତାନ୍ତ ଅସ୍ୱାଭାବିକ ।

ସାବିତ୍ରୀ ବୁଝିଲା, ଏଠି ଜୋର ଖାଟିବନି । ଶେଯର ଗୋଟିଏ ପାଖରେ ବସି ସ୍ନିଗ୍ଧ ଭର୍ତ୍ସନା ସ୍ୱରରେ କହିଲା—ଛି, ଏସବୁ କି କଥା ? ସେ ତ ମତେ ଜୋର୍ କରି ନେଇ ଯାଉ ନାହାନ୍ତି । ତାଙ୍କର ସ୍ତ୍ରୀ ନାହିଁ, ଭାଇ ନାହିଁ, ତୁମେ ବି ନାହିଁ—ଏତେ ବଡ଼ ସାଂଘାତିକ ରୋଗରେ ସେବା କରିବାକୁ କେହି ନାହିଁ । ସେଇଥିପାଇଁ ତ ସେ ମତେ ତୁମ ପାଖରୁ ତୁମର ଅନୁମତି ପାଇ ନେଇ ଯାଉଛନ୍ତି । ଏଥିକୁ କ'ଣ 'ଜୋର କରିବା' କୁହାଯାଏ ?

ସତୀଶ ପ୍ରବଳ ବେଗରେ ମୁଣ୍ଡକୁ ହଲାଇ କହିଲା— ସେସବୁ ମିଛ କଥା । ସେ ତାର ବନ୍ଧୁ ଜ୍ୟୋତିଷବାବୁର ମୁହଁ ପାଖରୁ ତତେ ମୋ ପାଖରୁ କାଢ଼ି ନେଇଯାଉଛି । ଏ କି'ଦିନକାଳ ମୁଁ ଦିନ ରାତି ଭାବି ଦେଖିଛି, ଯିଏ ଚୁପ୍‌ଚାପ୍ ସହିଯାଏ, ସମସ୍ତେ ତାରି ଉପରେ ଅତ୍ୟାଚାର କରିଥାଆନ୍ତି । ତାର ଯେଉଁ ଉଦ୍ଦେଶ୍ୟ ଥାଉ ନା ପଛେ, ମୁଁ ତତେ ଯିବାକୁ ଦେବିନି । ଏ ନେଇ ତର୍କ ବିତର୍କ କରି ମୁଣ୍ଡ ଗରମ କରିବାକୁ ମୁଁ ଚାହେଁନା । ବେହାରାହାତ କହିଦେ, ତୋର ଯିବା ହେବନି । ବେହା···

ସାବିତ୍ରୀ ସଙ୍ଗେ ସଙ୍ଗେ ତାର ମୁହଁକୁ ଚାପିଧରି କହିଲା—ତୁମେ କ'ଣ ପାଗଳ ହୋଇଗଲଣି ? ବେଶ, ଧରି ନିଅ ତାଙ୍କର ଭଲ ଉଦ୍ଦେଶ୍ୟ ନାହିଁ; କିନ୍ତୁ ତୁମେ ମତେ ରଖି କ'ଣ ବା କରିବ ଶୁଣେ ?

ସତୀଶ ଟିକିଏ ଚୁପ୍‌ରହି କହିଲା—ଯଦି କହ ବିବାହ କରିବ ।

ସାବିତ୍ରୀ କହିଲା—ମୁଁ ଯଦି କହେ, ମୋର ସେଥିରେ ମତ ନାହିଁ ?

ସତୀଶ କହିଲା—ତୋର ମତାମତରେ କିଛି ଯାଏ ଆସେନା ।

ସାବିତ୍ରୀ ହସି ହସି କହିଲା—ତେବେ କ'ଣ ଜୋର କରି ବାନ୍ଧିବ ନା କ'ଣ ? ମୁହଁର ହସକୁ ଗାମ୍ଭୀର୍ଯ୍ୟରେ ପରିଣତ କରି ସତୀଶର ମୁଣ୍ଡର ବାଳଗୁଡ଼ିକ ଗଭୀର ସ୍ନେହ ସହକାରେ ଉପରକୁ ଉଠେଇ ଦେଇ ଦେଇ କହିଲା—ଛି, ଏସବୁ କଥା ଭୁଲରେ ମଧ୍ୟ କେବେ ମନରେ ଆଣିବନି । ମୁଁ ବିଧବା, ମୁଁ କୁଳତ୍ୟାଗିନୀ, ମୁଁ ସମାଜରେ ଲାଞ୍ଛିତା—ମତେ ବିବାହ କରିବାର ଦୁଃଖ ଯେ କେତେ ବଡ଼ ଭୟଙ୍କର, ସେ କଥା ତୁମେ ଅବଶ୍ୟ ବୁଝିବନି; କିନ୍ତୁ ଯିଏ ଆଜନ୍ମ ଶୁଦ୍ଧ, ଶୋକାଗ୍ନି ଯାହାକୁ ପୋଡ଼ି ପୋଡ଼ି ହୀରା ଭଳି ସ୍ୱଚ୍ଛ, ସୁପ୍ରଭ କରିଛି, ସେ ବୁଝିଛନ୍ତି ବୋଲି ହିଁ ଆଜି ଏଇ ହତଭାଗିନୀକୁ ଆଶ୍ରୟ ଦେବା ଲାଗି ସାଙ୍ଗରେ ନେଇ ଯାଉଛନ୍ତି । ତାଙ୍କର ସଦୁଦ୍ଦେଶ୍ୟକୁ ଆଜି ହୁଏ ତ ତୁମେ ପାଗଳ ହୋଇ ବୁଝିପାରିବନି । କିନ୍ତୁ ତା ବୋଲି ତାଙ୍କ ଉପରେ ମିଥ୍ୟା ଦୋଷାରୋପ କରି ନିଜକୁ ଅପରାଧୀ କରି ପକାଅନି । କହୁ କହୁ ସାବିତ୍ରୀର ଆଖିରୁ ଲୁହଧାର ଖସିଆସିଲା ।

ଏଇ ଆଖିର ଜଳ କିନ୍ତୁ ସତୀଶକୁ ଶାନ୍ତ କରିପାରିଲାନି, ବରଂ ସେ ଅଧିକରୁ ଅଧିକ ଉତ୍ତେଜିତ ହୋଇ କହିଲା— ସବୁଗୁଡ଼ାକ ମିଛ । ତୁ ଏଇମିତି କହି କହି ମତେ ବହୁତ ଠକିଚୁ, ମୋର ସର୍ବନାଶ କରିଚୁ । ଉପୀନଦା କହିଛି, ତୁ ସଂସାରରେ କାହାରିଠୁ ଶ୍ରେଷ୍ଠ ନୁହଁ ।

ସାବିତ୍ରୀ କହିଲା—ନା, ତାହା ନୁହେଁ । ଦାଦା ବର୍ତ୍ତମାନ ସମାଜର ଅତୀତ, ଇହଲୋକର ଅତୀତ । ତେଣୁ ତାଙ୍କ ମୁହଁରୁ ଯାହା ବାହାରେ, ତାହା ସତ୍ୟ । କିନ୍ତୁ ଅନ୍ୟ ମୁହଁରୁ ଯାହା ବାହାରେ, ତାହା ସତ୍ୟ ନୁହେଁ । ତୁମେ କହିବ, ସତ୍ୟ ହେଉ ବା ମିଥ୍ୟା ହେଉ, "ମୁଁ ସମାଜ ଗ୍ରହେନା, ତତେ ଗ୍ରହେଁ"; କିନ୍ତୁ ମୁଁ ତ ତାକୁ ଗ୍ରହଣ କରିପାରିବିନି । ସମାଜ ମତେ ଗ୍ରହେନା, ମତେ ମାନେନା, ମୁଁ ଏକଥା ଜାଣେ; କିନ୍ତୁ ମୁଁ ତ ସମାଜ ଗ୍ରହେଁ,

ମୁଁ ତାଙ୍କୁ ତ ମାନେ । ମୁଁ ତ ଜାଣେ, ଶ୍ରଦ୍ଧା ଓ ଭକ୍ତି ପାଇବା ଦୁଇଟା ଜିନିଷ । ଶ୍ରଦ୍ଧାର ଠିଆ ହେବାର ଶକ୍ତି ଅଛି, ଭକ୍ତି ପାଇବାର ସେ ଶକ୍ତି ନାହିଁ । ସମାଜ ଯେଉଁ ନାରୀଙ୍କୁ ସମ୍ମାନ ଦିଏନା, କୌଣସି ସ୍ୱାମୀର ଶକ୍ତି ନାହିଁ ସେ ସମ୍ମାନ ବଜାୟ ରଖିବାକୁ । ଏ ଅସାଧ୍ୟସାଧନର ଚେଷ୍ଟା କରନି କହୁଚି ।

ସତୀଶ ଦି' ହାତରେ ସାବିତ୍ରୀର ଦି' ହାତକୁ ଜୋରରେ ଚାପି ଧରି କହିଲା—ସାବିତ୍ରୀ ! ଏସବୁ କଥା ଶୁଣିବା ଲାଗି ମୋର ଆଜି ଧୈର୍ଯ୍ୟ ନାହିଁ, ବୁଝିବା ଭଳି ଶକ୍ତି ନାହିଁ । ଆଜି ମୋ ଦେହକୁ ଛୁଇଁ ତୁ ସତ ସତ କହ, ତୁ ମତେ ଭଲ ପାଉ କି ନା ?

ସତୀଶର ଏକାନ୍ତ ବ୍ୟଥିତ ବ୍ୟଗ୍ର ଆଖି ଦୁଇଟିକୁ ଚାହିଁ ସାବିତ୍ରୀର ଆଖିରୁ ପୁଣି ଜଳ ବହିବାକୁ ଲାଗିଲା । କହିଲା—ଭଲ ପାଏ କି ନା ? ନଇଲେ ତୁମ ଉପରେ ମୋର ଏତେ ଜୋର ହୁଅନ୍ତା କପରି ? କାହିଁକି ମୋର ଏତେ ସୁଖ ଓ ଦୁଃଖ ? ସେଇଥିପାଇଁ ତ ତୁମକୁ ଏତେ ଦୁଃଖ ଦେଲି; କିନ୍ତୁ କୌଣସିମତେ ମୋର ଏ ଦେହଟାକୁ ଦେଇପାରିଲିନି । ଲୁଗା କାନିରେ ନିଜ ଆଖିକୁ ପୋଛି କହିଲା—ଆଜି ତୁମ ପାଖରେ ମୁଁ କୌଣସି କଥା ଗୋପନ ରଖିବିନି । ଏ ଦେହଟା ଆଜି ନଷ୍ଟ ହୋଇନି ଅବଶ୍ୟ, କିନ୍ତୁ ତୁମର ପାଦତଳେ ଦେବାଭଳି ମଧ୍ୟ ଏହାର ଯୋଗ୍ୟତା ନାହିଁ । ଏଇ ଦେହ ଦେଇ ମୁଁ ଅନେକଙ୍କର ମନ ଭୁଲେଇଚି—ଏକଥା ମୁଁ କୌଣସି ମତେ ଭୁଲିଯାଇ ପାରିବିନି । ଏହା ଦେଇ କାହାରି ସେବା କରି ଯାଇପାରେ, କିନ୍ତୁ ତୁମର ପୂଜା ହୋଇପାରିବନି । ସେ କଥା ତୁମକୁ ବୁଝେଇବି ବା କିମିତି ? ଏତେ ଭଲ ଯଦି ନ ପାଉଥାଆନ୍ତି, ହୁଏ ତ ଏଭଳି ଅବସ୍ଥାରେ ତୁମକୁ ଛାଡ଼ିପାରି ନ ଥାଆନ୍ତି ।

ସତୀଶ ସ୍ତବ୍ଧଭାବରେ କିଛି ସମୟ ଶେଯଟା ଉପରେ ପଡ଼ିରହି ଅକସ୍ମାତ୍ କହିଉଠିଲା—ତେବେ ଆଉ ଚାହୁଁନୁ ? କିନ୍ତୁ ତୋର ମନ ? ତା ଦେଇ ତ ତୁ କାହାରିକୁ ଭୁଲେଇବାକୁ ଯାଇନୁ । ସେଇଟା ତ ମୋର ।

ସାବିତ୍ରୀ ସଙ୍ଗେ ସଙ୍ଗେ କହିଲା—ନା । ତା ଦେଇ କାହାରିକି କେବେ ଭୁଲେଇବାକୁ ଚାହିଁନି । ଏଇଟା ତୁମର, ଏଠି ତୁମେ ହିଁ ଚିରଦିନ ପ୍ରଭୁ । ଏହାକହି ସେ ବୁକୁ ଉପରେ ହାତରଖି କହିଲା—ଅନ୍ତର୍ଯ୍ୟାମୀ ଜାଣନ୍ତି,

ଯେତେଦିନ ବଞ୍ଚିବ, ଯେଉଁଠି ଯେଉଁ ଅବସ୍ଥାରେ ରହେ ନା କାହିଁକି, ସାବଣୀ ତୁମର ଚିରଦିନ ଦାସୀ ହୋଇ ରହିବ ।

ସନ୍ତୋଷ ଖପ୍‌କିନା ତାର ହାତଟିକୁ ନିଜ ଡାହାଣ ହାତକୁ ଟାଣିନେଇ କହିଲା—ଭଗବାନଙ୍କ ନାଁ ନେଇ ଆଜି ଯେଉଁ ଅଙ୍ଗୀକାର କଲ୍, ତାହା ହିଁ ମୋର ଯଥେଷ୍ଟ । ମୁଁ ସ୍ୱାଠୁ ବେଶୀ କିଛି ଚାହେଁନା ।

ତାର କଥାର ସ୍ୱରରେ ସାବଣୀ ଶଙ୍କିତ ହୋଇଉଠିଲା ।

ଠିକ ଏଇ ସମୟରେ ବେହାରା ଡାକି କହିଲା—ମା, ବାବୁ କହିଲେ ଆଜି ତ ସମୟ ନାହିଁ ।

—ଚାଲ, ଯାଉଛି । ସାବଣୀ ଉଠିବା ମାତ୍ରେ ସନ୍ତୋଷ ଜୋରରେ ସାବଣୀକୁ ଟାଣିରଖି କହିଲା—କେବେହେଲେ ତୋଠୁ ମୁଁ କିଛି ଚାହିଁନି, ଆଜି ଯିବାବେଳେ ମତେ ଭିକ୍ଷାଦେଇ ଯାଆ ।

—ମୋର କ'ଣ ଅଛି ଯେ ତୁମକୁ ଦେବ । କିନ୍ତୁ କ'ଣ ତୁମେ ଚାହଁ କହିଲ ?

ସନ୍ତୋଷ କହିଲା—ମୁଁ ଏଇ ଭିକ୍ଷା ଚାହୁଁଛି, କେହି କେବେ ଯଦି ଆମ ସମ୍ବନ୍ଧ ବିଷୟରେ ପଚାରେ, ମୋର ସ୍ୱାମୀତ୍ୱକୁ ସ୍ୱୀକାର କରିବୁ ।

ସାବଣୀ ଠିକ୍ ଏଇ ଆଶଙ୍କା ହିଁ କରୁଥିଲା, ତଥାପି ଏଇ ଅଦ୍ଭୁତ ଅନୁରୋଧରେ ସେ ହସିଉଠିଲା । କହିଲା—କାହିଁକି କୁହ ତ ? ସାକ୍ଷୀର ଜୋରରେ ଶେଷରେ ଜୋର ଜବରଦସ୍ତି ମତେ ଘରେ ଆଣି ପୂରେଇବ ନା କ'ଣ ?

ସନ୍ତୋଷ କହିଲା—ତୋ ବୁକୁ ଭିତର ଅନ୍ତର୍ଯ୍ୟାମୀ ହିଁ ମୋର ସାକ୍ଷୀ, ଅନ୍ୟ ସାକ୍ଷୀ ମୋର ଦରକାର ନାହିଁ । ବାହାରର ସାକ୍ଷୀ ବଳରେ ଶେଷରେ ତତେ ଆଣି ଘରେ ପୂରେଇବ, ଏଇ ତୋର ଭୟ ? କିନ୍ତୁ ନିଜ ଜୋରରେ ଯଦି ଆଜି ତତେ ଝିଙ୍କିନେଇ ଘରେ ପୂରାଏ, କିଏ କ'ଣ କରିବ କହ ?

ସାବଣୀ ଦ୍ୱିରୁକ୍ତି କଲାନି ।

ସନ୍ତୋଷ କହିଲା—ତୋର ଇଚ୍ଛାନୁଯାୟୀ ଯେଉଁଠି ଯେଉଁ ଠାଇ ରହିବା ମୋର ପସନ୍ଦ ହେଉନି ।

ସାବତୀର ମୁହଁ ନମସ୍କାର ମାଂଶୁ ହୋଇ ଉଠିଥିଲା; କିନ୍ତୁ ସନ୍ତୋଷଙ୍କୁ ଏ ଅବସ୍ଥାରେ ଉତ୍ତେଜିତ କରିବା ନିମନ୍ତେ ସେ ଚୁପ୍ ରହିଲ । ସନ୍ତୋଷ କହିଲ—ଶ୍ରୀପିନ୍ଦା ପଥରର ଦେବତା । ରକ୍ତ ମାଂସର ଦେବତା ହୋଇଥିଲେ ମନା ମୁଁ ସାଙ୍ଗରେ ଚଳେଇ ମଠେଇ ନ ଥାନ୍ତ । ଆଚ୍ଛା, ଆଜି ଯାଉଛ ମଣ୍ଡ ଯାଅ; କିନ୍ତୁ ବେଶୀ ଦିନ ତଳେ ଏମିତି ରଖିବା ମୋ ପକ୍ଷରେ ସୁବିଧା ହେବନି ।

—ତୁମର ଇଚ୍ଛା । କହି ସାବତୀ ନମସ୍କାର କରି ବାହାରିଗଲା ।

ବନ୍ଦ୍ୟାକିଣା

ଅପରାହ୍ନ ସାଢ଼େ ପାଞ୍ଚଟାବେଳେ କାଠ କାରଖାନାର ଛୁଟି ହେବାମାତ୍ରେ ଦିବାକର ଆଗ୍ରକାନର ଏକ ରାସ୍ତା ଦେଇ ଚାଲିଛି । ଧୂଳି, ଧୂଆଁ ଓ କରତଗୁଣ୍ଡରେ ତା ଦେହ ସମାଚ୍ଛନ୍ନ । ଜାମାରେ ଉତ୍ତରୀୟ ନାହିଁ । ସାର୍ଟଟି କାନ୍ଧି, ମଳିନ, ବହୁ ସ୍ଥାନରେ ସିଲେଇ କରାହୋଇଛି । ପରିଧେୟ ବସ୍ତ୍ର ମଧ୍ୟ ତଥୋବଧିକ । ବାଁ ପାଖ ଯୋତାଟାର ତଳ ଘସି ହୋଇ ହୋଇ ଏକାବେଳକେ ପଡ଼ିଲା । ଡାହାଣ ପାଖର ଯୋତାର ଅଗ୍ରଭାଗ ଛିଣ୍ଡି ଯାଇଥିବା ହେତୁ ବୁଢ଼ା ଆଙ୍ଗୁଠିଟି ବାହାରକୁ ବାହାରି ପଡ଼ିଛି । ହଠାତ୍ ଦେଖିଲେ ଚିହ୍ନି ହୁଏନା । ଦିନସାରା ପେଟରେ ଅନ୍ନ ପଡ଼ିନାହିଁ । ଏ ଅବସ୍ଥାରେ ଧକେଇ ଧକେଇ ଦିବାକର କାମିନୀ ଘର-ବାଲୀର ଘରେ ପହଞ୍ଚିଲା । ମାସିକ ଚାରି ଟଙ୍କା ଭଡ଼ାରେ ତଳମହଲରେ ସେମାନଙ୍କର ବସା ।

ଦିବାକରର ପଦଶବ୍ଦ ଶୁଣି ପାଖ ଘର ଭିତରୁ ଘରବାଲୀ ବାହାରି ଆସି ପାଟି କରି କହିଲା—କ'ଣ ଆସିବା ହେଲା ? ବେଶ୍, ଆଚ୍ଛା ବାପ, ଏସବୁ କ'ଣ ହେଉଛି ? ଭଦ୍ରାରନ୍ଧ ନାହିଁ, ଖିଆପିଆ ନାହିଁ...... ଖାଲି ଦିନରାତି ହଳଟାଯାକର କଳକଳିଆ, ରାଣ ପକାପକି ? ଇମିତି ହେଲେ ମୋ ଘରର ଲକ୍ଷ୍ମୀ ଛାଡ଼ିଯିବ ଯେ ।

ଦିବାକର ମ୍ଳାନମୁଖକୁ ଚାହିଁକି ରହିଲା । ବେଳେ ଦୁଇପହରରେ ଖାଇବା ପାଇଁ ଘରକୁ ଆସିଥିଲା । କିରଣମୟୀ ସାଥିରେ ଝଗଡ଼ା ଲାଗିବା ହେତୁ ସେ ଅଖିଆ ଅପିଆ ପୁଣି କାମକୁ ବାହାରି ଯାଇଥିଲା । କିନ୍ତୁ ତାର ଅବସ୍ଥାକୁ ଦେଖି ଘରବାଲା ନ ରାଗି କହିଲା—ତୁ ତ ବାହା ହୋଇ ପରିବାର କରିନୁ ବାପ, ଏ ଜୋରଜୁଲମ ସହିବୁ ବା କାହିଁକି ? ତାକୁ ଘରୁ ବାହାର କରି ଯିମିତି ତୁ ଆଣିଥିଲୁ, ସେ ସିମିତି ଧର୍ମ ରଖିଛି । ଏବେ ଯାହାହେଉ ତୋର ଗୋଟାଏ ଗୃହିଣୀ ବାଳକର ବ୍ୟବସ୍ଥା ହୋଇଛି— ତାଠୁ ଅଲଗା ହୋଇ-ଯିବାଟା ବରଂ ଉତ୍ତମ । ଆଉ କାହିଁକି ବା ତା ଉପରେ ଜୁଲମ । ଏଡ଼େ ସୁନ୍ଦର ମାଇକିନିଆଟା, ନ ଖାଇ ନ ପିଇ କଳାକାଠ ପଡ଼ିଗଲାଣି । ତା ବ୍ୟବସ୍ଥା ମୁଁ କରିଦେବି । ଗୋଲଦାର ମାଢ଼ାରିବାବୁ ମୋ ପାଖକୁ ନିଇତି ଲୋକ ପଠାଉଛି, କହୁଛି, ସୁନାରେ ଦିହ ଗୋଟାକଯାକ ଗୁଡ଼ାଇଣି କରି-ଦେବ । ତତେ ସେ ଛାଡ଼ିଦେଲେ କ'ଣ ତୋର କିଛି ଅଚଳ ହୋଇଯିବ ? ଯା, ଅଲଗା ହୋଇଯା । ମୋ କଥା ଶୁଣ, ବହୁଦିନୁ କହିଆସିଛି...... ଏଥର ।

ଦିବାକର ସାଙ୍ଗେ ସାଙ୍ଗେ କହିଲା—ସେସବୁ ଥାଉ, ମୋର ସେ କଥାରେ କୌଣସି କାମ ନାହିଁ । କିନ୍ତୁ ତାର କ'ଣ ଏଇ ମତ ? ତାହା-ହେଲେ ତୁଇ ତାର ମନ୍ଦବୁଦ୍ଧି !

ଠିକ୍ ଏଇ ସମୟରେ କିରଣମୟୀ ଘର ଭିତରୁ ବାହାରି ଆସିଲେ । ଅବସ୍ଥାର ପରିବର୍ତ୍ତନରେ ମଣିଷର ଦୈହିକ, ମାନସିକ, ସମସ୍ତପ୍ରକାର ପରିବର୍ତ୍ତନ କେତେ ଦ୍ରୁତ ଏବଂ କିଭଳି ଏକାନ୍ତ ହୋଇ ଉଠିପାରେ, ତାହା ଦେଖିଲେ ଅବାକ୍ ହେବାକୁ ପଡ଼େ ।

ଏଇ କିରଣମୟୀ ଯେ ସେଇ ସୌନ୍ଦର୍ଯ୍ୟର ପ୍ରତିମା କିରଣମୟୀ ଦେଖିଲେ ଆଦୌ କହିହେବନି ।

ଛ' ମାସ ପୂର୍ବେ ସେ ଯେ ଦିନେ ସମାଜ ଓ ଧର୍ମକୁ ବ୍ୟଙ୍ଗ କରି ମନୁଷ୍ୟତ୍ୱକୁ ପଦଦଳିତ କରି ଏକ ଅବୋଧ ଅପରିଣାମଦର୍ଶୀ ଯୁବକକୁ ରୂପ ଓ ପ୍ରେମର ମୋହରେ ପ୍ରତାରିତ କରି ସମସ୍ତପ୍ରକାର ସାର୍ଥକତାରୁ ତାକୁ ବଞ୍ଚିତ କରି ଆଣିଥିଲା, ଆଜି ସେଇ ପ୍ରତାରଣାର ଫାଶ କିରଣମୟୀ ନିଜ ଗଳାରେ ନେଇ ବସେଇଛି ।

ପାପ ସନ୍ଦିଗ୍ଧ ବୃଥାରେ ଖେଳ ଖେଳିବାକୁ ଯାଇ ସେଇ ଦିବାକରର ବୁକୁ ଭିତରେ ଆଜି ବାସନାର ଯେଉଁ ହିଂସ୍ର ରାକ୍ଷସ ବାହାର ହୋଇଛି, ଆତ୍ମରକ୍ଷା କରିବାକୁ ଯାଇ ଅହର୍ନିଶି କିରଣମୟୀ ତା ସହିତ ଲଢ଼େଇ କରି କରି ଆଜି କ୍ଷତବିକ୍ଷତ ।

ତା ମୁଣ୍ଡର କେଶଗୁଚ୍ଛ ଅସଜଡ଼ା, ରୁକ୍ଷ, ବିପର୍ଯ୍ୟସ୍ତ; ବସ୍ତ୍ର ମଳିନ ଓ ଜୀର୍ଣ୍ଣ; ମୁହଁ ଉପରେ କଭଳି ଏକ ଶୁଷ୍କ କ୍ଷୁଧା ଯେଭଳି ହତଶ୍ୱାସର ଶେଷ ସୀମାରେ ଯାଇ ପହଞ୍ଚିଛି; ଦେହର ସର୍ବାଙ୍ଗ କଦର୍ଯ୍ୟ, ଶ୍ରୀହୀନ । ସେ ମୂର୍ତ୍ତିମତୀ ଅଲକ୍ଷ୍ମୀଙ୍କ ଭଳି ଧୀରେ ଧୀରେ ଆସି ବାରଣ୍ଡା ଖୁଣ୍ଟରେ ଆଉଜି ଦି'ଜଣଯାକଙ୍କ ଆଡ଼କୁ ଚାହିଁ ଚୁପ୍ ରହିଲା ।

ତାକୁ ଦେଖୁ ଦେଖୁ କ୍ରୋଧାର୍ତ୍ତ ଦିବାକର ଗର୍ଜନ କରିଉଠିଲା ।

ନିର୍ଲଜତାର ଅନ୍ତ ନାହିଁ । ଏଇ କେଇଦିନ ତଳେ ଯେଉଁ ଲାଜକୁଳା ପିଲାଟା ମୁହଁରୁ ଭଲ କରି କଥା ପଦେ ବାହାରୁ ନ ଥିଲା, ଆଜି ଅନ୍ୟ ଏକ ଘରର ଲୋକ ସାମନାରେ ସେ ଯେ ଏଭଳି ଭାଷା ପ୍ରୟୋଗ କରି ପାଟି କରିପାରେ, କିରଣମୟୀ ବିଶ୍ୱାସ କରି ନ ଥିଲା । ଦିବାକର ବାସ୍ତବିକ୍ ଚିତ୍କାର କରି କହିଲା—କ'ଣ ଭାଉଜ, ଏଥର ତ ମାରୱାଡ଼ି, ମୁସଲମାନ, ମାନ୍ଦ୍ରାଜୀ, ଯିଏ ଆସିଲା ତା ପାଇଁ ପ୍ରସ୍ତୁତ ନା ? ତେବେ ସେଇଥିପାଇଁ ଦିନରାତି ଝଗଡ଼ା । ସେଇଥିପାଇଁ ମୁଁ ତୁମ ଆଖିରେ ବିଷ !

କିରଣମୟୀ ପ୍ରଥମେ ପ୍ରଥମେ କିଛି ବୁଝିପାରିଲେନି, ଖାଲି ଚାହିଁ ରହିଲେ । କିନ୍ତୁ ତାର ଜବାବ ଦେଲା ଘରବାଲୀ । ସେ ଦି'ପାଦ ଆଗକୁ ମାଡ଼ିଆସି ମୁହଁ ହାତ ଝାଡ଼ି ଟେକେଇ କହିଲା—କାହିଁକି ପ୍ରସ୍ତୁତ ନ ହେବ ଶୁଣେ ! ଆମେ ତ ଗିରସ୍ତ ପାଖରେ ଲେଖି ଦେଇନୁ ଯେ କେବଳ ତୁମକୁ କାମୁଡ଼ି ଧରି ରହିବୁ । ଆମେ ହେଲୁ ସୁଖର ପ୍ୟାର୍······ବ୍ୟବସାୟୀ । ଯେଉଁଠି ଯାହା ପାଖରେ ଯେତେବେଳେ ସୁଖ ପାଇବୁ, ଧନରତ୍ନ ପାଇବୁ, ତାରି ପାଖରେ ରହିବୁ । ଏଥିରେ ଲଜ୍ଜା କ'ଣ, ତର୍କ ବିତର୍କ ବା କାହିଁକି ?

ଦିବାକର ବାଧା ଦେଇ କହିଲା—ତୁ ଚୁପ୍ ରହ ମାଗୀ ! ଯାହାକୁ ପଚାରୁଛି ସେ କହୁ ।

ଏଥର ଘରବାଲୀ ମିସିଡ଼ି ବାରୁଦ ଭଳି ଜଳିଉଠିଲା । କ'ଣ କହିଲୁ, ମୋ ଘରେ ଠିଆହୋଇ ମତେ କହୁଚୁ ମାଗୀ ! ଘରୁ ବାହାର ହୋ କହୁଚି !

ଦିବାକର ମଧ୍ୟ ରାଗିଉଠିଲା । ଛଅ ମାସ ଆଗେ ଯେ କୌଣସି ଦୁଃସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା ଯେ ସେ ଜଣେ ଅନ୍ତ୍ୟଜ ରମଣୀକା ମୁହଁରେ ଅପମାନିତ ହେବ । ସେ ତ ଆଜି ସେ ଚନ୍ଦ୍ରକ ଓ ସୁରବାଳାର ସ୍ନେହ ମମତା, ଶାସନରେ ଲାଳିତ ପାଳିତ ହୋଇ ପୂର୍ବ ଦିବାକର ନୁହେଁ । ତେଣୁ ସେ ମଧ୍ୟ ମୁହଁ ଆଖି ଲାଲ ଲାଲ କରି ଗର୍ଜିଉଠିଲା— କ'ଣ କହିଲୁ... ମତେ ବାନ୍ଦର ଯା କହୁଚୁ ? କ'ଣ ଗଞ୍ଜେଇ ଖାଇଚୁ ନା କ'ଣ ?

ଘରବାଲୀ ଠିକ ସେମିତି ଗର୍ଜନ କରି କହିଲା—ଘରି ଗଞ୍ଜେଇ ଦେଲିବାଲା ! ଦେକାନରେ ଦେବାକୁ ଦେରି ନଉଛୁ ଜାନ୍ତି ନା ? ବାନ୍ଦାର ବାନ୍ଦାର କହୁଚି, ନଇଲେ ଏଇ ଦେଖୁଚୁ ତ ଗୁଞ୍ଜିମୁଠା !

'ବନ୍ଧୁକ ଗୁଞ୍ଜି ଦେଖଉଚି' କହି ଉନ୍ମତ୍ତପ୍ରାୟ ଦିବାକର ନିକଟରେ ନବାକ ଭାବରେ ଠିଆ ହୋଇଥିବା କରଣାମୟୀଙ୍କୁ ଜୋରରେ ଗୋଟାଏ ଧକ୍କା ପକାଇଲା । କରଣାମୟୀ ସାରାଦିନ ଭୋକଲା । ତେଣୁ କ୍ଲାନ୍ତ ଅବସନ୍ନ କରଣାମୟୀ ସେ ଧକ୍କା ସମ୍ଭାଳି ପାରିଲେନି । ଗୋଟାଏ ବାଲ୍ଟି ଉପରେ ମୁହଁମାଡ଼ି ପଡ଼ିଗଲେ ।

ଉନ୍ମତ୍ତ ଦିବାକର କହିଲା—ଯା, କଏ ତୋର ମାରୁଥିଲା ଘଇତା ଅଛି ପରା, ଯା ତା ପାଖରେ ରହିବୁ ।

ଘରବାଲୀ ସଙ୍ଗେ ସଙ୍ଗେ ଏକ ବିକଟ ଚିତ୍କାର କରିଉଠିଲା । କାରଖାନାରୁ ଫେରି ମାଲ୍ଗନରେ ହାତ ଧୋଉଥିବା ଅବସ୍ଥାରେ କୁଲି-ମାନେ ଏ ଚିତ୍କାର ଶୁଣି ଅଧାଧୁଆ ହାତରେ ଛୁଟିଆସିଲେ ଦିବାକର ରହୁଥିବା ଘର ଆଡ଼କୁ । ସେମାନଙ୍କୁ ଦେଖି ଘରବାଲୀର ପାଟି ଆହୁରି ଦ୍ୱିଗୁଣ ବଢ଼ିଉଠିଲା । ସେମାନଙ୍କ ଆଗରେ ନାଲିସ୍ କରି କହିଲା—ପୁଆନ ମାଇକିନାଟାକୁ ଏଇ ନଆଁଲଗାଟା ମାରି ପକାଉଚି, ଗଲି ଗାଲ ଧରିବ ଚାଲ ।

ଲୋକେ ଘର ଭିତରେ ପଶିବା ମାତ୍ରେ କରଣାମୟୀ କଷ୍ଟେମଷ୍ଟେ ଉଠିଆସି ବାଟ ଓଗାଳି କହିଲେ—କାଳକଳଆ କାହା ଘରେ ଢୁକୁଏନା ? ମୋ ଦେହରେ ତ ସେ ହାତ ଦେଇଚନ୍ତି, ତୁମମାନଙ୍କର କ'ଣ ଗଲା ? ତୁମେମାନେ ତୁମମାନଙ୍କ ଘରକୁ ଯାଅ । ଏତା କହିଦେଇ କରଣାମୟୀ ତରତରରେ ଘର ଭିତରେ ପଶିଯାଇ ଘର ଭିତରୁ କଳଣି ଦେଇଦେଲେ ।

ଲୋକଗୁଡ଼ାକ ବିନୟପ୍ରକାଶର ସୁଯୋଗ ନେଇ ହୃଷ୍ଟ ମନରେ ଯେ ଯାହା ଘରକୁ ଫେରିଗଲେ । ଘରବାଲୀ ବାହାରେ ଗାଲରେ ହାତ ଦେଇ ମନେ ମନେ କହିଲା—ହାୟ ରେ ଲୀଳା !

ଦ୍ୱାର ବନ୍ଦ କରିଦେଇ କିରଣମୟୀ ଦିଆସିଲି ନେଇ ଦୀପ ଜାଳିଲେ । କାଠର ଘରଟି ହେଲେ ମଧ୍ୟ ଖୁବ୍ ପ୍ରଶସ୍ତ । ଗୋଟିଏ ପାଖରେ ଦିବାକରର ଶୋଇବା ପାଇଁ ଗୋଟିଏ ଦଉଡ଼ିଆ ଖଟ, ଅନ୍ୟ ପାଖରେ ଗୋଟିଏ କାଠ ଖଟ—କିରଣମୟୀ ଏଇଠି ଶୁଅନ୍ତି । ଟେଗ ଓ ଆଡ଼କୁ ରୋଷେଇର ସରଞ୍ଜାମ । ଶିକା ଉପରେ ଟଙ୍ଗା ହୋଇଥାଏ ଭାତହାଣ୍ଡି, ଚଟୁ, ଗୁମଚ ଇତ୍ୟାଦି ।

ଆଲୁଅ ଜାଳି କିରଣମୟୀ ଖଟଟି ଉପରେ ବସିପଡ଼ିଲେ । କାହା ମୁହଁରେ ପଦେହେଲେ କଥା ନାହିଁ । ଖଟ ଉପରେ ଦିଗୋଡ଼ ସନ୍ଧିରେ ମୁହଁ ଗୁଞ୍ଜି ଦିବାକର ବସି ରହିଥାଏ । ଇମିତି ବହୁ ସମୟ ଧରି ଉଭୟେ ଚୁପ୍‌ଚାପ୍ ବସିରହିବା ପରେ କିରଣମୟୀ ଧୀରେ ଧୀରେ ଦିବାକରର ପାଖକୁ ଲାଗିଆସି କହିଲେ—ହାଣ୍ଡିରେ ଭାତ ରନ୍ଧା ହୋଇ ରହିଛି, ସକାଳୁ କିଛି ଖାଇନ, ବାଢ଼ୁଚି ।

ଦିବାକର ରୁଦ୍ଧ କଣ୍ଠରେ କହିଲା—ନା, ଦରକାର ନାହିଁ ।

ତା କଣ୍ଠସ୍ୱରରୁ ଜଣାଗଲା, ସେ ଏତେବେଳଯାଏଁ ନୀରବରେ କାନ୍ଦୁଥିଲା ।

କିରଣମୟୀ କହିଲେ—ନା କାହିଁକି ? ରାଗ ଯିନା ମୋ ଉପରେ, ଖାଇବା ଗଣ୍ଡାକ ଉପରେ କାହିଁକି ? ମୁହଁ ଧୋଇ ଆସ, ଦିଟା କ'ଣ ଖାଇ ପକାଅ । ତାପରେ ଯାହା ହେବ, ମତେ ପଛେ ଗାଳି ଦେବ, ଆଉ ମାରିବାକୁ ଥିଲେ ମାରିବ ।

ଦିବାକର କିଛି ଉତ୍ତର ଦେଇପାରିଲାନି, ଲଜ୍ଜା ଓ ଅନୁଶୋଚନାରେ ସେ ଜଳି ଯାଉଥିଲା । ଭିତରେ ଭିତରେ ସଂଗୋପନରେ ଆସକ୍ତି ଓ ବିରକ୍ତିର ଯେଉଁ ନିର୍ମମ ସଂଗ୍ରାମ ଉଭୟ ଭିତରେ ପ୍ରତ୍ୟହ ଚାଲୁଥିଲା, ତାର ସମସ୍ତ ଅଭିଘାତ ଦିବାକର ନୀରବରେ ସହିନେବାକୁ ଚେଷ୍ଟା କରୁଥିଲା ।

ଗଲା କେତେ ଦିନ ହେଲା ଏହି ମହାସମର ପ୍ରକାଶ୍ୟ ଓ ଦୁର୍ବାର ହୋଇଉଠିବା ଭିତରେ ଏହାର ଉତ୍ତେଜନା ବଢ଼ିବାର ଘଟିଆସିଚି; କିନ୍ତୁ

ଦିବାକର ଆଜି ଭଳି ପୂର୍ବରୁ କୌଣସି ଦିନ ଆତ୍ମବିସ୍ମୃତ ହୋଇ ଏତେ ବଡ଼ ପାଶବିକ ଆଚରଣ କରି ନ ଥିଲା । ତେଣୁ କୌଣସି ଅତ୍ୟାଚାର ହେତୁ ସେ ଯେ କରୁଣାମୟୀ ଉପରକୁ ହାତ ଉଠାଇପାରେ ଏବଂ ବର୍ତ୍ତମାନ ସେ ହାତ ଉଠେଇସାରିଛି, ସେ ଏକଥା ଠିକ ଭାବରେ ମନ ଭିତରେ ଗ୍ରହଣ କରି ପାରୁ ନ ଥିଲା । ସେଇଥିପାଇଁ ଘର ଭିତରେ ପଶିବା ମାତ୍ରେ ସେ ସ୍ୱପ୍ନାବିଷ୍ଟଙ୍କ ଭଳି ତା ଶେଯ ଉପରେ ଆସି ବସିଥିଲା । କିନ୍ତୁ କ୍ଷଣକ ପରେ କରୁଣାମୟୀ ଯେତେବେଳେ ନିଜର ସମସ୍ତ ଲାଞ୍ଛନାକୁ ଝାଡ଼ିଝୁଡ଼ି ପକେଇ ସାହିଲୋକଙ୍କ ଆକ୍ରମଣ ଓ ନିର୍ଯ୍ୟାତନା ମୁହଁରୁ ରକ୍ଷା କରିବା ପାଇଁ ଘର ଭିତରେ ପଶି କିଳଣି ଦେଇଦେଲେ, ସେତେବେଳେ ଦିବାକରର ଚୈତନ୍ୟ ଉଦୟ ହେଲା । କରୁଣାମୟୀଙ୍କ ଅନୁରୋଧ ଶେଷ ନ ହେଉଣୁ ତରଙ୍ଗ ଯେଉଁଭଳି ପର୍ବତ ଦେହରେ ଅଜାଡ଼ି ହୋଇ ପଡ଼େ, ସେହିଭଳି ଦିବାକର ଖୁବ ଜୋରରେ କରୁଣାମୟୀଙ୍କ ଗୋଡ଼ତଳେ ପଡ଼ିଯାଇ ଉଚ୍ଛ୍ୱସିତ ଆବେଗମୟ କଣ୍ଠରେ କାନ୍ଦିବାକୁ ଲାଗିଲା । କହିଲା—ମୁଁ ଗୋଟାଏ ପଶୁ, ମତେ ମାଫ୍ କର ଭାଉଜ !

କରୁଣାମୟୀ କିନ୍ତୁ ସମ୍ପୂର୍ଣ୍ଣ ନିର୍ବିକାର ଭାବରେ ପ୍ରବୋଧ ଦେବା ପୂର୍ବ-ଭଳି ସହଜ କଣ୍ଠରେ କହିଲେ—ଏଇଟା ଖାଲି ତୁମର ଦୋଷ ନୁହେଁ, ମଣିଷ ମାତ୍ରକେ ଏ କାମ ସମସ୍ତଙ୍କୁ ପଶୁ କରିପକାଏ । ମୁଁ ମଧ୍ୟ ତୁମଠୁ କମ୍ ପଶୁ ନୁହେଁ ଦିବାକର !

ଦିବାକର ପ୍ରବଳ ବେଗରେ ମୁଣ୍ଡକୁ ହଲାଇ କହିଲା—ନା, ନା, କିଏ କ'ଣ କରେ ନ କରେ ଶୁଣିବାକୁ ମୁଁ ଚାହେଁନା । ମୁଁ ପଚାରିବାକୁ ଚାହେଁ, ମୋର ଏ ପାପର ପ୍ରାୟଶ୍ଚିତ୍ତ କ'ଣ ? ମତେ କୁହ, ପ୍ରାଣପଣେ ମୁଁ ଚେଷ୍ଟା କରିବି ତାହା କରିବା ପାଇଁ ।

କରୁଣାମୟୀ କହିଲେ – କ'ଣ ବା ତୁମର ଅପରାଧ ହୋଇଛି ? ଏହିସବୁ କଥାରେ ମଣିଷ ମଣିଷକୁ ଖୁନ୍ କରି ପକାଏ । ତୁମେ ତ ଖାଲି ଠେଲା ଦେଇଛ । ମୁଁ କ'ଣ ଅପରାଧ କରିନି ! ସବୁ କଣ ତୁମର ଦୋଷ ? ଆଉ ସେସବୁ କଥା, ସମସ୍ତ ପ୍ରକାର ଅଭିଯୋଗ, ବିଦ୍ୱେଷ ଶେଷ ହୋଇଛି । ଏସବୁ ଭବିଷ୍ୟତରେ ତୁମର କମ୍ବା ମୋର କାହାର ଦରକାର ହେବନି । ଏଥର ଯାଅ । ମୁହଁ ହାତ ଧୋଇ ଆସି ଖାଇବ । ଠିଆ ହେବାକୁ ମୋର ଆଉ ବଳ ନାହିଁ ।

ଦିବାକର ଧୀରେ ଧୀରେ ଉଠି ବସିଲା ।

ଧନସାଏ ଅପବାସ ପରେ ଦିବାକର ଖାଇସାରି ବଜାରକୁ ଆଗେଇବାକୁ ଗଲା । ତାର ମନ ଧାତରେ ଥିବା ଗ୍ଳାନିର ମାତ୍ରା କମି ଆସିଥିଲା । ଟିକିଏ ଖୁସି ମନରେ ଘର ଭିତରକୁ ପଶିବା ମାତ୍ରେ ଦେଖିଲା କିରଣମୟୀ ତାର ବସ୍ତ୍ରଗୁଡ଼ିକୁ ଗୋଟେଇ ଗୋଟେଇ ଖଟ ଉପରୁ ତଳେ ଆଣି ରଖୁଛନ୍ତି । ପଚାରିଲା—ଏସବୁ କାହିଁକି ?

କିରଣମୟୀ ଅବିଚଳିତ ସ୍ୱରରେ କହିଲେ—ଆଗରୁ କହିଥିଲେ ଏ ତ ତୁମର ଖାଇବା ହୋଇ ନ ଥାଆନ୍ତା । ଆଜିଠୁ ତୁମ ମୋ ମଧ୍ୟରେ ଆଉ ଦେଖାସାକ୍ଷାତ ହେବନି । ରାତି ବର୍ତ୍ତମାନ ବେଶୀ ହୋଇନି, ଆଜି ଏଠୁ ଯାଇ କାଳୀବାଡ଼ିରେ ଟିକିଏ ଶୋଇପଡ଼ିବ । କାଲି କୁଆଡ଼େ ଯାଇ ବସାଟିଏ ଖୋଜି ନେବ । ଯଦି ଏ ଦେଶରେ ରହିବାକୁ ନ ଚାହଁ, ତାହାହେଲେ ପଅରଦିନ ଷ୍ଟିମର ଅଛି, ମୁଁ ଟଙ୍କା ଦେବି, ଦେଶକୁ ଫେରିଯିବ । ମୋଟାମୋଟି କଥା, ଯାହା ଇଚ୍ଛା ହେଉଛି, ତା କର । ମୋ ସହିତ କିନ୍ତୁ ତୁମର ଆଉ କୌଣସି ସମ୍ବନ୍ଧ ରହିବନି ।

ଦିବାକର ହତଜ୍ଞାନ ଭଳି କଥାଗୁଡ଼ିକୁ ଶୁଣି ଯାଉଥିଲା । ତାର ମନେ ହେଉଥିଲା କିରଣମୟୀଙ୍କ ମମତାହୀନ ପ୍ରତିଶବ୍ଦ ଯେମିତି କଠିନ ପଥରଖଣ୍ଡ ଭଳି ତା ଦେହ ପାଖରେ ଯୋଡ଼ିହୋଇ ଏକ ଅଭେଦ୍ୟ ପାଚେରି ଗଢ଼ିଚାଲିଛି ।

ତାର କଥା ଶେଷ ହେବା ମାତ୍ରେ ସେ ସ୍ୱପ୍ନାବିଷ୍ଟଙ୍କ ଭଳି ପଚାରିଲା—ଆଉ ତୁମେ ?

କିରଣମୟୀ କହିଲେ—ମୁଁ କୁଆଡ଼େ ଯିବି, କିମିତି ରହିବି, ତୁମର ଜାଣିବାରେ କୌଣସି ଲାଭ ନାହିଁ । ତେବେ ଏଇ ଦେଶରେ ଯଦି ରୁହ, ତାହାହେଲେ କାଲି କିମ୍ବା ପଅରଦିନ ଦିନେ ନା ଦିନେ ମୋ କଥା ଜାଣି-ପାରିବ ।

ଦିବାକର କହିଲା—ତାହାହେଲେ ଘରବାଲି ଯାହା କହୁଥିଲା ସତ, ସେଇ ଜଣା ମାରୁଆଡ଼ି ଟା······

କିରଣମୟୀ କଠିନ ସ୍ୱରରେ ଜବାବ ଦେଲେ—ହୋଇପାରେ । କିନ୍ତୁ ଆଉ ଯାହାହେଉନା କାହିଁକି, ତୁମ କାନ୍ଧରେ ହାତ ଦେଇ ଚଳିକୁ

ନଇଁ ଆସିଥିଲ ବୋଲି ଯେ ଶେଷପର୍ଯ୍ୟନ୍ତ ତୁମର ଆଶ୍ରୟ ନେବାକୁ ପଡ଼ିବ, ତାର କୌଣସି ମାନେ ନାହିଁ । ମୋ ଦେହ ଭଲ ନାହିଁ, ମୁଁ ଯାଉଛି ଟିକିଏ ଶୋଇବି, ଗୋଳମାଳ କରନା, ଯାଅ । କାଲି ସକାଳେ ତୁମର ଜିନିଷପତ୍ର ତୁମ ପାଖକୁ ପଠେଇଦେବି ।

ଦିବାକର କହିଲା—ଏତେ ଜଲ୍‌ଦି ! ଆଜି ରାତିକ ମୁଣ୍ଡା ମତେ ଏଠି ରହିବାକୁ ଦେବନି ?

କରୁଣାମୟୀ କହିଲେ—ନା ।

ଦିବାକର କିଛି ସମୟ ସ୍ଥିର ରହିବା ପରେ କହିଲା—ତାହାହେଲେ ମୋର ସର୍ବନାଶ କରିବା ଲାଗି ମତେ ଏତେ ବିପଦ ଭିତରକୁ ଟାଣି ନେଇ ଆସିଥିଲ ! ଏବେ ବି ମତେ ତୁମେ ଭଲ ପାଇନ ?

କରୁଣାମୟୀ କହିଲେ—ନା; କିନ୍ତୁ ତୁମର ସର୍ବନାଶ ନୁହେଁ, ଆଉ ଜଣାଙ୍କର ସର୍ବନାଶ କରିବା ଭାବି ହିଁ ତୁମର ସର୍ବନାଶ କରିଛି । ଆଉ ମୋର ? ମୋ କଥା ଛାଡ଼ । ମୂଳରୁ ଶେଷଯାଏଁ ସବୁ ଭୁଲ ହୋଇଯାଇଛି । ସେଇ ଭୁଲ ଲାଗି ଆଜି ତୁମର ପାଦଧରି କ୍ଷମା ମାଗୁଛି ଦିବାକର !

ଏହି ନିର୍ବିକାର ପାଷାଣ-ପ୍ରତିମାର ମୁହଁକୁ ଚାହିଁ ଦିବାକର ଦୀର୍ଘ-ନିଶ୍ୱାସ ପକାଇ କହିଲା—ମୋର କେଉଁଠି ସର୍ବନାଶ କରିଛ, ସେ ଧାରଣା ତୁମ ମନରେ ବୋଧହୁଏ ବିଲକୁଲ ନାହିଁ । ସେଇଥିପାଇଁ ତୁମେ ଏତେ ଶୀଘ୍ର କ୍ଷମାଭିକ୍ଷା କରିଦେଇ ପାରିଲ । କିନ୍ତୁ ଏଇ ସର୍ବନାଶ ଅପେକ୍ଷା ମୋର ସ୍ନେହସୋହାଗ ବହୁତ ବଡ଼ । ସେଇଥିପାଇଁ ତ ବଞ୍ଚିରହିଛି ନହେଲେ ବୁକୁ ଫାଟିଯାଇ ମରି ଯାଆନ୍ତିଣି ! କିନ୍ତୁ ଗୋଟାଏ କଥା ମତେ ବୁଝେଇ କୁହ । ଯାହା ପାଖକୁ ଯାଉଛ, ତାକୁ ତ ତୁମେ ଚିହ୍ନନି କି ଭଲ ମଧ୍ୟ ପାଅନି ତଥାପି ମତେ ଛାଡ଼ି ତା ପାଖକୁ ଯାଉଛ କାହିଁକି ? ମୁଁ ତ କେବେ ତୁମର କିଛି ଅନିଷ୍ଟ କରିନି । ସତେ କ'ଣ ମତେ ଛାଡ଼ି ତୁମେ ଚାଲିଯିବ ?

କରୁଣାମୟୀ ମୁଣ୍ଡ ହଲେଇ କହିଲେ—ହଁ, ସତରେ ଚାଲିଯିବି ।

କରୁଣାମୟୀ ବହୁ ସମୟ ଯାଏ ମୁହଁକୁ ପୋତି ରଖିବା ପରେ ମୁହଁକୁ ଉଠେଇ କହିଲେ—ନା, ଆଜି ଆଉ କୌଣସି କଥା ଲୁଚେଇ ରଖିବିନି । ମୁଁ ଭଗବାନଙ୍କୁ ମାନେନା; ଆତ୍ମା, ଜନ୍ମାନ୍ତର, ସ୍ୱର୍ଗ, ନର୍କ କିଛି ମାନେନା—ଏସବୁ ମୋ ପାଖରେ ମିଥ୍ୟା, ଭଣ୍ଡାମି । ମାନେ କେବଳ ଇହକାଳ, ଏଇ ଦେହଟାକୁ । ଜୀବନରେ କେବଳ ଜଣେ ଲୋକ ପାଖରେ

ହାର ମାନିଥିଲି—ସିଏ ସୁରବାଳା । ସେସବୁ କଥା ଥାଉ । ମୁଁ ସତ କହୁଚି ଦିବାକର, ମୁଁ କେବଳ ଇନ୍ଦ୍ରକାଳକୁ ମାନେ, ମାନେ ଏଇ ସୁନ୍ଦର ଦେହଟାକୁ । ମୋର ଏମିତି ପୋଡ଼ାକପାଳ ଯେ ଏଇ ଦେହଟାକୁ ନେଇ ଅନଙ୍ଗ ଭଳି ପତଙ୍ଗକୁ ମଧ୍ୟ ବାନ୍ଧିଥିଲି କେବଳ ମଜା କରିବା ପାଇଁ । ଏତିକି କହିବା ପରେ କରୁଣାମୟୀ ଆଉ କିଛି କହିପାରିଲେ ନାହିଁ । ସେ ସ୍ତବ୍ଧ ହୋଇ ଚୁପ୍ ରହିଗଲେ ।

ଦି ମିନିଟ ପରେ ସେ ଯିମିତି ସହସା ଜାଗିଉଠି କହିଲେ—ନା ପରେ ଦିନେ; ସତ ସତ ଭଲ ପାଇବା ପାଇଁ ଠିକ୍ ସମୟ ଆସିଲା ବୋଲି ଏଇ ସୁନ୍ଦର ଦେହଟାକୁ ନେଇ ଜଣଙ୍କୁ ଉନ୍ମୁଖ ହୋଇ ଖୋଜି ବସିଥିଲି ।

ଦିବାକର ପଚାରିଲା—ସେ ଜଣଙ୍କ କିଏ ଶୁଣେ ?

କରୁଣାମୟୀ ଟିକିଏ ହସିଦେଇ ମନକୁ ମନ ଯିମିତି କହିଲାଗିଲେ—ଭାବିଥିଲି ମୋର ସେଇ ଭଲ ପାଇବାର ତୁଳନା ସ୍ୱର୍ଗରେ ମଧ୍ୟ ବିରଳ । କିନ୍ତୁ ସେ ଗର୍ବ ମୋର ରହିଲା ନାହିଁ । ସେଦିନ ମହାଭାରତର କୃଷ୍ଣକୁ ଭୁଲ କରି ସେ ଯେଉଁ ସ୍ତ୍ରୀଲୋକଟି ପାଖରୁ ପରାଜିତ ହୋଇ ଆସିଲି, ପୁଣି ତାରି ପାଖରେ ମତେ ହାର ମାନିବାକୁ ହିଁ ପଡ଼ିଲା । ଭଲ ପାଇବାର ଦ୍ୱନ୍ଦ୍ୱରେ ହାରିଯାଇ ଆଉ ମୁହଁ ଉଠେଇ ପାରିଲି ନାହିଁ । ମୋହ-ମେଘ ଉଡ଼ିଯିବା ପରେ ସ୍ପଷ୍ଟତଃ ଦେଖିବାକୁ ପାଇଲି, ତାକୁ ରୂପଦ୍ୱାରା ଭୁଲେଇ ପାରିବା ଭଳି ସାଧ୍ୟ ମୋର ନାହିଁ କି କାହାରି ନାହିଁ ।

ଦିବାକରର ମନେହେଲା, ତାର ଚାରିପାଖେ ଥିବା ନିବିଡ଼ ଅନ୍ଧକାର ଯିମିତି ସ୍ୱଚ୍ଛ ହୋଇଆସୁଛି ।

କରୁଣାମୟୀ କହିଚାଲିଲେ—ସେଇ ସୁରବାଳା ପାଖରୁ ଗୋଟାଏ କଥା ଶିଖିବାର ବଡ଼ ଲୋଭ ହୋଇଥିଲା । ସେ କଥାଟା ହେଉଚି ନିଜ ସ୍ୱାମୀଙ୍କୁ ଆନ୍ତରିକତା ସହିତ ଭଲ ପାଅ । ହୁଏତ ଶିଖି ପାରିଥାଆନ୍ତି; କିନ୍ତୁ ଇମିତି ମୋର ଦୁର୍ଭାଗ୍ୟ ଯେ ସେଇ ପଥ ଚିରଦିନରେ ବନ୍ଦ ହୋଇଗଲା । ଆରେ ଏ ଭୁଲି ତ ଯାଇଚି, କ'ଣ ପଚାରୁଥିଲି ଦିବାକର, ତୁମକୁ ଭଲ ପାଉନି କାହିଁକି ? କିଏ କହିଲା, ଭଲ ପାଉନି ବୋଲି ? ଖାଲି ତ ଭଲ ପାଇ ନ ଥିଲି, ଭାରି ଭଲ ପାଇଥିଲି । କିନ୍ତୁ ମୁଁ ବୟସରେ ବଡ଼,

ସେଇଥିପାଇଁ ଯେଉଁଦିନ ତୁମର ଉପୀନଦା ତୁମକୁ ମୋ ପାଖରେ ସମର୍ପି ଦେଇ ଯାଇଥିଲେ, ସେ ଦିନଠୁ ତୁମକୁ ମୁଁ ସାନ ଭାଇଟି ଭଳି ଭଲ ପାଇ ଆସିଛି । ସେଇଥିପାଇଁ ତ ଗଲା ଛଅ ମାସ ଧରି ନିଜ ଛଳନାରେ ନିଜେ ଛଟପଟ । ତୁମ ଚକ୍ଷୁର କ୍ଷୁଧା, ତୁମ ମୁହଁର ପ୍ରେମ ନିବେଦନରେ ମୋ ସମଗ୍ର ଦେହ ଘୃଣା ଓ ଲଜ୍ଜାରେ କିମିତି ଶିହରିଉଠେ, ସେ କଥା କ'ଣ ତୁମେ ଦିନେହେଲେ ଠଉରେଇ ପାରିନ ? ଯାଅ, ତୁମେ ଏଠୁ ଗଲ । ମୋର ପାପ ପୁଣ୍ୟ, ସ୍ୱର୍ଗ ନର୍କ କିଛି ନ ଥାଉ ପଛକେ, କିନ୍ତୁ ମୋର ଏ ଦେହଟା ଉପରେ ତୁମର ଲୁବ୍‌ଧ ଲୋଲୁପ ଦୃଷ୍ଟି ମୁଁ ଆଉ ସହିପାରୁନ ।

ଏତିକି କହିଦେଇ କିରଣମୟୀ ସଙ୍ଗେ ସଙ୍ଗେ ଦିବାକରର ବନ୍ଧଣା-ପଦ ଦିବାକର ଆଗକୁ ଫୋପାଡ଼ିଦେଇ କହିଲେ—ଆଉ ତୁମକୁ ମୁଁ ବିଶ୍ୱାସ କରିପାରୁନ । ମୋର ଆଉ ଗୋଟିଏ ଶ୍ରେଷ୍ଠ ଭାଇ ବର୍ତ୍ତମାନ ସୁଦ୍ଧା ବଞ୍ଚିରହିଛି । ସେ ମତେ ଚାହିଁ ବସିଥିବ । ତାରି ମୁହଁକୁ ଚାହିଁ ଚାହିଁ ଆମରଣ ତୁମର ଭୟାକୁଳ ଲୁବ୍‌ଧ ଦୃଷ୍ଟିରୁ ଆତ୍ମରକ୍ଷା କରିବାକୁ ଚାହେଁ । ତୁମେ ଏଠୁ ଶୀଘ୍ର ଚାଲିଯାଅ ।

ଦିବାକର ଆଉ କୌଣସି ଜବାବ ନ ଦେଇ ବନ୍ଧଣାଟିକୁ କାଖେଇ ଚାକି ବାହାରର ଅନ୍ଧକାର ଭିତରେ ନିଷ୍କ୍ରାନ୍ତ ହୋଇଗଲା ।

## ତେୟାଳିଶି

ସକାଳୁ ସକାଳୁ କିରଣମୟୀ ଶ୍ରାନ୍ତ ଅବସନ୍ନ ଦେହରେ ଘରକାମ କରୁଥିଲେ, କାମିନୀ ଘରବାଲୀ ଦୁଆର ମୁହଁରେ ଠିଆ ହୋଇ ମୁରୁକି ମୁରୁକି ହସି କହିଲା—କ'ଣ ଗଲା ? ଜୁଆଡ଼ୁରେ ନାଲି ମାରି ଗୋଡ଼େଇଲା ! ଆରେ ତୋର କାମ କ'ଣ ଝିଅ ବୋହୂଙ୍କୁ ଜଗିହୋଇ କରି ବାନ୍ଧିରଖିବା ? ଟେକିକୁ ରଖି ପଛ ସବୁ କାମ ଚଳନ୍ତା, ତାହାହେଲେ ଲୋକେ ଗାଈ ପୋଷନ୍ତେ କାହିଁକି ?

କରୁଣାମୟୀ ମୁହଁକୁ ଉଠେଇ କହିଲେ- କଏ କହିଲା ଗଲା ବୋଲି ?

ଘରବାଲୀ ଆଖିକୁ ଟେରେଇ ଟେରେଇ କହିଲା—ଆଉ ରଙ୍ଗ ଦେଖାନା ଲୋ ! କଏ କହିଲା ? ମୁଁ ପରା ଘରବାଲୀ; ମତେ ଆଉ କହିବ କଏ ? ନିଜେ ନିଜ କାନରେ ଶୁଣିଛି । ନଇଲେ କ'ଣ ଏ ଘରର ମାଲିକାଣୀ ହୋଇ ରହିଥାଆନ୍ତି ?

କରୁଣାମୟୀ ତା କଥାରେ କୌଣସି କର୍ଣ୍ଣପାତ ନ କରି ନିଜ କାମରେ ଲାଗିଲେ । ଘରବାଲୀ ସ୍ୱତଃ କହିବାକୁ ଲାଗିଲା—ମୋ ବଡ଼ୁଁ ଭଲେ କହି-ଆସୁଛି ମା, ପିଲାଟା ନହାତି ବଦମାସ, ଘରୁ ବାହାର କରି ଦିଅ ତାକୁ । କ'ଣ ନା ଚଢ଼ଦେଲେ ଯିବ କୁଆଡ଼େ ? ଯୁଆଡ଼େ ଯାଉ ନେଥିରେ ତୋର କ'ଣ ଯାଏ ଆସେ ? ଭଲ କରି ଗଣ୍ଡେ ଖାଅ, ପିଅ, ପିନ୍ଧ, ଦେହରେ ସୁନାରୂପା ଅଳଙ୍କାର କିଛି କର, ତା ସଙ୍ଗେ ସଙ୍ଗେ ପୀରତି ବି କର । ସେ କଥା ହବନି ! ଦେଖିଲୁ ତ ପିଲାଟା କମିତି ମୁହେଁ ମୁହେଁ ଜବାବ ଦେଉଛି ।

କରୁଣାମୟୀ ଥରେ ମାତ୍ର ମୁହଁକୁ ଟିକିଏ ଉଠେଇ ପୁଣି ତଳକୁ ନୁଆଇଁ ଆଣିଲେ । ଘରବାଲୀ ବୁଝିଲା, ତାର ବହୁଦର୍ଶୀ ଉପ-ଦେଶାବଳୀ ଠିକ୍ କାମରେ ଲାଗିଛି । ପୁଣି ସତେଜ ସ୍ୱରରେ କହିଲା—ପୀରତି କରିବାର ସମୟ ତ ଏଇ ବୟସରେ । ଦେଖିବାକୁ ସିମିତି ନା, ଖାଲି ଦି'ହାତରେ ଧନରତ୍ନ ଲୁଟି ନେଇପାରିବୁ । ଦି'ପଇସା ହାତରେ ହୋଇଯାଉ, ଦେଖିବୁ ବେଶୀ ବୟସରେ ବି ପୀରତି କରିବା କେଡ଼େ ମଜା । ହାତରେ ପଇସା ଥିଲେ କ'ଣ ମରଦର ଅଭାବ ? କେତେ ଗଣ୍ଡା

କରୁଣାମୟୀ ଶମନା ଥିଲା—ଏସବୁ କଥା ତାର ମନ ଭିତରକୁ ଗଲା କି ନାହିଁ କେଜାଣି; କିନ୍ତୁ ସେ କୌଣସି କଥା କହିଲେନି ।

ଘରବାଲୀର ନିଜ ଘରେ କାମ ବାକି ରହିଥିଲା । ତେଣୁ ଆଉ ଡେରି କରି ନ ପାରି ଦ୍ୱିପହରରେ ପୁଣି ଥରେ ଆସିବ ବୋଲି କହି ଚାଲିଗଲା ।

ଏ ଘରର ସମସ୍ତେ ପ୍ରାୟ କାରଖାନାରେ ଚାକିରି କରିଥାଆନ୍ତି । ସକାଳେ ସେମାନେ କାମକୁ ଯାଆନ୍ତି, ଦ୍ୱିପହରବେଳା ଅଳ୍ପ ସମୟ ପାଇଁ ଘରକୁ ଖାଇବାକୁ ଆସନ୍ତି, ପୁଣି ଯାଇ ସନ୍ଧ୍ୟାବେଳେ ଫେରନ୍ତି ।

ଆଜି ସେମିତି ସମୟରେ କାରଖାନାକୁ ଚାଲିଯିବା ପରେ ଦିନ ନ'ଟାବେଳେ ଘରବାଲୀ ପୁଣି ଆସି କରଣମୟୀଙ୍କ ଘର ବନା ଦୁଆର ମୁହଁରେ ଠିଆ ହେଲା । ଟିକଏ କୋମଳ କଣ୍ଠରେ କହିଲା— ନୋଉ, କ'ଣ ଖିଆପିଆ ସରିଲାଣି ? କ'ଣସବୁ ରାନ୍ଧିଥିଲୁ ?

କରଣମୟୀ ଆଜି ଚୁଲି ସୁଦ୍ଧା ଲଗେଇ ନାହାନ୍ତି । ତଥାପି ଘରବାଲୀର ପ୍ରଶ୍ନରେ ମୁଣ୍ଡ ହଲେଇ କହିଲେ—ହଁ, ଖିଆପିଆ ସରିଲାଣି । ଆସ ବସ ।

ଘରବାଲୀ ଦୁଆର ମୁହଁ ଆରପଟେ ଆସି ବସିଲା । ସେ ମନେ ମନେ ଖୁବ ଭଲ କରି ଜାଣିପାରିଥିଲା, କରଣମୟୀଙ୍କ ଆଜି ମନ ଭଲ ନାହିଁ; ତେଣୁ ସେ ସହାନୁଭୂତି ସ୍ୱରରେ କହିଲା—ହଁ ଯେତେବେଳେ ମରଦଟା ଚାଲିଗଲା, ମନ ଦୁଃଖ ହେବା କଥା । ଦି ଚାରି ଦିନ ସେମିତି ହେବ । ପୋଷା ପଶୁପକ୍ଷୀ ତ ଚାଲିଗଲେ ମନ ଖରାପ ହୁଏ, ଇଏ ତ ଥିଲା ପୋଷା ମଣିଷ । ସିମିତି ସିମିତି ହେଉ ପଛକେ ଛ' ସାତ ମାସ ଏକାଠି ଘରସଂସାର କରିଥିଲ ! ହଁ ହବ, ହବନି କାହିଁକି; କିନ୍ତୁ କେତେଟା ଦିନ, ବଡ଼ ହେଲେ ଦି ଚାରି ଦିନ । ତାପରେ ସବୁ ଭୁଲିଯିବୁ । ଆଖି ଆଗରେ ଇମିତି ଗଣ୍ଡା ଗଣ୍ଡା ଘଟଣା ଦେଖିଲଣି ପରା ।

କରଣମୟୀ ଟିକଏ ଜୋରରେ ହସିଲାଭଳି କହିଲେ—ହଁ, ସେ କଥା ସତ ।

ଘରବାଲୀ ସଙ୍ଗେ ସଙ୍ଗେ ମୁହଁକୁ ଘୂରେଇ ପ୍ରତିଧ୍ୱନି କରି କହିଲା— ସତ ନୁହେଁ ? ତୁ ନିଜେ କହିଲୁ । ପୁଣି ନୂଆ ମରଦ ଜଣକୁ ଆଦରି ନେବୁ, ନୂଆ ପୀରତି, ଆହ୍ଲାଦ, ଆମୋଦ ହେଉ, ଦେଖିବୁ, ସବୁ ଭୁଆଡ଼େ ଭୁଲିଯିବୁ । କ'ଣ ନୁହେଁ ?

କରଣମୟୀ କହିଲେ— ନିଶ୍ଚୟ । କିନ୍ତୁ ଉପରେ ପଡ଼ି ଇମିତି ଗୁଡ଼ାଏ କଥାରେ କରଣମୟୀଙ୍କ ଚିତ୍ତ ଉଦ୍‌ଭ୍ରାନ୍ତ ହୋଇ ଉଠୁଥିଲା ।

ହଠାତ୍ ଆଖିକୁ ଟିକଏ କୁଞ୍ଚିତ ଓ ଗଳାକୁ ସିଧା କରିନେଇ ଘରବାଲୀ କହିଲା—ଭଲ କଥା ମନେପଡ଼ିଲା ବୋଉ, କଣା ମାରୁଆଡ଼ି ଏଇ ମହାଳେ ଖବର ପଠେଇଥିଲା । ଲୋକଟାର ଆଉ ତର ସହୁନି । କହିଲା— ଲୋକେ କାମ ଦାମକୁ ଚାଲିଗଲେ ଦିପହରବେଳେ ଆସିବ । କେଜାଣି, ଏଇକ୍ଷଣିକା ଚାଲି ଆସିଯିବ ବୋଧହୁଏ ।

କିରଣମୟୀ ସନ୍ତ୍ରସ୍ତ ହୋଇଉଠିଲେ କହିଲେ—ଏଠିକି ଆସିବ ? କାହିଁକି ?

ଘରବାଲି କଥାଟାକୁ କୌତୁକ ମନେକରି କୃତ୍ରିମ କୋଧ ଛଳରେ କହିଲା—ମରୁନୁ ଯାହା, ହଇ ଲୋ, ସିଏ ଏଠିକି ଆସିବନି, ଆଉ କ'ଣ ତୁ ଯିବୁ ତା ଘରକୁ ? ତୋର ଯାହା କଥା ନା, ଶୁଣିଲେ ହସି ହସି ପେଟ ଫାଟିଯିବ । ଏତକ କହୁ କହୁ ଗୋଟାଏ ଶୁଖିଲା ହସ ହସି ଏକା-ବେଳକେ କିରଣମୟୀ ଦେହରେ ଅଜାଡ଼ି ହୋଇପଡ଼ିଲା ।

କିରଣମୟୀ କିଛି ନ କହି ଟିକିଏ ଆଡ଼େଇ ହୋଇଗଲେ । ଘରବାଲି ଆତ୍ମୀୟତାର ଆବେଶରେ ବିଭୋଳ ହୋଇ ଆଜ ତାଙ୍କୁ ପ୍ରଥମ ଥର ପାଇଁ 'ତୁ' ସଂବୋଧନ କରିଥିଲା ।

କିନ୍ତୁ ଏଇ ଇତର ସ୍ତ୍ରୀଲୋକ ମୁହଁରୁ ସଖିତ୍ୱର ଏଇ ଦେହ ଲଗାଲଗି ସମ୍ଭାଷଣ କିରଣମୟୀଙ୍କ କାନ ଭିତରେ ଯାଇ ଏକାବେଳକେ ଛୁରି ଭଳି ବିନ୍ଧିଲା । ତଥାପି ସେ ଆତ୍ମ ସଂବରଣ କରି ଚୁପ୍ ରହିଲେ ।

ଘରବାଲି କିନ୍ତୁ କିରଣମୟୀଙ୍କ ମନୋଭାବକୁ ଆଦୌ ବୁଝି ପାରି ନ ଥିଲା । ସେ ସେମିତି କହିଚାଲିଲା—ତୁ ଖାଲି ହଁ କରି ଦେ ନା, ଦେଖିବୁ, ଛ'ମାସ ଭିତରେ ତତେ କ'ଣ କରିଦେବ । ରାଜରାଣୀ ହେବୁ ଲୋ, ରାଜରାଣୀ ।

କିରଣମୟୀଙ୍କର ମନେହେଲା ଏ ସ୍ତ୍ରୀଲୋକଟା ଯେମିତି କର୍ଣ୍ଣ-ଗହ୍ୱର ଭିତରେ ପଶି ଭିତରର ସମସ୍ତ ଶିରା ପ୍ରଶିରାକୁ ତପ୍ତ ଚିମୁଟା ଦେଇ ଛିଙ୍କି ନେଇଆସୁଚି । କିନ୍ତୁ 'ନା କୁହନା' ଏଇତକ କହିବା ଲାଗି ତାଙ୍କର ସାହସ ହେଲାନି, ଖାଲି ଚୁପ୍‌ଚାପ୍ ଶୁଣିବାକୁ ଲାଗିଲେ ।

ଘରବାଲି କହିଲା – କଣା ମାରୁଆଡ଼ି ହେଲେ କଣ ହେଲା, ବେଶ୍ ଚଳଣି ତାର । ମନ ଯେତେବେଳେ ତାର ରସିଚି, ହାତ ଦେଇ ତାକୁ ଆବୁଡ଼ିନେବା ଭଲ । ତାପରେ ଯାହା କଷ୍ଟ । ପୁଣି କେତେ ଆସି ଜୁଟିବେ । ତୋର ଆଜ ଯେଉଁ ଦଶା ନା, ସେଇଥିପାଇଁ କହୁଥିଲି । ନଇଲେଁ ତୋର ଯେଉଁ ରୂପ, ସେଥିରେ କଣା ମାରୁଆଡ଼ି କଥା ଉଠନ୍ତା କାହିଁକି ?

ଠିକ୍ ଏତିକିବେଳେ ଦୁଆର ଆରପଟରୁ କିଏ ଜଣେ ଡାକିବାର ଶୁଣାଗଲା—ଘରବାଲି !

'ଯାଉଛ ବାବୁ, ଯାଉଛ' କହି ଘରବାଲୀ ଯିବାକୁ ଉପକ୍ରମ କରୁ କରୁ କିରଣମୟୀ ତାର ଲୁଗାକାନିକୁ ଜୋରରେ ଧରି କହି ଉଠିଲେ, ନା, ନା, ଏଇ ଘର ଭିତରେ ଯେପରି କାହାର ପାଦ ନ ପଡ଼େ ।

ଘରବାଲୀ ହତବୁଦ୍ଧି ହୋଇ କହିଲା—କାହିଁକି ? କିଏ ଅଛି କି ଏଠି ?

କିରଣମୟୀ ଦୃଢ଼ କଣ୍ଠରେ କହିଲେ—କିଏ ଥାଉ ନ ଥାଉ ଏଠିକି କାହାକୁ ଆସିବାକୁ ଦେବନି ।

ଆଗନ୍ତୁକ ଲୋକଟିର ପଦଶବ୍ଦ କ୍ରମଶଃ ନିକଟତର ହୋଇଉଠିଲା । ଘରବାଲୀ ଅବାକ୍ ହୋଇ କହିଲା—ତୁ ତ ଆଉ କାହାର ସ୍ତ୍ରୀ ହୋଇ ନାହୁଁ, କେତେ ଲୋକ ତୋ ଘରକୁ ଆସିବେ, ବସା ଉଠା କରିବେ, ରଙ୍ଗରସ ହବ, ସେଥିରେ ଭୟ କାହିଁକି ମା ? ତୁ ହେଲୁ ବେପାରୀ ।

କିରଣମୟୀ ଚିତ୍କାର କରିଉଠିଲେ—କ'ଣ ହେଲି, ମୁଁ ବେଶ୍ୟା ?

ତାଙ୍କର ମନେହେଲା ବଜ୍ରାଗ୍ନି ରେଖା ତାଙ୍କ ପାଦତଳୁ ବାହାରି ବ୍ରହ୍ମରନ୍ଧ୍ର ବିଦୀର୍ଣ୍ଣ କରି ଯିମିତି ବାହାରି ହୋଇଗଲା ।

କିରଣମୟୀଙ୍କ ଆରକ୍ତ ଚକ୍ଷୁ ଓ ତୀବ୍ର କଣ୍ଠସ୍ୱରରେ ଘରବାଲୀ ବିସ୍ମିତ ଓ ବିରକ୍ତ ହୋଇ କହିଲା—ନା, ତା ନୁହେଁ ଆଉ କ'ଣ ? ଆମେ ଯାହା, ତୁ ସେୟା । ଭଦରଲୋକ ଆସିଛି, ନେ ଘରେ ବସା ।

ଏ ଭଦ୍ରଲୋକଟି ପାଖରୁ ଘରବାଲୀ ଟଙ୍କା ନେଇଥିଲା କିରଣମୟୀଙ୍କୁ ଯୋଗେଇଦେବା ପାଇଁ । ଆଜିରି ମଧ୍ୟ କିଛି ପାଇବ ବୋଲି ତାର ଆଶା ଥିଲା । ଭଦ୍ରଲୋକ ଦୁଆର ପାଖରେ ଆସି ଠିଆ ହେଲା ଏବଂ ଦାନ୍ତ ବାହାର କରି ହସି ହସି କହିଲା—କ୍ୟା ଘରବାଲି, ଖବର ସବ୍ ଭଲ୍ ?

ଘରବାଲୀ ମୁଣ୍ଡ ଉପରକୁ ଟାଣିନେଇ ସବିନୟ ଭାବରେ କହିଲା—ତୁମ୍ହାରି ମେହେରବାନି ! ଯାଅ, ଘରେ ଯାଇ ବସ । ମୁଁ ପାନ ଭାଙ୍ଗି ଆଣୁଚି । ଟିକିଏ ହସି କହିଲା—ଏଥର ଏ ଘରଦ୍ୱାର ସବୁ ତୁମରି ବାବୁଜୀ ! ଯିମିତି ଭଲ କରି ଘରଟିକୁ ସଜେଇ ରଖିବ ।

—'ଆଚ୍ଛା ଆଚ୍ଛା···ସେସବୁ ହବ' କହି ଲୋକଟା ଭିଲେ ହେଲେ ସଂକୋଚବୋଧ ନ କରି ଘର ଭିତରକୁ ପଶି ଖଟ ଉପରେ ବସିବାକୁ ବାହାରିଲା ।

କରଣମନ୍ତ୍ରୀଙ୍କ ମାତ୍ର ଶରୀର ସମ୍ବନ୍ଧରେ ତା ଇତ୍ୟାଦି ଅପେକ୍ଷା କୃତ୍ତା ହେତୁରୁ ଏତେବେଳଯାଏଁ ବରଦାସ୍ତ କରିଥିଲେ; କିନ୍ତୁ ଆଉ ପାରିଲେନି । ତାଙ୍କ ରୂପଯୌବନର ଏଇ ଅପରିଚିତ ଖରିଦଦାରର ଗୃହପ୍ରବେଶ ସଙ୍ଗେ ସଙ୍ଗେ ସେ ଚୈତନ୍ୟ ହରେଇ ବାତାହତ ରମ୍ଭାବୃକ୍ଷ ଭଳି ଭୂମିତଳେ ଲୋଟିପଡ଼ିଲେ ।

ଲୋକଟା ଚମକି ମୁହଁ ଘୂରେଇ ଚାହିଁଲା ଏବଂ ଏହି ଆକସ୍ମିକ ଉତ୍ପାତରେ ହତବୁଦ୍ଧି ହୋଇପଡ଼ିଲା । ଘରବାଲୀର ପ୍ରବଳ ଚିତ୍କାରରେ ସାହି ଭିତରର ସମସ୍ତ ସ୍ତ୍ରୀଲୋକ ଆସି ସଙ୍ଗେ ସଙ୍ଗେ ରୁଣ୍ଡ ହୋଇଗଲେ । କିଏ ମୁହଁରେ ପାଣି ଛିଞ୍ଚିବାରେ ଲାଗିଲା ତ କିଏ ପଙ୍ଖା କରିବାରେ ବ୍ୟସ୍ତ ରହିଲା । ଘରବାଲୀ ଏରୁଣ୍ଡି ଉପରେ ବସି ବଡ଼ପାଟିରେ ଘୋଷଣା କରିବାକୁ ଲାଗିଲା—ଆଲୋ ମା'ଲୋ, ଏଇ କାମ କରି କରି ବାଳ ପାଚିଲା ଆସି, ତେବେ ଇମିତି ବଦ୍ୟା ଶିଖି ନ ଥିଲି । କି ଢଙ୍ଗ ଲୋ ମା ! ନାଗର ଦେଖି ଦାନ୍ତକୁ କାମୁଡ଼ି ଛେଚିହୋଇ ପଡ଼ିବା କୌଶଳ ତ ମତେ ମାଲୁମ ନ ଥିଲା ।

ଅକସ୍ମାତ୍ ଏଇ ଦୁର୍ଘଟଣା ଭିତରେ ପୁଣି ଏକ ନୂଆ ଗୋଳମାଳ ଶୁଣାଗଲା । ସଦର ଦରଜାରେ କିଏ ଜଣେ ନୂଆ ବାବୁ ଆସି ହବାକର ଓ ଭଜଜର ନାଁ ଧରି ହାଙ୍ଗାମା ସୃଷ୍ଟି କରି ଚାଲିଛି ବୋଲି ଖବର ଆସି ପହଞ୍ଚିଲା । ଟୋକରଟା ପାଖରୁ ଘରବାଲୀ ଆଗନ୍ତୁକ ବାବୁଙ୍କର ପରିଚୟ ଗ୍ରହଣ କରୁ କରୁ ଏକ ଦୀର୍ଘକାୟ ମଣିଷ ହାତରେ ଚମଡ଼ା ବ୍ୟାଗ ଧରି ସମ୍ମୁଖରେ ପହଞ୍ଚି ଗମ୍ଭୀର କଣ୍ଠରେ ଡାକ ପକେଇଲା—ଭଜଜ ! ତାର ଡାହାଣ ହାତରେ ପ୍ରକାଣ୍ଡ ଗୋଟାଏ ହୀରକ ମୁଦି ସୂର୍ଯ୍ୟକିରଣରେ ଝଲମଲ କରି ଉଠିଲା । ଘରବାଲୀ ବ୍ୟସ୍ତବ୍ୟସ୍ତ ହୋଇ ପଚାରିଲା—କାହାକୁ ଖୋଜୁଚନ୍ତି ?

—ହବାକର ଏଠି ରହେ ?

ଘରବାଲୀ କହିଲା—ନା ।

—ଭଜଜ, କରଣମନ୍ତ୍ରୀ ଭଜଜ ? କେଉଁଠି ରହନ୍ତି ସେ ?

ଘରବାଲୀ ସହିତ ଆଉ ଚାରିପାଞ୍ଚଜଣ କୌତୂହଳୀ ସ୍ତ୍ରୀଲୋକ ସବୁ ଦେଖୁଥିଲେ । କିଏ ଜଣେ କହିଲା—ସିଏ ତ ମୂର୍ଚ୍ଛା ହୋଇ ପଡ଼ିଛନ୍ତି ।

—ମୂର୍ଚ୍ଛା ? କାହିଁ ଦେଖି ! ଏତିକି କହିଦେଇ ଆଗନ୍ତୁକ ଭଦ୍ରଲୋକ ସମସ୍ତଙ୍କୁ ଠେଲାପେଲି ଘରେ ପ୍ରବେଶ କଲେ ।

ଅଚେତନ କିରଣମୟୀ ସେତେବେଳ ପର୍ଯ୍ୟନ୍ତ ତଳେ ପଡ଼ି ରହିଛନ୍ତି । ସର୍ବାଙ୍ଗ ପାଣିରେ ଭାସିଯାଉଛି । ଚକ୍ଷୁ ମୁଦ୍ରିତ । ପାଂଶୁମୁଖ । ମୁଣ୍ଡର ବାଳଗୁଡ଼ିକ ସିକ୍ତ, ବିପର୍ଯ୍ୟସ୍ତ । ଦେହର ଲୁଗାପଟା ସ୍ରସ୍ତ । ଆଗନ୍ତୁକ ସତୀଶ । ତାର ଦୃଷ୍ଟି ଯାଇ ପ୍ରଥମେ ପଡ଼ିଲା ହିନ୍ଦୁସ୍ତାନୀ ଉପରେ । ଏ ପର୍ଯ୍ୟନ୍ତ ସେ ପାଖକୁ ଲାଗି ଆସି ନିର୍ନିମେଷ ଚକ୍ଷୁରେ କିରଣମୟୀଙ୍କୁ ଚାହିଁ ବସିଥିଲା । ସତୀଶ ବିସ୍ମିତ ଓ ଅତ୍ୟନ୍ତ କ୍ରୁଦ୍ଧ ହୋଇ ପ୍ରଶ୍ନ କଲା—ଏଇ, ତୁମ୍ କୋନ୍ ହୈ ?

ତା ପକ୍ଷରୁ ଘରବାଲୀ ଜବାବ ଦେଲା—ଆହା ସେ ପରା ଆମର ମାଡ଼ୁଆରି ବାବୁ ! ଏଇ ଯେ......

କିନ୍ତୁ ପରିଚୟ ଦାନ ଶେଷ ହେବା ପୂର୍ବରୁ ହିଁ ସତୀଶ ଦୁଆର ମୁହଁକୁ ଠାରି କହିଲା—ନିକଲ, ଇଧର୍ ସେ ନିକଲ୍ !

ମାଡ଼ୱାରୀର ଟଙ୍କା ଅଛି । ସେ ନବୀନ ପ୍ରେମିକ । ବିଶେଷତଃ ଏତେଗୁଡ଼ାଏ ସ୍ତ୍ରୀଲୋକ ସାମନାରେ ସେ ହୀନ ହୋଇ ମଧ୍ୟ ପାରେନା । ତେଣୁ ସାହସ ଦେଖେଇ କହିଲା—କାହିଁକୋ ?

ଅସହିଷ୍ଣୁ ସତୀଶ ବୁଟ ଜୋତାକୁ ଟେବୁଲ ଉପରେ ବାଡ଼େଇ କହିଲା—ବାହାର, ଉଲ୍ଲୁ କାହାଁକା ! ସମସ୍ତ ଲୋକଙ୍କ ସହିତ ସମଗ୍ର ଘରଟା ତା ପାଟିରେ ଯିମିତି ଚମକିଉଠିଲା । ଦ୍ୱିରୁକ୍ତି ନ କରି ମାରୱାଡ଼ି ବାହାରିଗଲା ।

ସତୀଶ କିରଣମୟୀଙ୍କ ଦେହ ଉପରକୁ ତାଙ୍କ ସ୍ଖଳିତ ବସ୍ତ୍ର ଟେକି ଦେଇ ନିଜେ ଗୋଟାଏ ପଙ୍ଖା ଆଣି ଜୋରରେ ପଙ୍ଖା କରିବାକୁ ଲାଗିଲା । ତା ଚାରିପାଖରେ ରୁଣ୍ଡ ହୋଇଥିବା ସ୍ତ୍ରୀଲୋକେ ବିଚିତ୍ର କଳରବ କରିବାକୁ ଲାଗିଲେ । ଏମାନଙ୍କ କଥାବାର୍ତ୍ତା ମଧ୍ୟରୁ ଅଳ୍ପ ସମୟ ମଧ୍ୟରେ ସତୀଶ ବହୁ ତଥ୍ୟ ସଂଗ୍ରହ କରିପାରିଲା । ଘରବାଲୀ ଆକ୍ଷେପ କରି ଏବଂ ଅତି ବିସ୍ମୟ ପ୍ରକାଶ କରି ବାରମ୍ବାର କହିବାକୁ ଲାଗିଲା—ଯେ ତା ବାପଅଜା କାଳରେ ମଧ୍ୟ ଏଭଳି ସ୍ତ୍ରୀଲୋକ ଦେଖି ନାହିଁ । ଆଲୋ ମାଆ ଲୋ, ଇଏ ତ ଗୋଟାଏ ମାୟାବିନୀ । ବେଶ୍ୟାକୁ ବେଶ୍ୟା କହିଲେ ଦାନ୍ତ ଚିପି ଅଚେତ ହୋଇ ପଡ଼ିବାର ତ ମୁଁ କେଉଁଠି ଦେଖିନି ଲୋ ମା !

୨୦।୨୫ ମିନଟ୍ ପରେ କରଣମୟୀ ମଙ୍ଗଳାର କଡ଼ ଉଠି ବସିଲେ। କିଛି ସମୟ ଏକଦୃଷ୍ଟିରେ ଚାହିଁ ରହି କ୍ଷୀଣ କଣ୍ଠରେ କହିଲେ—ସନ୍ତୋଷ ?

ସନ୍ତୋଷ ପ୍ରଣାମ କରି ପାଦଧୂଳି ମୁଣ୍ଡରେ ଲଗେଇ କହିଲା—ହଁ ଭାଉଜ, ମୁଁ ସନ୍ତୋଷ। କିନ୍ତୁ ଏସବୁ କି କାଣ୍ଡ କୁହ ତ ? ଯିମିତି ଲୁଗାପଟା, ସେମିତି ଘର, ଯିମିତି ଶ୍ରୀ ! କ'ଣ ଏସବୁ ? କିଏ କହିବ, ଇଏ ସନ୍ତୋଷର ବଦ ! ଯିଏ ଦେଖିଲେ ଦେଖିଲେ କହିବ କୁଆଡ଼ିକାର ଗୋଟାଏ ଅନାଥା ପାଗଳୀ। ପିଲାଳିଆ କଥା ବହୁତ ହେଲା, ଏଥର କାଲିକାର ଜାହାଜରେ ଘରକୁ ଚାଲ ! ସ୍ତ୍ରୀଲୋକଗୁଡ଼ାକ ଆଡ଼କୁ ଚାହିଁ କହିଲା—ଆଉ ଦରକାର ନାହିଁ, ବହୁତ ସେବା କରିଚ, ଏଥର ଯାଅ ।

କରଣମୟୀ ପଥରମୂର୍ତ୍ତି ଭଳି ମୁହଁ ତଳକୁ କରି ଚାହିଁରହିଲେ। ତାଙ୍କ ଅନ୍ତରର କଥା ଅନ୍ତର୍ଯ୍ୟାମୀ ହିଁ ଜାଣିଲେ; କିନ୍ତୁ ବାହାରେ ତାଙ୍କ ମନ-କଥା କେହି ଜାଣିପାରିଲେ ନାହିଁ। ସ୍ତ୍ରୀଲୋକଗୁଡ଼ାକ ବାହାର ହୋଇଗଲା ପରେ ସନ୍ତୋଷ କହିଲା—ସେ ଜ୍ୱେର ଗଲା କୁଆଡ଼େ ?

କରଣମୟୀ ମୁହଁ ଉଠେଇ କହିଲେ— ଏପର୍ଯ୍ୟନ୍ତ ତ ଏଇଠି ଥିଲା, କାଲି ରାତିରୁ ଅନ୍ୟତ୍ର ଯାଇଚି ।

—କାହିଁକି ?

—ମୁଁ ଚାଲିଯିବାକୁ କହିଲି ବୋଲି ।

—କିନ୍ତୁ ଡାକିଲେ କ'ଣ ସେ ଆସିବାକୁ ମନା କରନ୍ତି ?

—ଡକେଇଦେବି, ଆସିବେ କି ନା କେଜାଣି ?

କରଣମୟୀ ବାହାରକୁ ଯାଇ ଚାକରକୁ କାଳୀବାଡ଼ିକୁ ପଠେଇ ଦେଇ ପୁଣି ଫେରିଆସି ବସିଲେ। କହିଲେ—ତୁମେ ଆସିବ ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ସନ୍ତୋଷ !

ସନ୍ତୋଷ କହିଲା—ମୋର ଆସିବାଟା କ'ଣ ମୋ ନିଜ ସ୍ୱପ୍ନର ଅଗୋଚର ନୁହେଁ ଭାଉଜ ?

—ହଁ, ତା ନିଶ୍ଚୟ। ଏହା କହି କରଣମୟୀ ପୁଣି ମୁଣ୍ଡକୁ ପୋତି ବସିରହିଲେ। ତାଙ୍କର ବହୁତ କଥା ଜାଣିବାର ଆବଶ୍ୟକତା ଥିଲା। ସନ୍ତୋଷ ଯେ ତାଙ୍କ ଘର ଚାକରାଣୀଠୁ ସନ୍ଧାନ ନେଇ ଆସିଚି, ତାହା ବୁଝିବା

କଠିନ ନୁହେଁ; କିନ୍ତୁ ଅକସ୍ମାତ୍ ଏତେକାଳ ପରେ ତାଙ୍କୁ ଫେରେଇନେବା ପାଇଁ ଏତେଦୂର ଆସିବା କଥାଟାକୁ ଅନୁମାନ କରିବା ତା ପକ୍ଷରେ କଠିନ ହୋଇ ପଡ଼ିଥିଲା ।

କିନ୍ତୁ ସେ ଆସିବାର କାରଣଟା ସତୀଶ ନିଜେ ପ୍ରକାଶ କଲା । କହିଲା—କାଲି ଜାହାଜ ଅଛି, ତୁମକୁ ନେବାକୁ ଆସିଚି ଭାଉଜ !

କିରଣମୟୀ ମୁହଁକୁ ଉଠେଇ କହିଲେ—ଉପୀନ ପଠେଇଛନ୍ତି ତ ? ବେଶ୍ କଥା, ଦିବାକରକୁ ନେଇଯାଅ । ତୁମକୁ ମୋର ପ୍ରାର୍ଥନା, ତାକୁ ଯିମିତି ତୁମେ ନେଇଯିବ ।

ସତୀଶ କହିଲା—ଖାଲି ପରର ହୁକୁମ ପାଳନ କରିବାକୁ ଏତେଦୂର ଆସିନି । ମୋ ନିଜ ପକ୍ଷରୁ ମଧ୍ୟ ତାଗିଦ୍ ଅଛି । ହୁଏତ ଭାବିବ, ତେବେ ଏତେଦିନ ପରେ ଏ ତାଗିଦ୍ କାହିଁକି ? ଖବର ପାଇ ନ ଥିଲି । ତା ପରେ ବାପା ମରିଗଲେ । ନିଜେ ମଧ୍ୟ ସେ ପୁରକୁ ଯିବାକୁ ବସିଥିଲି । ହୁଏତ ଆଜି ଦେଖା ସୁଦ୍ଧା ମିଳି ନ ଥାଆନ୍ତା ।

କିରଣମୟୀ ମୁହଁ ଉଠେଇ ଚାହିଁଲେ । ତାଙ୍କର ଦୁଇ ଚକ୍ଷୁ ଦେଇ ସଂସାରର ସମସ୍ତ ସ୍ନେହ ଯିମିତି ସତୀଶର ସର୍ବାଙ୍ଗରେ ଝରିପଡ଼ିଲା । କିଛି ସମୟ ପରେ କରୁଣ କଣ୍ଠରେ କହିଲେ—ମୁଁ କାହା ପାଖକୁ ଯିବି ସତୀଶ ? ମୋର କିଏ ଅଛି ?

—ମୋର ପାଖକୁ ଯିବ ଭାଉଜ, ମୁଁ ଅଛି ।

— ମତେ ଆଶ୍ରୟ ଦେବା କ'ଣ ତୁମ ପକ୍ଷରେ ଭଲ ହେବ ?

ସତୀଶ କହିଲା—ତୁମର କ'ଣ ମନେ ନାହିଁ ଭାଉଜ, ବହୁଦିନ ଆଗେ ଏଇ ଭଲ ମନ୍ଦ ଏକାବେଳକେ ଚିରଦିନ ଲାଗି ସ୍ଥିର ହୋଇ ଯାଇଥିଲା, ଯେଉଁଦିନ ମତେ ଶ୍ରେଷ୍ଠଭାଇ ବୋଲି ତୁମେ ଡାକିଥିଲ । ଅନ୍ୟାୟ ଯଦି କିଛି କରିଥାଅ, ତାର ଜବାବ ଦେବ ତୁମେ । କିନ୍ତୁ ମୋର ଜବାବ ହେଉଚି, ମୁଁ ତୁମର ଶ୍ରେଷ୍ଠଭାଇ । ତୁମେ ଭଲ କି ମନ୍ଦ, ସେସବୁର ବିଚାର କରିବାର ଅଧିକାର ମୋର ନାହିଁ ।

ଏ କଥା ଶୁଣି କିରଣମୟୀଙ୍କର ଇଚ୍ଛା ହେଲା, କୁଆଡ଼େ ଧାଇଁଯାଇ ଅସରାଏ କାନ୍ଦିଦେଇ ଆସନ୍ତେ ! କିନ୍ତୁ ଆତ୍ମସମ୍ବରଣ କରି କହିଲେ—ସତୀଶ, ସମାଜ ତ ଗୋଟାଏ ଅଛି !

ଏଣ୍ଡ୍ରୁ—ନା, ନାହିଁ । ଯାର ଟଙ୍କା ପଇସା ଅଛି, ଦେହର ବଳ ଅଛି, ତାର ବିରୁଦ୍ଧରେ ସମାଜ ଯାଇ ନ ପାରେ । ଏଇ ଦୁଇଟାପାଇଁ ଜିନିଷ ମୋର ଇଚ୍ଛା ମୁତାବକ ଠିକ୍ ବେଶୀ ଯୋଗାଡ଼ ହୋଇଯାଇଛି ଭଉଜ !

ତାର କଥାକୁହାର ଭଙ୍ଗୀରେ କରଣମୟୀଙ୍କର ମୁହଁରେ ହସ ଦେଖାଦେଲା । ଟିକିଏ ଚୁପ୍ ରହି କହିଲେ—ସତୀଶ, ଟଙ୍କାପଇସା ଓ ଦେହର ବଳରେ ତୁମେ ସମାଜକୁ ମାନି ନ ପାର; କିନ୍ତୁ ନିଜ ଅଶ୍ରଦ୍ଧା ହାତରୁ ଏହି ପାପିଷ୍ଠାକୁ ବଞ୍ଚେଇବ କିପରି ?

ସତୀଶ ଅଧୀର ହୋଇ କହିଲା—ମୁଁ ସେଭଳି ଶିକ୍ଷିତ ନୁହେଁ । ମୁଁ ନିହାତି ଗାଉଁଲି ମୂର୍ଖ । ଏତେ ତର୍କର ଜବାବ ଦେବା ମୋ ପକ୍ଷରେ ସମ୍ଭବ ନୁହେଁ । ଏତେ ଖୁଣ୍ଟିନାଟି ମଣିଷର ଭଲମନ୍ଦର ଜବାବ ଦେବା ମୁଁ ଜାଣେନା । ଆଉ ଇଏ କ'ଣ ସତ୍ୟଯୁଗ ଯେ ସମସ୍ତେ ଉପୀନ୍ଦ୍ରା ଭଳି ଯୁଧିଷ୍ଠିର ହୋଇ ବସିରହିବେ ? ଇଏ ହେଲା କଳିକାଳ; ଅନ୍ୟାୟ, ଅକର୍ମ କରିବେ ହିଁ କରିବେ । କିଏ କ'ଣ ଜମାଖର୍ଚ୍ଚ ଖାତା ଧରି ବସିଛି ? ତୁମେ ଭଲ କହ କି ଖରାପ କହ, ମୁଁ ଦେଖେ କିଏ ଭଲ କାମ କରୁଛି, କିଏ ଖରାପ କାମ କରୁଛି । ହାରାନ୍‌ବାବୁର ମୃତ୍ୟୁ ବେଳେ ମୁଁ ତ ପୁଣି ତୁମର ଅକ୍ଲାନ୍ତ ସ୍ୱାମୀସେବା ଦେଖିଛି । ତୁମେ ଜଣେ ଅସତୀ, ମୁଁ ମରିଗଲେ ମଧ୍ୟ କହିପାରିବିନି । ସେ ଯାହାହେଉ ପଛକେ, ମୁଁ ତୁମକୁ ଏଠୁ ନେଇକରି ଯିବି । ଦେହଟା ଖରାପ ଥିଲା ବୋଲି ଟିକିଏ ଦୁର୍ବଳ ଲାଗୁଛି ସତ, କିନ୍ତୁ ତୁମକୁ ଏ ସାହିର ସମସ୍ତେ ଯିବାକୁ ବାରଣ କଲେ ମଧ୍ୟ ସମସ୍ତଙ୍କୁ ଗୋଟା ଗୋଟା କରି ଠେଲି କରିଦେଇ ତୁମକୁ ନେଇଯିବା ଭଳି ଏକାମ ମୋର ଯଥେଷ୍ଟ ବଳ ଅଛି । ଦରକାର ହେଲେ କାନ୍ଧ କାନ୍ଧରେ କାନ୍ଧେଇ ଜାହାଜରେ ତୁମକୁ ବସେଇ ଦେଇପାରିବି—ତୁମେ ଆପତ୍ତି କର ବା ନ କର ।

କରଣମୟୀ ନ ହସି ରହିପାରିଲେନି । ଅପରାଧର ସମସ୍ତ କାଳିମା ବିଦୂରିତ ହୋଇ ସରଳ ସ୍ନିଗ୍ଧ ହାସ୍ୟଛଟାରେ ତାଙ୍କର ମୁଖମଣ୍ଡଳ ଉଦ୍ଭାସିତ ହୋଇଉଠିଲା । ସେ ମନେକଲେ ଯେ, ସେ କୌଣସି ଗର୍ହିତ କାମ କରିନାହାନ୍ତି । କେବଳ ରାଗି ବନ୍ଦନ ଲାଗି ସେ ଶଶୁରଘରୁ ବାପଘରକୁ ଚାଲି ଆସିଥିଲେ । ଆଦରର ଦିଅର ଫେରେଇନେବାକୁ ଆସିଛି ।

ଠିକ୍ ଏତିକବେଳେ କବାଟ ଆଉପଟ୍ ଦିବାକର ପାଟିକରି ଘର ଭିତରକୁ ପଶିଆସିଲା । କହିଲା—ମତେ ଡକାଇ ପଠାଇଥିଲ ? ଏତିକ କହୁ କହୁ ତାର ଦୃଷ୍ଟି ଯାଇ ଖଟ ଉପରେ ପଡ଼ିଲା । ଭୂତକୁ ଦେଖିଲେ ମଣିଷ ଯେମିତି ଚମକିଉଠେ, ଠିକ୍ ସେହିଭଳି ସେ ଚମକି ଉଠିଲା । ବାହାରର ଆଲୁଅରୁ ଘର ଭିତରର ଅନ୍ଧାରରେ ପଶି ପ୍ରଥମେ ସେ ସନ୍ତୋଷକୁ ଦେଖି ପାରି ନ ଥିଲା । ଏଥର ଭଲଭାବରେ ଦେଖିପାରି ତା ମୁହଁ ବିବର୍ଣ୍ଣ ହୋଇପଡ଼ିଲା ।

ସନ୍ତୋଷ ହସି ହସି କହିଲା—ମୁଁ ଉପୀନ୍ଦା ନୁହେଁ ରେ, ତୋର ସନ୍ତୋଷଦା—କୁକର୍ମର ରଜା । ମତେ ଦେଖି ଇମିତି ଶୁଖି କଲାକାଠ ହେବାର କୌଣସି ଦରକାର ନାହିଁ । ବସ । ଉପୀନ୍ଦା ଦରବାରର ପରୱାନା ନେଇ ଆସିଚି, କାଲି ଭୋର ନଅଟାରେ ଜାହାଜ ଛାଡ଼ିବ, ମନେ ରହେ ଯେମିତି ।

ଦିବାକର ଯେଉଁଠି ଠିଆ ହୋଇଥିଲା, ସେଇଠି ବସିପଡ଼ି ଦି' ଆଣ୍ଠୁ ସନ୍ଧିରେ ମୁଣ୍ଡକୁ ମୁଞ୍ଜି କହିଲା—ମୁଁ କିନ୍ତୁ ଯାଇପାରିବିନି ସନ୍ତୋଷଦା !

ସନ୍ତୋଷ କହିଲା—ତୁ ଯିବୁନି, ତୋର ମୁଣ୍ଡ ଯିବ । ଉପୀନ୍ଦାର ହୁକୁମ—ଜୀବିତ ବା ମୃତ ବିଦ୍ରୋହୀ ଦିବାକରର ମୁଣ୍ଡ ଚାହେଁ ।

ଦିବାକର କହିଲା—ତାହାହେଲେ ମୋ ମଲା ମୁଣ୍ଡ ନେଇଯାଅ ସନ୍ତୋଷଦା ! ମଲା ମୁଣ୍ଡଟି କାଲି ସକାଳ ୬ଟା ବେଳକୁ ଜାହାଜ ପାଖରେ ହାଜର କରିଦେବି, ଏ ପ୍ରତିଶ୍ରୁତି ତୁମକୁ ମୁଁ ଦେଉଚି ।

ସନ୍ତୋଷ ମୁହଁରେ ଏକ ବିକୃତ ସ୍ୱର ସୃଷ୍ଟି କରି କହିଲା— ଦେଖ, ପିଲାର ରାଗକୁ ଦେଖ । ଯିବୁନି କାହିଁକି ?

ଦିବାକର କହିଲା—ତୁମେ କ'ଣ ପାଗଳ ହୋଇଚ ସନ୍ତୋଷଦା, ସଂସାରରେ କାହା ପାଖରେ ମୁହଁ ଉଠେଇ ଠିଆହେବା ଭଳି ଦିବାକରର କ'ଣ ଶକ୍ତି ଅଛି ?

ସନ୍ତୋଷ କହିଲା—ବେଶ୍, ମୁହଁ ଉଚ୍ଚ କରି ଠିଆ ନ ହୁଅ, ତଳକୁ କରି ଠିଆହେଲେ ଚଳିବ । କିନ୍ତୁ ତତେ ଯିବାକୁ ହିଁ ପଡ଼ିବ । ଆରେ ବାବା, ତୁ କ'ଣ ମୋଠୁ ବେଶୀ କିଛି କରିଚୁ ? ମତେ ତ ଲାଜ ମାଡ଼ିଲାନି । ଚାଲ,

ଶୁଣିବୁ । ଇତିମଧ୍ୟରେ ପଞ୍ଚମକାର ପର୍ଯ୍ୟନ୍ତ ସବୁ କରିଛୁ । ଭୂତସିଦ୍ଧି, ବେତାଳସିଦ୍ଧି ଏସବୁ ନାଁ ଶୁଣିଥିଲୁ କେବେ ? ଉପୀନ୍‌ଦା ଆଜି ସେ ଉପୀନ୍‌ଦା ନାହାଁନ୍ତି । ଆମେ ସମସ୍ତେ ତାଙ୍କୁ ଠିକ୍ କରିଦେଇଚୁ । ଭାଉଜ, ଆଉ ବିଳମ୍ବ କରନ୍ତୁ ନା, ଯାହା ବନ୍ଦୋବସ୍ତ କରିବା କଥା କରନ୍ତୁ, ମୁଁ ଯାଉଚି ଟିକଟ କିଣି ନେଇଆସିବି ।

ତାର ଶେଷ କଥାଟା କିରଣମୟୀଙ୍କ କାନରେ ଠକ୍ ପରି ବାଜିଲା । ପଚାରିଲେ— ଠିକ୍ କରିଆଣିଚ ଅର୍ଥ ?

ସତୀଶ କହିଲା – ଗଲେ ସବୁ କଥା ଜାଣିବ ।

କିରଣମୟୀ କହିଲେ – ମୁଁ ତ କହିଦେଇଚି ଭାଇ, ଯାଇପାରିବିନି ବୋଲି ।

ଦିବାକର ମଧ୍ୟ କହିଲା—ମୁଁ ମଧ୍ୟ ଯିବିନି ସତୀଶଦା, ମୋ ପାଇଁ ବୃଥା ଟିକଟ କାଟନି ।

ସତୀଶ ଉଠୁ ଉଠୁ ବସିପଡ଼ିଲା । ଉପେନ୍ଦ୍ରର ଦେହ ଖରାପ କଥା ସେ ଏପର୍ଯ୍ୟନ୍ତ ଲୁଚେଇ ରଖିଥିଲା । କିନ୍ତୁ ଦେଖିଲା, ଏଥର ଲୁଚେଇ ରଖି ହେବନି । ସେ କହିଲା— –ମୁଁ ଜବାବ ଦେଇ ଆସିଚି ଉପୀନଦାଙ୍କୁ, ତୁମ ଦୁହିଁଙ୍କୁ ଯେଉଁଠି ହେଲେ ଖୋଜଖାଜ ଧରିଯିବି ବୋଲି । ତୁମମାନଙ୍କୁ ନ ନେଇ ମୁଁ ଯଦି ଏକା ଏକା ଚାଲିଯାଏ, ତାହାହେଲେ ଉପୀନଦାଙ୍କୁ ଏହି ଦୁଃସମୟରେ କେତେ ଯେ ବାଧିବ, ତୁମେମାନେ କଳ୍ପନା ସୁଦ୍ଧା କରିପାରିବନି । ଦିବାକର, ଏତେ ନିଷ୍ଠୁର ହୁଅନା । ତତେ ଦେଖିବା ଲାଗି ଉପୀନଦାର ପ୍ରାଣ ଟିକକ ଏପର୍ଯ୍ୟନ୍ତ ଅଟକି ରହିଛି, ନଇଲେ ସେ କୋଉ ଦିନରୁ ଚାଲି ଯାଆନ୍ତାଣି ।

କିରଣମୟୀ ଓ ଦିବାକର ଏକାସାଙ୍ଗରେ ଚିତ୍କାର କରିଉଠିଲେ ।

ସତୀଶ କହିଲା—ଏଇ ମାଘ ଶେଷ ଆଡ଼କୁ ଯକ୍ଷ୍ମାରୋଗରେ ପଶୁ ଭାଉଜ ଯେତେବେଳେ ସ୍ୱର୍ଗାରୋହଣ କଲେ, ସେତେବେଳୁ ବୁଝାଗଲା, ଉପୀନ୍‌ଦା ମଧ୍ୟ ଚାଲିଲେ । କିନ୍ତୁ ସେ ଯେ ଏତେ ଶୀଘ୍ର ଚାଲିଯିବେ ଏ, ଧାରଣା କାହାର ନ ଥିଲା । ସେ ତ ସ୍ୱଭାବତଃ କଥା କମ୍ କହୁଥାଆନ୍ତି । ସ୍ୱର୍ଗର ରଥ ଏକାବେଳକେ ଦୁଆର ପାଖରେ ଆସି ହାଜର ନ ହେବାଯାଏଁ ସେ ଟିକିଏ ଖବର ସୁଦ୍ଧା ଦେଲେନି ଯେ ଯିବା ପାଇଁ ତାଙ୍କର ସବୁ ପ୍ରସ୍ତୁତ ହୋଇ

ସାରିଲାଣି । ତୋର ଭୟ କିଛି ନାହିଁ ରେ ଦିବାକର, ନିର୍ଭୟରେ ଯାଆ । ସେ ଉପୀନଦା ଆଉ ନାହାଁନ୍ତି । ବଡ଼ ଅପରାଧ କଲେ ମଧ୍ୟ ତାକୁ ଅପରାଧ ବୋଲି ଧରିବସିବା ଲାଗି ତାଙ୍କର ସମୟ ନାହିଁ – ଛି, ଛି ଭାଉଜ, ଏଇ ଧୂଳି ଉପରେ ଶୋଇପଡ଼ିଲ ? ହଉ, ମୁଁ ବାହାରକୁ ଯାଉଚି । ତୁମେ ଟିକିଏ ଶୁଅ, ଉଠିବନି । ଏତିକି କହି ସତୀଶ ଉଠିଆସି ଗୋଡ଼ରେ କିରଣମୟୀକୁ ଟିକିଏ ଆଘାତ ଦେବାମାତ୍ରେ ବୁଝିପାରିଲା, ଭାଉଜ ଅଚେତ ହୋଇ ପଡ଼ିଛନ୍ତି; ଇଚ୍ଛାକରି ଭୂଶଯ୍ୟା ଗ୍ରହଣ କରି ନାହାନ୍ତି ।

ସତୀଶ ଏବଂ ଦିବାକର ଉଭୟେ ପରସ୍ପରର ମୁହଁକୁ ଚାହିଁ ସ୍ତବ୍ଧ ଭାବରେ ଠିଆହୋଇ ରହିଲେ । ମୁହୂର୍ତ୍ତକ ପରେ ସତୀଶ ଧୀରେ ଧୀରେ କହିଲା—ଠିକ୍ ମୋର ଏଇ ଭୟ ଥିଲା ଦିବାକର ! ମୁଁ ଜାଣେ, ଏ ଖବର ସେ ସହିପାରିବେନି । କିନ୍ତୁ ଏତେଦିନ ଧରି ଭାଉଜ ପାଖରେ ରହି ଏତକ ବି ଜାଣିପାରିଲୁନି ? ଭୟ ହେଉଚି, ମୁଁ ଭାଉଜଙ୍କୁ ମାରି ପକେଇନି ତ ? ତଥାପି ତାଙ୍କର ମଲା ଦେହକୁ ଧରି ମତେ ନିବାକୁ ହିଁ ପଡ଼ିବ । ଏ ଜଗତରେ ଦୁଇ ଜଣ ଲୋକ ଉପୀନ୍‌ଦାର ଶୋକ ସହିପାରିବେନି—ସେଥିରୁ ଗୋଟିଏ ଆଗରୁ ସ୍ୱର୍ଗକୁ ଚାଲିଯାଇଚି; ଆଉ ଗୋଟିଏ ଇଏ । ଯା, ପାଣି ନେଇଆ; ମୁଁ ପଙ୍ଖା କରୁଚି । କରେ, କଥା କହୁନୁ ଯେ !

ଅକସ୍ମାତ୍ ଦିବାକରର ଆପାଦମସ୍ତକ କମ୍ପି ଉଠିଲା । ପରକ୍ଷଣରେ ସେ ଅଚେତନ କିରଣମୟୀଙ୍କ ଦୁଇ ପାଦତଳେ ଲମ୍ବ ହୋଇ ପଡ଼ିଯାଇ କହିବାକୁ ଲାଗିଲା—ଆଜି ବୁଝିଲି ଭାଉଜ, ତୁମେ ଆମର ପୂଜନୀୟା, ଗୁରୁଜନ । ତେବେ ଏତେ କାଳ ଏତେ କଥା ଗୋପନ ରଖି ମତେ ପାପରେ ଡୁବେଇଲ କାହିଁକି ? ମୁଁ ଏ ମହାପାପରୁ କିଭଳି ଉଦ୍ଧାର ପାଇବି ଭାଉଜ ?

ଚଉରାଳଶି

ଉପେନ୍ଦ୍ର କହିଲା—ସାବତ୍ରୀ, ମୁଁ ମଲେ ମୋର ହାଡ଼ କେତେଖଣ୍ଡ ଗଙ୍ଗାରେ ପକେଇଦେବ; ବହୁତ ଜ୍ୱାଳାରେ ଜଳୁଛି, ଟିକିଏ ଥଣ୍ଡା ହେବ ।

ସାବତ୍ରୀକୁ ଉପେନ୍ଦ୍ର ଆଜକାଲି କେତେବେଳେ 'ତୁମେ' ତ କେତେ-ବେଳେ 'ତୁ' ବୋଲି ଡାକିଥାଏ । ସାବତ୍ରୀ ଉପେନ୍ଦ୍ରଙ୍କ ଶେଷ ଇଚ୍ଛା ପୂରଣ କରିବା ଲାଗି ଏବଂ ଶେଷ ଚିକିତ୍ସା ଲାଗି କେତେ ଦିନ ହେଲା କୋଡ଼ାପା-କୋଠରେ ଗୋଟିଏ ଘରଭଡ଼ା ନେଇ ସେଇଠି ରହିଛି । ଆଜି ସନ୍ଧ୍ୟାରେ ଝିପି ଝିପି ହୋଇ ବର୍ଷା ହୋଇଥିଲା । ଆକାଶରୁ ମେଘ ଛାଡ଼ି ନାହିଁ । ଉପେନ୍ଦ୍ର ଅନେକକ୍ଷଣ ପରେ କ୍ଲାନ୍ତ ଆଖି ଦୁଇଟି ମେଲି ଆସ୍ତେ ଆସ୍ତେ କହିଲା— ଆଗ ଝରକାଟି ଟିକିଏ ଖୋଲିଦେ ସାବତ୍ରୀ, ସେଇ ବଡ଼ ନକ୍ଷତ୍ରଟାକୁ ଟିକିଏ ଦେଖିବି ।

ସାବତ୍ରୀ ତା କପାଳର ରୁକ୍ଷ କେଶଗୁଡ଼ିକ ଧୀରେ ଧୀରେ ଆଡ଼େଇ ଦେଇ ମୃଦୁକଣ୍ଠରେ କହିଲା—ଦେହରେ ଥଣ୍ଡା ଲାଗିବ ଦାଦା !

—ଲାଗୁ, ସେଥିରେ ମୋର ଭୟ କରିବାର କ'ଣ ଅଛି ?

ଭୟ ତାର ଆଜି କାହିଁକି, ସୁରବାଳା ଯେଉଁଦିନଠୁ ତାକୁ ଛାଡ଼ି-ଦେଇ ଗଲାଣି, ସେଇ ଦିନଠୁ ତୁଟିଯାଇଛି । କିନ୍ତୁ ତା ବୋଲି ସାବତ୍ରୀର ଭୟ ତ ଅଛି ! ଯେପର୍ଯ୍ୟନ୍ତ ଉପେନ୍ଦ୍ରର ଶ୍ୱାସ ବନ୍ଦ ନ ହୋଇଛି, ସେପର୍ଯ୍ୟନ୍ତ ସେ ତା ଦେହରେ ଥଣ୍ଡା ଲାଗିବାକୁ ଦେବନି । ଅନିଚ୍ଛୁକ କଣ୍ଠରେ ସେ କହିଲା—କିନ୍ତୁ ସେ ନକ୍ଷତ୍ରଟା ତ ଦେଖାଯାଉନି ଦାଦା, ଆକାଶରେ ମେଘ ଢାଙ୍କିରହିଛି ।

ଉପେନ୍ଦ୍ର ମ୍ଳାନଚକ୍ଷୁ ଦୁଇଟିକୁ ବିସ୍ଫାରିତ କରି କହିଲା—ମେଘ ? ଏଇ ଅସମୟରେ ମେଘ ? ଖୋଲିଦେ ସାବତ୍ରୀ, ଖୋଲିଦେ, ଥରେ ଦେଖି ନିଏ, ଆଉ ତ ଦେଖିବାକୁ ପାଇବିନି ।

ବାହାରେ ଆର୍ଦ୍ର ବାୟୁ ଜୋରରେ ବହୁଥିଲା । ସାବତ୍ରୀ କପାଳରେ ଓ ବୁକୁ ଉପରେ ହାତ ଦେଇ ଦେଖିଲା, ଜ୍ୱର ବଢ଼ିଛି । ଉପେନ୍ଦ୍ରକୁ ମିନତି କରି କହିଲା— ଭଲ ହୋଇଯାଅ, ମେଘ ବହୁତ ଦେଖିବ । ବାହାରେ ଝଡ଼, ମୁଁ ଝରକା ଖୋଲିପାରିବିନି ।

ସାବିତ୍ରୀର ହାତଟିକୁ ନିଜ ହାତକୁ ଟାଣିନେଇ ଉପେନ୍ଦ୍ର ରାଗିଯାଇ କହିଲା—ମୋର ଭଲ ଗୁହଁ ତ ଖୋଲିଦେ ସାବିତ୍ରୀ, ନଇଲେ ବର୍ଷାଦିନେ ପେଟେବେଳେ ମେଘ ଉଠିବ, ଝଡ଼ବେଳେ ତୁ ନିଜେ କାନ୍ଦ କାନ୍ଦ ମରିବୁ କହିଦେଉଛି । ମୁଁ ଆଉ ଦେଖିବା ଲାଗି ସମୟ ପାଇବିନି ।

ସାବିତ୍ରୀ ଆଉ କୌଣସି ପ୍ରତିବାଦ ନ କରି ଆଖିରୁ ଲୁହ ପୋଛି-ଦେଇ ଝରକା ଖୋଲିଦେଲା ।

ସେଇ ଖୋଲା ଝରକା ବାଟ ଦେଇ ଉପେନ୍ଦ୍ର ନିର୍ନିମେଷ ଚକ୍ଷୁରେ ବାହାରକୁ ଗୁହଁରହିଲା । ଆକାଶର କୌଣସି ଏକ ଅଦୃଶ୍ୟ ପ୍ରାନ୍ତରୁ କ୍ଷଣ କ୍ଷଣକେ ବିଦ୍ୟୁତ୍ ସ୍ଫୁରିତ ହେଉଥିଲା । ତାର ଆଲୋକଛଟାରେ ସମ୍ମୁଖରେ ଗାଢ଼ମେଘ ଉଦ୍ଭାସିତ ହୋଇ ଉଠୁଥିଲା । ତାକୁଇ ଗୁହଁ ଗୁହଁ ଉପେନ୍ଦ୍ରର ମନ ଉଚ୍ଛନ୍ନ ହେବାକୁ ଲାଗିଲା ।

ସାବିତ୍ରୀ ମଧ୍ୟ ଝରକାର ଗୋଟାଏ ପାଖରେ ସେଇ ଆଡ଼କୁ ଗୁହଁ ଠିଆ ହୋଇଥିଲା । ଉପେନ୍ଦ୍ରର ଦୃଷ୍ଟି ହଠାତ୍ ତା ଉପରେ ପଡ଼ିବା-ମାତ୍ରେ ସେ ହସି କହିଲା—ହଉ, ଝରକା ବନ୍ଦ କରିଦେଇ ପାଖରେ ଆସି ବସ । କିନ୍ତୁ ଏତେ ମାୟା ଭଲ ନୁହେଁ ସାବିତ୍ରୀ ! ଦେହରେ ଟିକିଏ ପବନ ଲାଗିବାକୁ ଦେଉନୁ, ମୁଁ ଗୁଲିଗଲେ କ'ଣ କରିବୁ କହ ତ ?

ସାବିତ୍ରୀ ଝରକା ବନ୍ଦ କରିଦେଇ ଉପେନ୍ଦ୍ର ପାଖରେ ବସି କହିଲା—ତୁମେ ତ ମୋତେ କାମ ଦେଇଯିବ ବୋଲି କହିଚ । ମୁଁ ସାରା ଜୀବନ ସେଇ କାମ କରିବସିବି । ତୁମକୁ ମୁଁ ସେଇ କାମ ଭିତରେ ସବୁବେଳେ ପାଇ ପାରୁଥିବି ।

—କରିପାରିବୁ ତ ?

ସାବିତ୍ରୀ ଆସ୍ତେ ଆସ୍ତେ କହିଲା—କାହିଁକି ପାରିବିନି ?? ତୁମ କଥାରେ 'ସେ' ତ କଦାପି ନାହିଁ କରିବେନି ।

ଉପେନ୍ଦ୍ର ହସ ହସ ମୁହଁରେ କହିଲା—ସେ କିଏ ? ସତ୍ୟଶ ତ ?

ସାବିତ୍ରୀ ମୁଣ୍ଡ ପୋତି ଚୁପ୍‌ଚାପ୍ ବସିରହିଲା ।

ଉପେନ୍ଦ୍ର ତାର ସଲଜ୍ଜ ମୁହଁ ଆଡ଼କୁ ଗୁହଁ ନିଶ୍ୱାସ ମାରିଲା । କହିଲା—ସାବିତ୍ରୀ, ସତ୍ୟଶ ଯେ ମୋର କ'ଣ, ସେ କଥା ଅନ୍ୟ କେହି ବୁଝିବା କଠିନ । ବାହାରୁ ଦେଖିଲେ ବୁଝାଯାଏ, ଯେ ମୋର ସଙ୍ଗୀ, ମୋର

ଆଜନ୍ମ ବନ୍ଧୁ । କିନ୍ତୁ ଯେଉଁ ସଂପର୍କଟା ଦେଖାଯାଏନା, ସେଇଠି ସପ୍ତାଣ ମୋର ଶ୍ରେଷ୍ଠ ଭାଇ, ପରମ ଶିଷ୍ୟ, ମୋର ଚରିତ୍ରନର ଅନୁଗତ ସେବକ । ସାବିତ୍ରୀ, ସେଇ ସତ୍ତରେ ତୁ ଯଦି ଆତ୍ମପ୍ରକାଶ କରି ଆମକୁ ଫେରାଇ ନେଇଯାଇଥାନ୍ତୁ, ମୋର ଶେଷ ଜୀବନଟା ହୁଏତ ଏତେ ଦୁଃଖରେ କଟି ନ ଥାନ୍ତା । ଦିବାକର ମଧ୍ୟ ମତେ ଏତେ ଦୁଃଖ ଦେବାର ସୁଯୋଗ ପାଇ ନ ଥାନ୍ତା ।

ସାବିତ୍ରୀ ସଜଳଚକ୍ଷୁରେ କହିଲା – ମୁଁ ଫେରାଇ ଆଣିବାକୁ ଚାହୁଁଥିଲି ଦାଦା, କିନ୍ତୁ ସେ ଯିବାକୁ ଦେଲେନି । କବାଟ ମୁହଁରେ ହାତ ଦେଇ ମୋର ବାଟକୁ ଅଟକେଇ ରଖିଲେ । କହିଲେ—ମୁଁ ତୁମମାନଙ୍କ ସାମନାକୁ ଗଲେ ତୁମମାନଙ୍କୁ ଅପମାନିତ କରିବା ହେବ ।

"ହେଉ ତାର ଇଚ୍ଛା" କହି ଉପେନ୍ଦ୍ର ଉପରକୁ ଚାହିଁ ଗୋଟାଏ ଦୀର୍ଘଶ୍ୱାସ ପକେଇଲା ।

ଘରେ ଉପେନ୍ଦ୍ରର ପିତା ଶିବପ୍ରସାଦ ବାତରୋଗରେ ଶଯ୍ୟାଗତ । ତାଙ୍କୁ ଏବଂ ଘରସଂସାରକୁ ଆଡ଼େଇ ଦେଇ ମହେଶ୍ୱରୀ ଉପେନ୍ଦ୍ର ସାଙ୍ଗରେ ଆସିପାରି ନ ଥିଲେ । କିନ୍ତୁ ଜଣେ ମଝିଆଁ ଭାଇ ଅଭିଭାବକ ହୋଇ କଲିକତା ବସାରେ ଥିଲେ । ତାର ଓ ଆଉ ଜଣଙ୍କର ପଦଶବ୍ଦ ବାହାରେ ଶୁଣାଗଲା ।

ପରକ୍ଷଣରେ ସେ କବିରାଜଙ୍କୁ ସାଙ୍ଗରେ ଧରି ଘର ଭିତରେ ପ୍ରବେଶ କଲେ । କବିରାଜ ଉପେନ୍ଦ୍ରର ନାଡ଼ୀ ଦେଖି ଜ୍ୱର ପରୀକ୍ଷା କରି ଔଷଧ ପରିବର୍ତ୍ତନ କରିବା ଲାଗି ପ୍ରସ୍ତାବ କରୁ କରୁ ଉପେନ୍ଦ୍ର ହାତଯୋଡ଼ି କହିଲା – ଏଥର ମତେ ମାଫ୍ କରନ୍ତୁ କବିରାଜ ମହାଶୟ, ଆପଣଙ୍କର ତ ଅଗୋଚର କିଛି ନାହିଁ । ତେବେ ଯିବାବେଳକୁ ଆଉ କାହିଁକି ଦୁଃଖ ଦେଉଛନ୍ତି ?

ପ୍ରାଚୀନ ଚିକିତ୍ସକଙ୍କର ଚକ୍ଷୁ ସଜଳ ହୋଇଉଠିଲା । କହିଲେ— ଆମେ ହେଲୁ ଚିକିତ୍ସକ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଆମେ କାହାକୁ ନିରାଶ କରିପାରିବୁନି । ଭଗବାନ ସମସ୍ତ ଆଶା ଶେଷ କରିଦେଲେ ମଧ୍ୟ ଯାତନା ନିବାରଣ ଲାଗି ତ ଔଷଧ ଦେବା ଦରକାର ।

ଉପେନ୍ଦ୍ର କୌଣସିମତେ ପ୍ରତିବାଦ ନ କରି ମୌନ ରହିଲା ।

ଔଷଧ ପରିବର୍ତ୍ତନ କରିବାକୁ ନିର୍ଦ୍ଦେଶ ଦେଇ ବିଚକ୍ଷଣ ଚିକିତ୍ସକ ପ୍ରସ୍ଥାନ କଲେ । ତାଙ୍କର ତ ଭରସା ଆଗରୁ ନ ଥିଲା,ଆଜି ସେ ସ୍ପଷ୍ଟ ଭାବରେ ଅନୁଭବ କଲେ ଯେ ରୋଗୀର ମୃତ୍ୟୁ ସମୀପ୍ୟ ଅତ୍ୟନ୍ତ ଦ୍ରୁତ ଗତିରେ ଅଗ୍ରସର ହୋଇଆସୁଚି ।

ତିନି ଦିନ ପରେ ସୋମବାର ଦିନ ସକାଳବେଳା ସାବିତ୍ରୀ ଖଣ୍ଡିଏ ଟେଲିଗ୍ରାମ ଧରି ଆସି କହିଲା—କାଲି ସକାଳେ ସେମାନେ ଜାହାଜରେ ଆସି ପହଞ୍ଚିବେ ।

--କାହାର ନାଁ ଦେଇନି ସତୀଶ ? କାହିଁ ଦେଖି ।

ଉପେନ୍ଦ୍ର ହାତକୁ ସାବିତ୍ରୀ ଟେଲିଗ୍ରାମଟି ବଢ଼େଇଦେଲା ।

ଉପେନ୍ଦ୍ର କାଗଜଟିକୁ ଓଲଟପାଲଟ କରି ସାବିତ୍ରୀକୁ ଫେରେଇ-ଦେଇ କେବଳ ଗୋଟାଏ ନିଶ୍ୱାସ ମାରିଲା । ଏହି ନିଶ୍ୱାସ ନେବାର ଅର୍ଥ ସାବିତ୍ରୀକୁ ଅଗୋଚର ନ ଥିଲା ।

ଯିବା ସମୟରେ ସତୀଶ ତାକୁ ନିଭୃତରେ କହିଥିଲା– କିରଣମୟୀଙ୍କର ଦେଖା ପାଇଲେ ତାକୁ ସେ ଯେ କୌଣସିମତେ ଧରି ଆଣିବ । ତାର ଭାଇ ଭଉଣୀ ସମ୍ପର୍କ ବିଷୟ ମଧ୍ୟ ସାବିତ୍ରୀକୁ ସେ କହିଥିଲା ।

ଏଇ ପରମାଶ୍ଚର୍ଯ୍ୟ ରମଣୀକୁ ଥରେ ନିଜ ଆଖିରେ ଦେଖିବାର କୌତୂହଳ ସାବିତ୍ରୀର ବହୁଦିନରୁ ଥିଲା । କିନ୍ତୁ ହୁଏତ କାଣ୍ଡଜ୍ଞାନଶୂନ୍ୟ ସତୀଶ ତାକୁ ଏହି ଘରେ ଆଣି ହାଜର କରିଦେବ, ଏ ଆଶଙ୍କା ତାର ଯଥେଷ୍ଟ ଥିଲା । କହିଲା—ସେ ସବୁ ଦିଗକୁ ବିବେଚନା କରି କାମ କରନ୍ତୁନି ଦାଦା, ହୁଏତ କିରଣମୟୀ ଖୁଡ଼ିଙ୍କୁ ସେ ଏଇଠିକି ନେଇ ଚାଲି-ଆସିବେ ।

ଉପେନ୍ଦ୍ରର ପାଂଶୁ ଓଷ୍ଠାଧାରରେ ବେଦନାମୟ ଏକ ଶୁଷ୍କ ହସ ଦେଖାଦେଲା । କହିଲା—ଏ ଘରକୁ ସିଏ କାହିଁକି ଆସିବ ? ଏ ଦେଶକୁ ସେ ଯଦିବା ଫେରିଆସେ, ତାର ଅନ୍ୟ କାରଣ ଅଛି; କିନ୍ତୁ ସିଏ ତ ସାବିତ୍ରୀ ନୁହେଁ,ସାବିତ୍ରୀ ଭଳି ନିର୍ବୋଧ ମଧ୍ୟ ନୁହେଁ । ତୋ ଭଳି ଇହକାଳ ଓ ପରକାଳକୁ ଏକାକାର କରି ଧରିବସିନି, ସିଏ କାହିଁକି ଏଇ ଭୟାନକ ବ୍ୟାଧିର ଗାରଦ ଭିତରେ ପଶିବ ? କହୁ କହୁ ସାବିତ୍ରୀକୁ ଚାହିଁ ସ୍ନେହ, ଶ୍ରଦ୍ଧା, କରୁଣା, ଓ ବେଦନାରେ ତାର କଣ୍ଠ କମ୍ପି ଉଠିଲା ।

ସାବତ୍ରୀ ଦୃଷ୍ଟି ଆନତ କର ବଡ଼ କଷ୍ଟରେ ଅଶ୍ରୁ ସମ୍ବରଣ କଲା । ନିଜକୁ ଟିକଏ ସମ୍ଭାଳିନେଇ ଉପେନ୍ଦ୍ର ପୁଣି କହିଲା— କିନ୍ତୁ ସାବିତ୍ରୀ, ସେଇ କରଣମଫୁଲୀ ଲୁଆଡ଼େ ମନେ ମନେ ମତେ ଭଲ ପାଇ ଯାଇଥିଲେ ।

ଏତକ ଶୁଣି ସାବିତ୍ରୀ ଆଶ୍ଚର୍ଯ୍ୟ ହୋଇଉଠିଲା; କାରଣ କରଣ-ମଫୁଲୀଙ୍କ ସମ୍ବନ୍ଧରେ ସନ୍ତୋଷ ମୁହଁରୁ ସେ ବହୁକଥା ଶୁଣିଚ; କିନ୍ତୁ ଏକଥା ଶୁଣି ନ ଥିଲା । କହିଲା—ମୁଁ 'ତାଙ୍କ' ପାଖରୁ ଶୁଣିଥିଲି କରଣମଫୁଲୀଙ୍କ ସ୍ୱାମୀସେବା କାହାଣୀ । ସେ କଥା କ'ଣ ସତ ନୁହେଁ ଦାଦା ?

ଉପେନ୍ଦ୍ର କହିଲା—ସେ କଥା ମଧ୍ୟ ସତ । ସିଏ ଏକ ଅଦ୍ଭୁତ ବ୍ୟାପାର । ତତେ ଆଉ ସୁରବାଲାକୁ ଛାଡ଼ିଦେଲେ ମୋର ମନେହେଉଚ, କରଣମଫୁଲୀଙ୍କ ଭଳି ଏତେ ସେବା କୌଣସି ସ୍ତ୍ରୀଲୋକ ପକ୍ଷରେ ସମ୍ଭବ ନୁହେଁ । ସ୍ୱାମୀଙ୍କୁ ଏତେ ଭଲ ପାଇବା ଦୃଷ୍ଟାନ୍ତ ମଧ୍ୟ ମୁଁ କମ୍ ଦେଖିଚ ।

ସାବିତ୍ରୀ କହିଲା—ଏ କଥା ତ କେବେହେଁ ଛଳନା ହୋଇ ନ ପାରେ ।

ଉପେନ୍ଦ୍ର ତତ୍‌କ୍ଷଣାତ୍ କହିଲା—ନା, ଛଳନା ନୁହେଁ । ସେ ତ କେବେ କାହାକୁ ଦେଖିବାକୁ ଚାହୁଁନାହାନ୍ତି, କେତେବେଳେ କାହା ପାଖରେ ନିଜକୁ ପ୍ରକାଶ ମଧ୍ୟ କରନାହାନ୍ତି । ତାଙ୍କର ପତିସେବାର ସାକ୍ଷୀ ଥିଲେ କେବଳ ଭଗବାନ ଆଉ ଆମେ ଦୁଇଜଣ—ସନ୍ତୋଷ ଓ ମୁଁ । ପରକ୍ଷଣରେ ତାର ଡାକ୍ତର ଅନଙ୍ଗମୋହନ କଥା ମନେପଡ଼ିଲା । ଟିକଏ ସ୍ଥିର ରହିବା ପରେ କହିଲା—ଆଜି ତ ମୋର କାହା ଉପରେ ରାଗ, ଘୃଣା କି ବିତୃଷ୍ଣା ନାହିଁ । ମୋର ଆଜି ଅତି ବ୍ୟଥାର ସହିତ ମନେହେଉଚ, ସେ ସାରା ଜୀବନ ହାତକୁ ପ୍ରସାରି ଚାଲିଛନ୍ତି; କିନ୍ତୁ କେବେ କିଛି ପାଇନାହାନ୍ତି । ମତେ ସେ କେବେ ଭଲ ପାଇନାହାନ୍ତି । ଯଦି ଭଲ ପାଇଥାନ୍ତେ, ତାହାହେଲେ ସେ ମତେ ଏତେ ବ୍ୟଥା ଦେଇ ନ ଥାନ୍ତେ । ଦିବାକର ସେ ମୋର କ'ଣ, ସେ କଥା ସେ ଜାଣନ୍ତି । ତାକୁ ତାଙ୍କର ହାତରେ ସମର୍ପି ଦେଇଥିଲି । ଭାବିଥିଲି, ମୋ ସ୍ନେହର ବସ୍ତୁକୁ ସେ ମଧ୍ୟ ସ୍ନେହଚକ୍ଷୁରେ ଦେଖିବେ । ଓଃ କେତେ ବଡ଼ ଭୁଲ କରିଚ ମୁଁ ।

ଉପେନ୍ଦ୍ର କିଛି ସମୟ ଅଟକିଯାଇ ପୁଣି କହିଲା—ସନ୍ତୋଷ ଯଦି ପ୍ରକୃତରେ ସମସ୍ତଙ୍କୁ ଆଣି ଏଠି ପହଞ୍ଚେ ?

ସାବିତ୍ରୀ ମୁଣ୍ଡ ହଲାଇ କହିଲା—ନା, ତାହା କୌଣସିମତେ ହୋଇ ପାରିବନି । ତାଙ୍କ ଭଉଣୀଙ୍କ ରହିବା ବ୍ୟବସ୍ଥା ସେ ନିଜେ ଅନ୍ୟ କେଉଁଠି କରିବାକୁ କହିବେ ।

ଉପେନ୍ଦ୍ର କ'ଣ କହିବାକୁ ଯାଉଥିଲା, କିନ୍ତୁ ମନର କଥା ମୁହଁରେ ରହିଗଲା । ଅଘୋରମୟୀ କିମିତି କେଜାଣି ଦେହ ଖରାପ ସମ୍ବାଦ ପାଇ ଉପେନ୍ଦ୍ରର ଗୁଣକୁ ସୁମରି ସୁମରି କାନ୍ଦି କାନ୍ଦି ଘର ଭିତରେ ପ୍ରବେଶ କଲେ ।

ଏ ରୋଗର ସାଙ୍ଘାତିକତା ସମ୍ବନ୍ଧରେ ସ୍ପଷ୍ଟ ଧାରଣା ତାଙ୍କର ବିଶେଷ କିଛି ନ ଥିଲା; ତଥାପି ବିଳାପ କରିବାକୁ ଲାଗିଲେ ସେ । ଆପେ ଆପେ ସେ କହିଲେ—ଏହି ପୋଡ଼ାମୁହଁ ନେଇ ଭିକ୍ଷା କରିବାର ପଥ ଯେତେବେଳେ ରୁଦ୍ଧ ହୋଇଯାଇଚି ଏବଂ କ'ଣ କିଛି ନ ଘଟିଲେ ନ ଖାଇ ଶୁଖି ଶୁଖି ମରିବା ଯେତେବେଳେ ଅନିବାର୍ଯ୍ୟ, ସେତେବେଳେ ଉପୀନର ସବୁ ରୋଗ ନେଇ ମୁଁ ଯେ ନ ମରୁଚି କାହିଁକି ?

ଉପେନ୍ଦ୍ର ଏତେ ଦୁଃଖରେ ମଧ୍ୟ ହସି ହସି କହିଲା—ଖାଇବାକୁ ପାଇବନି କାହିଁକି ମାଉସୀ ? ସାବିତ୍ରୀକୁ ଦେଖାଇ କହିଲା—ମୁଁ ଗଲେ ମଧ୍ୟ ମୋର ଏଇ ଭଉଣୀଟିକି ଛାଡ଼ି ଦେଇଯିବି, ତୁମମାନଙ୍କୁ ସେ କୌଣସି କଷ୍ଟ ଦେବନି ।

ଅଘୋରମୟୀ ସାବିତ୍ରୀକୁ ଏହା ପୂର୍ବରୁ ଦେଖି ନ ଥିଲେ; ତେଣୁ କଠୋର ପରିଶ୍ରମ ଏବଂ ନିରନ୍ତର ମନକଷ୍ଟରେ ଶ୍ରୀହୀନା ଏଇ ଅପରିଚିତା ଭଉଣୀଟି ଆଡ଼କୁ ଚାହିଁ ବିସ୍ମିତା ହୋଇଉଠିଲେ । କିନ୍ତୁ କୌତୂହଳ ମେଣ୍ଟାଇବା ଲାଗି ଉଦ୍ୟମ କରୁ କରୁ ସାବିତ୍ରୀ ଘରେ ବହୁତ କାମ ପଡ଼ିଚି କହି ଭିତରକୁ ଚାଲିଗଲା ।

ଶୁକ୍ରବାର ଦିନ ଦଶଟା ଏଗାରଟା ସମୟରେ ସଦର ବନ୍ଦରରେ ଗାଡ଼ିଭଡ଼ା ଛିଣ୍ଡାଉଥିଲା, ଦେଖିଲା ବେହାରା ଠିଆ ହୋଇଚି । ମାଲିକଙ୍କୁ ଦେଖି ସେ ପାଖକୁ ଆସି ପ୍ରଣାମ କଲା । କିରଣମୟୀ ପାଖରେ ଠିଆ ହୋଇଥିଲେ । ବେହାରାର ସନ୍ଦେହ ହେଲା, ହୁଏତ ସିଏ । ସେ ଆଗରୁ କେବେ ଦେଖି ନ ଥିଲା, ଖାଲି ଶୁଣିଥିଲା ସେ ଅସାଧାରଣ ରୂପସୀ । କିନ୍ତୁ ରୂପର ବିଶେଷ କିଛି ଏଇ ମଳିନବସ୍ତ୍ରପରିହିତା ସାଧାରଣ ରମଣୀଟି ଦେହରୁ

ଖୋଜିବାକୁ ନ ପାଇ ସେ ମୀଟିକଟିକୁ ଆଜ କିଏ ଦେଇଥିବ ବୋଲି ମନେ କରି ଆସ୍ତେ ଆସ୍ତେ କହିଲା—ବାବୁ, ମା କହିଲେ, ସେଇ ମାଇପିଜଣଙ୍କ ଯଦି ଆସିଥାଆନ୍ତି, ତାଙ୍କୁ ଅନ୍ୟ କୌଣସିଠି ରଖି ଆପଣ ଦୁଜଣ କେବଳ ବସାକୁ ଆସିବେ । ତାଙ୍କୁ ସାଙ୍ଗରେ ଯିମିତି ନ ଆଣନ୍ତି ।

ସତୀଶ କ୍ଷୁଧା ଓ ତୃଷାରେ ଆଗରୁ ତ ବିରକ୍ତ ହୋଇ ଉଠିଥିଲା, ବେହାରୀଠାରୁ ଏଭଳି ଅପମାନକର ପ୍ରସ୍ତାବ ଶୁଣି, ସେତିକି ପୁଣି କିରଣମୟୀ ମୁହଁ ଆଗରେ, ରାଗରେ ନିଆଁ ହୋଇଉଠିଲା । କହିଲା—ସ୍ତ୍ରୀଙ୍କୁ କ'ଣ ଗଛ ତଳେ ପକେଇଦେଇ ଆମେ ବସାକୁ ଯିବୁ ? ଯା କହିଦେ, ଆମେ କେହି-ହେଲେ ବସାକୁ ଯିବାକୁ ଚାହୁଁନା ।

ବେହାରୀର ମୁହଁ ଏତେ ଟିକିଏ ହୋଇଗଲା । କିରଣମୟୀ ପାଖକୁ ଲାଗିଆସି ଟିକିଏ ହସିଦେଇ କହିଲେ—ସିଏ ଯାହା କହୁଚ, ଠିକ କହୁଚ ସତୀଶ ! ଏଥିରେ ରାଗିବାର କିଛି କାରଣ ନାହିଁ । ବାବୁ କିମିତି ଅଛନ୍ତି ବେହାରୀ ?

ବେହାରୀ ଜବାବ ଦେବା ପୂର୍ବରୁ ସତୀଶ ଆହୁରି ରାଗିଉଠି କହିଲା—କିଏ ତତେ ଏସବୁ କଥା କହିବାକୁ କହିଚି ? ସାବିତ୍ରୀ ? ବଡ଼ ଆସ୍ପର୍ଦ୍ଧା ତ ତାର ।

ସାବିତ୍ରୀ ପ୍ରତି ବାବୁଙ୍କର ଏଇ ରୂଢ଼ ଭାଷା ପ୍ରୟୋଗରେ ବେହାରୀ ବ୍ୟଥିତ ହୋଇପଡ଼ିଲା । କିରଣମୟୀ ଆଡ଼କୁ ଚାହିଁ କହିଲା—ତୁମେ ମା, ଠିକ୍ କହୁଚ । ବାବୁ ନ ବୁଝି ରାଗୁଚନ୍ତି । ଏସବୁ ଖରାପ ରୋଗରେ ସେଠିକି ଯିବାଟା କ'ଣ ଠିକ ହେବ ? ଉପୀନବାବୁ କାଲି ରାତିରେ ସାବିତ୍ରୀ ମାଙ୍କୁ ନିଜେ ଡାକି କହିଲେ, ଭୟ ନାଇଁ, କିରଣମୟୀ ମୋର ଏ ବେମାର କଥା ଜାଣିଲାମାତ୍ରେ ଏ ବସାକୁ କାହିଁକି, ଏଣ୍ଟି ସାହାକି ସୁଦ୍ଧା ଆସିବେନି । ସାବିତ୍ରୀ ମା ଭଲ ତ କେହି ଜୀବନକୁ ପାଣି ଛଡ଼େଇ ଦେଇନ ।

କିରଣମୟୀଙ୍କ ମ୍ଳାନ ମୁଖଟି ଏକାବେଳକେ ବିବର୍ଣ୍ଣ ହୋଇପଡ଼ିଲା । କହିଲେ—ଏକଥା କ'ଣ ଉପୀନବାବୁ ନିଜେ କହିଛନ୍ତି ବେହାରୀ ?

ବେହାରୀ ମୁଣ୍ଡକୁ ହଲାଇ କ'ଣ କିଛି କହିବାକୁ ଯାଉ ଯାଉ ସତୀଶ କହିଲା—ଥାଉ ଥାଉ, ଯାହା କହିଚୁ ସେତିକି, କୁଆଡ଼କାର ଗଧ ଗୋଟାଏ ।

ସତୀଶର ଧମକରେ ବେହାରୀ ସଂକୁଚିତ ହୋଇଉଠିଲା । କିରଣମୟୀ କହିଲେ—ତା' ଉପରେ ରାଗିଲେ କ'ଣ ହେବ ସତୀଶ ? ତାପରେ ବେହାରୀକୁ ଗୃହିଁ କହିଲେ—ତୁମ ଉପୀନବାବୁଙ୍କୁ କହିଦେବୁ, ଅନ୍ୟ କରିବାର କିଛି ନାହିଁ । ତାଙ୍କ ହୁକୁମ ନ ପାଇଲେ ମୁଁ କେମିତିକି ଯିବି ।

ସତୀଶକୁ କହିଲେ—ଶୁଣ ସତୀଶ, ଆଜ ମତେ କୌଣସି ଏକ ହୋଟେଲରେ ରଖିଦେଲେ ଚଳିବ । ଯଦି କେଉଁଠି ଗୋଟାଏ ଘରଭଡ଼ା ମିଳେ ତ ଭଲ ।

ସତୀଶ ଉତ୍ତେଜିତ ଭାବରେ କହିଲା—କଲିକତା ସହରରେ ଘର ଭଡ଼ା ନେବା ବଡ଼ କଥା ନୁହେଁ ଭାଉଜ ! ସଙ୍ଗେ ସଙ୍ଗେ ମିଳିବ । ଆମିଲୁ ହବାକର, ଟିକିଏ ଗୋଡ଼ କାଢ଼ି ଶୀଘ୍ର ଶୀଘ୍ର ଆ । ଏହା କହି ସତୀଶ କିରଣମୟୀଙ୍କୁ ଘୋଡ଼ାଗାଡ଼ିରେ ବସେଇଦେଇ ନିଜେ ତା ଭିତରକୁ ଉଠିଲା ।

ଘୋଡ଼ାଗାଡ଼ି ଗୁଡ଼ିବାମାତ୍ରେ ବେହାରୀ ବିଷଣ୍ଣ ମୁଖରେ ଘରକୁ ଫେରିଲା ।

ସମୟ ସୁବିଧା ପାଇଲେ ସାବିତ୍ରୀ ଭୋରରୁ ଗଙ୍ଗାକୁ ଗାଧୋଇ ଆସେ । ସତୀଶ ଫେରିଆସିବା ପରେ ଏବେ କେତେଦିନ ହେଲା ସେ ପ୍ରତିଦିନ ଗଙ୍ଗାସ୍ନାନ କରିବାକୁ ଆସେ ।

ସତୀଶ ଫେରିବାର ମାତ୍ର ଗ୍ୱରି ଦିନ ହେବ । ସାବିତ୍ରୀ ଗଙ୍ଗାକୁ ଗାଧୋଇବାକୁ ଯାଇଥାଏ । ଗାଧୁଆ ପାଧୁଆ ସାରି ତୁଠ ଉପରକୁ ଉଠି ଦେଖିଲା, ଘାଟ ଉପରେ ଗୋଟାଏ ଗୋଳମାଳ ଲାଗିଛି । ଜଣେ ବ୍ରାହ୍ମଣ ଗାଧୋଇସାରି ନାମାବଳି ମନ୍ତ୍ର ଆବୃତ୍ତି କରି କରି ଘରକୁ ଫେରୁ ଫେରୁ ଜଣେ ପାଗଳୀ ତାଙ୍କର ପଥରୋଧ କରିଛି । ଛୁଇଁଦେଲେ ପୁଣି ଥରେ ଗାଧୋଇବାକୁ ପଡ଼ିବ, ଯାହା ପୁଣ୍ୟ ହୋଇଚି, ସେତିକ ମାଟି ହୋଇଯିବ—ଏଇ ଭୟରେ ବୃଦ୍ଧ ବିବ୍ରତ ହୋଇ ପଡ଼ିଛନ୍ତି । ପାଗଳୀ ବୃଦ୍ଧଙ୍କୁ ନାନା ଅଦ୍ଭୁତ ପ୍ରଶ୍ନ ପଗ୍ୱରିଗ୍ୱଲିଚି । ପ୍ରଶ୍ନ ହେଉଚି—ଭଗବାନଙ୍କୁ ଆପଣ ବିଶ୍ୱାସ କରନ୍ତି ? ତାଙ୍କୁ ଡାକିଲେ ସେ କ'ଣ ଆସିବେ ? ଆପଣମାନେ ତାଙ୍କୁ କିଭଳି ଡାକନ୍ତି ? ମୁଁ ପାରୁନି କାହିଁକି ? ତାଙ୍କ ପ୍ରତି ମୋର ବିଶ୍ୱାସ ନାହିଁ କାହିଁକି ?

ବ୍ରାହ୍ମଣ ଉତ୍ତର କ'ଣ ଦେବେ, ଖାଲି କହିବୁଲିଛନ୍ତି, ବାଟ ଛାଡ଼ନ୍ତୁ ନା ନାହିଁ ଯେ, ଜଗୁଆଳୀ ପୋଲିସ୍‌କୁ ଡାକିବି ? ବାଟ ଛାଡ଼ କହୁଛି ।

ଦି' ଚାରିଜଣ ପ୍ରୌଢ଼ା ପାଖରେ ଥାଇ ମଜା ଦେଖୁଛନ୍ତି । ସେମାନେ କହୁଛନ୍ତି—ପାଗଳୀ ନୁହେଁ ମ, ମାଇକିନାକୁ ମଦନିଶା ଧରିଛି ।

ଏ କଥା ଶୁଣି ପାଗଳୀ କାତର ହୋଇ କହିଲା—ମୁଁ ଭଦ୍ରଘର ଝିଅ, ମଦ ଖାଇନି । ଏଇ ଆଗରେ ମୋର ବସା । ମୁଁ ଖାଲି ତୁମମାନଙ୍କ ହାତ ଗୋଡ଼ ଧରି ପଚାରୁଛି, କୁହ ଭଗବାନ ସତେ ଅଛନ୍ତି ? ତୁମେମାନେ କ'ଣ ତାଙ୍କୁ ଭାବିପାର ? ଭକ୍ତି କରିପାର ? ମୁଁ କାହିଁକି ପାରୁନି ? ମୁଁ ତ ପଅରଦିନଠୁ ତାଙ୍କୁ ବହୁତ ଡାକୁଛି । ଏହା କହୁ କହୁ ତା ଆଖିରୁ ଝରଝର ହୋଇ ଲୁହ ଗଡ଼ି ଆସୁଥାଏ ।

ସାବିତ୍ରୀ ମଧ୍ୟ ତାକୁ ପାଗଳୀ ବୋଲି ଭାବିଲା; କିନ୍ତୁ ତାର ଆଖିରୁ ଧାର ଧାର ହୋଇ ଲୁହ ଗଡ଼ିଆସୁଥିବା ଦେଖି ସାବିତ୍ରୀର ଦୁଇ ଚକ୍ଷୁ ମଧ୍ୟ ଅଶ୍ରୁପ୍ଲାବିତ ହୋଇଉଠିଲା । ପାଗଳୀର ଦୃଷ୍ଟି ହଠାତ୍ ସାବିତ୍ରୀ ଉପରେ ପଡ଼ିବାମାତ୍ରେ ତା ପାଖକୁ ଲାଗିଆସି କହିଲା—ତୁମେ ତ ମଧ୍ୟ ପୂଜା-ଅର୍ଚ୍ଚନା କରୁଚ, ତୁମେ କହିପାରିବ, ଭଗବାନ ବୋଲି କ'ଣ କିଛି ଅଛି ?

ଚାରିଆଡ଼େ ଲୋକ ଜମା ହୋଇଉଠୁଥିବା ଦେଖି ସାବିତ୍ରୀ ଖପ୍‌କିନା ପାଗଳୀର ହାତକୁ ଧରିଦେବାମାତ୍ରେ ପାଗଳୀ କହିଉଠିଲା—ତୁମେ ମୋତେ ଛୁଇଁଲ ?

ସାବିତ୍ରୀ କହିଲା—ସେଥିରେ କ'ଣ ଅଛି ? ଆପଣ ଘରକୁ ଚାଲନ୍ତୁ । ବାଟରେ ମୁଁ ସବୁ ପ୍ରଶ୍ନର ଉତ୍ତର ଦେବି ।

ବାଟରେ ଯାଉ ଯାଉ ନାନା କଥାବାର୍ତ୍ତା ହେଲା । ସେଥିରୁ ସାବିତ୍ରୀ ବୁଝିଲା, ସ୍ତ୍ରୀଲୋକଟି ଉନ୍ମାଦିନୀ ନୁହେଁ । କଥା ମଝିରେ ହଠାତ୍ ସେ କହିଉଠିଲା—ଆଚ୍ଛା ଭଉଣୀ, ଏ କଥା କ'ଣ ହୋଇପାରେ ? ଉପବାସ ରହି ଦିନରାତି ଡାକିଲେ ସତେ କ'ଣ ଭଗବାନଙ୍କର ଦୟା ହୁଏ ? ତୁମେ ଏ କଥା ଜାଣ ? ଏତିକି କହିଦେଇ ସେ ତୀବ୍ରଦୃଷ୍ଟିରେ ସାବିତ୍ରୀ ମୁହଁକୁ ଚାହିଁରହିଲା ।

ସାବିତ୍ରୀ କ'ଣ ଯେ ଜବାବ ଦେବ, ସେ କଥା ଭାବି ସୁଦ୍ଧା ପାରିଲା ନାହିଁ । କିନ୍ତୁ ବେଶୀ ସମୟ ତାକୁ ଭାବିବାକୁ ପଡ଼ିଲା ନାହିଁ । ସଙ୍ଗେ ସଙ୍ଗେ ସେ ସାବିତ୍ରୀର ହାତ ଛାଡ଼ିଦେଇ କହିଲା—ଯାଏ, ମୁଁ ଗଙ୍ଗାସ୍ନାନ କରିଆସେ । ଗଙ୍ଗାସ୍ନାନ କଲେ ବହୁତ ପାପ କଟିଯାଏ ନା ? ଏହା କହିଦେଇ ସେ କୌଣସି ଉତ୍ତରକୁ ଅପେକ୍ଷା ନ କରି ଯେଉଁ ବାଟରେ ଆସିଥିଲା, ସେଇ ବାଟରେ ଦ୍ରୁତବେଗରେ ଚାଲିଗଲା ।

## ପଞ୍ଚଚାଳିଶ

ସାବିତ୍ରୀର ଦି' ଆଖି ଦେଇ ଶ୍ରାବଣର ଧାରା ବହିଚାଲିଛି । ଆଜି ତା କୋଳ ଉପରେ ଉପେନ୍ଦ୍ର ନିଜ ମୃତ୍ୟୁଶଯ୍ୟା ବିଛେଇ ଦେଇଛି । ଶୀର୍ଣ୍ଣ ଶୀତଳ ପାଦ ଦୁଇଟି ଉପରେ ମୁହଁକୁ ଗୁଞ୍ଜି ଦିବାକର ନିଃଶବ୍ଦ ରୋଦନରେ ଅସହ୍ୟ ଦୁଃଖ ନିବେଦନ କରିଚାଲିଛି । ତାର ପରିତାପ, ତାର ବ୍ୟଥା ଅନ୍ତର୍ଯ୍ୟାମୀଙ୍କ ଛଡ଼ା ଆଉ କିଏ ବା ଜାଣିପାରେ ? ଏ ଘରେ ମହେଶ୍ୱରୀ ଭୂମିଶଯ୍ୟାରେ ପଡ଼ି ବିଦୀର୍ଣ୍ଣ କଣ୍ଠରେ କାନ୍ଦୁଥିଲେ । ଏଇ ସର୍ବଗ୍ରାସୀ ଶୋକ ମଧ୍ୟରେ କେବଳ ସନ୍ତୋଷ ସ୍ଥିର ହୋଇ ପାଖରେ ବସିରହିଛି ।

ଆଜି ସକାଳୁ ଉପେନ୍ଦ୍ରର ମୁହଁରୁ ଟିକକ ପରେ ଟିକେ ଯେଉଁ ରକ୍ତଧାରା ବହି ଚାଲିଥିଲା, ସହସ୍ର ଚେଷ୍ଟାରେ ମଧ୍ୟ ତାକୁ ବନ୍ଦ କରିବା ସମ୍ଭବ ହେଲାନି । ନିଶ୍ୱାସ କ୍ରମଶଃ ଭାରି ଓ କଠିନ ହୋଇ ଆସୁଥିଲା । ଏସବୁର ଦୁଃସହ କ୍ଳେଶ ସହ୍ୟ କରି ଉପେନ୍ଦ୍ର ନିମିଳିତ ଚକ୍ଷୁରେ ପଡ଼ି ରହିଥିଲା । ଆଖି ଖୋଲି ସାବିତ୍ରୀ ଆଡ଼କୁ ଚାହିଁ ଅସ୍ପଷ୍ଟସ୍ୱରରେ ଧୀରେ ଧୀରେ ପଚାରିଲା—କେତେ ରାତି ହୋଇଛି ସାବିତ୍ରୀ, ଆଜି କ'ଣ ସକାଳ ହେବନି ?

ସାବିତ୍ରୀ ଲୁଗାକାନିରେ ତାର ଓଷ୍ଠପ୍ରାନ୍ତର ରକ୍ତରେଖା ପୋଛି ଦେଇ ମୁହଁ ପୋତି କହିଲା—ଆଉ ବେଶୀ ରାତି ନାହିଁ ଦାଦା, କ'ଣ ବେଶୀ କଷ୍ଟ ହେଉଛି ?

ଉପେନ୍ଦ୍ର କହିଲ—ନା ସାବିତ୍ରୀ, ସମସ୍ତଙ୍କର ଯାହା ହୁଏ, ତାହା ହେଉଛି । ବେଶୀ ହେବ କାହିଁକି ?

ଟିକିଏ ସ୍ଥିରରହି କହିଲା—ମଙ୍ଗଳ, କିରଣମୟୀଙ୍କୁ କ'ଣ ପାଇଲୁନି ?

ଆଜକୁ ଚାରି ଦିନ ହେଲା କିରଣମୟୀ ସମ୍ପୂର୍ଣ୍ଣ ନିରୁଦ୍ଦିଷ୍ଟ । କଲିକତାରେ ପହଞ୍ଚିବା ଦିନ ସତୀଶ ଗୋଟିଏ ଘରଭଡ଼ା କରିଦେଇ ୧ ଜଣେ ଚାକରାଣୀ ରଖିଦେଇ ତାଙ୍କୁ ଛାଡ଼ିଦେଇ ଆସିଥିଲା; କିନ୍ତୁ ଉପେନ୍ଦ୍ର ରୋଗର ମାତ୍ରା ବଢ଼ିଯିବାରେ ସେ ତିନି ଦିନ କାଳ ନିଜେ ଯାଇ ... ଖବର ନେଇପାରିନି । ତିନି ଦିନ ପରେ ଯାଇ ଦେଖିଲା, କୌଣସି ସେ ସ୍ପର୍ଶ କରିନାହାନ୍ତି । ନୂଆ ହାଣ୍ଡିଟି କିଣି ଯେଉଁଠି ରଖିଦେଇ ଆ... ସେଇଟା ସେଇଠି ଠିକ୍ ସେଇ ଅବସ୍ଥାରେ ପଡ଼ିରହିଛି । ଚୁଲ୍ଲୀ ଦେଖି ... ନିଆଁ ବୋଲି ବି କଳାଦାଗ ନାହିଁ ।

ଚାକରାଣୀ ଆସି କହିଲା—କାମ କାହାର କରିବି ବାବୁ ! ମା ... ଯାହା ଘରକୁ ଆସି କବାଟ ମୁହଁରେ ଚଉକାକୁ ଚାହିଁ ବସିଲେ, ଆ... ଉଠିଲେନି । ଗାଧୋଇଲେନି କି ମୁହଁରେ ପାଣି ସୁଦ୍ଧା ଦେଲେନି । ଶେ... ବସି ହୋଇ ରହିଛି, ମୁହୂର୍ତ୍ତେ ବି ଶୋଇନାହାନ୍ତି । କାଲି ସକାଳୁ ଆ... ତାଙ୍କୁ ଦେଖିନି । ଜିନିଷପତ୍ର ଗୋଟାଗୋଟି କରି କେଉଁଠି ରଖିଲେ ... ମୁଁ ଖାଲି ଘରେ ପହରା ଦେଇ ରହିପାରିବିନି ।

ଖବର ଶୁଣି ସତୀଶ ମୁଣ୍ଡରେ ହାତ ଦେଇ ବସିରହିଲା । କି... ସମସ୍ତ ପରେ ଚାକରାଣୀ ହାତରେ ପାଞ୍ଚଟି ଟଙ୍କା ଦେଇ ଫେରିଆସିଲା । ସେଦିନଠୁ ଲୋକ ପଠେଇ କିରଣମୟୀଙ୍କୁ ବହୁତ ଖୋଜିଛି; କି... କୌଣସି ସନ୍ଧାନ ମିଳିନି ।

ସମସ୍ତ କଥା ଉପେନ୍ଦ୍ରର କାନରେ ପଡ଼ିଥିଲା ।

ସାବିତ୍ରୀର ସମସ୍ତ ବ୍ୟଥା ସହିତ ମିଶିମିଶିରେ ମନେହୁଏ ସେଦି... ସକାଳେ ଯାହାକୁ ସେ ଗଙ୍ଗାଘାଟରେ ଦେଖିଥିଲା, ସେଇ କିରଣମୟ... ନୁହନ୍ତି ତ ? କିନ୍ତୁ ସେ ଶୁଣିଛି, କିରଣମୟୀ କୁଆଡ଼େ ଅସାମାନ୍ୟା ସୁନ୍ଦରୀ ସେ ପାଗଳୀ ଦେହରେ ରୂପ ଥିଲେ ମଧ୍ୟ ତାଙ୍କୁ ତ ସୁନ୍ଦରୀ କୁହାଯାଏନା କିନ୍ତୁ ସେ କାହିଁକି ଧାଇଁ ପଳାଇଲା ? କୁଆଡ଼େ ଗଲା ?

ଉପେନ୍ଦ୍ର ପ୍ରଶ୍ନର ଉତ୍ତରରେ ସର୍ଚ୍ଚିଶ ଖାଲି ମୁଣ୍ଡ ହଲେଇ କହିଲା—ବାବା, କେଉଁଠି କିଛି ସନ୍ଧାନ ମିଳିନି ।

ଆଉ ସେ କୌଣସି ପ୍ରଶ୍ନ କଲାନି । ପରକ୍ଷଣରେ ତନ୍ଦ୍ରାରେ ... ହୋଇପଡ଼ିଲା । ଏହି ଭାବରେ ବାକି ଘଣ୍ଟିକକର ଅବସାନ ... ।

... ଦିନ ୧୦ଟା ପରେ ଉପେନ୍ଦ୍ର ପୁଣି ଥରେ ଆଖି ମେଲି ହଠାତ୍ ଯିମିତି ...ପାର କ୍ଷୀଣ କଣ୍ଠରେ କହିଉଠିଲା—ଇଏ କିଏ ସରୋଜିନୀ ?

ସରୋଜିନୀ ଖଟ ଉପରେ ଆଶ୍ରୁ ମାତ୍ର କାନ୍ଦିଉଠିଲା । ଉପେନ୍ଦ୍ର ...ସ୍ନେହେ ଡାହାଣ ହାତଟିକୁ ଉଠେଇ ତା ମଥା ଉପରେ ରଖି କହିଲା—...ମା ! ତୋତେ ମୁଁ ମନେ ମନେ ଖୋଜୁଥିଲି । କିନ୍ତୁ କୌଣସିମତେ ...ଣ କରିପାରୁ ନ ଥିଲି ଯେ ଆଜି ନ ଆସିଲେ ହୁଏତ···ଆଉ ଦେଖା ବ...ନ୍ତା ନାହିଁ । ଏତିକି କହିଦେଇ କିଛି ସମୟ ଧରି ଚିନ୍ତା କରିବାକୁ ...ଲା । ସ୍ପଷ୍ଟତଃ ବୁଝାଗଲା, ଆଜି ଆଉ ତାଙ୍କର କୌଣସି କଥା ସ୍ମରଣ ...ରିବା ଭଳି ଶକ୍ତି ନାହିଁ । ହଠାତ୍ ଯିମିତି ତାଙ୍କର ମନେପଡ଼ିଲା ଭଳି ...କିଲା—ସଚ୍ଚିଶ କାହିଁ ?

ସେପଟେ ସଚ୍ଚିଶ ଝରକାବାଟେ ଚୁହିଁ ଚୁପ୍‌ଚାପ୍ ଠିଆହୋଇ ...ହିଥିଲା । ପାଖକୁ ଆସି ଠିଆ ହେବାମାତ୍ରେ ଉପେନ୍ଦ୍ର କହିଲା—ତୁମମାନଙ୍କର ...ବାହ ଆଖିରେ ଦେଖିପିବାକୁ ସମୟ ହେଲାନି ସଚ୍ଚିଶ ! କିନ୍ତୁ ମୋର ଏଇ ...ନା ଭଉଣୀଟିକୁ ତୁ କୌଣସି ଦିନ ଯିମିତି ଦୁଃଖ ନ ଦେଉ । ତୋ ହାତଟି ...ରେ ବଢ଼େଇଲୁ·····କହି ନିଜ କଙ୍କାଳସାର ହାତଟିକୁ ଉପରକୁ ...ଠେଇଲା । ସାବଜୀର ଆନତ ମୁଖ ଆଡ଼କୁ ଚୁହିଁ ମୁହୂର୍ତ୍ତିକ ଭିତରେ ...ଚ୍ଚିଶର ବୁକୁ ଭିତରଟା ଧଡ଼୍‌କରି ଉଠିଲା; କିନ୍ତୁ ପରକ୍ଷଣରେ ସେ ହାତ ...ଢ଼େଇ ଉପେନ୍ଦ୍ରର କମ୍ପିତ ହାତଟିକୁ ନିଜର ବଳିଷ୍ଠ ଦକ୍ଷିଣ ହାତରେ ଧରି ପକେଇଲା ।

ଉପେନ୍ଦ୍ର ମନେ ମନେ ଜଗତ୍‌ତାରିଣୀଙ୍କ କଥା ସ୍ମରଣ କରି କହିଲା—ସଚ୍ଚିଶ, ତୁ ସରୋଜିନୀର ମାଆଙ୍କୁ ତ ଜାଣୁ । ତାଙ୍କ ପାଖରେ ମୁଁ ଜୋର୍‌କରି କଥା ଦେଇଥିଲି ଯେ ମୋର ସଚ୍ଚିଶ ଭାଇଟିକୁ ତୁମକୁ ଦେବି । ଦେଖିବୁ, ମୋ ମରଣ ପରେ କେହି ଯିମିତି ନ କହନ୍ତି ଯେ ତୁ ମୋ କଥା ରଖିଲୁନି ବୋଲି ।

ସଞ୍ଜଣ ଆଖିର ଜଳକୁ ଆଉ ସମ୍ଭାଳି ପାରିଲାନି । କାନ୍ଦି କାନ୍ଦି କହିଲା—ନା ଉପୀନଦା, କେହି କହିପାରିବେନି ମୁଁ ତୁମ କଥା ଅବଜ୍ଞା କରିଛି ବୋଲି । ତଥାପି ତ ସବୁ କଥା ଗୋପନ ରଖାଯାଇପାରେନା । ମୋର ତ ସବୁ କଥା ଖୋଲି କହିବା ଦରକାର । ମୁଁ ଭଲ ନୁହେଁ । ବହୁ ଦୋଷ, ବହୁ ଅପରାଧରେ ଅପରାଧୀ । ତଥାପି ସରୋଜିନୀ କିମିତି ବା ମତେ ଗ୍ରହଣ କରିବ ? ବରଂ ତୁମେ ମତେ ଏଇ ଅଧିକାର ଦେଇଯାଅ, ଯିମିତି କାହା ଜୀବନରେ କୌଣସି ଦୁର୍ବଳତାରେ ଯିଏ ମତେ ଭଲ ପାଇବାକୁ ଶିଖେଇଛି, ତାକୁ ମୁଁ ଅସ୍ୱୀକାର ନ କରେ···କିନ୍ତୁ କହୁ କହୁ ସେ ସାବିତ୍ରୀର ମୁହଁକୁ ଚାହିଁବାମାତ୍ରେ ଦୁଇଜଣଙ୍କ ଚାରିଚକ୍ଷୁର ମିଳନ ଘଟିଲା । କିନ୍ତୁ ତତ୍‌କ୍ଷଣାତ୍ ଦୁହିଁଙ୍କର ଦୃଷ୍ଟି ଆନତ ହୋଇଆସିଲା ।

ଉପେନ୍ଦ୍ର ହସିଉଠିଲା । କହିଲା—ଆଜଯାଏ କ'ଣ ମୋର ସେ କଥା ଜାଣିବାକୁ ବାକି ଅଛି ସଞ୍ଜଣ ? ମୁଁ ସବୁ ଜାଣେ । ସବୁ କଥା ଜାଣି ତ ମୁଁ ସମସ୍ତଙ୍କୁ ଏକ କରିଦେବାକୁ ଯାଉଛି ।

ସଞ୍ଜଣ କହିଉଠିଲା—କିନ୍ତୁ ମତେ ନେଇ କ'ଣ ସରୋଜିନୀ ସୁଖୀ ହୋଇପାରିବ ?

ଜବାବ ଦେଉ ଦେଉ ଉପେନ୍ଦ୍ର ସାବିତ୍ରୀ ମୁହଁକୁ ଚାହିଁବାମାତ୍ରେ ସାବିତ୍ରୀ ଉଚ୍ଛ୍ୱସିତ ଆବେଗରେ କହିଉଠିଲା—ସେ ଭାର ମୁଁ ନେଉଛି ଦାଦା, ତୁମେ ନିଶ୍ଚିନ୍ତ ହୁଅ ।

ଉପେନ୍ଦ୍ର କୌଣସି କଥା ନ କହି କେବଳ ନିର୍ନିମେଷ ନେତ୍ରେ ତାକୁ ଚାହିଁରହିଲା ।

କିଛି ସମୟ ପରେ ଉପେନ୍ଦ୍ର ପୁଣି କହିଲେ—ଆସକ୍ତିର ବନ୍ଧନ ଅ ତୋ ପାଇଁ ନୁହେଁ ସାବିତ୍ରୀ ! ଦୁର୍ଭାଗ୍ୟ ତୋତେ କୂଳର ବାହାରେ ଅ ଫିଙ୍ଗିଦେଇ ଯାଇଛି । ଆଉ ତା ଭିତରେ ପଶିବାକୁ ଚାହଁନା । ଚିରଦିନ ବାହାରେ ଥାଇ ତାକୁ ବୁକୁତଳେ ନଜର କରି ରଖ, ଏହା ହିଁ ମୋର ଅନୁରୋଧ ।

ଏହା ଶୁଣି ପାଷାଣୀଙ୍କ ଭଳି ସାବିତ୍ରୀ ନତଚକ୍ଷୁରେ ବସିରହିଲା । ଆଜି ସଞ୍ଜଣକୁ ଦେଖି ତାର ମନେହେଲା, ସେ ସଞ୍ଜଣ ନୁହେଁ, ଆଉ କେହି ଜଣେ । ତା ଉପରେ ତାର ଲେଶମାତ୍ର ଅଧିକାର ରହିଲା ନାହିଁ । ତାର

ଭାବନା, ତାର ବାସନା, ତାର ପରମ ସୁଖ, ଚରମ ଦୁଃଖ ଓ ଦୁଃସହ ବେଦନା ଆଜ ତାର ଆଖି ଆଗରେ ଯିମିତି ସମାଧିସ୍ଥ ହେଲା । କିନ୍ତୁ ଗ୍ଲେଷ ଗୋଟାଏ ନିଶ୍ୱାସ ମଧ୍ୟ ସେ କାହା ଉପରେ ପକେଇଲା ନାହିଁ । ବ୍ୟଥାରେ ବୁକୁ ଭିତରଟା ଯିମିତି ମୋଡ଼ି ମୋଡ଼ି ହୋଇଆସିଲା । କିନ୍ତୁ ସର୍ବଂସହା ବସୁମତୀ ଯେପରି ତାର ଅନ୍ତରର ଦୁର୍ଜୟ ଅଗ୍ନ୍ୟୁତ୍ପାତ ସହ୍ୟ କରେ, ସେହିଭଳି ସାବିତ୍ରୀ ଅବିଚଳିତ ଭାବରେ ସବୁ ସହ୍ୟ କରିନେଲା ।

ଉପେନ୍ଦ୍ର ତାର ଅବନତ ମୁଖ ପ୍ରତି ପୁନର୍ବାର ଦୃଷ୍ଟିପାତ କରି କହିଲା—ମୁଁ ସବୁକଥା ବୁଝିପାରୁଚି ସାବିତ୍ରୀ, କିନ୍ତୁ ବୋଝି ନ ପାରେ କ'ଣ ତତେ ଏଇ ଭାର ଦେଇଯାଆନ୍ତି ?

ପ୍ରତ୍ୟୁତ୍ତରରେ ସାବିତ୍ରୀ କେବଳ ତାର କପାଳରେ ପଡ଼ିଥିବା ବା ...ଡ଼କ ଉପରକୁ ଉଠେଇଦେଲା । ଅକସ୍ମାତ୍ ପଞ୍ଚଣ ଚିତ୍କାର କରିଉଠି ...ରେ, ଏଇ ଯେ ଭାଉଜ !

ସାବିତ୍ରୀ ଚମକିପଡ଼ି ମୁହଁ ଉଠେଇ ଦେଖିଲା, ଏଇ ତ ...ଗାଧାଟର ପାଗଳୀ ! ପାଦକୁ ଚିପି ଚିପି ଅତି ସନ୍ତର୍ପଣରେ ଘରକୁ ...ସୁଚି । ଚକ୍ଷୁପଲକରେ ଘରଟା ଏକାବେଳକେ ଚକିତ ହୋଇ... ...ଠିଲା ।

...ରଣମୟୀଙ୍କର ସୁଦୀର୍ଘ ରୁକ୍ଷ ବାଳଗୁଡ଼ାକ ମୁହଁ, କପାଳ ଓ ପିଠି ...ହୋଇ ପଡ଼ିଚି । ପିନ୍ଧିଥିବା ଲୁଗା ଛିନ୍ନ, ମଳିନ; ଆଖିରେ ଶୂନ୍ୟ ...ଣୀ । ଦେଖିଲେ ମନେହୁଏ, କୌଣସି ଉନ୍ମାଦିନୀ ଶୋକମୂର୍ତ୍ତି ଧରି ...ଇ ମଝିରେ ଆସି ଠିଆ ହୋଇଚି ।

...ଞ୍ଚଣ ଆଡ଼କୁ ଚାହିଁ କିରଣମୟୀ ଫୁସ୍ ଫୁସ୍ କରି କହିଲେ— ...ଜ ଖୋଜ ପାଇଲିନି ପଞ୍ଚଣ ! ବହୁ ଲୋକଙ୍କୁ ପଚାରିଲି, କେହି କହି-ଲେନି ଘରଟା କେଉଁଠି । ଆଜ କାଳୀବାଡ଼ିରୁ ଆସୁଥିଲି, ଭାଗ୍ୟକୁ ...ସ୍ତା ସାଙ୍ଗରେ ବାଟରେ ଦେଖାହେଲା । ତାର ପଛେ ପଛେ ଆସିଲି ।

ଉପେନ୍ଦ୍ର ଆଡ଼କୁ ଚାହିଁ ପଚାରିଲେ—ଆଜ କିମିତି ଅଛ ଉପେନ୍ଦ୍ର ?

ଉପେନ୍ଦ୍ର ହାତ ହଲାଇ କହିଲା—ଭଲ ନୁହେଁ । କିରଣମୟୀ ଅତି ...ନାର ସହିତ କହିଲେ—କ'ଣ କହିଲ ? ଭଲ ନୁହେଁ । ସୁରବାଳା ନାହିଁ ଶୁଣି କାନ୍ଦି କାନ୍ଦି ମରିଥିଲି । ସିଏ ତ ମୋର ଗୁରୁ, ସିଏ ତ ମତେ

କହୁଥିଲେ, ଭଗବାନ ଅଛନ୍ତି । ତାଙ୍କୁ ପଦେ ବିଶ୍ୱାସ କରିଥାଆନ୍ତି ! ହଠାତ୍ ତାଙ୍କର ଆଖି ଯାଇ ପଡ଼ିଲା ଦିବାକର ଉପରେ । କହିଉଠିଲେ—କହେ୍ାା, ତୁମେ କାହିଁକି ଇମିତ କୁଣ୍ଠିତ ହୋଇ ବସିରହିଛ ? ତୁମମାନଙ୍କୁ କ'ଣ ଏମାନେ ଲଜ୍ଜା ଦେଉଛନ୍ତି ? ଏତିକି କହିଦେଇ ଉପେନ୍ଦ୍ର ପ୍ରତି ତୀବ୍ର ଦୃଷ୍ଟି-ନିକ୍ଷେପ କରି କହିଲେ—ଯ୍ୟାକୁ ତୁମେ ଦୁଃଖ ଦିଅନା ଉପେନ୍ଦ୍ର ! ମୋ ହାତରେ ଯ୍ୟାକୁ ଯେଉଁ ସତ୍ୟ କରାଇ ସମର୍ପି ଦେଇଥିଲ, ସେ ସତ୍ୟ ମୁଁ ଦିନେହେଲେ ଭଙ୍ଗି ନି । ଯ୍ୟାକୁ ପ୍ରାଣପଣେ ରକ୍ଷା କରିଆସିଛି । କିନ୍ତୁ ମୋର ॥ଉ ସମୟ ନାହିଁ । ଏଥର ତୁମେ ଫେରେଇନିଅ ।

।—ଏଇ ନିଅ କାଳୀମନ୍ଦିରର ଭୋଗ । ଯ୍ୟାକୁ ସେବାକଲେ ଦେହ ଭଲ ହୁଯାଏ ବୋଲି ଲୋକେ କହନ୍ତି । ହୁଏତ ଭଲ ହୋଇଯିବ, କେତେ ଭଲ ହେଲେଣି ।

ଦିନେ ଯେଉଁ ରମଣୀର ରୂପର ସୀମା ନ ଥିଲା, ବିଦ୍ୟାବୁଦ୍ଧିର ନ ଥିଲା, ଇଏ ସେଇ କିରଣମୟୀ । କ'ଣ ଯେ ସେ କହୁଛି, ନିଜେ ମଧ୍ୟ ଜାଣେନା ।

ସତୀଶ ଆଉ ସହ୍ୟ ନ କରିପାରି ଓଃ କରି ଘରୁ ବାହାରିଗଲା ଏତେ ଦିନ ପରେ ଉପେନ୍ଦ୍ର ଆଖିରୁ କିରଣମୟୀ ଲାଗି ଅଶ୍ରୁ ନିଗିଡ଼ି ନିଗିଡ଼ି ଆସିଲା ।

କିରଣମୟୀ ମୁଣ୍ଡପୋତି କାନିରେ ଆଖିରୁ ଲୁହ ପୋଛୁଦେ କହିଲେ—ଆହା, କାନ୍ଦନି ଉପେନ୍ଦ୍ର, ଭଲ ହୋଇଯିବ ।

ଏଥର ସାବିତ୍ରୀ ପ୍ରତି ତାର ଦୃଷ୍ଟି ପଡ଼ିଲା । କିଛି ସମୟ ତାକେ କହିଲେ—ସେଦିନ ଗଙ୍ଗାଘାଟରେ ତୁମ ସହିତ ଦେଖା ହୋଇଥିଲା ଠିକ ଠିକଏ ଘୁଞ୍ଚିଲ—ତୁମ ଭଳି ଉପେନ୍ଦ୍ରକୁ ମୁଁ ଠିକଏ କୋଳରେ ନେଇକ ବସେ ।

ସରୋଜିନୀ ତାର ହାତ ଧରି କହିଲା—ମତେ ଚିହ୍ନିପାରୁଛ ଭାଉଜ ?

କିରଣମୟୀ ଅତି ସହଜ ଭାବରେ କହିଲା—ପାରିବିନି କାହିଁକି ? ତୁ ତ ସରୋଜିନୀ !

ମନୋରଞ୍ଜନ କହିଲା—ଚାଲ ଭାଉଜ, ଆମେ ସେ ଘରେ ଯାଇ କଥା· ·ବାର୍ତ୍ତା ହେବା । ଏହା କହି ସେ ଏକରକମ ଜୋର୍‌କରି ତାଙ୍କୁ ପାଖ ଘରକୁ ·ାଣି ନେଇଗଲା ।

ସେମାନେ ଘରୁ ବାହାର ହେଉ ନ ହେଉଣୁ ଉପେନ୍ଦ୍ରର ସଜ୍ଞା·ଲୋପ ହେଲା । ସମ୍ଭବତଃ ପରିଶ୍ରମ ଓ ଉତ୍ତେଜନା ତା ପକ୍ଷରେ ଅସହ୍ୟ ହୋଇ ଉଠିଥିଲା ।

ସାବିତ୍ରୀ ସେମିତି କୋଳରେ ଧରି ବସିରହିଲା, କୌଣସି କଥା ·ହିବା ଲାଗି ତା ମୁହଁରୁ କୌଣସି ଶବ୍ଦ ବି ବାହାରିଲାନି ।

ଦ୍ୱିପହର ଗୋଟାକଯାକ ଅଜ୍ଞାନ ଅବସ୍ଥାରେ କଟିଲା; କିନ୍ତୁ ସଂଧ୍ୟା·ର ଜ୍ୱରବୃଦ୍ଧି ସଙ୍ଗେ ସଙ୍ଗେ ତାର ଚେତନା ଫେରିଆସିଲା ।

ଆଖି ଖୋଲିବା ମାତ୍ରେ ପ୍ରଥମେ ଆଖିରେ ପଡ଼ିଲା ସାବିତ୍ରୀ ।

—ବସିଚୁ ସାବିତ୍ରୀ ?

ସାବିତ୍ରୀ କାନ୍ଦି କାନ୍ଦି କହିଲା—ମତେ ବି ସାଙ୍ଗରେ ନେଇଚାଲନ୍ତୁ ।

ଉପେନ୍ଦ୍ର ତାର କୌଣସି ଉତ୍ତର ନ ଦେଇ କହିଲା—ଭାଉ· ·ଠି ?

ସତ୍ତଶ କହିଲା—ତଳଘରେ ଶୋଇଛନ୍ତି । ତାଙ୍କୁ ମୁଁ ଆଖି ଆଗେ ·ଛି ।

ଗୋଟେ ଗୋଟେ ଜଗି ରହିଥିବୁ, ଯେ ପର୍ଯ୍ୟନ୍ତ ସେ ପ୍ରକୃତସ୍ଥ ·ୋଇଛନ୍ତି । କିନ୍ତୁ ତୋର କଷ୍ଟ ଭୟ କରିବାର ନାହିଁ ସତ୍ତଶ ! ତା· ·ନ୍ତରର ଆଘାତ ଯେ କେତେ ଦୁଃସହ, ସେସବୁ ଉପଲବ୍‌ଧି କରି· ·କ୍ତି ଆମ୍ଭମାନଙ୍କର ନାହିଁ । କିନ୍ତୁ ସେ ଯେତେ ନିଦାରୁଣ ହେଉନ· ·ତେ ବଡ଼ ବୁଦ୍ଧିକୁ ସେ ଏତେଦିନ ଆଚ୍ଛନ୍ନ କରି ରଖିପାରି·

ସତ୍ତଶ କହିଲା—ସେ କଥା ମୁଁ ଜାଣେ ଉପୀନଦା·

ମୌନରହି କହିଲା—ଯଦି ବିଶ୍ୱାସ କର ମତେ ·ଦ· ଦିବାକରର ଭାର ମଧ୍ୟ ମୁଁ ନେବି ।

ପ୍ରତ୍ୟୁତ୍ତରରେ ଉପେନ୍ଦ୍ର କେବଳ ଟିକିଏ ହସିବା· କଡ଼ ଲେଉଟେଇ ଶୋଇଲା । ଅନେକ କଥା, ଅନେକ ଉ·

ଜୀବନଦୀପର ଶେଷ ଦଳିତା ଟିକକ ପୋଡ଼ିପୋଡ଼ି ନିଃଶେଷ ହୋଇଗଲା । ଅଲ୍ପକ୍ଷଣ ଭିତରେ ଦେଖାଗଲା, ମୁହଁରୁ ଖାଲି ରକ୍ତ ବାହାରୁଛି, ନିଶ୍ୱାସ ଅଛି କି ନା ସନ୍ଦେହ ।

ଧରାଧରି କରି ସମସ୍ତେ ତାଙ୍କୁ ଉଠାଇ ଆଣିଲେ । ଉପେନ୍ଦ୍ରର ନିଷ୍ପାପ ବିରହ-ଜର୍ଜର ପ୍ରାଣ ସୁରବାଳା ଉଦ୍ଦେଶ୍ୟରେ ପ୍ରସ୍ଥାନ କଲା ।

ସେତେବେଳେ ସମସ୍ତଙ୍କର ଗଗନଭେଦୀ କଣ୍ଠର ବିଦୀର୍ଣ୍ଣ କ୍ରନ୍ଦନରେ ସମଗ୍ର ଘରଟା କମ୍ପି ଉଠିଲା । କିନ୍ତୁ ତଳଘରେ କରୁଣାମୟୀ ନିରୁଦ୍‌ବେଗରେ ଘୋଡ଼ା ନିଦରେ ନିଦ୍ରିତା ।



-ଶ୍ରୀ କିଶୋରଚନ୍ଦ୍ର ମିଶ୍ର, କଳିକତା ପ୍ରେସ, କଟକ—୧